# ଭାରତୀୟ ସଂସ୍କୃତି

## ଅଷ୍ଟମ ଖଣ୍ଡ

(ରମାୟଣପର୍ବ-ତୃତୀୟ)

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ



ଓଡ଼ିଶା ବୁକ୍ ଷ୍ଟୋର

# ଭାରତୀୟ ସଂସ୍କୃତି

## ଅଷ୍ଟମ ଖଣ୍ଡ

( ରାମାୟଣପର୍ବ-ତୃତୀୟ )

ଲେଖକ :

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ

ପ୍ରକାଶକ :

ଶ୍ରୀ ବିଜୟ ଶଙ୍କର ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦ ବିହାରୀ, କଟକ-୭୫୩ ୦୦୨




ପ୍ରଚ୍ଛଦ :

ଶ୍ରୀ ଅସିତ ମୁଖାର୍ଜୀ

ପ୍ରଥମ ମୁଦ୍ରଣ : ୨୦୦୦

ମୁଦ୍ରଣ :

ସପ୍ତର୍ଷି ପ୍ରିଣ୍ଟର୍ସ,

ମଧୁପାଟଣା, କଟକ-୭୫୩ ୦୧୦

# BHARATIYA SANSKRUTI

## EIGHTH PART

**(Ramayanaparva, Vol-III)**

*Written by*

**Sri Surendranath Satapathy**

*Published by*

**Sri Bijoy Shankar Patra**

ORISSA BOOK STORE

Binod Behari, Cuttack-753 002

Price Rs. 115/-

ISBN 81 7400-293-6

First Edition : 2000

ଓଡ଼ିଶାର ଲବ୍ଧପ୍ରତିଷ୍ଠ ମନସ୍ୱୀ ସାହିତ୍ୟିକ

ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ହସ୍ତରେ ସମର୍ପିତ...

ସୁରେନ୍ଦ୍ରନାଥ ଶତପଥୀ

# ପଦେ କଥା

ଆଜି 'ଭାରତୀୟ ସଂସ୍କୃତି : ରାମାୟଣପର୍ବ'ର ଅନ୍ତିମ ଖଣ୍ଡଟି ପ୍ରକାଶିତ ହେବାକୁ ଯାଉଛି । ଏହା ବଡ଼ ଆନନ୍ଦର କଥା । ଏହାର ପ୍ରକାଶନ ଦାୟିତ୍ୱ ଓଡ଼ିଶା ବୁକ୍ ଷ୍ଟୋର୍‌ର ପ୍ରତିଷ୍ଠାତା-ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ର ବହନ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । ଏହା ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ଭଳି ସୁଧୀ ପାଠକ-ପାଠିକାବୃନ୍ଦଙ୍କ ନିକଟରେ ଆଦୃତ ହେବ ବୋଲି ଆଶା କରୁଛି ।

ମୁଁ ସିନା ଏଠାରେ ଆନୁଷ୍ଠାନିକତା ରକ୍ଷା କରିବାକୁ ଯାଇ କହିଦେଲି ଯେ ଏଇଟି ରାମାୟଣ ପର୍ବର ଅନ୍ତିମ ଖଣ୍ଡ, କିନ୍ତୁ ରାମାୟଣ କ'ଣ ଏତିକିରେ ସରିଗଲା ? ତାହାର ଯାହା କିଛି ଅସ୍ମିତା ତାହାର କ'ଣ ଶେଷ ଅଭିପ୍ରକାଶକୁ ଲେଖନୀ-ମୁନରେ ରୂପାୟିତ କରାଗଲା ? ହଜାର-ହଜାର ବର୍ଷ ଧରି ରାମାୟଣ ଯେଉଁ ଇତିହାସ ଆମ ଜନଜୀବନରେ ସୃଷ୍ଟି କରିଛି ଏବଂ ଆହୁରି ହଜାର-ହଜାର ବର୍ଷ ଧରି ସୃଷ୍ଟି କରି ଚାଲିଥିବ ମଧ୍ୟ, ତାହାର କ'ଣ ଏଇଠି ପରିସମାପ୍ତି ଘଟିଲା ? ବାସ୍ତବିକ, କଥାଟା ତାହା ନୁହେଁ । ରାମାୟଣ କଥା ସରିନାହିଁ କି ସରିବ ନାହିଁ; ରାମାୟଣ ମରି ନାହିଁ କି ମରିବ ନାହିଁ, କାରଣ ଏହା ରବୀନ୍ଦ୍ରନାଥ ଠାକୁରଙ୍କ ମତରେ 'ଭାରତବର୍ଷର ଚିରକାଳର ଇତିହାସ' । ଯେଉଁ ଇତିହାସ ଆମେ ଦେଖୁଥାଉଁ, ଅନୁଭବ କରୁଥାଉଁ ଓ ଶ୍ୱାସ-ବାୟୁରେ ନେଉଥାଉଁ, ଏହା ତାହା ଛଡ଼ା ଆଉ କିଛି ନୁହେଁ । ରାମାୟଣ ଆମ ପାଇଁ କେବଳ ଏକ ନୀରବ ଅତୀତ ନୁହେଁ । ଏହା ବରଂ ଏକ ଚିରମୁଖର ଅତୀତ ଯାହାର ଝଙ୍କାର ଉଭୟ ବର୍ତ୍ତମାନ ଓ ଭବିଷ୍ୟତରେ ବି ଗୁଞ୍ଜରିତ ! ଏ ସମ୍ପର୍କରେ ରବୀନ୍ଦ୍ରନାଥଙ୍କ ସ୍ପଷ୍ଟ ବକ୍ତବ୍ୟ ହେଲା :

ଏମନ ଅବସ୍ଥାୟ ରାମାୟଣ-ମହାଭାରତକେ କେବଳମାତ୍ର ମହାକାବ୍ୟ ବଲିଲେ ଚଲିବେ ନା; ତାହା ଇତିହାସଓ ବଟେ । ଘଟନାବଲୀର ଇତିହାସ ନହେ; କାରଣ ସେ ରୂପ ଇତିହାସ ସମୟବିଶେଷକେ ଅବଲମ୍ବନ କରିୟା ଥାକେ, ରାମାୟଣ-ମହାଭାରତ ଭାରତବର୍ଷେର ଚିରକାଲେର ଇତିହାସ । ଅନ୍ୟ ଇତିହାସ କାଲେ କାଲେ କତଇ ପରିବର୍ତ୍ତିତ ହଇଲ, କିନ୍ତୁ ଏ ଇତିହାସେର ପରିବର୍ତ୍ତନ ହୟ ନାଇ । ଭାରତବର୍ଷେର ଯାହା ସାଧନା, ଯାହା ଆରାଧନା,

> ଯାହା ସକଲ, ତାହାର ଇତିହାସ ଏଇ ଦୁଇ ବିପୁଲ କାବ୍ୟହର୍ମ୍ୟେର ମଧ୍ୟେ
> ଚିରକାଲେର ସିଂହାସନେ ବିରାଜମାନ ।

ଏହି ଦୃଷ୍ଟିରୁ ରାମାୟଣ ଅମର । ଏହି ଦୃଷ୍ଟିରୁ ରାମାୟଣ ସଂସ୍କୃତି ଶାଶ୍ୱତ ।

ଆମ ଜନମାନସରେ ଏଭଳି ଉଚ୍ଚାସନରେ ପ୍ରତିଷ୍ଠିତ ଥାଇ ଏହା ଯୁଗେ ଯୁଗେ ଆମ ସାହିତ୍ୟ ଓ ସଂସ୍କୃତିକୁ ପ୍ରଭାବାନ୍ୱିତ କରିଆସିଛି । ବିଭିନ୍ନ ଭାରତୀୟ ଭାଷାମାନଙ୍କରେ ରାମାୟଣ ଗ୍ରନ୍ଥମାନ ଉଭୟ ଅନୁବାଦ ଓ ଅନୁକୃତି ରୂପରେ ସୃଷ୍ଟ ହୋଇଛି । ପୁଣି ଅନେକ କ୍ଷେତ୍ରରେ ମଧ୍ୟ ମୌଳିକ ସେଇ ଗୋଟିଏ । ସମସ୍ତ କଳାକୃତି ରାମାୟଣର ମୌଳିକ ମୂଲ୍ୟବୋଧସମୂହକୁ ଜାବୁଡ଼ି ଧରି ରହିଛି । ଶଂସିତ ପୁସ୍ତକରେ ରାମାୟଣର ଏବଂବିଧ ଯୁଗାନ୍ତକାରୀ ପ୍ରଭାବକୁ ନେଇ 'ଭାରତୀୟ ସାହିତ୍ୟ ଓ ସଂସ୍କୃତି ଉପରେ ପ୍ରଭାବ' ଶୀର୍ଷକ ଗୋଟିଏ ଅଧ୍ୟାୟ (ଚତୁର୍ଥ ଅଧ୍ୟାୟ) ସନ୍ନିବେଶିତ । ଏତଦ୍‌ବ୍ୟତୀତ ଆଉ ତିନୋଟି ଅଧ୍ୟାୟ ମଧ୍ୟ ଏଥିରେ ସ୍ଥାନିତ । ସେଗୁଡ଼ିକର ଶୀର୍ଷକସମୂହ ଯଥାକ୍ରମେ ହେଲା 'ଅଯୋଧ୍ୟାର ଗୋଷ୍ଠୀ' 'ରାଷ୍ଟ୍ର ଓ ପ୍ରଶାସନ' ଓ 'ସାମରିକତା' ।

ଏତଦ୍‌ବ୍ୟତୀତ ପାଠକପାଠିକାମାନଙ୍କ ଅବଗତି ନିମନ୍ତେ ପୁସ୍ତକଟିର ଶେଷରେ ରାମାୟଣବର୍ଣ୍ଣିତ ବିଭିନ୍ନ ସ୍ଥାନଗୁଡ଼ିକର ପରିଚୟ ମଧ୍ୟ ଦିଆ ଯାଇଛି । ରାମାୟଣ-ଘଟଣାବଳୀ ସହିତ ସଂପୃକ୍ତ ଏହି ସ୍ଥାନଗୁଡ଼ିକ ଆଜି ମୂକ ନୁହନ୍ତି; ବରଂ ସେଗୁଡ଼ିକ ହୋଇ ଉଠିଛନ୍ତି ଚିରବାଙ୍ଗ୍ମୟ-ବାଙ୍ମୟ ! ଏହା କମ୍ ବଡ଼ ଚମତ୍କାରିତାର କଥା ନୁହେଁ !

ପରିଶେଷରେ 'ସପ୍ତର୍ଷି ପ୍ରେସ୍'ର ସ୍ୱତ୍ୱାଧିକାରୀ-ମୁଦ୍ରାକର ଶ୍ରୀ ଗୌତମ ଆଚାର୍ଯ୍ୟ ପୁସ୍ତକଟିର ମୁଦ୍ରଣ ଯଥାସାଧ୍ୟ ନିର୍ଭୁଲ କରିବାର ଉଦ୍ୟମ କରିଥିବା ହେତୁ ଧନ୍ୟବାଦର ପାତ୍ର ।

ସୁଧୀ ପାଠକ-ପାଠିକାମାନେ ଏହି ଗ୍ରନ୍ଥଟିରେ ନିଜ ଜୀବନକୁ ତଥା ସାମାଜିକ-ସାଂସ୍କୃତିକ ପରିପାର୍ଶ୍ୱକୁ ଦେଖିପାରିଲେ ମୋ'ର ଉଦ୍ୟମ କିଞ୍ଚିତ୍ ସାର୍ଥକ ହେଲା ବୋଲି ମନେ କରିବି ।

ସୁରେନ୍ଦ୍ରନାଥ ଶତପଥୀ

# ବିଷୟ ସୂଚୀ


**ପ୍ରଥମ ପରିଚ୍ଛେଦ** ପୃଷ୍ଠା

ଆର୍ଯ୍ୟେତର ଗୋଷ୍ଠୀ ୧

**ଦ୍ୱିତୀୟ ପରିଚ୍ଛେଦ**

ରାଷ୍ଟ୍ର ଓ ପ୍ରଶାସନ ୫୦

**ତୃତୀୟ ପରିଚ୍ଛେଦ**

ସାମରିକତା ୧୨୩

**ଚତୁର୍ଥ ପରିଚ୍ଛେଦ**

ଭାରତୀୟ ସଂସ୍କୃତି ଉପରେ ପ୍ରଭାବ ୧୯୨

ରାମାୟଣକାଳୀନ ସ୍ଥାନପରିଚୟ ୨୮୨

ଶବ୍ଦସୂଚୀ ୨୯୧




## ଏହି ଲେଖକଙ୍କ ଭାରତୀୟ ସଂସ୍କୃତି ସିରିଜ୍‌ର ପୁସ୍ତକାବଳୀ

୧। ଭାରତୀୟ ସଂସ୍କୃତି ପ୍ରଥମ ଖଣ୍ଡ ପ୍ରାଗୈତିହାସିକ ପର୍ବ

୨। ଭାରତୀୟ ସଂସ୍କୃତି ଦ୍ୱିତୀୟ ଖଣ୍ଡ ବୈଦିକ ପର୍ବ—ପ୍ରଥମ ଭାଗ

୩। ଭାରତୀୟ ସଂସ୍କୃତି ତୃତୀୟ ଖଣ୍ଡ ବୈଦିକ ପର୍ବ—ଦ୍ୱିତୀୟ ଭାଗ

୪। ଭାରତୀୟ ସଂସ୍କୃତି ଚତୁର୍ଥ ଖଣ୍ଡ ବୈଦିକ ପର୍ବ—ତୃତୀୟ ଭାଗ

୫। ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ ବୈଦିକ ପର୍ବ—ଚତୁର୍ଥ ଭାଗ

୬। ଭାରତୀୟ ସଂସ୍କୃତି ଷଷ୍ଠ ଖଣ୍ଡ ରାମାୟଣ ପର୍ବ—ପ୍ରଥମ ଭାଗ

୭। ଭାରତୀୟ ସଂସ୍କୃତି ସପ୍ତମ ଖଣ୍ଡ ରାମାୟଣ ପର୍ବ—ଦ୍ୱିତୀୟ ଭାଗ

୮। ଭାରତୀୟ ସଂସ୍କୃତି ଅଷ୍ଟମ ଖଣ୍ଡ ରାମାୟଣ ପର୍ବ—ତୃତୀୟ ଭାଗ

# ପ୍ରଥମ ପରିଚ୍ଛେଦ

## ଆର୍ଯ୍ୟେତର ଗୋଷ୍ଠୀ

ରାମାୟଣବର୍ଣ୍ଣିତ ଚରିତ୍ରମାନଙ୍କ ମଧ୍ୟରୁ କେହି ଜଣେ ଯଦି ବର୍ତ୍ତମାନର ଭାରତକୁ ଆସି ଦେଖି ଯାଆନ୍ତେ, ତେବେ ସେ ନିଶ୍ଚୟ ଏଠାରେ ଥିବା ଏତେ ଜାତି, ଏତେ ଧର୍ମ ଦେଖି ବିସ୍ମୟ-ବିମୂଢ଼ ହୋଇ ଯାଆନ୍ତେ । ଖାଲି ସେତିକି ନୁହେଁ, ଧର୍ମ-ଧର୍ମ ମଧ୍ୟରେ, ଜାତି-ଜାତି ମଧ୍ୟରେ ଥିବା ଉଗ୍ର ବିବାଦ ଓ ବିଦ୍ବେଷ ତାଙ୍କ ବିସ୍ମୟର ମାତ୍ରାକୁ ଆହୁରି ଅଧିକ ବଢ଼ାଇ ଦିଅନ୍ତା । ଜାତି ଭିତରେ ପୁଣି ଏତେ ଉପଜାତି ! ଉପଜାତି ଭିତରେ ପୁଣି ଏତେ ଅନୁଜାତି ! ଧର୍ମ ଭିତରେ ପୁଣି ଏତେ ଗୋଷ୍ଠୀ ! ରାମାୟଣ-ଯୁଗରେ ଯେ ଜାତି କିମ୍ବା ଗୋଷ୍ଠୀ ଅଥବା ସମ୍ପ୍ରଦାୟ ନଥିଲେ ତାହା ନୁହେଁ । କିନ୍ତୁ ସେମାନଙ୍କ ସଂଖ୍ୟା ଏତେ ଅଧିକ ନଥିଲା । ସେତେବେଳେ ମୁଖ୍ୟତଃ ଦୁଇ ଗୋଷ୍ଠୀର ଲୋକେ ଥିଲେ, ଆର୍ଯ୍ୟ ଓ ଅନାର୍ଯ୍ୟ । ଧର୍ମ ସଂଖ୍ୟା ମଧ୍ୟ ଥିଲା ଦୁଇ । ଗୋଟିଏ ହେଲା ଆର୍ଯ୍ୟ ସନାତନ ଧର୍ମ ଏବଂ ଅପରଟି ହେଲା ଆର୍ଯ୍ୟେତର ଧର୍ମ ଯାହା ଥିଲା ମୂଳତଃ ଆର୍ଯ୍ୟଧର୍ମର ବିରୋଧୀ । ଦୁଇ ସମ୍ପ୍ରଦାୟର ଚିନ୍ତାଧାରାର ବୈଭିନ୍ନ୍ୟ ଦୃଷ୍ଟିରୁ ଜୀବନର ମୂଲ୍ୟବୋଧ, ଧର୍ମ-ଧାରଣା ତଥା ଜୀବନ-ଧାରଣର ମାର୍ଗ ଥିଲା ଭିନ୍ନ ଭିନ୍ନ । ବୈଦିକ ଆର୍ଯ୍ୟମାନଙ୍କ ଦିଗ୍‌ବିଜୟ-ଯାତ୍ରାର ମୌଳିକ ଉଦ୍ଦେଶ୍ୟ ଥିଲା ସାରା ମାନବ-ସମାଜକୁ ସୁସଂସ୍କୃତ କରାଇବା—ସାରା ବିଶ୍ୱକୁ ଆର୍ଯ୍ୟାନ୍ୱିତ (କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍) କରାଇବା । ଏହି ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ସେମାନେ ସେମାନଙ୍କ ମୂଳ ବାସଭୂମି 'ସପ୍ତସିନ୍ଧୁ' ଅଞ୍ଚଳରୁ କ୍ରମେ କ୍ରମେ ପୂର୍ବ ଓ ଦକ୍ଷିଣ ଆଡ଼କୁ ଅଗ୍ରସର ହୋଇଥିଲେ । ରାମାୟଣ-ଯୁଗ ବେଳକୁ ସେମାନେ ପୂର୍ବ ଭାରତର ଅଧିକାଂଶ ସ୍ଥାନରେ ସଭ୍ୟତା ବିସ୍ତାର କରି ସାରିଥିଲେ । ରାମାୟଣୀୟ ସଭ୍ୟତା ଓ ସଂସ୍କୃତିର କେନ୍ଦ୍ରବିନ୍ଦୁ ଅଯୋଧ୍ୟା, ମିଥିଳା ଆଦି ସ୍ଥାନର ପୂର୍ବ-ଭାରତରେ ଅବସ୍ଥିତି ଏହାର ସୂଚନା ଦେଇଥାଏ । ପୂର୍ବ-ଭାରତରେ ବିସ୍ତୃତ ହୋଇ ସାରିବା ପରେ ସେମାନଙ୍କ ଦୃଷ୍ଟି ଦକ୍ଷିଣ-ଭାରତ ପ୍ରତି ପଡ଼ିଥିଲା । ଏହି

ସଂସ୍କୃତିକ ବିଜୟର ନେତୃତ୍ୱ ନେଇଥିଲେ ମୁନି-ଋଷିମାନେ । ସେମାନେ ପ୍ରଥମେ ଅନାର୍ଯ୍ୟ-ଅଧ୍ୟୁଷିତ ଅଞ୍ଚଳରେ ପ୍ରବେଶ କରିଥିଲେ ଏବଂ ପରେ ପରେ ସେମାନଙ୍କୁ ଅନୁସରଣ କରି କ୍ଷତ୍ରିୟମାନେ ସେମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରିଥିଲେ । ଅଗସ୍ତ୍ୟ ହେଉଛନ୍ତି ପ୍ରଥମ ଋଷି ଯେକି ସର୍ବପ୍ରଥମେ ବିନ୍ଧ୍ୟଗିରିକୁ ଅତିକ୍ରମ କରି ଦକ୍ଷିଣ-ଭାରତକୁ ଯାଇଥିଲେ ଏବଂ ସେଠାରେ ଆର୍ଯ୍ୟେତର ଗୋଷ୍ଠୀଙ୍କ ମଧ୍ୟରେ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ବିସ୍ତାର ଲାଗି ଉଦ୍ୟମ କରିଥିଲେ । ବିନ୍ଧ୍ୟଗିରି ତାଙ୍କ ଆଗରେ ମୁଣ୍ଡ ନୁଆଁଇ ଦେଇଥିଲା ବୋଲି ଯେଉଁ ପୌରାଣିକ ବର୍ଣ୍ଣନା ଅଛି, ତାହାର ଏହା ହିଁ ହେଉଛି ତାତ୍ପର୍ଯ୍ୟ । ଏହି କାର୍ଯ୍ୟଟି ସେତେ ସହଜରେ ସଂଘଟିତ ହୋଇନଥିଲା । ଏଥିନେଇ ଆର୍ଯ୍ୟ ଓ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ପ୍ରବଳ ସଂଘର୍ଷର ସୂତ୍ରପାତ ହୋଇଥିଲା ଏବଂ ସେହି ସଂଘର୍ଷ ଅନେକ ବର୍ଷ ଧରି ଚାଲିଥିଲା । ମୁନି-ଋଷିମାନଙ୍କ ଆଶ୍ରମମାନ ମଧ୍ୟ ବେଳେ ବେଳେ ଏହି ସଂଘର୍ଷର କେନ୍ଦ୍ରବିନ୍ଦୁ ହୋଇ ଉଠିଥିଲା । ଅଗସ୍ତ୍ୟଙ୍କ ଆଶ୍ରମରେ ବହୁ ଅସ୍ତ୍ର-ଶସ୍ତ୍ର ମହଜୁଦ ଥିବାର ଏବଂ ସେହି ଭଣ୍ଡାରରୁ ବାଛି ବାଛି ସେ ରାମଙ୍କ ହସ୍ତରେ କେତେକ ଦିବ୍ୟାସ୍ତ୍ର ଦେଇଥିବାର ବର୍ଣ୍ଣନା ଯେପରି ଭାବରେ ରାମାୟଣରେ ଦିଆଯାଇଛି, ତହିଁରୁ ଏହି ସୂଚନା ପ୍ରକାଶିତ ହୋଇଥାଏ । ବାଲ୍ମୀକି ତାଙ୍କ ରାମାୟଣ ଗ୍ରନ୍ଥରେ ଅତି ରୋଚକ ଭାବରେ ଏହି ସଂଘର୍ଷକୁ ଉପସ୍ଥାପିତ କରିଛନ୍ତି । ରାମାଶ୍ରୟ ଶର୍ମାଙ୍କ ଭାଷାରେ :

> Valmiki has left in the Ramayana a very graphic and at the same time most authentic account of this struggle, and even though the peoples of the south have been disfigured by mythological colouring, the principal ones among them can still be recognised, as human beings and one can easily gather from the epic ample information with regard to their social, political and religious life. (୧)

ଏହି ଦୃଷ୍ଟିରୁ ବିଚାର କଲେ ଏହି ଆର୍ଯ୍ୟେତର ଗୋଷ୍ଠୀମାନଙ୍କ ସଂପର୍କରେ ଜ୍ଞାନ ଆହରଣ କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ ।

**ବିଭିନ୍ନ ଆର୍ଯ୍ୟେତର ଗୋଷ୍ଠୀ :**

ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କ ମଧ୍ୟରେ ମୌଳିକ ପ୍ରଭେଦ ହେଲା ଏହି

ଯେ ଆର୍ଯ୍ୟମାନଙ୍କ ମଧ୍ୟରେ ବର୍ଣ୍ଣଧର୍ମ ପ୍ରଚଳିତ ଥିଲା ଏବଂ ସେହି ଅନୁସାରେ ଆର୍ଯ୍ୟସମାଜ ବିଭକ୍ତ ହୋଇଥିଲା । କିନ୍ତୁ ଅନାର୍ଯ୍ୟମାନଙ୍କ ମଧ୍ୟରେ ସେପରି କିଛି ବର୍ଣ୍ଣ-ବିଭାଗ ଅଥବା ଜାତି-ବିଭାଗ ନ ଥିଲା । ଦ୍ୱିତୀୟତଃ ଆର୍ଯ୍ୟମାନେ ଦେହେତର 'ଆତ୍ମା' ଉପରେ ବିଶ୍ୱାସ କରୁଥିଲା ବେଳେ ଅନାର୍ଯ୍ୟମାନେ ଥିଲେ ସମ୍ପୂର୍ଣ୍ଣ ରୂପେ ଦେହବାଦୀ । ଧୀରେ ଧୀରେ ଆର୍ଯ୍ୟମାନେ ସେମାନଙ୍କ ସଭ୍ୟତା ଓ ସଂସ୍କୃତିର ପ୍ରଭାବ ସାରା ଦେଶରେ ଜାହିର କଲେ । ଏହି ପ୍ରକ୍ରିୟାରେ ଅନେକ ଅନାର୍ଯ୍ୟ-ଗୋଷ୍ଠୀ ସଭ୍ୟ ଓ ସଂସ୍କୃତ ହୋଇ ଉଠିଲେ । ଏହି କାର୍ଯ୍ୟରେ କେତେକ ଅନାର୍ଯ୍ୟ-ଗୋଷ୍ଠୀ ମଧ୍ୟ ଆର୍ଯ୍ୟମାନଙ୍କୁ ସହାୟତା କରିଥିଲେ ।

ଭାରତର ଦକ୍ଷିଣରେ ଗୋଟିଏ ଗୋଷ୍ଠୀର କୃଷ୍ଣକାୟ ଲୋକ ଥିଲେ । ବସ୍ତୁବାଦର ଦୃଷ୍ଟିକୋଣରୁ ବିଚାର କଲେ କେତେକ କ୍ଷେତ୍ରରେ ସେମାନେ ଆର୍ଯ୍ୟମାନଙ୍କଠାରୁ ମଧ୍ୟ ଉନ୍ନତତର ଥିଲେ । ସେମାନଙ୍କ ପ୍ରଭାବ ଦକ୍ଷିଣ ଭାରତର ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ବି ପଡ଼ିଥିଲା । ଏହି ଅଞ୍ଚଳକୁ ସେମାନେ କହୁଥିଲେ ଜନସ୍ଥାନ । ସେମାନେ ଥିଲେ ରାକ୍ଷସ ନାମରେ ଖ୍ୟାତ । ସେମାନେ ଧୀରେ ଧୀରେ ଉତ୍ତର-ଭାରତ ଆଡ଼କୁ ଅଗ୍ରସର ହେବାପାଇଁ ଚେଷ୍ଟା କରୁଥିଲେ । ଏହା ଫଳରେ ସେମାନଙ୍କର ଆର୍ଯ୍ୟମାନଙ୍କ ସହିତ ବାରମ୍ବାର ସଂଘର୍ଷ ହେବାକୁ ପଡ଼ିଥିଲା । ରାମଙ୍କୁ ତେଣୁ ସେମାନଙ୍କ ବିରୁଦ୍ଧରେ ଅଭିଯାନ କରି ସେମାନଙ୍କ ପ୍ରଭାବକୁ ପ୍ରତିହତ କରିବାକୁ ପଡ଼ିଥିଲା । ରାମାୟଣରେ ବାଲ୍ମୀକି ଏହି ଆର୍ଯ୍ୟ-ରାକ୍ଷସ ସଂଘର୍ଷକୁ ଅତି ରୋଚକ ଭାବରେ ବର୍ଣ୍ଣନା କରିଛନ୍ତି । ଶାନ୍ତିକୁମାର ନାନୂରାମ ବ୍ୟାସଙ୍କ ଭାଷାରେ :

> ବାଲ୍ମୀକି ନେ ରାକ୍ଷସୋଂ କୋ ଋଷି-ମୁନିୟୋଂ କା ଆଶ୍ରମୋଂ କା ଧ୍ୱଂସ କରନେୱାଲେ, ବୈଦିକ-କ୍ରିୟାକଲାପୋଂ ମେ ବିଘ୍ନ ଡ଼ାଲନେୱାଲେ, ବ୍ରାହ୍ମଣୋଂ କେ ଚର ଶତ୍ରୁ ତଥା ସ୍ୱେଚ୍ଛାନୁସାର ଆକାର ବଦଲନେୱାଲେ ନିଶାଚରୋଂ କେ ରୂପ ମେଂ ଚିତ୍ରିତ କିୟା ହୈ । ଉତ୍ତର-ଭାରତ ମେଂ ସଂସ୍କୃତଭାଷୀ ଆର୍ଯ୍ୟୋଂ ସେ ରାକ୍ଷସୋଂ କା ବରାବର ସଂଘର୍ଷ ରହତା ଥା । (୨)

ନରମାଂସଭକ୍ଷଣ ସେମାନଙ୍କ ପାଇଁ ବର୍ଜନୀୟ ନ ଥିଲା । ଦୁଷ୍ଟତା, ଶଠତା ଓ କ୍ରୂରତା ପାଇଁ ସେମାନେ ଥିଲେ କୁଖ୍ୟାତ । ରାବଣ ଥିଲା ସେମାନଙ୍କର ନେତା ।

ରାକ୍ଷସମାନଙ୍କ ଅତିରିକ୍ତ ଆଉ ଏକ ଆର୍ଯ୍ୟେତର ଗୋଷ୍ଠୀ ବିନ୍ଧ୍ୟ ପର୍ବତର ଦକ୍ଷିଣକୁ ରହୁଥିଲେ । ସେମାନେ ଆର୍ଯ୍ୟମାନଙ୍କୁ ସେମାନଙ୍କ ସାଂସ୍କୃତିକ

ଅଭିଯାନରେ ସହାୟତା କରିଥିଲେ । ରାକ୍ଷସମାନଙ୍କ ବିରୁଦ୍ଧରେ ରାମଙ୍କ ଅଭିଯାନରେ ସେମାନେ ସକ୍ରିୟ ତଥା ଫଳପ୍ରଦ ଅଂଶ ଗ୍ରହଣ କରିଥିବା କଥା ରାମାୟଣରେ ଅତି ରୋଚକ ଭାବରେ ବର୍ଣ୍ଣିତ । ସେମାନଙ୍କୁ କୁହାଯାଉଥିଲା ବାନର । ବାଲୀ ଓ ସୁଗ୍ରୀବ ଥିଲେ ସେମାନଙ୍କ ନେତା । ସେମାନେ ଥିଲେ ଏକ ବନବାସୀ ଆର୍ଯ୍ୟେତର ଗୋଷ୍ଠୀ, ମାଙ୍କଡ଼ କିନ୍ତୁ ନୁହନ୍ତି । ଏ ବିଷୟରେ ଅବଶ୍ୟ ପରେ ବିଶଦ ଭାବରେ ଆଲୋଚନା କରାଯିବ । ବ୍ୟାସ ମଧ୍ୟ ଏହି ମତର ପୁଷ୍ଟି-ସାଧନ କରିଥାନ୍ତି । ତାଙ୍କର ଏ ସମ୍ପର୍କରେ ମନ୍ତବ୍ୟ ହେଲା :

> ବାସ୍ତବ ମେଂ ବାନର-ଜାତି ବିନ୍ଧ୍ୟ ପର୍ବତ-ମାଲା କେ ଦକ୍ଷିଣ ମେଂ ନିବାସ କରନେ ୱାଲୀ ଏକ ବନଚର ଜାତି ଥୀ ଔର ଉସେ ନିରା ବନ୍ଦର୍ ସମଝ୍ ଲେନା ଭୂଲ ହୈ । (୩)

ବାଲ୍ମୀକି ମଧ୍ୟ ସେମାନଙ୍କୁ ବେଳେ ବେଳେ ଲାଙ୍ଗୁଳବିଶିଷ୍ଟ କପି, ଶାଖାମୃଗ ଆଦି ବିଭିନ୍ନ ମର୍କଟପର୍ଯ୍ୟାୟୀ ନାମରେ ନାମିତ କରିଛନ୍ତି । ଏହାର ତିନୋଟି କାରଣ ଥାଇପାରେ । ପ୍ରଥମତଃ ସେମାନେ ଥିଲେ ଆଚାର-ବିଚାର, ଖାଦ୍ୟପେୟ ଦୃଷ୍ଟିରୁ ଅତି ବୈଚିତ୍ର୍ୟମୟ ଏବଂ ଆର୍ଯ୍ୟମାନଙ୍କ ନିକଟରେ ସମ୍ପୂର୍ଣ୍ଣ ରୂପେ ଅପରିଚିତ । ଦ୍ୱିତୀୟତଃ ସେମାନଙ୍କ ପୋଷାକରେ ମାଙ୍କଡ଼ର ଲାଙ୍ଗୁଳ ଆକୃତିର କିଛିଗୋଟିଏ ଝୁଲୁଥିଲା ଏବଂ ସେମାନେ ମାଙ୍କଡ଼ମାନଙ୍କ ଭଳି ଡିଆଁ-ଡେଇଁ କରୁଥିଲେ । ତୃତୀୟରେ ସେମାନେ ଶରୀରରେ ଅଥବା ପତାକାରେ କପି-ଲାଞ୍ଛନକୁ ଅଙ୍କିତ କରାଉଥିଲେ । ରାମାୟଣରେ ସେମାନଙ୍କର ବଳବୀର୍ଯ୍ୟ ସମ୍ପର୍କରେ ଯେଉଁ ବର୍ଣ୍ଣନା ଅଛି ତାହା ମାଙ୍କଡ଼ମାନଙ୍କ ପକ୍ଷରେ କଦାପି ସମ୍ଭବ ନୁହେଁ । ଏହି ବାନରମାନଙ୍କ ମଧ୍ୟରେ ଆଉ ଏକ ଉପଗୋଷ୍ଠୀର ବନଚର ଥିଲେ ଯେଉଁମାନଙ୍କୁ କୁହାଯାଉଥିଲା 'ଋକ୍ଷ' । ମାଲ୍ୟବାନ୍, ଜାମ୍ବବାନ୍ ଆଦି ସେମାନଙ୍କର ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ସେମାନେ କଦାପି ସାଧାରଣରେ ବୁଝିଲା ଭଳି ଭାଲୁ ନଥିଲେ । ସେମାନେ ସ୍ୱୀୟ ଶରୀରରେ ଭାଲୁର ସଙ୍କେତ (totem) ଅଙ୍କିତ କରାଉଥିଲେ ଅଥବା ସେମାନଙ୍କ ପତାକାରେ ଭାଲୁର ଚିହ୍ନ ଅଙ୍କିତ ଥିଲା । ରାମାୟଣରେ ସେମାନଙ୍କ ସମ୍ପର୍କରେ କରାଯାଇଥିବା ଚିତ୍ରଣ ସେମାନଙ୍କୁ ଆମ ନିକଟରେ ଭାଲୁ ବୋଲି ପ୍ରତିପାଦିତ କରାଉଛି । ଏ ଧାରଣା କିନ୍ତୁ ଭୁଲ । ସେମାନେ କଦାପି ପଶୁ ନଥିଲେ । ଅନ୍ୟ ପକ୍ଷରେ ସେମାନେ ଥିଲେ ଗୋଟିଏ ବନଚରଗୋଷ୍ଠୀର ଅନ୍ତର୍ଭୁକ୍ତ । ବାନରମାନେ ଯେ ଏକ ବନଚରଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ ଏ ସମ୍ପର୍କରେ ଜେ. ଏଲ୍, ବ୍ରକିଙ୍ଗ୍‌ଟନ୍ ମଧ୍ୟ ସହମତ ପୋଷଣ କରିଥାନ୍ତି । ତାଙ୍କ ଭାଷାରେ :

The ambiguity in the depiction of the Vanaras runs through all the stages of the epic—now they are treated as basically human, now as mere monkeys. The commonest term Vanara, deriving ultimately from vana (forest), simply denotes their habitat and is quite compatible to their being a forest tribe. (୪)

ବାନରମାନଙ୍କ ରାଜଧାନୀ କିଷ୍କିନ୍ଧାର ବର୍ଣ୍ଣନା ସହିତ ଅଯୋଧ୍ୟାର ବର୍ଣ୍ଣନା ଅନେକାଂଶ ମେଳ ଖାଇଯାଉଛି । ତେଣୁ ସେମାନଙ୍କୁ ଏକ ଆର୍ଯ୍ୟେତର ଗୋଷ୍ଠୀ ବୋଲି ବିଶ୍ୱାସ କରିବାରେ କିଛି ଅସୁବିଧା ନାହିଁ ।

ରାକ୍ଷସ ଓ ବାନର ଏହି ଦୁଇ ପ୍ରମୁଖ ଆର୍ଯ୍ୟେତର ଗୋଷ୍ଠୀ ବ୍ୟତୀତ ଆହୁରି ଅନେକ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟ ସେତେବେଳେ ଥିଲେ । ସେମାନେ ହେଲେ ନିଷାଦ, ଗୃଧ୍ର, ଶବର, ଯକ୍ଷ ଓ ନାଗ । ଉପରୋକ୍ତ ଜାତିମାନଙ୍କ ବ୍ୟତୀତ ଦେବ, ଗନ୍ଧର୍ବ, ଚାରଣ, ସିଦ୍ଧ, କିନ୍ନର ଓ ଅପ୍ସରାମାନଙ୍କ କଥା ମଧ୍ୟ ରାମାୟଣରେ ଚର୍ଚ୍ଚିତ । ଏହି ଗୋଷ୍ଠୀମାନଙ୍କ ସମ୍ପର୍କରେ ବିଶଦ ଆଲୋଚନା ନିମ୍ନରେ କରାଯାଉଅଛି ।

**ନିଷାଦ :**

ନିଷାଦମାନଙ୍କ ରାଜ୍ୟ ଥିଲା କୋଶଳର ଏକ ସୀମାନ୍ତ ରାଜ୍ୟ । ଏହା କୋଶଳ ଓ ଗଙ୍ଗାନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ ଥିଲା । ଏହା ଥିଲା ଘଞ୍ଚ ଅରଣ୍ୟରେ ପରିପୂର୍ଣ୍ଣ । ଏମାନଙ୍କ ରାଜାଙ୍କ ନାମ ଥିଲା ଗୁହ । ଏହି ରାଜ୍ୟର ରାଜଧାନୀ ଥିଲା ଶୃଙ୍ଗବେରପୁରରେ ଅବସ୍ଥିତ । ଶୃଙ୍ଗବେରପୁର ହେଉଛି ଆଧୁନିକ ସିଙ୍ଗରୌର୍ ଯାହାକି ପ୍ରୟାଗଠାରୁ ଅଠର ମାଇଲ ଦୂରବର୍ତ୍ତୀ ଉତ୍ତର-ପୂର୍ବ କୋଣରେ ଗଙ୍ଗାନଦୀ କୂଳରେ ଅବସ୍ଥିତ । ନିଷାଦମାନଙ୍କର ତୀର-ସନ୍ଧାନ ଥିଲା ଅବ୍ୟର୍ଥ । ଏମାନେ ଗଙ୍ଗାର ତୀରରେ ରହୁଥିବାରୁ ନୌକାନିର୍ମାଣ, ନୌକା-ଚଳାଚଳ ତଥା ନୌକା-ଯୁଦ୍ଧରେ ଖୁବ୍ ସିଦ୍ଧହସ୍ତ ଥିଲେ । ଏମାନେ ଗଙ୍ଗାନଦୀକୁ ଏଭଳି ଦୁର୍ଭେଦ୍ୟ କରି ଗଢ଼ି ତୋଳିଥିଲେ ଯେ ଶତ୍ରୁପକ୍ଷ ତାହାକୁ ଅତିକ୍ରମ କରି ସେମାନଙ୍କ ରାଜଧାନୀ ଉପରେ ଆକ୍ରମଣ କରିବା ଅସମ୍ଭବ ହୋଇଉଠିଥିଲା । ଭରତ ଯେତେବେଳେ ରାମଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ସସୈନ୍ୟ ଚିତ୍ରକୂଟ ଅଭିମୁଖରେ ଯାତ୍ରା କରିଥିଲେ ତାହା ଦେଖି ନିଷାଦରାଜ ଗୁହଙ୍କ ମନରେ

ନାନା ପ୍ରକାର ସନ୍ଦେହ ଜନ୍ମିଥିଲା । ସେ ଭାବିନେଲେ ଯେ ଭରତ ନିଶ୍ଚୟ ରାମଙ୍କ ସହିତ ଯୁଦ୍ଧ କରିବା ପାଇଁ ବାହାରିଛନ୍ତି । ସେ ତେଣୁ ରାମଙ୍କର ଜଣେ ବନ୍ଧୁ ରାଜା ହିସାବରେ ଭରତଙ୍କର ଏହି ଅଭିଯାନକୁ ପ୍ରତିହତ କରିବାପାଇଁ ଚାହିଁଲେ । ସେ ତାଙ୍କର ନୌସେନାକୁ ସାରା ଗଙ୍ଗା ନଦୀରେ ଘେରି ହୋଇ ରହିବାପାଇଁ ଆଦେଶ ଦେଲେ । ସେ କହିଲେ :

ତିଷ୍ଠନ୍ତୁ ସର୍ବଦାଶାଶ୍ଚ ଗଙ୍ଗା ମନ୍ୟାଶ୍ରିତା ନଦୀମ୍ । (୫)

ଅର୍ଥାତ୍ ସମସ୍ତ ନାବିକ (ନୌସେନା) ଗଙ୍ଗା ନଦୀକୁ ଆଶ୍ରୟ କରି ରହନ୍ତୁ । ଗୁହଙ୍କ ନୌସେନାର ବଳ କେତେ ଥିଲା ତାହା ପରବର୍ତ୍ତୀ ଶ୍ଳୋକରେ ବର୍ଣ୍ଣିତ । ଏହା ଅନୁଯାୟୀ ତାଙ୍କ ନୌବେଳାରେ ପାଞ୍ଚ ଶହ ନୌକା ଥିଲା । ସେତେବେଳର ସ୍ତରରେ ଏହା ନିଶ୍ଚିତ ଭାବରେ ଏକ ଦୁର୍ଦ୍ଧର୍ଷ ନୌସେନା ହୋଇଥିବ । କିନ୍ତୁ ଗୁହଙ୍କ ଅନୁମାନ ଯେତେବେଳେ ଭ୍ରମାତ୍ମକ ବୋଲି ପ୍ରତିପାଦିତ ହେଲା ଏବଂ ଯେତେବେଳେ ସେ ଭରତଙ୍କ ଆଗମନର ପ୍ରକୃତ ଉଦ୍ଦେଶ୍ୟ ବୁଝିପାରିଲେ, ସେତେବେଳେ ସେ ତାଙ୍କର ଯଥାଯୋଗ୍ୟ ଅତିଥି-ସତ୍କାର କରିଥିଲେ । ପୂର୍ବରୁ ସେ ରାମଙ୍କ ଶୃଙ୍ଗବେରପୁରକୁ ଆଗମନ କାଳରେ ମଧ୍ୟ ତାଙ୍କର ସମଧିକ ଅତିଥି-ସତ୍କାର କରିଥିଲେ ଏବଂ ତାଙ୍କୁ ବନ୍ଧୁ ଭାବରେ ସମ୍ବୋଧନ କରିଥିଲେ । ସେ ରାମଙ୍କୁ 'ଆତ୍ମସମଃ ସଖା' ବା ଅଭିନ୍ନ ମିତ୍ର ଭାବରେ ସମ୍ବୋଧନ କରିଥିଲେ । (୬) ଏଥିରୁ ଜଣାପଡ଼ୁଛି ଯେ ନିଷାଦମାନଙ୍କର ଆର୍ଯ୍ୟମାନଙ୍କ ସହିତ ସୁସମ୍ପର୍କ ରହିଥିଲା । ନିଷାଦମାନେ ଅସଭ୍ୟ ତଥା ଅସଂସ୍କୃତ (ଆର୍ଯ୍ୟ ଦୃଷ୍ଟିକୋଣରୁ) ଥିଲେ ମଧ୍ୟ କେତେକ ବିଷୟରେ ସେମାନେ ଆର୍ଯ୍ୟମାନଙ୍କର ସମକକ୍ଷ ଥିଲେ । ଅତିଥି-ବତ୍ସଳତାକୁ ଏଠାରେ ଏକ ଉଦାହରଣସ୍ୱରୂପ ନିଆଯାଇ-ପାରେ । ଆର୍ଯ୍ୟମାନଙ୍କ ନିକଟରେ ଅତିଥି ଥିଲେ ଦେବତା ସମାନ । ତେଣୁ ତାଙ୍କୁ ପାଦ୍ୟ, ଅର୍ଘ୍ୟ ଆଦି ଦିଆଯାଇ ପୂଜା କରାଯାଉଥିଲା । ଗୁହ ମଧ୍ୟ ରାମ ଓ ଭରତ ଉଭୟଙ୍କୁ ପାଦ୍ୟ, ଅର୍ଘ୍ୟ ଆଦି ଦେଇ ପୂଜା କରିଥିଲେ ଏବଂ ତାଙ୍କ ପାଖରେ ଯାହା କିଛି ଥିଲା ତାହାକୁ ହାର୍ଦ୍ଦିକତାର ସହିତ ଅତିଥି ଦ୍ୱୟଙ୍କୁ ଅର୍ପଣ କରିଥିଲେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ରାମ ତାଙ୍କୁ ଅର୍ପିତ ହୋଇଥିବା ଭୋଜନକୁ ଗ୍ରହଣ କରି ନଥିଲେ । କାରଣ ସେ ଥିଲେ ବନବାସ-ବ୍ରତରେ ଅଧିଷ୍ଠିତ । ତେଣୁ ତାଙ୍କର ଫଳମୂଳ ସଂଗ୍ରହ କରି ଖାଇବା ଥିଲା କର୍ତ୍ତବ୍ୟ । ସେ ବିନୟ ଓ ଶ୍ରଦ୍ଧାର ସହିତ ଗୁହଙ୍କ ଅର୍ପିତ ଭୋଜନକୁ ମନା କରିଦେଇ କହିଥିଲେ :

ଯତ୍ତ୍ୱୟେଦଂ ଭବତା କଞ୍ଚିତ୍ ପ୍ରୀତ୍ୟା ସମୁପକଳ୍ପିତମ୍ ।
ସର୍ବଂ ତଦନୁଜାନାମି ନହି ବର୍ତ୍ତେ ପ୍ରତିଗ୍ରହେ ।। (୭)

ଅର୍ଥାତ୍ ତୁମେ ପ୍ରେମବଶ ହୋଇ ଯାହା କିଛି ସାମଗ୍ରୀ ପ୍ରସ୍ତୁତ କରିଛ ମୁଁ ତାହାକୁ ସ୍ୱୀକାର କରୁଛି ଏବଂ ତୁମକୁ ତାହା ଫେରାଇ ନେବାପାଇଁ ଆଜ୍ଞା ଦେଉଛି । କାରଣ ଏ ସମୟରେ ମୁଁ କାହାଙ୍କଠାରୁ ଜଳଗ୍ରହଣ କରିପାରିବି ନାହିଁ । ଭରତ କିନ୍ତୁ ଗୁହଙ୍କଦ୍ୱାରା ଅର୍ପିତ ଭୋଜନକୁ ଗ୍ରହଣ କରିଥିଲେ । ଏଥିରୁ ଜଣାପଡ଼ୁଛି ଯେ ସେତେବେଳେ ନିଷାଦମାନେ ଆଦୌ ଅସ୍ପୃଶ୍ୟ ନଥିଲେ ।

ନିଷାଦମାନଙ୍କ ସଭ୍ୟତା ଓ ସଂସ୍କୃତିର ପରମ୍ପରା ଅତି ପ୍ରାଚୀନ । ବନ ଥିଲା ଯେତେବେଳେ ସେମାନେ ସାରା ଭାରତରେ ଛିଡ଼ିହୋଇ ରହିଥିଲେ । ସେମାନଙ୍କ ସଂସ୍କୃତିର ସ୍ରୋତ ହିଁ ଥିଲା ଦେଶରେ ମୁଖ୍ୟ ସ୍ରୋତ । ବର୍ଣ୍ଣନା କରାଯାଏ ଯେ ସେମାନଙ୍କ ସଂସ୍କୃତି ଥିଲା ଉତ୍ତର-ପାଷାଣଯୁଗୀୟ ସଂସ୍କୃତି । କାଳକ୍ରମେ ଉନ୍ନତତର ଜାତିର ସଂସ୍କୃତି ଦ୍ୱାରା ସେମାନେ ପ୍ରଭାବିତ ହୋଇ ଧୀରେ ଧୀରେ ସଂଖ୍ୟାଲଘୁ ସମ୍ପ୍ରଦାୟରେ ପରିଣତ ହେବାକୁ ଲାଗିଲେ । ନିଷାଦମାନଙ୍କ ରାଜ୍ୟ ଅଯୋଧ୍ୟାର ସୀମାରେ ଥିବାରୁ ସେମାନଙ୍କୁ ଆର୍ଯ୍ୟ-ସଂସ୍କୃତି ଦ୍ୱାରା ପ୍ରଭାବିତ ହେବାପାଇଁ ବିଶେଷ ସୁଯୋଗ ମିଳିଥିଲା ଏବଂ ସେମାନେ ତାହାର ସଦୁପଯୋଗ କରିଥିଲେ ।

## ଗୃଧ୍ର

ଗୃଧ୍ରର ଅର୍ଥ ହେଲା ଶାଗୁଣା । ଏହା ଏକ ପକ୍ଷୀ । ଜଟାୟୁ ଓ ତା'ର ବଡ଼ ଭାଇ ସମ୍ପାତିର ଯେଉଁ ବର୍ଣ୍ଣନା ରାମାୟଣରେ ଦିଆଯାଇଛି ଆମେ ତହିଁରୁ ଅନୁମାନ କରୁ ଯେ ସେମାନେ ଥିଲେ ପକ୍ଷୀ । ସେମାନଙ୍କର ଡେଣା ଥିବା କଥା ବର୍ଣ୍ଣିତ । ରାବଣ ଖଣ୍ଡାରେ ଜଟାୟୁର ଡେଣା କାଟିଦେବା, ସମ୍ପାତିର ସୂର୍ଯ୍ୟଙ୍କୁ ଧରିବାକୁ ଯାଇ ଡେଣା ପୋଡ଼ିଯିବା ଆଦିର ବର୍ଣ୍ଣନା ଏହି ଚିନ୍ତାଧାରାକୁ ଆହୁରି ପରିପୁଷ୍ଟ କରିଥାଏ । ପକ୍ଷୀ ଯେତେ ବଳବାନ୍ ହେଲେ ମଧ୍ୟ ତା' ପକ୍ଷରେ ସୂର୍ଯ୍ୟଙ୍କ ପାଖକୁ କ'ଣ ଯିବା ସମ୍ଭବ ? ପୁଣି ତା' ପକ୍ଷରେ କ'ଣ ରାବଣ ଭଳି ବୀର ପୁରୁଷ ସହିତ ଲଢ଼ିବା ସମ୍ଭବ ? ପୁଣି ପକ୍ଷୀମାନେ କ'ଣ ମନୁଷ୍ୟ ସାଥିରେ କଥାବାର୍ତ୍ତା କରନ୍ତି ? କୌଣସି ଶାଗୁଣା ଏଭଳି କଥାବାର୍ତ୍ତା କରିବାର ଆମେ ତ ଦେଖିନାହୁଁ । ଅତଏବ, ଏଭଳି ବର୍ଣ୍ଣନା ଏକ କାବ୍ୟିକ କଳ୍ପନା ବ୍ୟତୀତ ଆଉ କିଛି ନୁହେଁ । ବାସ୍ତବିକ, 'ଗୃଧ୍ର'

ନାମରେ ଏକ ଆର୍ଯ୍ୟେତରଗୋଷ୍ଠୀ ଥିଲେ । ମୌଳିକ ଭାବରେ ସେମାନେ ଥିଲେ ମାଂସାହାରୀ । ସେଥିପାଇଁ ସମ୍ପାତି ସମୁଦ୍ରକୂଳରେ ବାନରମାନଙ୍କୁ ଏକଜୁଟ ହୋଇଥିବାର ଦେଖି ବହୁ ଦିନ ପରେ ତା'ର ସୌଭାଗ୍ୟରୁ ତା'କୁ ପ୍ରଚୁର ଆହାରର ଉପାଦାନ ମିଳିଗଲା ବୋଲି ଖୁବ୍ ଆନନ୍ଦିତ ହୋଇ ଉଠିଥିଲା ।

ବେଦୁଇନ୍‌ମାନଙ୍କ ଭଳି 'ଗୃଧ୍ର' ଓ 'ସୁପର୍ଣ୍ଣ'ମାନେ ଥିଲେ ଏକ ଯାଯାବର ଗୋଷ୍ଠୀ । ପକ୍ଷୀମାନଙ୍କ ଭଳି ସେମାନଙ୍କର ପର୍ଯ୍ୟଟନଶୀଳତା ଥିଲା । ସେମାନେ କୌଣସି ଗୋଟିଏ ସ୍ଥାନରେ ନରହି ସ୍ଥାନରୁ ସ୍ଥାନାନ୍ତର ଭ୍ରମଣ କରୁଥିଲେ । ପ୍ରବୀଣ ଭାରତତତ୍ତ୍ୱବିତ୍ ଅବିନାଶଚନ୍ଦ୍ର ଦାସ ମଧ୍ୟ ଏହି ମତର ପରିପୋଷଣ କରିଥାନ୍ତି । (୮) ସେମାନଙ୍କୁ ଗୃଧ୍ର ଓ ସୁପର୍ଣ୍ଣ ବୋଲି କହିବାର ଆଉ ଗୋଟିଏ ବଳିଷ୍ଠ କାରଣ ହେଲା, ସେମାନେ ନିଜ ହସ୍ତରେ 'ଶାଗୁଣା' ଓ 'ଗରୁଡ଼ ପକ୍ଷୀ'ର ସଙ୍କେତ (totem) ଅଙ୍କିତ କରିଉଥିଲେ । ସେମାନଙ୍କର ପତାକାରେ ମଧ୍ୟ ଏହି ଚିହ୍ନ ଥିଲା । ରାମାୟଣ ବର୍ଣ୍ଣିତ 'ଗୃଧ୍ର' ଗୋଷ୍ଠୀକୁ ତେଣୁ ଏହିଭଳି ଏକ ଯାଯାବର ଆର୍ଯ୍ୟେତର ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ବୋଲି ଆମକୁ ସ୍ୱୀକାର କରିବାକୁ ହେବ । ଆମକୁ ଆହୁ ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଜଟାୟୁ ଓ ସମ୍ପାତି ଥିଲେ ଏହି ସମ୍ପ୍ରଦାୟର ଦୁଇ ଜଣ ନେତୃସ୍ଥାନୀୟ ବ୍ୟକ୍ତି ।

ଗୃଧ୍ରମାନେ ପର୍ଯ୍ୟଟନଶୀଳ ଜୀବନଯାପନ କରିବା ମାଧ୍ୟମରେ ବିଭିନ୍ନ ସ୍ଥାନ ଓ ବିଭିନ୍ନ ଲୋକଙ୍କ ସଂସ୍ପର୍ଶରେ ଆସୁଥିଲେ । ବିଭିନ୍ନ ସଂସ୍କୃତିର ପ୍ରଭାବରେ ମିଶିବା ପାଇଁ ସେମାନଙ୍କୁ ସୁଯୋଗ ମିଳୁଥିଲା । ସେତେବେଳେ ଆର୍ଯ୍ୟ-ସଂସ୍କୃତିର ପ୍ରଭାବ ଥିଲା ଅତି ତୀବ୍ର । ତେଣୁ ସେମାନେ ଏହି ସଂସ୍କୃତି ଦ୍ୱାରା ବିଶେଷ ଭାବରେ ପ୍ରଭାବାନ୍ୱିତ ହୋଇଥିଲେ । ସେମାନେ ଆର୍ଯ୍ୟମାନଙ୍କ ଭଳି ମୃତବ୍ୟକ୍ତିର ଶବ-ସଂସ୍କାର କରୁଥିଲେ । ରାମାୟଣର (୩। ୬୮। ୩୨) ବର୍ଣ୍ଣନା ଅନୁସାରେ :

ଦଦାହ ରାମୋ ଧର୍ମାତ୍ମା ସ୍ୱବନ୍ଧୁମିବ ଦୁଃଖିତଃ ।

ଅର୍ଥାତ୍ ଧର୍ମାତ୍ମା ରାମ ଦୁଃଖିତ ହୋଇ ତା'କୁ (ଜଟାୟୁକୁ) ନିଜ ବନ୍ଧୁ ଭଳି ବିଧିରେ ଦାହ କରିଥିଲେ । ଜଟାୟୁ ମଧ୍ୟ ମରଣୋନ୍ମୁଖ ଅବସ୍ଥାରେ ଥିଲା ବେଳେ ରାମଙ୍କୁ ତାଙ୍କ ପିତାଙ୍କ ନିଜ ଲୋକ (ପିତୁରାତ୍ମନଃ) ବୋଲି କହିଥିବା କଥା ରାମାୟଣରେ ବର୍ଣ୍ଣିତ । (୯) ଏଥିରୁ ଏହି ସୂଚନା ମିଳୁଛି ଯେ ଗୃଧ୍ର-

ନେତାମାନଙ୍କର ଆର୍ଯ୍ୟ ରାଜା-ମହାରାଜାମାନଙ୍କ ସହିତ ସୁସମ୍ପର୍କ ସ୍ଥାପିତ ହୋଇଥିଲା ।

ଆଉ ଏକ ଆର୍ଯ୍ୟ ସଂସ୍କୃତିର ପ୍ରଭାବ ଆମେ ଗୃଧ୍ର ସମ୍ପ୍ରଦାୟ ଉପରେ ପଡ଼ିଥିବାର ଦେଖିବାକୁ ପାଇଥାଉଁ । ସମ୍ପାତି ଯେତେବେଳେ ବାନରମାନଙ୍କ ମୁଖରୁ ନିଜ ଭ୍ରାତୃବିୟୋଗର ସମ୍ବାଦ ଶୁଣିଲେ, ସେତେବେଳେ ସେ ଦୁଃଖରେ ଖୁବ୍ ମ୍ରିୟମାଣ ହୋଇ ଉଠିଲେ ଏବଂ ପରେ ପରେ ଆର୍ଯ୍ୟମାନଙ୍କ ଭଳି ପିତୃଗଣଙ୍କ ଉଦ୍ଦେଶ୍ୟରେ ସମୁଦ୍ର ଜଳରେ ତର୍ପଣ କଲେ । ଏ କଥା ସ୍ପଷ୍ଟ ଭାବରେ ରାମାୟଣରେ (୪।୬୨।୧୨) ଉଲ୍ଲିଖିତ ।

ଜଟାୟୁ ଓ ସମ୍ପାତି, ଏହି ଦୁଇ ଭାଇଙ୍କ ବ୍ୟତୀତ ଗୃଧ୍ରମାନଙ୍କ ବିଷୟରେ ରାମାୟଣରେ ଆଉ ବିଶେଷ କିଛି ଉଲ୍ଲେଖ ନାହିଁ । ସମ୍ଭବତଃ ସେମାନେ ଥିଲେ ଏକ କ୍ଷୁଦ୍ର ଗୋଷ୍ଠୀର ଅନ୍ତର୍ଭୁକ୍ତ । ସେମାନଙ୍କ ନେତାଦ୍ୱୟଙ୍କ ମୃତ୍ୟୁ ପରେ ସେମାନଙ୍କ ରାଜନୈତିକ ଅସ୍ତିତ୍ୱ ପ୍ରାୟ ଲୋପ ପାଇଗଲା ।

**ଶବର :**

ରାମ ଓ ଲକ୍ଷ୍ମଣ ସୀତାଙ୍କ ଅନୁସନ୍ଧାନରେ ଯାଇଥିବା ଅବସରରେ ପମ୍ପା-ସରୋବର ନିକଟରେ ଜଣେ ତପସ୍ୱିନୀଙ୍କୁ ଭେଟିଥିଲେ । ସେ ଥିଲେ ସ୍ୱର୍ଗତ ମତଙ୍ଗ ମୁନିଙ୍କ ଆଶ୍ରମବାସିନୀ ଓ ତାଙ୍କର ଜଣେ ଶିଷ୍ୟା ତପସ୍ୟାରେ ସେ ପ୍ରବୀଣ ସିଦ୍ଧି ଲାଭ କରିଥିଲେ । ସେଥିପାଇଁ ତାଙ୍କୁ ସିଦ୍ଧା ବୋଲି ମଧ୍ୟ କୁହାଯାଉଥିଲା । ସମ୍ଭବତଃ ଶବରଗୋଷ୍ଠୀୟ ଲୋକେ ସେଠାକାର ଆଖ-ପାଖ ଅଞ୍ଚଳରେ ରହୁଥିଲେ । ଏସ୍. ବି. ବିଶ୍ୱନାଥଙ୍କ କହିବା ଅନୁସାରେ ଏବେ ବି ମଧ୍ୟପ୍ରଦେଶର ପାର୍ବତ୍ୟ ଅଞ୍ଚଳରେ ଶବର ନାମଧେୟ ଏକ ଆଦିବାସିଗୋଷ୍ଠୀ ବାସ କରୁଛନ୍ତି । (୧୦) ଓଡ଼ିଶାର କୋରାପୁଟ ଜିଲ୍ଲାରେ ସଉରା ନାମଧେୟ ଏକ ଆଦିବାସିଗୋଷ୍ଠୀ ଏବେ ବି ଅଛନ୍ତି । ସଉରା ନାମଟି ଶବର ଶବ୍ଦର ଅପଭ୍ରଷ୍ଟ ରୂପ ବୋଲି ମନେହୁଏ । ଏମାନେ ସମସ୍ତେ ହେଉଛନ୍ତି ପ୍ରାଚୀନ ଶବରଗୋଷ୍ଠୀର ଦାୟାଦ । ରାମାୟଣକାଳୀନ ଶବରମାନେ ଆଦୌ ଆର୍ଯ୍ୟସଂସ୍କୃତିର ବିରୁଦ୍ଧାଚରଣ କରୁନଥିଲେ । ବରଂ ସେମାନେ ସେହି ସଂସ୍କୃତିର ମହାସ୍ରୋତରେ ନିଜକୁ ମିଶାଇଦେବାର ଉଦ୍ୟମ କରୁଥିଲେ । ସିଦ୍ଧା ଶବରୀଙ୍କର ତପସ୍ୱିନୀ ଭାବରେ ଜୀବନନିର୍ବାହ ଏହି ସୂଚନା ଦିଏ ଯେ ଶବରଗୋଷ୍ଠୀର ଲୋକଙ୍କ ପାଇଁ ଆଶ୍ରମଜୀବନର ଦ୍ୱାର ଅବରୁଦ୍ଧ ନଥିଲା । ତାଙ୍କୁ ରାମାୟଣରେ 'ଶ୍ରମଣୀ' ବୋଲି କୁହାଯାଇଛି । ଶ୍ରମଣ ଶ୍ରମଣୀ-ଗୋଷ୍ଠୀ ହେଉଛି ଆର୍ଯ୍ୟମାନଙ୍କର ଏକ ମର୍ଯ୍ୟାଦାସମ୍ପନ୍ନ ସନ୍ନ୍ୟାସି-ସନ୍ନ୍ୟାସିନୀ

ଗୋଷ୍ଠୀ । ଏହି ଗୋଷ୍ଠୀର ଲୋକମାନେ ଆଶ୍ରମର ଜପତପ ଆଦି ନିଷ୍ଠା ପାଳନ କରିବା ସଙ୍ଗେ ସଙ୍ଗେ କାର୍ଯ୍ୟିକ ଶ୍ରମ ମଧ୍ୟ କରୁଥିଲେ । ଏଭଳି ମର୍ଯ୍ୟାଦା ମଧ୍ୟ ଶବର ସମ୍ପ୍ରଦାୟର ଲୋକଙ୍କୁ ମିଳିପାରୁଥିଲା । ରାମ ଥିଲେ ଆର୍ଯ୍ୟ ସଂସ୍କୃତିର ପ୍ରମୁଖ ପ୍ରତିନିଧି । ତାଙ୍କ ଦର୍ଶନରେ ଏବଂ ତାଙ୍କ ପ୍ରତି ଆତିଥେୟତା ପ୍ରଦର୍ଶନର ସୁଯୋଗ ପାଇ ସିଦ୍ଧା ଶବରୀ ନିଜକୁ ଧନ୍ୟା ମନେକରିଛନ୍ତି ଏବଂ କହିଛନ୍ତି :

ଅଦ୍ୟ ପ୍ରାପ୍ତା ତପଃସିଦ୍ଧିସ୍ତବ ସନ୍ଦର୍ଶନାନ୍ମୟା ।
ଅଦ୍ୟ ମେ ସଫଳଂ ଜନ୍ମ ଗୁରବଶ୍ଚ ସୁପୂଜିତାଃ ।। (୧୧)

ଅର୍ଥାତ୍ ହେ ରଘୁନନ୍ଦନ ! ଆଜି ଆପଣଙ୍କ ଦର୍ଶନ ମିଳିବା ଦ୍ୱାରା ମତେ ମୋ'ର ତପଃ ସିଦ୍ଧି ମିଳିଗଲା । ଆଜି ମୋ'ର ଜନ୍ମ ସଫଳ ହୋଇଗଲା ଏବଂ ଗୁରୁଜନମାନଙ୍କ ପୂଜା ସାର୍ଥକ ହୋଇଗଲା । ଖାଲି ସେତିକି ନୁହେଁ, ରାମ ମଧ୍ୟ ତାଙ୍କ ପ୍ରତି କମ୍ ସମ୍ମାନ ଦେଖାଇ ନାହାନ୍ତି । ତାଙ୍କ ଆଶ୍ରମର କୁଶଳ-ସମାଚାର ପଚାରିବା ଅବସରରେ ରାମ ତାଙ୍କୁ 'ତପୋଧନା' ବୋଲି ସମ୍ବୋଧନ କରିଥିବା କଥା ରାମାୟଣରେ (୩।୭୪।୮) ବର୍ଣ୍ଣିତ । ପୁନଶ୍ଚ ତାଙ୍କ ଭକ୍ତିରେ ମୁଗ୍ଧ ହୋଇ ରାମ ତାଙ୍କ ହସ୍ତରୁ ଫଳ ଗ୍ରହଣ କରିଥିଲେ । ଏଥିରୁ ଶବର-ଗୋଷ୍ଠୀ ଆର୍ଯ୍ୟ ସଂସ୍କୃତି ଦ୍ୱାରା କେତେ ଦୂର ପ୍ରଭାବାନ୍ୱିତ ହୋଇଥିଲା ତାହାର ସମ୍ୟକ୍ ସୂଚନା ମିଳିଥାଏ । ଅଧିକନ୍ତୁ ଏଥିରୁ ଆର୍ଯ୍ୟଗୋଷ୍ଠୀ ଓ ଶବରଗୋଷ୍ଠୀ ମଧ୍ୟରେ ଥିବା ସୁସମ୍ପର୍କ ସୂଚିତ ହୋଇଥାଏ ।

**ଯକ୍ଷ :**

ଯକ୍ଷ ବୋଲି ଆଉ ଗୋଟିଏ ଅର୍ଯ୍ୟେତର ଗୋଷ୍ଠୀ ଥିଲେ । ସେମାନେ ଥିଲେ ରାକ୍ଷସ-ସମ୍ପ୍ରଦାୟର ଅଥବା ସେମାନଙ୍କର ଏକ ଉପଗୋଷ୍ଠୀ । ରାମାୟଣରେ ତାଟକାକୁ ବେଳେ ବେଳେ 'ଯକ୍ଷୀ' ଓ ଆଉ ବେଳେ ବେଳେ 'ରାକ୍ଷସୀ' ବୋଲି ସମ୍ବୋଧନ କରାଯାଇଛି । ଯକ୍ଷମାନଙ୍କର ଶାରୀରିକ ଶକ୍ତି ଥିଲା ଅସୀମ । ସେମାନେ ମଧ୍ୟ ଥିଲେ ଦେଖିବାକୁ ସୁନ୍ଦର । ତାଟକା ରାକ୍ଷସୀ ହେବା ପୂର୍ବରୁ ଜଣେ ଅତି ସୁନ୍ଦରୀ ଯକ୍ଷୀ ଥିଲା ବୋଲି ରାମାୟଣରେ (୧।୨୫।୭) ବର୍ଣ୍ଣିତ । ଯକ୍ଷ ଓ ରାକ୍ଷସମାନେ ସଜାତୀୟ ଥିବାର ଆଉ ଏକ ପ୍ରମାଣ ହେଉଛନ୍ତି ଯକ୍ଷରାଜ କୁବେର । ସେ ଥିଲେ ରାବଣର ସାବତ ଭାଇ ଏବଂ ବିଶ୍ରବା ଋଷିଙ୍କ ପୁଅ । ସେ ପ୍ରଥମେ ଲଙ୍କାରେ ରାଜୁତି କରୁଥିଲେ । କିନ୍ତୁ ରାବଣ ତାର ରାଜନୈତିକ ଉଚ୍ଚାଭିଳାଷର ପରିପୂର୍ତ୍ତି ଉଦ୍ଦେଶ୍ୟରେ

ତାଙ୍କୁ ଲଙ୍କାରୁ ବିତାଡ଼ିତ କରିଥିଲା ଏବଂ ସେ ଯାଇ ହିମାଳୟ ଅଞ୍ଚଳରେ ଆଉ ଏକ ରାଜ୍ୟ ସ୍ଥାପନ କରି ରହିଥିଲେ । ତାଙ୍କ ସାଥିରେ ମଧ୍ୟ ଅନେକ ଯକ୍ଷ ଚାଲିଯାଇଥିଲେ । ଏତକରେ ରାକ୍ଷସ-ଯକ୍ଷ ବିବାଦର ପରିସମାପ୍ତି ଘଟି-ନଥିଲା । ରାବଣ ତା'ର ଦିଗ୍‌ବିଜୟ ଯାତ୍ରାର ଅବସରରେ କୁବେରଙ୍କୁ ପୁନରାୟ ଯୁଦ୍ଧରେ ପରାସ୍ତ କରି ତାଙ୍କଠାରୁ ପୁଷ୍ପକ-ଯାନଟିକୁ ଛଡ଼ାଇ ଆଣିଥିଲା । ଉତ୍ତର-ଭାରତକୁ ଯେଉଁ ଯକ୍ଷମାନେ ଆସିଗଲେ ସେମାନେ ଆର୍ଯ୍ୟାନ୍ୱିତ ହୋଇଗଲେ । ଆଉ ଅଳ୍ପ ସଂଖ୍ୟକ ଯକ୍ଷ ରହିଗଲେ ଯେଉଁମାନେ କି ଉତ୍ତର-ଭାରତରେ ଥାଇ ମଧ୍ୟ ଆର୍ଯ୍ୟ ସଂସ୍କୃତିର ବିରୁଦ୍ଧାଚରଣ କରିବାକୁ ଲାଗିଲେ । ତାଟକା ଥିଲା ସେମାନଙ୍କ ମଧ୍ୟରୁ ଜଣେ । ଯକ୍ଷମାନେ ପ୍ରଥମେ ଦକ୍ଷିଣଭାରତରେ ରହିଥିବା କଥା ଏବଂ ପରେ ନିଷ୍ଠୁର ରାକ୍ଷସମାନଙ୍କ ଦ୍ୱାରା ଉତ୍ତର-ଭାରତକୁ ବିତାଡ଼ିତ ହୋଇଥିବା କଥା ଚନ୍ଦ୍ରାମଣି ବିନାୟକ ବୈଦ୍ୟଙ୍କ ଦ୍ୱାରା ମଧ୍ୟ ସମର୍ଥିତ । (୧୨)

ଯକ୍ଷ ଓ ରାକ୍ଷସମାନଙ୍କ ଜନ୍ମ ସମ୍ପର୍କରେ ରାମାୟଣରେ ଯେଉଁ ବର୍ଣ୍ଣନା ଦିଆଯାଇଛି ତହିଁରୁ ସେମାନଙ୍କ ଗୁଣ ସମ୍ପର୍କରେ କିଛିଟା ସୂଚନା ମିଳୁଛି । ମହର୍ଷି ଅଗସ୍ତ୍ୟ ଉତ୍ତର କାଣ୍ଡରେ (୪।୧୧; ୪।୧୩) ସେମାନଙ୍କ ଜନ୍ମର ବର୍ଣ୍ଣନା କରିଛନ୍ତି । ବ୍ରହ୍ମା ଉଭୟ ରାକ୍ଷସ ଓ ଯକ୍ଷଙ୍କୁ ଜନ୍ମ ଦେଇଥିଲେ । ରାକ୍ଷସମାନେ ଜନ୍ମହେବା ମାତ୍ରେ କ୍ଷୁଧାରେ ଅଧୀର ହୋଇଉଠିଥିଲେ । ସେମାନେ ତେଣୁ କହିଲେ, 'ରକ୍ଷାମଃ' ବା 'ରକ୍ଷାକରିବୁ' (ନିଜକୁ) । ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେଲା କିପରି ଖାଇପିଇ ନିଜ ଶରୀରକୁ ରକ୍ଷା କରିବେ । ଯକ୍ଷମାନେ କହିଲେ 'ଯକ୍ଷାମଃ' ବା 'ଯଜ୍ଞ କରିବୁ' ବ୍ରହ୍ମା ତେଣୁ ସେମାନଙ୍କୁ ଯଥାକ୍ରମେ ରାକ୍ଷସ ଓ ନାଁ ଯକ୍ଷ ଦେଲେ । ରାକ୍ଷସମାନେ ପ୍ରବଳ ଭାବରେ ସ୍ୱାର୍ଥାନ୍ୱେଷୀ ଥିଲା ବେଳେ ଯକ୍ଷମାନେ ଥିଲେ ଯଜ୍ଞାର୍ଥ କର୍ମ କରିବା ବ୍ୟକ୍ତି । ଏହା ଥିଲା ଦୁଇ ଗୋଷ୍ଠୀ ମଧ୍ୟରେ ମୌଳିକ ପ୍ରଭେଦ । ତେଣୁ ରାକ୍ଷସମାନେ ଯକ୍ଷମାନଙ୍କର ଶତ୍ରୁ ହୋଇଉଠିଥିଲେ ।

ଏହି ଯକ୍ଷମାନେ ଧୀରେ ଧୀରେ ଉନ୍ନତ ହୋଇଉଠିଲେ ଏବଂ କାଳକ୍ରମେ ଏମାନଙ୍କଠାରେ ଦେବତ୍ୱ ଆରୋପ କରାଯିବାକୁ ଲାଗିଲା । ବୌଦ୍ଧକାଳୀନ ଭାରତରେ (ଖ୍ରୀ: ପୂ ୬ଷ୍ଠ ଶତାବ୍ଦୀ) ଏବଂ ତତ୍‌ପରବର୍ତ୍ତୀ ଅଶୋକଙ୍କ ସମୟରେ (ଖ୍ରୀ: ପୂ: ୩ୟ ଶତାବ୍ଦୀ) ମଧ୍ୟ ଯକ୍ଷପୂଜା ପ୍ରଚଳିତ ଥିବାର ସୂଚନା ଏହି ମତକୁ ସମର୍ଥିତ କରିଥାଏ । ଏଭଳି ପୂଜା ପାଉଥିବା ଏକ ଯକ୍ଷୀ-ମୂର୍ତ୍ତି (ଖ୍ରୀ: ପୂ: ୪ର୍ଥ-୩ୟ ଶତାବ୍ଦୀ) ଆମେ ପାଟଣା ମ୍ୟୁଜିଅମ୍‌ରେ ସଂରକ୍ଷିତ ଥିବାର

ଦେଖିବାକୁ ପାଇଥାଉଁ । ଓଡ଼ିଶାର ଭୁବନେଶ୍ୱରସ୍ଥ ମ୍ୟୁଜିଅମ୍‌ରେ ମଧ୍ୟ ଏଭଳି ଯକ୍ଷ-ମୂର୍ତ୍ତି ସଂରକ୍ଷିତ ହୋଇଅଛି ।

**ନାଗ :**

ଯକ୍ଷମାନଙ୍କର ସମକାଳୀନ ଆଉ ଏକ ଆର୍ଯ୍ୟେତର ଗୋଷ୍ଠୀ ଥିଲେ । ସେମାନଙ୍କୁ କୁହାଯାଉଥିଲା ନାଗ । ସେମାନେ ଥିଲେ ସର୍ପପୂଜକ । ସେମାନେ ନିଜ ଶରୀରରେ ସର୍ପର ଲାଞ୍ଛନ ଅଙ୍କିତ କରୁଥିଲେ । ସେମାନଙ୍କ ପତାକାରେ ମଧ୍ୟ ଏହି ଲାଞ୍ଛନ ବ୍ୟବହୃତ ହେଉଥିଲା । ତେଣୁ ସେମାନଙ୍କୁ କୁହାଯାଉଥିଲା ନାଗ । ସେମାନେ ପ୍ରକୃତରେ ସର୍ପ ନଥିଲେ । ଅର୍ଜ୍ଜୁନ ନାଗକନ୍ୟା ଉଲୁପୀଙ୍କୁ ବିବାହ କରିଥିବା କଥା ଆମେ ମହାଭାରତରେ ଦେଖିବାକୁ ପାଇଥାଉଁ । ମନୁଷ୍ୟ ପକ୍ଷରେ କ'ଣ କେବେ ହେଲେ ସର୍ପକୁ ବିବାହ କରିବା ସମ୍ଭବପର ? ନାଗକନ୍ୟାମାନେ ଦେଖିବାକୁ ଥିଲେ ଖୁବ୍ ସୁନ୍ଦରୀ । ରାମାୟଣର ବର୍ଣ୍ଣନା ଅନୁସାରେ (୫ । ୧୨ । ୨୧) ହନୁମାନ୍ ଲଙ୍କାକୁ ଯିବା ବାଟରେ ଯେଉଁ ନାଗକନ୍ୟାମାନଙ୍କୁ ଦେଖିଥିଲେ ସେମାନେ ଥିଲେ 'ବରାରୋହାଃ ପୂର୍ଣ୍ଣଚନ୍ଦ୍ରନିଭାନନାଃ' । ଅର୍ଥାତ୍ ସେମାନେ ଥିଲେ ଖୁବ୍ ସୁନ୍ଦରୀ ଏବଂ ସେମାନଙ୍କ ମୁଖଶ୍ରୀମାନ ପୂର୍ଣ୍ଣିମାର ଚନ୍ଦ୍ର ଭଳି ଝଟକି ଉଠୁଥିଲା ।

ହନୁମାନ୍ ସମୁଦ୍ର ମଧ୍ୟଦେଇ ଲଙ୍କାକୁ ଯାଉଥିବା ଅବସରରେ ନାଗମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖିଥିଲେ । ସେ ଆଉ ମଧ୍ୟ ନାଗମାନଙ୍କର ମାତା ସୁରସାଙ୍କୁ ଦେଖିଥିବା କଥା ରାମାୟଣରେ (୫ । ୧ । ୧୩୭) ବର୍ଣ୍ଣିତ । ସୁରସାଙ୍କୁ ସବୁ ନାଗଙ୍କ ଜନନୀ (ସୁରସାଂ ନାଗମାତରଂ) ବୋଲି କୁହାଯାଇଛି । ସବୁ ନାଗଙ୍କର ଜଣେ ମାଆ ଥିବାର କଥା ହନୁମାନ୍ ଦେଖିଥିବା ସମ୍ଭବପର ନୁହେଁ । ହୁଏତ ସୁରସା ଏଠାରେ ଜଣେ କିମ୍ବଦନ୍ତୀ-ନାରୀ ଭାବରେ ଚିତ୍ରିତା ହୋଇଛନ୍ତି । ଅଥବା ନାଗମାନେ ହୁଏତ ଥିଲେ ମାତୃପ୍ରଧାନ ଗୋଷ୍ଠୀର ଅନ୍ତର୍ଭୁକ୍ତ ଏବଂ ସୁରସା ଥିଲେ ସେହି ଗୋଷ୍ଠୀର ନେତ୍ରୀସଦୃଶା । ସେ ଯାହା ହେଉ, ନାଗମାନଙ୍କୁ ବିଶେଷ ଭାବରେ ସମୁଦ୍ରପଥରେ ଦେଖିବାକୁ ମିଳୁଥିଲା । ତାହାର କାରଣ ହେଉଛି, ସେମାନେ ଥିଲେ ଏକ ସାମୁଦ୍ରିକ ଜାତି । ବେପାର-ବଣିଜ କରି ସେମାନେ ବହୁ ଧନ-ରତ୍ନ ଅର୍ଜନ କରୁଥିଲେ । ବୌଦ୍ଧଜାତକ ଗଳ୍ପମାନଙ୍କରେ ତଥା ପୌରାଣିକ ଗଳ୍ପମାନଙ୍କରେ ଆମେ ଯେଉଁଠି ନାଗମାନଙ୍କ ବିଷୟରେ ବର୍ଣ୍ଣନା ଦେଖୁଁ, ସେଠି ସେମାନଙ୍କୁ ଧନାଢ୍ୟ ବ୍ୟକ୍ତି ଭାବରେ ଚିତ୍ରିତ ହୋଇଥିବାର ଜାଣିପାରୁଥାଉଁ । ନାଗପୁରୀରେ ସବୁ ପ୍ରକାର ଧନରତ୍ନ ଭରପୂର ଥାଏ ବୋଲି ଏକ ପାରମ୍ପରିକ ଧାରଣା

ଭାରତୀୟମାନଙ୍କ ମଧ୍ୟରେ ରହିଆସିଛି । ନାଗମାନେ ମୁଖ୍ୟତଃ ଏକ ସାମୁଦ୍ରିକ ଜାତି ଥିବାରୁ ସାମୁଦ୍ରିକ ଦ୍ୱୀପମାନଙ୍କରେ ଉପନିବେଶ ସ୍ଥାପନ କରି ରହୁଥିଲେ ।

ନାଗମାନଙ୍କର ବସତି କେବଳ ଲଙ୍କା କିମ୍ବା ତାହାର ଆଖପାଖ ଅଞ୍ଚଳରେ ସୀମାବଦ୍ଧ ନଥିଲା । ଏହା ଭାରତର ମାଲବାର ଅଞ୍ଚଳ ପର୍ଯ୍ୟନ୍ତ ମଧ୍ୟ ବ୍ୟାପି-ଥିଲା । ବ୍ୟାସ ଏହି ମତର ପୁଷ୍ଟି ସାଧନ କରିଥାନ୍ତି । ତାଙ୍କ ଭାଷାରେ :

"ନାଗୋଂ ନେ ଲଙ୍କା କେ କୁଛ ଭାଗୋଂ ପର ହି ନହିଁ, ବରଂ ପ୍ରାଚୀନ ମଲବାର ପ୍ରଦେଶ ପର ଭି ଅଧିକାର ଜମା ରଖା ଥା ।"(୧୩)

'ନାଗପୁର' ଓ 'ଛୋଟନାଗପୁର' ନାମର ନାଗମାନଙ୍କ ସହିତ ସମ୍ପୃକ୍ତ ଅଛି । ଏଣୁ ମନେହୁଏ, ନାଗମାନେ ମାଲବାରର ଆହୁରି ଉତ୍ତର ଦିଗକୁ ମଧ୍ୟ ଅଗ୍ରସର ହୋଇଥିଲେ । ଆର୍ଯ୍ୟ ସଂସ୍କୃତିର ପ୍ରବଳ ପ୍ରବାହକୁ ପ୍ରତିରୋଧ କରିବା ସେମାନଙ୍କ ପକ୍ଷରେ ଥିଲା ଦୁରୂହ ବ୍ୟାପାର । ତେଣୁ ସେମାନେ ଆଉ ବେଶି ଉତ୍ତରକୁ ଅଗ୍ରସର ହୋଇପାରିନଥିଲେ । କିନ୍ତୁ ଆର୍ଯ୍ୟମାନଙ୍କ ସହିତ ସେମାନଙ୍କ ସାଂସ୍କୃତିକ ଭାବର ଆଦାନ-ପ୍ରଦାନ ଅବ୍ୟାହତ ଭାବରେ ଚାଲିଥିଲା । ଏହା ଫଳରେ ଆର୍ଯ୍ୟମାନଙ୍କ ମଧ୍ୟରେ ନାଗପୂଜା ପ୍ରବେଶ କରିଥିଲା ଏବଂ କେତେକ ପ୍ରମୁଖ ନାଗ ମଧ୍ୟ ସେମାନଙ୍କ ଦେବମଣ୍ଡଳରେ ପ୍ରବେଶ କରିଥିଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଏତେ ବଡ଼ ଧନୀ ସାମୁଦ୍ରିକ ଜାତି ଗଲେ କୁଆଡ଼େ ? ସେମାନଙ୍କର କୌଣସି ଚିହ୍ନ-ବର୍ଣ୍ଣ ରହିଲା ନାହିଁ କାହିଁକି ? ଡ: ଆର: ରାମଚନ୍ଦ୍ର ଦୀକ୍ଷିତାରଙ୍କ ଭଳି ପ୍ରାଚ୍ୟତତ୍ତ୍ୱବିତ୍ ମତ ଦେଇ କୁହନ୍ତି ଯେ ନାଗମାନେ କାଳକ୍ରମେ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ଅତି ପ୍ରଭୁତ୍ୱସମ୍ପନ୍ନ ଥିବା ଚେରମାନଙ୍କ ସାଥିରେ ନିଜକୁ ସାମିଲ କରି ଦେଇଥିଲେ ଏବଂ ତାହା ପରେ ସେମାନଙ୍କ ଅସ୍ତିତ୍ୱ ଲୋପ ପାଇଯାଇଥିଲା । (୧୪)

ରାବଣ ତା'ର ରାଜନୈତିକ ଉଚ୍ଚାଭିଳାଷକୁ ପରିପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ବହୁ ଦେଶ ଉପରେ ଆକ୍ରମଣ କରି ବିଜୟ ହାସଲ କରିଥିଲା ଏବଂ ଅପର୍ଯ୍ୟାପ୍ତ ଧନ-ରତ୍ନ ଲୁଣ୍ଠନ କରିଥିଲା ତଥା ବହୁ ରାଜକନ୍ୟାଙ୍କୁ ଅପହରଣ କରିଥିଲା । ନାଗରାଜାମାନେ ଓ ନାଗକନ୍ୟାମାନେ ମଧ୍ୟ ତା'ର ଏହି ଅତ୍ୟାଚାରରୁ ମୁକ୍ତ ହୋଇନଥିଲେ । ରାମାୟଣରେ ଠାଏ (୫ । ୧୨ । ୨୨) କୁହାଯାଇଛି ଯେ :

"ପ୍ରମଥ୍ୟ ରାକ୍ଷସେନ୍ଦ୍ରେଣ ନାଗକନ୍ୟାଃ ବଳାଦ୍ଧୃତାଃ ।"

ଅର୍ଥାତ୍ ରାକ୍ଷସମାନଙ୍କର ରାଜା ନାଗକନ୍ୟାମାନଙ୍କୁ ବଳପୂର୍ବକ ଅପହରଣ କରି-ଆଣିଲା । ସେ ନାଗମାନଙ୍କ ରାଜଧାନୀ ଭୋଗପୁରୀ ଉପରେ ଆକ୍ରମଣ କରି

ବାସୁକି, ତକ୍ଷକ, ଶଙ୍ଖ ଓ ଜଟୀ ଆଦି ବଶିଷ୍ଟ ନାଗମାନଙ୍କୁ ପରାସ୍ତ କରିଥିବା କଥା ମଧ୍ୟ ରାମାୟଣରେ ଉଲ୍ଲିଖିତ । (୧୬) ଭୋଗପୁରୀ ନଗରୀର ଅବସ୍ଥିତି କେଉଁଠି ଥିଲା ସେ ବିଷୟରେ ରାମାୟଣରେ କୁତ୍ରାପି ଉଲ୍ଲେଖ ନାହିଁ । ତେବେ ଏହାର ଅବସ୍ଥିତି ଗୋଦାବରୀ ନଦୀର ଆଖପାଖରେ କେଉଁଠି ହୋଇଥାଇପାରେ ବୋଲି ଆମେ ଅନ୍ୟ ସୂତ୍ରରୁ ସୂଚନା ପାଇଥାଉଁ । ବାହାରୁତ୍ ଶିଳାଲେଖରେ ଖ୍ରୀ: ପୂ: ୨ୟ ଶତାବ୍ଦୀ 'ଭୋଗବଦ୍ଧନ' ନାମର ଉଲ୍ଲେଖ ଅଛି (Barua and Sihna, Babrut Inscriptions, p. 15) । ପାଲି 'ଭୋଗବଦ୍ଧନ' ସଂସ୍କୃତ 'ଭୋଗବର୍ଦ୍ଧନ'ର ପ୍ରତିରୂପ । ଏହି ଭୋଗବର୍ଦ୍ଧନ ଗୋଦାବରୀ ନଦୀର ଆଖପାଖରେ କୌଣସି ସ୍ଥାନରେ ଥାଇପାରେ ବୋଲି ବିମଳ ଚରଣ ଲ ମତ ଦିଅନ୍ତି । (୧୬-କ) ସମ୍ଭବତଃ 'ଭୋଗପୁରୀ' ଓ 'ଭୋଗବର୍ଦ୍ଧନ' ହେଉଛି ଏକା ସ୍ଥାନ । ଅତଏବ ନାଗମାନଙ୍କ ରାଜଧାନୀ ଭୋଗପୁରୀ ଗୋଦାବରୀ ନଦୀତୀରସ୍ଥ କୌଣସି ସ୍ଥାନରେ ଥିବା ସମ୍ଭବ । ସେମାନେ ମୁଖ୍ୟତଃ ଏକ ସାମୁଦ୍ରିକ ଜାତି ହୋଇଥିବାରୁ ରାଜଧାନୀରୁ ସମୁଦ୍ରପଥରେ ଯାତ୍ରା କରିବାର ସୁବିଧା ଦୃଷ୍ଟିରୁ ଏହାକୁ ଗୋଦାବରୀର ତୀରଦେଶରେ ସ୍ଥାପିତ କରିଥିବାର ଖୁବ୍ ସମ୍ଭାବନା ଅଛି ।

**ଅସୁର :**

ପୁରାଣମାନଙ୍କରେ ଅସୁରଗୋଷ୍ଠୀର ଯେଉଁଭଳି ବର୍ଣ୍ଣନା ଦିଆଯାଇଛି, ତହିଁରୁ ସେମାନଙ୍କ ସମ୍ପର୍କରେ ଏକ ଭ୍ରମ ଧାରଣା ଉପୁଜିଥାଏ । ତହିଁରେ ସେମାନଙ୍କୁ ରାକ୍ଷସମାନଙ୍କ ସହିତ ସମତୁଲ କରିଦିଆଯାଇଛି ଯହିଁରୁ ଏହି ଧାରଣା ଉପୁଜୁଛି ଯେ ସେମାନେ ହେଉଛନ୍ତି ମୂଳତଃ ଏକ ଆର୍ଯ୍ୟେତର ଗୋଷ୍ଠୀ । କିନ୍ତୁ ବାସ୍ତବରେ ସେମାନେ ହେଉଛନ୍ତି ଏକ ଭିନ୍ନ ମତବାଦୀ ଆର୍ଯ୍ୟ । ତେଣୁ ମୂଳତଃ ସେମାନେ ହେଉଛନ୍ତି ଆର୍ଯ୍ୟ ଏବଂ କେତେକ କର୍ମ ତଥା ଚାଲି-ଚଳଣରେ ଆର୍ଯ୍ୟେତର । ରାମାୟଣରେ ସେମାନଙ୍କୁ ରାକ୍ଷସମାନଙ୍କ ସହିତ ଆଦୌ ସମତୁଲ କରି ରଖାଯାଇ ନାହିଁ ଏବଂ ଏକ ଭିନ୍ନ ଗୋଷ୍ଠୀ ବୋଲି ଚିହ୍ନିତ କରା-ଯାଇଛି । ରାମାୟଣରେ ଦେବତା ଓ ଅସୁରଙ୍କ ଜନ୍ମ ପ୍ରସଙ୍ଗରେ କୁହାଯାଇଛି ଯେ ଉଭୟ କଶ୍ୟପଙ୍କ ଔରସରୁ ଜାତ । ଦେବତାମାନଙ୍କ ଜନନୀ ହେଲେ ଅଦିତି ଏବଂ ଅସୁରମାନଙ୍କ ଜନନୀ ହେଲେ ଦିତି । ତେଣୁ ଦେବତା ଓ ଅସୁର ହେଉଛନ୍ତି ପରସ୍ପରଙ୍କ ସାବତ ଭାଇ । ସେହି ଅର୍ଥରେ ଅସୁରମାନଙ୍କୁ ଆର୍ଯ୍ୟ ବୋଲି କହିବାର ଯଥାର୍ଥତା ଅଛି । ବ୍ୟାସ ମଧ୍ୟ ଏହି ମତର ପୁଷ୍ଟିସାଧନ କରି କହନ୍ତି ଯେ :

> "ଦେବୋଂ କେ ସୌତେଲେ ଭାଇ ହୋନେ କେ କାରଣ ଅସୁରୋଂ ଭୀ ଆର୍ଯ୍ୟଶ୍ରେଣୀ ମେଂ ଗିନା ଜା ସକତା ହୈ ।" (୧୬)

ଏହି ଦୃଷ୍ଟିରୁ ଆର୍ଯ୍ୟ, ଦେବ ଓ ଅସୁରଙ୍କ ସ୍ଥିତି ବିଷୟରେ ବିଚାର କରିବା ସମୀଚୀନ ହେବ ।

ଅସୁରମାନଙ୍କ ସଂସ୍କୃତିର ଇତିହାସ ଅତି ପ୍ରାଚୀନ । ଏହା ସୁଦୂର ବୈଦିକ କାଳ ପର୍ଯ୍ୟନ୍ତ ଲମ୍ବି ଯାଇଛି । ଋଗ୍‌ବେଦରେ (୫।୩୨।୮) ଅସୁରମାନଙ୍କୁ କୁହାଯାଇଛି 'ସୁବର୍ଣ୍ଣହସ୍ତାଃ' । ହସ୍ତର ଦୁଇଟି ଅର୍ଥ । ଗୋଟିଏ ହେଲା ହାତ ଏବଂ ଅପରଟି ହେଲା ମୁହଁ । ଅତଏବ, ଋଗ୍‌ବେଦୀୟ ଅସୁରମାନଙ୍କର ମୁହଁ ବା ହାତ ଥିଲା ସୁନା ରଙ୍ଗର । ଅର୍ଥାତ୍ ସେମାନେ ଥିଲେ ଆର୍ଯ୍ୟମାନଙ୍କ ଭଳି ଗୌରାଙ୍ଗ । ପୁନଶ୍ଚ ଦେବତାମାନଙ୍କଠାରେ ମହାନ୍ ଅସୁରତ୍ୱ ଅଛି ବୋଲି (ମହ ଦେବାନାଂ ଅସୁରତ୍ୱମେକମ୍) ବୋଲି ତହିଁରେ ଆଉ ଠାଏ କୁହାଯାଇଛି ଏବଂ ବରୁଣ, ଅଗ୍ନି, ସବିତା ଆଦିଙ୍କୁ ସ୍ପଷ୍ଟ ଭାବରେ ଅସୁର ବୋଲି ଆବାହନ କରାଯାଇଛି । ଇନ୍ଦ୍ରଙ୍କୁ 'ଅସୁର ମଘବା' ବୋଲି କୁହାଯାଇଛି । ଅସୁରମାନେ ଯେ ଋଗ୍‌ବେଦୀୟ ଆର୍ଯ୍ୟମାନଙ୍କର ଏକ ଭିନ୍ନମତବାଦୀ ଆର୍ଯ୍ୟ ଥିଲେ ତଦ୍‌ବିଷୟରେ ଲେଖକ ବିଶଦ ଭାବରେ ଅନ୍ୟତ୍ର ଆଲୋଚନା କରିଛନ୍ତି । ୧୭) ରାମାୟଣ-କାଳରେ ସ୍ଥିତି ମଧ୍ୟ ଠିକ୍ ଅନୁରୂପ ଥିଲା । ଅସୁରମାନେ ସେତେବେଳେ ଏକ ଭିନ୍ନମତବାଦୀ ଆର୍ଯ୍ୟଗୋଷ୍ଠୀର ଅନ୍ତର୍ଭୁକ୍ତ ବୋଲି ଗଣ୍ୟ ହେଉଥିଲେ ।

ଅସୁରମାନେ ସେତେବେଳକୁ ଉତ୍ତର-ଭାରତ ଛାଡ଼ିଦେଇଥିଲେ ଏବଂ ଦକ୍ଷିଣ-ଭାରତରେ ଆସି ରହୁଥିଲେ । ସେମାନେ ଆର୍ଯ୍ୟମାନଙ୍କଠାରୁ ଦୂରରେ ଏବଂ ଅପେକ୍ଷାକୃତ ସୁରକ୍ଷିତ ସ୍ଥାନରେ ରହିବା ଫଳରେ କିଛି କାଳ ଶାନ୍ତିରେ କାଳ କଟାଉଥିଲେ । କିନ୍ତୁ ଆର୍ଯ୍ୟ-ସଂସ୍କୃତିର ବିସ୍ତାର ଅବସରରେ ଆର୍ଯ୍ୟ ମୁନି-ଋଷିମାନେ ଯେତେବେଳେ ଦକ୍ଷିଣ-ଭାରତକୁ ଗଲେ, ସେତେବେଳେ ଅସୁରମାନେ ସେମାନଙ୍କୁ ମୁକାବିଲା କରିବାକୁ ବାଧ୍ୟ ହୋଇଥିଲେ । ବାତାପି ଓ ଇଲ୍ୱଲ ନାମକ ଦୁଇ ଭାଇ ଥିଲେ ସେମାନଙ୍କ ନେତା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୩।୧୧।୫୫-୬୬, ସେ ଦୁହେଁ ଅଗସ୍ତ୍ୟଙ୍କ ହାତରେ ଯମପୁରକୁ ଗଲେ । ଦଣ୍ଡକାରଣ୍ୟରେ ଥିବା ଅସୁରମାନେ ତତ୍ସତ୍ତ୍ୱ ଅନ୍ୟାନ୍ୟ ଋଷିମାନଙ୍କୁ ଖୁବ୍ ପୀଡ଼ା ଦେଉଥିଲେ । ତେଣୁ ସେହି ଋଷିମାନେ ସେମାନଙ୍କୁ ମାରିଦେବା ଲାଗି ରାମଙ୍କୁ ଅନୁରୋଧ କରିଥିଲେ ଏବଂ ରାମ ସେହି ଅନୁରୋଧକୁ ରକ୍ଷା କରିଥିଲେ । ପୂର୍ବରୁ ଅଯୋଧ୍ୟାର ରାଜା ଦଶରଥ ମଧ୍ୟ ଅସୁରମାନଙ୍କୁ ବିନାଶ କରିବା ପାଇଁ

ସେମାନଙ୍କ ବିରୁଦ୍ଧରେ ଅଭିଯାନ କରିଥିଲେ ଏବଂ ସେହି ଯୁଦ୍ଧରେ ସେ ଗୁରୁତର ଭାବରେ ଆହତ ହୋଇ କୈକେୟୀଙ୍କଠାରୁ ସେବାପ୍ରାପ୍ତ ହୋଇଥିଲେ । ସେହି ସେବାରେ ସନ୍ତୁଷ୍ଟ ହୋଇ ସେ କୈକେୟୀଙ୍କୁ ଦୁଇଟି ବର ଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିବା କଥା ମଧ୍ୟ ରାମାୟଣରେ (୨।୯।୧୧-୧୬) ବର୍ଣ୍ଣିତ ।

**ରାକ୍ଷସ :**

ରାକ୍ଷସମାନେ ହେଉଛନ୍ତି ଏକ ପ୍ରମୁଖ ଆର୍ଯ୍ୟେତରଗୋଷ୍ଠୀର ଅନ୍ତର୍ଭୁକ୍ତ, ଯେଉଁମାନେ କି ରାମାୟଣୀୟ ବର୍ଣ୍ଣନାରେ ବିଶେଷ ସ୍ଥାନ ଅଧିକାର କରିଛନ୍ତି । ଆର୍ଯ୍ୟ-ଅନାର୍ଯ୍ୟ ସଂଘର୍ଷରେ ଆର୍ଯ୍ୟବିରୋଧୀ ଯେଉଁମାନେ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ ସେମାନେ ହେଉଛନ୍ତି ରାକ୍ଷସ । ସେମାନଙ୍କର ଏକ ସ୍ୱତନ୍ତ୍ର ସଭ୍ୟତା ଓ ସଂସ୍କୃତି ଥିଲା ; ସ୍ୱତନ୍ତ୍ର ରାଜ୍ୟ ମଧ୍ୟ ଥିଲା । ସେମାନଙ୍କର ମଧ୍ୟ ରାଜନୈତିକ ମହତ୍ତ୍ୱାକାଙ୍କ୍ଷା ଥିଲା । ଏହି ମହତ୍ତ୍ୱାକାଙ୍କ୍ଷାର ପରିପୂର୍ତ୍ତି ଅବସରରେ ସେମାନଙ୍କୁ ବିବିଧ ଗୋଷ୍ଠୀର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ସେମାନେ ଏକ ସଭ୍ୟ ଜାତି ଥିଲେ । ନାନା ପ୍ରକାର ନୃଶଂସ କାର୍ଯ୍ୟକଳାପ ସତ୍ତ୍ୱେ ସେମାନେ ଅସଭ୍ୟ ତଥା ଅନୁନ୍ନତ ନଥିଲେ । ଶର୍ମାଙ୍କ ଭାଷାରେ :

> The Raksnasas were an advanced non-Aryan people. Politically they were a strong power portending a great threat to the security and well-being of the Aryans, who looked upon them as their worst enemies primarily because the Rakshasas' outlook on life was radically opposed to theirs." (୧୬-କ)

ରାମାୟଣରେ (୪।୪୧।୧୨) ଅବଶ୍ୟ ଆନ୍ଧ୍ର, ପୁଣ୍ଡ୍ର, ଚୋଳ, ପାଣ୍ଡ୍ୟ ଓ କେରଳ ଆଦି ରାଜ୍ୟଗୁଡ଼ିକର ଉଲ୍ଲେଖ ଅଛି । ସେଠାକାର ଅଧିବାସୀମାନେ ଦକ୍ଷିଣ-ଭାରତର ହୋଇଥିବାରୁ ମୁଖ୍ୟତଃ ଆର୍ଯ୍ୟେତର ହୋଇଥିବେ । କିନ୍ତୁ ସେମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ରାମାୟଣ ନୀରବ । ଏହାର କାରଣ ହେଉଛି, ସେମାନେ ରାମଙ୍କ ଲଙ୍କାଭିଯାନ ପଥରେ ରହିନଥିଲେ ଏବଂ ସେଥିପାଇଁ ସେମାନେ ରାମଙ୍କ ସଂସ୍ପର୍ଶରେ ଆସିନଥିଲେ । ବାଲ୍ମୀକି ତେଣୁ ସେମାନଙ୍କୁ ସ୍ୱୀୟ କାବ୍ୟିକ ବର୍ଣ୍ଣନାରୁ ବାଦ ଦେଇଛନ୍ତି । ଚିନ୍ତାମଣି ବିନାୟକ ବୈଦ୍ୟ ମଧ୍ୟ ଏହି ମତର ପରିପୋଷଣ କରିଥାନ୍ତି । (୧୮) ରାକ୍ଷସମାନଙ୍କର ରାଜା ଥିଲା ଲଙ୍କାର ରାଜା ରାବଣ । ସେ ଥିଲା ପ୍ରବଳ ଭାବରେ ଆର୍ଯ୍ୟବିରୋଧୀ ।

ସେ ଖାଲି ତ ଆର୍ଯ୍ୟସଂସ୍କୃତିର ବିସ୍ତାରରେ ପ୍ରତିବନ୍ଧକ ସୃଷ୍ଟି କରୁନଥିଲା; ସେ ମଧ୍ୟ ଏହାକୁ ଧୀରେ ଧୀରେ କବଳିତ କରିବାର ଉଦ୍ୟମ କରୁଥିଲା । ଦକ୍ଷିଣ-ଭାରତର ଜନସ୍ଥାନ ଅଞ୍ଚଳକୁ ନିଜ ଅଧିକାରରେ ରଖି ତା'ର ରାଜନୈତିକ ଉଚ୍ଚାଭିଳାଷର ପରିପୂର୍ତ୍ତି ଲାଗି ସେ ଉତ୍ତର-ଭାରତ ପ୍ରତି ଶ୍ୟେନ-ଦୃଷ୍ଟି ରଖିଥିଲା । ସେଥିପାଇଁ ସେ ବାନରରାଜ ବାଲୀଙ୍କ ସହିତ ମିତ୍ରତା-ସ୍ଥାପନ କରିସାରିଥିଲା । ଆର୍ଯ୍ୟାବର୍ତ୍ତର ନୃପତିମାନେ, ଯଥା, ଦୁଷ୍ୟନ୍ତ, ସୁରଥ, ଗାଧି, ଗୟ ଓ ପୁରୁରବା ଆଦି ତା' ଆଗରେ ନତମସ୍ତକ ହୋଇଥିଲେ । ସେ ମଧ୍ୟ ଦୁଇ ଦୁଇ ଥର ଅଯୋଧ୍ୟା ଉପରେ ଆକ୍ରମଣ କରିଥିଲା । ପ୍ରଥମ ଆକ୍ରମଣ ଘଟିଥିଲା ଅନରଣ୍ୟଙ୍କ ଶାସନକାଳରେ ଏବଂ ଦ୍ୱିତୀୟ ଆକ୍ରମଣ ଘଟିଥିଲା ମାନ୍ଧାତାଙ୍କ ଶାସନ କାଳରେ । ଶେଷରେ ଅଯୋଧ୍ୟାରାଜ ମାନ୍ଧାତାଙ୍କୁ ତା' ସହିତ ସନ୍ଧି କରିବାକୁ ପଡ଼ିଥିଲା । ରାମାୟଣରେ ୦।ଏ (୧।୨୦।୨୦) ସ୍ୱୟଂ ଦଶରଥ ମଧ୍ୟ ସ୍ୱୀକାର କରିଛନ୍ତି ଯେ ସେ ଯୁଦ୍ଧରେ ଦୁଷ୍ଟ ରାବଣର ସମ୍ମୁଖୀନ ହେବାକୁ ଅସମର୍ଥ (ନ ହି ଶକ୍ତୋଽସ୍ମି ସଂଗ୍ରାମେ ସ୍ଥାତୁଂ ତସ୍ୟ ଦୁରାତ୍ମନଃ) । ସେ ଥିଲା ଆର୍ଯ୍ୟ-ସଂସ୍କୃତି ପାଇଁ ଏକ ମହା ବିପଦ । ତେଣୁ ଆର୍ଯ୍ୟ-ସଂସ୍କୃତିର ସଂରକ୍ଷଣ ଓ ବିସ୍ତାର ଲାଗି ତା'ର ମୃତ୍ୟୁ ଥିଲା ଅନିବାର୍ଯ୍ୟ । ସେହି କାରଣରୁ ତା'ର ମୃତ୍ୟୁ ହିଁ ହୋଇଛି ରାମାୟଣ କାବ୍ୟଟିର କେନ୍ଦ୍ରବିନ୍ଦୁ । ସେଥିରେ ବର୍ଣ୍ଣିତ ସକଳ କର୍ମ ସେହି କେନ୍ଦ୍ରବିନ୍ଦୁ ଆଡ଼କୁ ହିଁ ଆଗେଇ ଆସିଛି । ଏହାର କର୍ତ୍ତା ରାମ ହୋଇଛନ୍ତି କାବ୍ୟଟିର ସର୍ବପ୍ରଧାନ ନାୟକ ।

ରାମାୟଣରେ ରାକ୍ଷସମାନଙ୍କର ଯେପରି ବର୍ଣ୍ଣନା ଅଛି, ତହିଁରୁ ସାଧାରଣ ଭାବରେ ଧାରଣା ଆସିଯାଏ ଯେ ସେମାନେ ମନୁଷ୍ୟ ନଥିଲେ; ସେମାନେ ଆଉ କିଛି ଥିଲେ । କୁମ୍ଭକର୍ଣ୍ଣର ଆକାର, ଭୋଜନ, ପାନ ଆଦିର ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହା କେଉଁ ମନୁଷ୍ୟ ପକ୍ଷରେ ବା ସମ୍ଭବ ? ପୁଣି ରାବଣର ଦଶ ଦଶଟା ମୁଣ୍ଡ ଏବଂ କୋଡ଼ିଏ କୋଡ଼ିଏଟା ହାତର ଯେଉଁ ଉଲ୍ଲେଖ ଅଛି, ତାହା ବା କେଉଁ ମନୁଷ୍ୟ ପକ୍ଷରେ ସମ୍ଭବ ? ରାବଣର ଦଶଟା ମୁଣ୍ଡ ଓ କୋଡ଼ିଏଟା ହାତ ଥିବା ବିଷୟରେ ଆମର ଯେଉଁ ସାଧାରଣ ଧାରଣା ଅଛି, ତାହା ଯେ ଭ୍ରମାତ୍ମକ ସେ କଥା ପରେ ଆଲୋଚିତ ହେବ । ବର୍ତ୍ତମାନ ଏତିକି କହିଲେ ଯଥେଷ୍ଟ ହେବ ଯେ ରାକ୍ଷସମାନେ ଥିଲେ ମନୁଷ୍ୟ । ସେମାନଙ୍କ ଦେହର ରଙ୍ଗ ଥିଲା ନିପଟ କଳା ଏବଂ ସେମାନେ ଖୁବ୍ ବଳଶାଳୀ ଥିଲେ । ସେମାନେ ସ୍ୱଭାବତଃ ଥିଲେ ଖୁବ୍ ନିଷ୍ଠୁର । ସେମାନଙ୍କ ଆକୃତି ସାଧାରଣ ଆର୍ଯ୍ୟମାନଙ୍କ ଆକୃତି ଦୃଷ୍ଟିରୁ ବିଚାର କଲେ ଥିଲା ଅତି ଭୟାନକ । ତେଣୁ ରାମାୟଣରେ ସେମାନଙ୍କୁ ଏକ କୁତ୍ସିତ ଓ ଭୟାନକ ରୂପଧାରୀ ଗୋଷ୍ଠୀର

ଅନ୍ତର୍ଭୁକ୍ତ ବୋଲି ଚର୍ଚ୍ଚିତ କରାଯାଇଛି । ନବୀନ ଚନ୍ଦ୍ର ଦାସ ମଧ୍ୟ ସହମତ ପ୍ରକାଶ କରି କହନ୍ତି ଯେ ରାମାୟଣ କାଳରେ ଭାରତର ଦକ୍ଷିଣରେ ଅବସ୍ଥିତ ଲଙ୍କାରେ ଏକ କୃଷ୍ଣକାୟ ଜାତି ବାସ କରୁଥିଲେ । ସେମାନେ ଥିଲେ ଆର୍ଯ୍ୟ-ବିରୋଧୀ । ସେମାନେ ଆର୍ଯ୍ୟମାନଙ୍କର ଧାର୍ମିକ କ୍ରିୟାକଳାପରେ ନାନା ପ୍ରକାର ବାଧା-ବିଘ୍ନ ଉପୁଜାଉଥିଲେ । ଏହି ଜାତିର କିଛି ଅବଶେଷ ଏବେ ମଧ୍ୟ ଜାଭାରେ ଦେଖିବାକୁ ମିଳିଥାଏ । (୧୯) ରାକ୍ଷସ ଓ ଆର୍ଯ୍ୟମାନଙ୍କ ମଧ୍ୟରେ ଥିବା ଏହି ଆକୃତିଗତ ତଥା ସଂସ୍କୃତିଗତ ବୈଭିନ୍ନ୍ୟ ପ୍ରତି ଲକ୍ଷ୍ୟ କରି ଶର୍ମା ମଧ୍ୟ ଯଥାର୍ଥରେ କହନ୍ତି :

> To the Aryans the Rakshasas were aliens both ethnically and culturally. As opposed to the fair Aryans the Rakshasas were dark-complexioned and even the general constitution of their body was different from that of the Aryans. (୨୦)

ଅତଏବ, ରାକ୍ଷସମାନେ ଯେ ଥିଲେ ଏକ କୃଷ୍ଣକାୟ ଆର୍ଯ୍ୟେତର ଗୋଷ୍ଠୀର ମନୁଷ୍ୟ ଏ କଥାକୁ ନିର୍ବିବାଦ ସତ୍ୟ ଭାବରେ ଆମକୁ ଗ୍ରହଣ କରିବାକୁ ହେବ । ସେମାନଙ୍କ ଅତିମାନବିକ ଆକୃତି ଓ ଶକ୍ତି ବିଷୟରେ ରାମାୟଣରେ ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହା ଅନେକାଂଶରେ କବିଙ୍କ କଳ୍ପନାପ୍ରସୂତ । ବାସ୍ତବିକ ଏଭଳି ଅତିରଞ୍ଜନ ବିଶ୍ୱର ସବୁ ମହାକାବ୍ୟରେ ପ୍ରାୟ ଦେଖା ଯାଇଥାଏ ।

ପୂର୍ବରୁ କୁହାଯାଇଛି ଯେ ରାବଣ ଥିଲା ରାକ୍ଷସମାନଙ୍କ ରାଜା । ତା'ର ବଂଶ ପରିଚୟ ସଂପର୍କରେ କିଛିଟା ଆଲୋକପାତ କରିବା ଏବେ ଆବଶ୍ୟକ । ସେହି ଅବସରରେ ତା'ର ପୂର୍ବଜମାନଙ୍କ ବିଷୟରେ ତଥା ରାକ୍ଷସମାନଙ୍କ ଉତ୍ପତ୍ତି ବିଷୟରେ ମଧ୍ୟ ଜ୍ଞାନ ଆହରଣ କରିହେବ । ରାମାୟଣରେ (୭ । ୪) ଏହିପରି ଭାବରେ ଅଗସ୍ତ୍ୟ ମୁନିଙ୍କ କଣ୍ଠରେ ତାହା ବର୍ଣ୍ଣିତ । ବ୍ରହ୍ମା ଦୁଇ ଗୋଷ୍ଠୀଙ୍କୁ ଉତ୍ପତ୍ତି କଲେ, ଯଥା, ରାକ୍ଷସ ଓ ଯକ୍ଷ । ପ୍ରଥମ ଗୋଷ୍ଠୀ ଜନ୍ମ ହେବାମାତ୍ରେ କ୍ଷୁଧାଜର୍ଜର ହୋଇଉଠିଲେ । ସେମାନେ ହେଲେ ରାକ୍ଷସ । ଦ୍ୱିତୀୟ ଗୋଷ୍ଠୀ ଥିଲେ କ୍ଷୁଧାହୀନ । ସେମାନେ ହେଲେ ଯକ୍ଷ । କାଳକ୍ରମେ ରାକ୍ଷସମାନଙ୍କର ବିଦ୍ୟୁତ୍‌କେଶ ନାମକ ଜଣେ ରାଜା ହେଲା । ସନ୍ଧ୍ୟାର କନ୍ୟା ଥିଲା ଶାଳକଟଙ୍କଟା । ତା'ର ଶାଳକଟଙ୍କଟା ସହିତ ବିବାହ ହେଲା । ଏହି ବିବାହରୁ ଜନ୍ମ ହେଲା ସୁକେଶ ନାମକ ଜଣେ ରାକ୍ଷସ । ମାତା

ଶାଳକଟଙ୍କଟା ଥିଲା କାମୋନ୍ମତ୍ତା । ସେ ଶିଶୁପୁତ୍ରର ଲାଳନ-ପାଳନର ଦାୟିତ୍ୱ ନନେଇ ତାକୁ ତ୍ୟାଗ କରି ଅନ୍ୟତ୍ର ଚାଲିଗଲା । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଶାଳକଟଙ୍କଟା ହେଉଛି ରାମାୟଣର ବର୍ଣ୍ଣନା ଅନୁସାରେ 'ସଂଧ୍ୟା-ପୁତ୍ରୀ' । 'ସଂଧ୍ୟାପୁତ୍ରୀ'ର ଅର୍ଥ ହେଲା ରାତ୍ରି । ରାକ୍ଷସମାନେ ହେଉଛନ୍ତି ରାତ୍ରିଚର । ଶାଳକଟଙ୍କଟା ସନ୍ଧ୍ୟାର ପୁତ୍ରୀ ହୋଇଥିବାରୁ ରାତ୍ରିର ସଙ୍କେତ ଦେଉଛି । ସେ ତେଣୁ ଥିଲା ଅନ୍ଧକାରମୟ ରାତ୍ରି ଭଳି ଏକ ଭୟଙ୍କରୀ ନାରୀ ଏବଂ ତା'ର ଦାୟାଦମାନେ ତେଣୁ ସେହି ସ୍ୱଭାବର ଥିଲେ । ଶିବ-ପାର୍ବତୀଙ୍କ କୃପାରେ ସୁକେଶ ବଢ଼ିଲା ଏବଂ ସେ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତି ଫଳରେ ସେ ଆକାଶଗାମୀ ବିମାନଟିଏ ପାଇଲା । ସୁକେଶର ତିନି ପୁତ୍ର ହେଲେ, ମାଲ୍ୟବାନ୍, ସୁମାଳୀ ଓ ମାଳୀ । ସେମାନେ ଥିଲେ ଖୁବ୍ ଦୁର୍ଦ୍ଧର୍ଷ ଅତ୍ୟାଚାରୀ । ସେମାନେ ସୁର ଓ ଅସୁର ସମସ୍ତଙ୍କୁ ପରାସ୍ତ କରି ଲଙ୍କାରେ ଆସି ରାଜତ୍ୱ କରିବାକୁ ଲାଗିଲେ । ଶେଷରେ ସେମାନେ ବିଷ୍ଣୁଙ୍କ ଦ୍ୱାରା ଯୁଦ୍ଧରେ ପରାସ୍ତ ହୋଇ ଲଙ୍କା ତ୍ୟାଗ କରି ଚାଲିଗଲେ । ସେମାନେ ଲଙ୍କା ଛାଡ଼ି ରସାତଳକୁ 'ଦକ୍ଷିଣ-ଆମେରିକାର ଚିଲି ଯାହା କି ଗ୍ଲୋବକୁ ଦେଖିଲେ ଭାରତର ତଳେ ଥିବାର ଜଣାଯିବ) ଚାଲିଗଲେ ଏବଂ ସେଠାରେ ଶାଳକଟଙ୍କଟା ଜାତିର ଲୋକଙ୍କ ସହିତ ବସବାସ କରିବାକୁ ଲାଗିଲେ ।

କିଛି ବର୍ଷ ଉତ୍ତାରୁ ସୁମାଳୀ ସୁଯୋଗ ଦେଖି ପୁଣି ଭାରତକୁ ଆସିଲା । ସେଠାରେ ସମୟକ୍ରମେ ତା'ର କନ୍ୟା କୈକସୀ ବିଶ୍ରବା ଋଷିଙ୍କର ପ୍ରଣୟ-ପ୍ରାର୍ଥିନୀ ହେଲା । ଏହି ପ୍ରଣୟର ଫଳଶ୍ରୁତି ସ୍ୱରୂପ ତା'ର ଚାରୋଟି ସନ୍ତାନ ଜାତ ହେଲେ । ସେମାନେ ହେଲେ ତିନି ପୁତ୍ର ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଏବଂ ଏକମାତ୍ର କନ୍ୟା ଶୂର୍ପଣଖା । ବିଭୀଷଣ ଥିଲେ ଦେବପୂଜକ, ବିଶେଷ କରି ବିଷ୍ଣୁଭକ୍ତ ଏବଂ ଅନ୍ୟ ତିନି ସନ୍ତାନମାନେ ଥିଲେ ଦେବଦ୍ରୋହୀ ତଥା ଭୀଷଣ ପ୍ରକୃତିର । ରାବଣ ଦୀର୍ଘକାଳ ଧରି ତପସ୍ୟା କରିବା ଫଳରେ ବ୍ରହ୍ମାଙ୍କଠାରୁ ଅଜେୟ ହେବାର ବର ପାଇଲା । ନିଜ ମାତାମହ ସୁମାଳୀର ପ୍ରରୋଚନାରେ ସେ ଲଙ୍କାକୁ ଜୟ କଲା ଏବଂ ସେଠାରେ ରାଜତ୍ୱ କରୁଥିବା ତା'ର ସାବତ ଭାଇ କୁବେରଙ୍କୁ ତଡ଼ିଦେଲା । କୁବେର ତାଙ୍କ ଗୋଷ୍ଠୀର ଯକ୍ଷମାନଙ୍କୁ ଧରି ଉତ୍ତର-ଭାରତର ହିମାଳୟ-ଅଞ୍ଚଳକୁ ଚାଲିଗଲେ । ସେହିଦିନଠାରୁ ରାବଣ ରସାତଳ ଛାଡ଼ି ଲଙ୍କାର ଅଧିପତି ହେଲା ଏବଂ ଲଙ୍କା ରାକ୍ଷସମାନଙ୍କର ରାଜଧାନୀ ତଥା କାର୍ଯ୍ୟକଳାପର କେନ୍ଦ୍ର-ବିନ୍ଦୁ ହୋଇଉଠିଲା । ସେହିଠାରୁ ସେ ତା'ର ଦିଗ୍‌ବିଜୟ ଆରମ୍ଭ କରିଦେଲା । ସେ ଦେବତାମାନଙ୍କୁ

ମଧ୍ୟ ନିଜର ପଦାନତ କରିଦେଲା । କେବଳ ବାଲୀ ଓ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଏହି ଦୁଇ ରାଜାଙ୍କ ଛଡ଼ା ସେ ଆଉ ସମସ୍ତଙ୍କୁ ନିଜର ପଦାନତ କରିଦେଲା । ସେ କୁବେରଙ୍କୁ ପରାସ୍ତ କରି ତାଙ୍କଠାରୁ ପୁଷ୍ପକ ବିମାନଟି ଛଡ଼ାଇ ଆଣିଲା । ଦିଗ୍‌ବିଜୟ ଯାତ୍ରାର ଅବସରରେ ସେ ଅନେକ ଦେବକନ୍ୟା ଓ ରାଜକନ୍ୟାଙ୍କୁ ଅପହରଣ କଲା । ମୁନିଋଷିମାନଙ୍କ ଆଶ୍ରମମାନ ମଧ୍ୟ ତା'ର ଅତ୍ୟାଚାରରୁ ବାଦ ଯାଇନଥିଲା । ଏହିପରି ଭାବରେ ନାନା ଅତିରଞ୍ଜନ ଓ ଅନୁରଞ୍ଜନ ସହିତ ତା'ର ଦିଗ୍‌ବିଜୟ ଯାତ୍ରା ରାମାୟଣରେ ବର୍ଣ୍ଣିତ । ଏଥିରୁ ରାବଣର ଦୁର୍ଦ୍ଧର୍ଷତା, ଅତ୍ୟାଚାରପ୍ରବଣତା ତଥା ନିଷ୍ଠୁରତାର ସମ୍ୟକ୍ ସୂଚନା ମିଳିଥାଏ ।

ରାକ୍ଷସମାନଙ୍କ ଗତିବିଧିରୁ ଜଣାଯାଏ ଯେ ସେମାନେ ସମୁଦ୍ରପଥରେ ଯାତ୍ରା କରିବାରେ ଥିଲେ ଅତି ଧୁରନ୍ଧର । ସେମାନେ ତେଣୁ ଏକ ସାମୁଦ୍ରିକ ଆଦିମ ଜାତି ହୋଇଥିବା ସମ୍ଭବ । ନରମାଂସ ଥିଲା ସେମାନଙ୍କର ଖୁବ୍ ପ୍ରିୟ ଖାଦ୍ୟ । ଏହି ଜାତିର କିଛି ଅବଶେଷ ଆଜିକାଲି ମଧ୍ୟ ଆମେ ଆଣ୍ଡାମାନ, ବୋର୍ଣ୍ଣିଓ ଓ ଜାଭା ଆଦି ଭାରତମହାସାଗରୀୟ ଦ୍ୱୀପସମୂହରେ ଦେଖିବାକୁ ପାଇଥାଉଁ । ଏଥିରୁ ଏହି କଥା ନିଶ୍ଚିତ ରୂପେ ବିଶ୍ୱାସ କରିହେବ ଯେ ରାମଙ୍କ ଆବିର୍ଭାବ ପୂର୍ବରୁ ଲଙ୍କାରେ ଏକ କୃଷ୍ଣକାୟ ନରମାଂସଭକ୍ଷୀ ଆଦିମ ଜାତି ବାସ କରୁଥିଲେ ଏବଂ ସେମାନେ ଥିଲେ ଆର୍ଯ୍ୟସଂସ୍କୃତିର ଘୋର ବିରୋଧୀ । ରାକ୍ଷସମାନଙ୍କ ଉତ୍ପତ୍ତି ଓ ରାଜନୈତିକ ପ୍ରଭୁତ୍ୱ ବିସ୍ତାରରେ ଅବଶ୍ୟ ବାଲ୍ମୀକି ଅନେକଟା କଳ୍ପନାର ପୁଟ ଦେଇଛନ୍ତି । କିନ୍ତୁ ତାହା ବୋଲି ଯେ ସେମାନଙ୍କର ସ୍ଥିତି ସମ୍ପୂର୍ଣ୍ଣ କଳ୍ପନାପ୍ରସୂତ ସେ କଥା ଭାବିବା ଠିକ୍ ହେବନାହିଁ । ଉପରୋକ୍ତ ବର୍ଣ୍ଣନାରୁ ଆମେ ନିମ୍ନଲିଖିତ ନିର୍ଣ୍ଣୟରେ ଉପନୀତ ହୋଇପାରିବା :

କ) ରାକ୍ଷସମାନେ ଥିଲେ ମୂଳତଃ ଏକ ସାମୁଦ୍ରିକ କୃଷ୍ଣକାୟ ଆଦିମ ଅଧିବାସୀ;

ଖ) ଲଙ୍କା ଥିଲା ସେମାନଙ୍କ ରାଜଧାନୀ ତଥା କାର୍ଯ୍ୟକଳାପର କେନ୍ଦ୍ରବିନ୍ଦୁ;

ଗ) ସେମାନେ ଥିଲେ ପ୍ରଭୂତ ଭାବରେ ବଳଶାଳୀ ଏବଂ ସେମାନଙ୍କର ରାଜନୈତିକ ଉଚ୍ଚାଭିଳାଷକୁ ସେମାନେ ଅନେକ ମାତ୍ରାରେ ରୂପାୟିତ କରି ପାରିଥିଲେ;

ଘ) ସେମାନେ ଥିଲେ ଅର୍ଯ୍ୟଧର୍ମଧାରଣା ତଥା ଆର୍ଯ୍ୟସଂସ୍କୃତିର ଘୋର ବିରୋଧୀ;

ଙ) ସେମାନେ ଆଦୌ ଆଧ୍ୟାତ୍ମିକତା ଉପରେ ବିଶ୍ୱାସ ରଖୁନଥିଲେ ଏବଂ ସମ୍ପୂର୍ଣ୍ଣ ରୂପେ ଥିଲେ ଦେହବାଦୀ; ଏବଂ

ଚ) ସେମାନଙ୍କ ସମାଜ ଥିଲା ମାତୃପ୍ରଧାନ, ଆର୍ଯ୍ୟମାନଙ୍କ ସମାଜ ଭଳି ପିତୃପ୍ରଧାନ କଦାପି ନୁହେଁ ।

ରାକ୍ଷସମାନଙ୍କ ଆଚାର-ବିଚାର, ଧର୍ମାଧର୍ମ, ରୀତିନୀତି ବିଷୟରେ ବିଶଦ ଭାବରେ ଆଲୋଚନା କରିବା ପୂର୍ବରୁ ଏଠାରେ ଗୋଟିଏ ପ୍ରଶ୍ନର ଉତ୍ତର ଦେବା ଆବଶ୍ୟକ । ତାହା ହେଉଛି ରାବଣର ଆକୃତି ସମ୍ପର୍କରେ । ତା'ର କେତୋଟି ମୁଣ୍ଡ ଥିଲା, କେତୋଟି ବେକ ଥିଲା ଏବଂ କେତୋଟି ହାତ ଥିଲା ? ରାମାୟଣରେ 'ଦଶାନନ,' 'ଦଶଗ୍ରୀବ', 'ବିଂଶବାହୁ' ଆଦି ତା'ର ଯେଉଁ ବର୍ଣ୍ଣନା ଅଛି, ତାହା କ'ଣ ଠିକ୍ ? ମନୁଷ୍ୟ ପକ୍ଷରେ କପରି ବା ଏତେଟା ମୁଖ, ଏତେଟା ହାତ ଧରିବା ସମ୍ଭବ ହୋଇପାରିଥିଲା ? ରାମାୟଣକୁ ଆଦି ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ରାବଣର ପ୍ରକୃତରେ ଅନ୍ୟ ମନୁଷ୍ୟମାନଙ୍କ ଭଳି ଗୋଟିଏ ମୁଣ୍ଡ, ଦୁଇଟା ହାତ ଏବଂ ଦୁଇଟା ଆଖି ହିଁ ଥିଲା । 'ଦଶାନନ' ଆଦି ଶବ୍ଦଗୁଡ଼ିକର ଆକ୍ଷରିକ ଅର୍ଥ କରିବାକୁ ଯାଇ ଆମେ ଏଭଳି ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ ହୋଇଥାଉଁ । ଉଦାହରଣ ସ୍ୱରୂପ ଦଶରଥ ନାମଟିକୁ ନିଆଯାଉ । ଆକ୍ଷରିକ ଅର୍ଥରେ ଯାହାଙ୍କର ଦଶଟି ରଥ ଅଛି, ତାଙ୍କୁ ଦଶରଥ କୁହାଯାଇପାରେ । ରାମଙ୍କର ପିତା ଥିଲେ ଅଯୋଧ୍ୟାର ରାଜା । ତାଙ୍କର ସାରା ଦେଶରେ ଭରି ନାଁ ଥିଲା । ତାଙ୍କର କ'ଣ କେବଳ ଦଶଟି ମାତ୍ର ରଥ ଥିଲା ? ଏହା କଦାପି ବିଶ୍ୱାସଯୋଗ୍ୟ ନୁହେଁ । ଏହି ନାମର ଆଉ ଗୋଟିଏ ପ୍ରକାର ମଧ୍ୟ ଆକ୍ଷରିକ ଅର୍ଥ ହୋଇପାରେ, ଯେ ଦଶଗୋଟି ରଥରେ ଆରୋହଣ କରି ଯୁଦ୍ଧ କରନ୍ତି, ସେ ହେଉଛନ୍ତି ଦଶରଥ । ଜଣେ ଲୋକଙ୍କ ପକ୍ଷରେ ଦଶଟି ରଥ ଆରୋହଣ କରି ଯୁଦ୍ଧ କରିବା କ'ଣ କେବେ ହେଲେ ସମ୍ଭବ ? ତାହା ମଧ୍ୟ ଅସମ୍ଭବ । ଅତଏବ, ଏହାର ଏକମାତ୍ର ବିଶ୍ୱାସଯୋଗ୍ୟ ଅର୍ଥ ହେଉଛି ଦଶରଥଙ୍କର ରଥ ଥିଲା ଖୁବ୍ ବଡ଼ ଯାହାକି ଦଶଟି ରଥର ଆକାର ସହିତ ସମାନ । ଆମେ ଜାଣୁ ଯେ ବୌଦ୍ଧ ସାହିତ୍ୟରେ ଗୌତମବୁଦ୍ଧଙ୍କୁ 'ଦଶବଳ' ବୋଲି କୁହାଯାଇଛି । ଏହାର ତାତ୍ପର୍ଯ୍ୟ ହେଉଛି, ତାଙ୍କଠାରେ ଦଶଟା ହାତୀର ବଳ ଥିଲା । ଠିକ୍ ସେହି ଅର୍ଥରେ ରାବଣଙ୍କୁ କୁହାଯାଇଛି ଦଶାନନ । ତା'ର ମୁଣ୍ଡଟା ଏତେ ବଡ଼ ଯେ ତାହା ଦଶଟା ଲୋକର ମୁଣ୍ଡର ଆକୃତି ସହିତ ସମାନ ଥିଲା । ସେହି ଅର୍ଥରେ ତା'ର 'ଦଶଗ୍ରୀବ' 'ବିଂଶବାହୁ' ଆଦି ନାମଗୁଡ଼ିକୁ

ଗ୍ରହଣ କରିବାକୁ ହେବ । ନବୀନଚନ୍ଦ୍ର ଦାସ ଅବଶ୍ୟ 'ଦଶାନନ' ବା 'ଦଶଶୀର୍ଷ' ନାମରୁ ଅଉ ଏକ ପ୍ରକାର ଅର୍ଥ କରିଛନ୍ତି । ତାଙ୍କ ମତରେ ରାବଣର ଦଶଦିଗରେ ଅପ୍ରତିହତ ଗତି ଥିଲା । ଅଥବା ସେ ଦଶ ଦିଗକୁ ଜୟ କରିଥିବାର ଚିହ୍ନ ସ୍ୱରୂପ ନିଜ ମୁଣ୍ଡରେ ଦଶ ପ୍ରକାର ମୁକୁଟ କିମ୍ବା ଦଶ ପ୍ରକାର ମଣିଯୁକ୍ତ ମୁକୁଟ ପିନ୍ଧୁଥିଲା । (୨୧) ଆଉ ମଧ୍ୟ ଗୋଟିଏ କଥା ସମ୍ଭବ । ଗୋଟିଏ ପ୍ରକୃତ ମୁଣ୍ଡ ଓ ଦୁଇଟି ପ୍ରକୃତ ହାତ ଥାଇ ଅନ୍ୟ ମୁଣ୍ଡଗୁଡ଼ିକ ଓ ହାତଗୁଡ଼ିକ କୃତ୍ରିମ ହୋଇପାରେ । ଯାନ୍ତ୍ରିକ ସଭ୍ୟତାର ସିଦ୍ଧି ହାସଲ କରିଥିବା ରାକ୍ଷସମାନଙ୍କ ପକ୍ଷରେ ଏହା କିଛି ଅସମ୍ଭବ ନଥିଲା । ଏହି ନାମଗୁଡ଼ିକଦ୍ୱାରା ରାବଣର ମହତ୍ତ୍ୱପୂର୍ଣ୍ଣ ଚରିତ୍ର ହିଁ ପ୍ରତିପାଦିତ ହେଉଛି; ଦଶଟା ମୁଣ୍ଡ ଏବଂ କୋଡ଼ିଏଟା ହାତ ଥିବାର କୌଣସି ସଙ୍କେତ ମିଳୁନାହିଁ ।

ସାରା ରାମାୟଣକୁ ଅନୁଧ୍ୟାନ କଲେ ଆମେ ମାତ୍ର ଦୁଇଟି ସ୍ଥାନରେ ରାବଣର ଦଶଶିର ଥିବାର ବର୍ଣ୍ଣନା ଦେଖିବାକୁ ପାଇଥାଉଁ । ପ୍ରଥମଟି ହେଲା ସୀତାଙ୍କୁ ଅପହରଣ କରିବା ସମୟରେ ଯେତେବେଳେ ସେ ଭିକ୍ଷୁ ରୂପ ଛାଡ଼ି ତାର ନିଜସ୍ୱ ରାକ୍ଷସରୂପ ଗ୍ରହଣ କରିଥିଲା ରାମାୟଣର ବର୍ଣ୍ଣନା ଅନୁସାରେ (୩।୪୯।୯-୮) ସେତେବେଳେ ସେ ଦଶ ଶିର ଓ ବିଂଶ ବାହୁ ଥିବା ଏକ ମହାକାୟ ରାକ୍ଷସରେ ପରିଣତ ହୋଇଯାଇଥିଲା । ଦ୍ୱିତୀୟଟି ହେଲା ହନୁମାନ୍‌ଙ୍କୁ ବନ୍ଦୀ କରି ତା' ପାଖକୁ ଆଣାହେବା ଅବସରରେ । ସେତେବେଳେ (୫।୪୯।୭) ମନ୍ଦର ପର୍ବତ ଭଳି ତା'ର ଚନ୍ଦନଚର୍ଚ୍ଚିତ ଦଶ ଶିର ଶୋଭାପାଉଥିଲା । ଏଭଳି ବର୍ଣ୍ଣନା ଦ୍ୱାରା ତା' ଶିର ଓ ବାହୁ ଯୁଗଳର ବିଶାଳତା ତଥା ଭୟାବହତା ବ୍ୟଞ୍ଜିତ ହେଉଛି ମାତ୍ର । ଏପରି ବିଶ୍ୱାସ ନେବାର ବଡ଼ କାରଣ ହେଲା, ରାମାୟଣରେ ଅନ୍ୟତ୍ର ବହୁ ସ୍ଥାନରେ ତା'ର ସାଧାରଣ ମନୁଷ୍ୟ ଭଳି ଗୋଟିଏ ଶିର, ଦୁଇଟି ବାହୁ, ଓ ଦୁଇଟି ଆଖି ଥିବାର ବର୍ଣ୍ଣନା ରହିଅଛି, ଯାହା ନିମ୍ନରେ ଉଲ୍ଲିଖିତ ।

ହନୁମାନ୍ ସୀତାଙ୍କ ଅନୁସନ୍ଧାନରେ ଯାଇଥିବା ଅବସରରେ ଭ୍ରମବଶତଃ ରାବଣର ଶୟନକକ୍ଷରେ ପ୍ରବେଶ କରିଥିଲେ । ରାମାୟଣର କଥନ ଅନୁଯାୟୀ (୭।୧୦।୧୫) ସେ ସେଠାରେ ଦେଖିଲେ ଯେ ଇନ୍ଦ୍ରଧ୍ୱଜ ସମାନ ରାବଣର ଦୁଇ ବାହୁ ପ୍ରସାରିତ ହୋଇ ପଡ଼ିଛି । (ଦଦର୍ଶ ସ କପିସ୍ତସ୍ୟ ବାହୂ ଶୟନସଂସ୍ଥିତୌ ... ) ... 

ଧ୍ୱଜୋପମୌ) । ପୁଣି ଅଉ ଦୁଇଟି ସ୍ଥାନରେ (୫।୧୦।୨୪; ୫।୧୦।୨୫) ରାବଣର ମୁଖ ପ୍ରତି ଲକ୍ଷ୍ୟ କରି 'ମହାମୁଖାତ୍' (ବଡ଼ ମୁହଁରୁ) ଓ 'କୁଣ୍ଡଳୋଜ୍ଜ୍ୱଳିତାନନମ୍' (କୁଣ୍ଡଳଦ୍ୱାରା ଉଜଳି ଉଠୁଥିବା ମୁହଁ) ଶବ୍ଦଦ୍ୱୟ ବ୍ୟବହୃତ । ଶୋଇଥିବା ଅବସ୍ଥାରେ ରାବଣ ନିଶ୍ଚୟ ତା'ର ସ୍ୱାଭାବିକ ରୂପ ଓ ଆକୃତି ନେଇ ରହିଥିବ । ଏଠାରେ 'ମୁଖ' ଓ 'ଆନନ' ଶବ୍ଦଦ୍ୱୟର

ଏକବଚନାନ୍ତ ପ୍ରୟୋଗରୁ ସୂଚନା ମିଳୁଛି ଯେ ରାବଣର ଗୋଟିଏ ମୁଖ ଥିଲା । ଯେ ଯେଉଁ ପ୍ରକାର ଛଦ୍ମରୂପ ଧରିଥାଉ ନା କାହିଁକି ମଲା ବେଳେ ତାର ପ୍ରକୃତ ସ୍ୱରୂପ ପ୍ରକାଶ ପାଇଥାଏ, ଠିକ୍ ଯେପରି ମୃଗରୂପୀ ମାରୀଚ ମଲା ବେଳେ ତା'ର ପ୍ରକୃତ ରାକ୍ଷସରୂପଟିକୁ ଦେଖାଇଥିଲା । ରାବଣର ମୃତ୍ୟୁକାଳୀନ ଦୃଶ୍ୟକୁ ବର୍ତ୍ତମାନ ବିଚାରକୁ ନିଆଯାଉ । ସେତେବେଳେ ବିଭୀଷଣ ତା'ର ଦୁଇଟି ଦୀର୍ଘ ବାହୁ ଓ ଗୋଟିଏ ମୁକୁଟ ଥିବାର ଦେଖିଥିଲେ ଏବଂ ତା'ର ଏଭଳି ଶୋଚନୀୟ ଅବସ୍ଥା ଦେଖି ସେ ଅତ୍ୟନ୍ତ ମ୍ରିୟମାଣ ହୋଇଯାଇଥିଲେ । ତାଙ୍କର ଶୋକ ରାମାୟଣରେ (୬।୧୧୧।୩୪-୩୭) ଅତି ରୋଚକ ଭାବରେ ବର୍ଣ୍ଣିତ । ପୁନଶ୍ଚ ଆଉ ଗୋଟିଏ ସ୍ଥାନରେ ରାବଣ-ସୁଗ୍ରୀବଙ୍କ ମଧ୍ୟରେ ହୋଇଥିବା ଦ୍ୱନ୍ଦ୍ୱ-ଯୁଦ୍ଧର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି ଯେ (୬।୪୦।୧୩) ରାବଣ ସୁଗ୍ରୀବଙ୍କୁ ନିଜର ଦୁଇ ବାହୁରେ ଟେକି ଫିଙ୍ଗିଲେ କଚାଡ଼ି ଦେଲା (ବାହୁଭ୍ୟାମାକ୍ଷିପତ୍ତଲେ) । ହନୁମାନ୍ ଅଶୋକବାଟିକାକୁ ଧ୍ୱଂସ କରି ଦେଇଥିବାର ସମ୍ବାଦ ଯେତେବେଳେ ରାବଣ ନିକଟରେ ପହଞ୍ଚିଲା, ସେତେବେଳେ ସେ ଖୁବ୍ ରାଗି ଉଠିଲା ଏବଂ ତା'ର ଦୁଇ ଆଖିରେ ଲୁହ ଜମିଯିବାକୁ ଲାଗିଲା । ସଂପୃକ୍ତ ଶ୍ଳୋକଟି ହେଲା :

> ତସ୍ୟ କ୍ରୁଦ୍ଧସ୍ୟ ନେତ୍ରାଭ୍ୟାଂ ପ୍ରାପତନ୍ନଶ୍ରୁବିନ୍ଦବଃ ।
> ଦୀପ୍ତାଭ୍ୟାମିବ ଦୀପାଭ୍ୟାଂ ସାର୍ଚ୍ଚିଷଃ ସ୍ନେହବିନ୍ଦବଃ ॥ (୨୧-କ)

ଅର୍ଥାତ୍ ରାବଣର କ୍ରୋଧଭରା ଦୁଇ ଆଖିରେ ଲୁହର ବିନ୍ଦୁମାନ ଜକେଇ ଉଠିଲା । ଜଣାଗଲା, ଯେପରି ଅବା ପ୍ରଜ୍ୱଳିତ ଦୀପଶିଖା ଦୁଇଟିରୁ ଅଗ୍ନି ସହିତ ବୁନ୍ଦା ବୁନ୍ଦା କରି ତେଲ ଝରି ପଡ଼ୁଛି । ଏହିଭଳି ଆହୁରି ଅନେକ ବର୍ଣ୍ଣନା ରାମାୟଣରେ ଦେଖିବାକୁ ମିଳିଥାଏ । ଏଥିରୁ ଆମେ ଏକମାତ୍ର ବିବାଦଶୂନ୍ୟ ନିଷ୍କର୍ଷରେ ପହଞ୍ଚିପାରିବା ଯେ ରାବଣ ଥିଲା ଜଣେ ମନୁଷ୍ୟ ଏବଂ ଅନ୍ୟାନ୍ୟ ମନୁଷ୍ୟମାନଙ୍କ ଭଳି ତା'ର ଗୋଟିଏ ମୁଣ୍ଡ, ଦୁଇଟି ଆଖି, ଦୁଇଟି ବାହୁ ଆଦି ଥିଲା । କେବଳ ଏତିକି କଥା ସତ୍ୟ ଯେ ସେ ଥିଲା ସାଧାରଣ ମନୁଷ୍ୟଠାରୁ ଅତି ବଳବାନ୍ ଏବଂ ଅପେକ୍ଷାକୃତ ଅଧିକ ଦୀର୍ଘକାୟ ଓ ଭୀଷଣ ଆକୃତିର । ତା' ସମ୍ପର୍କରେ କିମ୍ବା ଅନ୍ୟାନ୍ୟ ରାକ୍ଷସମାନଙ୍କ ସମ୍ପର୍କରେ ଯେଉଁସବୁ ମନୁଷ୍ୟ ପକ୍ଷରେ ନିତାନ୍ତ ଅସମ୍ଭବ ଓ ଅମାନୁଷିକ କାର୍ଯ୍ୟକଳାପ ତଥା ଆକୃତିର ବର୍ଣ୍ଣନା କରାଯାଇଛି, ତାହାକୁ କାବ୍ୟିକ ଅତିରଞ୍ଜନ ବୋଲି ଧରିନେବାକୁ ହେବ । ଖାଲି ତ ରାମାୟଣରେ ନୁହେଁ, ବିଶ୍ୱର ସବୁ ମହାକାବ୍ୟମାନ ଅନୁଶୀଳନ କଲେ ଆମେ ଜାଣି ପାରିବା ଯେ କୌଣସି ଶତ୍ରୁଗୋଷ୍ଠୀ ସମ୍ପର୍କରେ ବର୍ଣ୍ଣନା କରିବାକୁ ଗଲାବେଳେ କବିମାନେ ସ୍ୱଚ୍ଛନ୍ଦରେ ସେମାନଙ୍କଠାରେ ନାନା

ପ୍ରକାର ବର୍ବରତା, ନୃଶଂସତା ତଥା ଅମାନୁଷିକତା ଆରୋପ କରିଥାନ୍ତି । ବିଭୀଷଣ ଓ ତାଙ୍କର ଅନୁଚର ଚାରି ଜଣ ରାମଙ୍କ ଶରଣାଗତ ହୋଇଥିଲେ । ସେମାନଙ୍କୁ ଧରି ରାମ, ଲକ୍ଷ୍ମଣସମେତ ରାମଙ୍କ ପକ୍ଷରେ ଯେ ସର୍ବମୋଟ ସାତ ଜଣ ମନୁଷ୍ୟ ଅଛନ୍ତି (ଅବଶ୍ୟ ବାନରମାନଙ୍କ ଅତିରିକ୍ତ), ଏ କଥା ରାମ ସ୍ୱୟଂ ବାନରମାନଙ୍କୁ କହୁଥିବାର ବର୍ଣ୍ଣନା ଆମେ ରାମାୟଣରେ (୭ । ୩୮ । ୩୫) ଦେଖିବାକୁ ପାଇଥାଉଁ । ଅତଏବ, ରାବଣ ସମେତ ରାକ୍ଷସମାନେ ସମସ୍ତେ ଥିଲେ ସାଧାରଣ ମନୁଷ୍ୟ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ମନୁଷ୍ୟ ଜନ୍ମରେ ବା କର୍ମରେ ରାକ୍ଷସ ହେଉଥିଲ ? ରାମାୟଣକୁ ଅନୁଧ୍ୟାନ କଲେ ଆମେ ଉଭୟ ପ୍ରକାର ରାକ୍ଷସ ଦେଖିବାକୁ ପାଇଥାଉଁ । ପିତାମାତା ରାକ୍ଷସ ସମ୍ପ୍ରଦାୟର ହୋଇଥିଲେ ସନ୍ତାନମାନେ ରାକ୍ଷସ ହୋଇଥାନ୍ତି । ରାକ୍ଷସସମାଜ ମାତୃପ୍ରଧାନ ଥିବାରୁ କେବଳ ମାତା ରାକ୍ଷସ ହେଲେ ବି ସନ୍ତାନମାନେ ରାକ୍ଷସ ହୋଇଥାନ୍ତି । ଉଦାହରଣ ସ୍ୱରୂପ, ରାବଣ, କୁମ୍ଭକର୍ଣ୍ଣାଦିଙ୍କ ପିତା ଥିଲେ ବିଶ୍ରବା ଋଷି, କିନ୍ତୁ ମାତା ଥିଲ କୈକସୀ ନାମଧେୟା ଜଣେ ରାକ୍ଷସୀ । ତେଣୁ ସେମାନେ ହେଲେ ରାକ୍ଷସ । ଦ୍ୱିତୀୟ ଗୋଷ୍ଠୀର ରାକ୍ଷସ କର୍ମ ଅନୁସାରେ ରାକ୍ଷସ ବୋଲି ଗଣାଯାଉଥିଲେ । ଏ ପ୍ରକାର ରାକ୍ଷସତ୍ୱ ସେମାନଙ୍କୁ ନିଜ କୁକର୍ମର ଦଣ୍ଡସ୍ୱରୂପ ମିଳୁଥିଲା । କୌଣସି ଋଷି ଅଥବା ଦିବ୍ୟ ପୁରୁଷଙ୍କର ଅଭିଶାପ ଫଳରେ ଏହି ଦଣ୍ଡ ମିଳୁଥିଲା । ଏ ପ୍ରକାର ରାକ୍ଷସଜୀବନ କିଛି କାଳ ଧରି ବିତାଇବା ପରେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ଏକ ନିର୍ଦ୍ଦିଷ୍ଟ ମାର୍ଗରେ ଚାଲି ଏହି ଅଭିଶାପରୁ ମୁକ୍ତ ହେବାକୁ ପଡ଼ୁଥିଲା । ଉଦାହରଣସ୍ୱରୂପ ରାକ୍ଷସ ବିରାଧ ଓ କବନ୍ଧ ଏବଂ ରାକ୍ଷସୀ ଛାୟାଗ୍ରାହିଣୀ ଦୈବ ଅଭିଶାପ ପାଇ ରାକ୍ଷସ-ରାକ୍ଷସୀ ହୋଇଥିଲେ ଏବଂ ପରେ ସମ୍ପୃକ୍ତ ଦିବ୍ୟ ପୁରୁଷଙ୍କ ଦର୍ଶିତ ପନ୍ଥା ଅନୁସରଣ କରି ସେହି ଅବସ୍ଥାରୁ ମୁକ୍ତ ହୋଇଥିଲେ । ଅଭିଶାପ ପାଇ ଯେଉଁମାନେ ରାକ୍ଷସ ହୋଇଥିଲେ, ସେମାନେ ସାଧାରଣତଃ ଜନ୍ମଗତ ରାକ୍ଷସ-ମାନଙ୍କଠାରୁ ଥିଲେ ଅଧିକତର ଘୃଣ୍ୟ ଓ ଅମାନୁଷିକ । ଦିବ୍ୟତ୍ୱ ଓ ରାକ୍ଷସତ୍ୱ ଏହି ଦୁଇ ଶକ୍ତିର ସମ୍ମିଶ୍ରଣ ଫଳରେ ସେମାନେ ଅଧିକତର ବଳଶାଳୀ ହୋଇ ଉଠୁଥିଲେ । ଶର୍ମା ଏହି ସ୍ଥିତିକୁ ଦର୍ଶାଇବାକୁ ଯାଇ ଯଥାର୍ଥରେ କହନ୍ତି :

> "Combining in themselves the material knowledge of the two groups—the higher on from which they have fallen and the lower one that they

have adopted—they acquire certain peculiarities such as greater power, greater savagery and even greater hideousness,' (୨୨)

ତାଟକା ପ୍ରଥମେ ଥିଲା ଏକ ସୁନ୍ଦରୀ ଯକ୍ଷୀ । କିନ୍ତୁ ସେ ଅଗସ୍ତ୍ୟମୁନିଙ୍କ ଉପରେ ଆକ୍ରମଣ କରିବାକୁ ବସିବାରୁ ତାଙ୍କ ଅଭିଶାପ ପାଇ ରାକ୍ଷସୀ ହୋଇଗଲା । ତା'ର ପୁତ୍ର ମାରୀଚ ମାତୃବଂଶର ପରିଚୟ ନେଇ ରାକ୍ଷସ ହୋଇଥିବା କଥା ରାମାୟଣରେ (୧ । ୨୫ । ୧୨) ବର୍ଣ୍ଣିତ । ସେହିପରି ରାଜା କଲ୍ମାଷପାଦ ଭ୍ରମବଶତଃ ବଶିଷ୍ଠ ମୁନିଙ୍କୁ ନରମାଂସ ଖାଇବାପାଇଁ ଅର୍ପଣ କରିଥିଲେ । ତେଣୁ ମୁନିଙ୍କ ଅଭିଶାପରେ ତାଙ୍କୁ ନରମାଂସଭକ୍ଷୀ ରାକ୍ଷସ ହେବାକୁ ପଡ଼ିଥିଲା । ଏହିପରି ଆର୍ଯ୍ୟେତର ଘୃଣିତ କର୍ମ କରିବା ଫଳରେ ମନୁଷ୍ୟର ରାକ୍ଷସଯୋନିରେ ପତିତ ହେବାର ଅନେକ ଉଦାହରଣ ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଅତଏବ ଜନ୍ମ ଅଥବା କର୍ମ ଉଭୟକୁ ନେଇ ମନୁଷ୍ୟ ରାକ୍ଷସତ୍ୱ ପ୍ରାପ୍ତ ହେଉଥିଲା ।

ରାବଣର ଆକୃତି ବିଷୟରେ କିଛିଟା ଆଲୋକପାତ ପୂର୍ବରୁ କରାଯାଇଛି । ତା' ଛଡ଼ା ଅନ୍ୟାନ୍ୟ ରାକ୍ଷସମାନଙ୍କର ବର୍ଣ୍ଣନା ମଧ୍ୟ ରାମାୟଣରେ ଦେଖିବାକୁ ମିଳିଥାଏ । ଏଥିରେ ସାଧାରଣତଃ ସେମାନଙ୍କୁ 'ମହାଦଂଷ୍ଟ୍ର' (ବଡ଼ ଦାନ୍ତ ଥିବା), 'ମହାସ୍ୟ' (ବଡ଼ ମୁହଁ ଥିବା), 'ମହାକାୟ' (ବଡ଼ ଦେହ ଥିବା) ଏକ ଜାତିର ଅନ୍ତର୍ଗତ ବୋଲି ବର୍ଣ୍ଣନା କରାଯାଇଛି । ସେମାନଙ୍କର ଯେଉଁଭଳି ବର୍ଣ୍ଣନା ଅଛି, ତହିଁରୁ ସ୍ପଷ୍ଟ ଭାବରେ ଜଣାପଡ଼େ ଯେ ସଂସ୍କୃତିଗତ ତଥା ରକ୍ତଗତ ଦୃଷ୍ଟିକୋଣରୁ ସେମାନେ ଥିଲେ ଆର୍ଯ୍ୟେତର ଏକ ଗୋଷ୍ଠୀ । ସେମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବୈଦିକ ଶାସ୍ତ୍ର ଅଧ୍ୟୟନ, ଶିବପୂଜା ଆଦି ଦେଖି (ରାବଣ ଜଣେ ବଶିଷ୍ଟ ବୈଦିକ ବିଦ୍ୱାନ୍ ଥିଲା) କେତେକ ପଣ୍ଡିତ କହନ୍ତି ଯେ ରାକ୍ଷସମାନେ ମୂଳତଃ ଥିଲେ ଆର୍ଯ୍ୟମାନଙ୍କର ଗୋଟିଏ ଶାଖା । ସେମାନେ ବହୁବର୍ଷ ତଳେ ଉତ୍ତର-ଭାରତୀୟ ଆର୍ଯ୍ୟମାନଙ୍କର ଦକ୍ଷିଣ-ଭାରତକୁ ଆଗମନ ପୂର୍ବରୁ ସେଠାକୁ ଆସିଥିଲେ । ସେମାନେ ନିଜ ସାଥିରେ ବୈଦିକ ପରଂପରାକୁ ନେଇ ଆସିଥିଲେ । ଦୀର୍ଘକାଳ ଧରି ମୂଳ ଆର୍ଯ୍ୟ-ସ୍ରୋତଠାରୁ ବିଚ୍ଛିନ୍ନ ରହିବା ଫଳରେ ସେମାନଙ୍କ ଜୀବନଧାରଣ-ପଦ୍ଧତିରେ ପରିବର୍ତ୍ତନ ଆସି ଯାଇଥିଲା । ତାହା ସତ୍ତ୍ୱେ ସେମାନଙ୍କ ପାଖରେ କେତେକ ମୌଳିକ ଆର୍ଯ୍ୟ-ଧାରଣା ଦୃଢ଼ମୂଳ ହୋଇ ରହି ଯାଇଥିଲା । କେ: ଏସ: ରାମସ୍ୱାମୀ ଶାସ୍ତ୍ରୀ ଏହି ମତର ଉପସ୍ଥାପକ । (୨୩) ଏହି ମତ କିନ୍ତୁ ଠିକ୍ ନୁହେଁ । ଯଦି

ଏହା ଠିକ୍ ହୋଇଥାନ୍ତା, ତେବେ ସେମାନଙ୍କ ରଙ୍ଗ ଏତେ କଳା ହୋଇଥାନ୍ତା କିପରି ? ସେମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ବୈଦିକ କର୍ମକାଣ୍ଡର ଆକର-କ୍ଷେତ୍ର ଦୁଇଟି ହୋଇପାରେ । ପ୍ରଥମତଃ ଏହା କେଉଁ କେଉଁ ପିତୃବଂଶର ପ୍ରଭାବର (ରାବଣର ପିତା ଥିଲେ ବିଶ୍ରବା ଋଷି) ଫଳଶ୍ରୁତି ହୋଇପାରେ । ଦ୍ୱିତୀୟତଃ ରାକ୍ଷସମାନେ ଆର୍ଯ୍ୟାବର୍ତ୍ତର କିଛି ଅଞ୍ଚଳ ଦଖଲ କରି ନେଇଥିବାରୁ ସେମାନେ ବାରମ୍ବାର ଆର୍ଯ୍ୟମାନଙ୍କର ସଂସ୍ପର୍ଶରେ ଆସିଥିବେ ଏବଂ ଏହା ସେହି ପ୍ରଭାବରୁ ଫଳଶ୍ରୁତି ହୋଇଥିବ । ରାକ୍ଷସମାନେ ଯେ ଏକ ଆର୍ଯ୍ୟେତର ଗୋଷ୍ଠୀର ଅନ୍ତର୍ଭୁକ୍ତ ସେ ସମ୍ପର୍କରେ ଶର୍ମା ଦେଇଥିବା ତାଙ୍କର ସ୍ପଷ୍ଟ ମତ ପୂର୍ବରୁ ଆଲୋଚିତ । ତାହା ଅଧିକତର ଯୁକ୍ତିଯୁକ୍ତ ଏବଂ ତେଣୁ ଗ୍ରହଣଯୋଗ୍ୟ ମନେହୁଏ ।

ରାକ୍ଷସମାନଙ୍କ ମଧ୍ୟରେ ସମସ୍ତେ ଯେ କୁରୂପ ଥିଲେ ସେପରି ଭାବିବା ଠିକ୍ ନୁହେଁ । ଅବଶ୍ୟ କେତେକ ଭଳି କେତେକ ରାକ୍ଷସ ଥିଲେ ଯେଉଁ-ମାନଙ୍କର ମୁଣ୍ଡ ନଥିଲା, ଛାତିରେ ଗୋଟିଏ ଲେଖାଏଁ ଆଖି ଥିଲା, ପେଟରେ ମୁହଁଟିଏ ଥିଲା ଏବଂ ବାହୁ ଦୁଇଟି ଥିଲା ଖୁବ୍ ଦୀର୍ଘ ଓ ପ୍ରସାରିତ । କବନ୍ଧର ଏଭଳି ବର୍ଣ୍ଣନା ଆମେ ରାମାୟଣରେ (୩ । ୬୯ । ୨୭-୩୨) ଦେଖିବାକୁ ପାଇଥାଉଁ । ଅବଶ୍ୟ ଏହି ବର୍ଣ୍ଣନାରେ କିଛିଟା ଅତିରଞ୍ଜନ ଅଛି, କାରଣ ଏଭଳି ମନୁଷ୍ୟ ସମ୍ଭବିବା ବିଶ୍ୱାସଯୋଗ୍ୟ ନୁହେଁ । ସୀତାଙ୍କୁ ଅଶୋକବନରେ ଅନେକ ବିରୂପା ରାକ୍ଷସୀ ଘେରିକରି ରହିଥିଲେ । ତାଟକା ରାକ୍ଷସୀର ଆକୃତି ଥିଲା ବଡ଼ ଭୟାନକ । ଅୟୋମୁଖୀ ରାକ୍ଷସୀ ମଧ୍ୟ ସେହିପରି ଥିଲା ସମଧିକ ବିରୂପା । ହନୁମାନ୍ ଲଙ୍କାପୁରୀରେ ରାତ୍ରିରେ ଗୋପନ ଭାବରେ ବିଚରଣ କରୁଥିବା ସମୟରେ ଉଭୟ ସୁରୂପ ଓ ବିରୂପ ରାକ୍ଷସମାନଙ୍କୁ ଦେଖିବାକୁ ପାଇଥିଲେ । ସେମାନେ ମଧ୍ୟ ବିଭିନ୍ନ ଆକୃତିର ଥିଲେ । ରାମାୟଣର ବର୍ଣ୍ଣନା ଅନୁଯାୟୀ ହନୁମାନ୍ ଦେଖିଲେ ଯେ ସେମାନେ ହେଉଛନ୍ତି :

> ନାତିସ୍ଥୂଲାନ୍ ନାତିକୃଶାନ୍, ନାତିଦୀର୍ଘାତିହ୍ରସ୍ୱକାନ୍ ।
> ନାତି ଗୌରାନ୍ ନାତି କୃଷ୍ଣାନ୍ନାତିକୁବ୍ଜାନ୍ନବାମନାନ୍ ।
> ବିରୂପାନ୍ ବହୁରୂପାଂଶ୍ଚ ସୁରୂପାଂଶ୍ଚ ସୁବର୍ଚସଃ । (୨୪)

ଅର୍ଥାତ୍ କେତେକ ରାକ୍ଷସ ଅତି ମୋଟା ନଥିଲେ କିମ୍ବା ଅତି ପତଳା ନଥିଲେ, ବେଶି ଢେଙ୍ଗା ନଥିଲେ କିମ୍ବା ବେଶି ଗେଡ଼ା ନଥିଲେ, ବେଶି ଗୋରା ନଥିଲେ କିମ୍ବା ବେଶି କଳା ନଥିଲେ ଏବଂ ବେଶି କୁଜା ନଥିଲେ କିମ୍ବା ବେଶି ବାମନ

ନଥିଲେ । କେତେକ ରାକ୍ଷସ ବଡ଼ କୁରୂପ ଥିଲେ ତ ଆଉ କେତେକ ରାକ୍ଷସ ନାନା ପ୍ରକାର ରୂପ ଧାରଣ କରିପାରୁଥିଲେ । କେତେକଙ୍କ ରୂପ ସୁନ୍ଦର ଥିଲା ତ ଆଉ କେତେକଙ୍କ ରୂପରେ ତେଜ ଭରି ରହିଥିଲା । ରାବଣର ପାଟରାଣୀ ମନ୍ଦୋଦରୀ ରାମାୟଣରେ (୫ । ୧୦ । ୫୨) ଜଣେ 'ଗୌରରୂପିଣୀ, ଗୌରୀ ଓ କନକବର୍ଣ୍ଣା' ନାରୀ ଭାବରେ ବର୍ଣ୍ଣିତ । ହନୁମାନ୍ ରାବଣର ଅନ୍ତଃପୁରରେ ଯେଉଁ ରାକ୍ଷସୀମାନଙ୍କୁ ଦେଖିଥିଲେ ସେମାନଙ୍କ ମଧ୍ୟରୁ ଅନେକ ଥିଲେ ସ୍ୱର୍ଗର ଅପ୍‌ସରାମାନଙ୍କ ଭଳି ସୁନ୍ଦରୀ । ଏଥିରୁ ଜଣାପଡ଼ୁଛି ଯେ ରାକ୍ଷସମାନେ ସାଧାରଣତଃ ବିରୂପ ଥିଲେ ହେଁ ସେମାନଙ୍କ ମଧ୍ୟରେ ଅନେକ ଉତ୍ତମ ରୂପସମ୍ପନ୍ନ ବ୍ୟକ୍ତି ଥିଲେ ।

ରାକ୍ଷସମାନଙ୍କ ଖାଦ୍ୟ-ପେୟ ଥିଲା ଆର୍ଯ୍ୟମାନଙ୍କ ଖାଦ୍ୟପେୟଠାରୁ ସମ୍ପୂର୍ଣ୍ଣ ରୂପେ ଭିନ୍ନ । ଖାଲି ତ ଖାଦ୍ୟ-ପେୟ ନୁହେଁ, ଆଚାର-ବିଚାର, ଚାଲି-ଚଳନ, ରୀତି-ନୀତି ସବୁଥିରେ ସେମାନେ ଥିଲେ ଆର୍ଯ୍ୟମାନଙ୍କଠାରୁ ଭିନ୍ନ । ଯାହା ଥିଲା ଆର୍ଯ୍ୟମାନଙ୍କ ପକ୍ଷରେ ବର୍ଜନୀୟ, ତାହା ଥିଲା ରାକ୍ଷସମାନଙ୍କ ପକ୍ଷରେ ଅଭିନନ୍ଦନୀୟ । ଯାହା ଥିଲା ଆର୍ଯ୍ୟମାନଙ୍କ ପକ୍ଷରେ ଘୃଣ୍ୟ ତାହା ଥିଲା ରାକ୍ଷସମାନଙ୍କ ପକ୍ଷରେ ସ୍ୱାଦ୍ୟ । ରାକ୍ଷସମାନେ ଥିଲେ ନରମାଂସାହାରୀ । ରାମାୟଣରେ (୩ । ୭୨ । ୨୩) ସେମାନଙ୍କୁ 'ନରମାଂସାଶିନଃ' (ନରମାଂସ ଖାଉଥିବା ବ୍ୟକ୍ତିସମୂହ) ବୋଲି କୁହାଯାଇଛି । ତାଟକା ରାକ୍ଷସୀ ଗର୍ଜନ କରି ଅଗସ୍ତ୍ୟ ଋଷିଙ୍କ ମାଂସ ଖାଇବା ପାଇଁ ଭୟାନକ ରୂପ ଧରି ଧାଇଁ ଆସୁଥିବା କଥା ରାମାୟଣରେ (୧ । ୧୫ । ୧୧) ବର୍ଣ୍ଣିତ । ମାରୀଚ ସମେତ ଅନ୍ୟ ରାକ୍ଷସମାନେ ଋଷିମାନଙ୍କ ମାଂସ ଖାଇ ଦଣ୍ଡକାରଣ୍ୟରେ ବିଚରଣ କରୁଥିଲେ । ହନୁମାନ୍ ମଧ୍ୟ ଲଙ୍କାପୁରୀରେ ସୀତାଙ୍କୁ ଖୋଜି ଖୋଜି ନପାଇବା ଫଳରେ ତାଙ୍କ ମନରେ ଆଶଙ୍କା ଉପୁଜିଥିଲା ଯେ ସମ୍ଭବତଃ ରାବଣ ଓ ତା'ର ସ୍ତ୍ରୀମାନେ ସୀତାଙ୍କୁ ମାରି ଖାଇଯାଇଛନ୍ତି । ଏହି କଥା ରାମାୟଣରେ ( ୫ । ୧୩ । ୧୧-୧୨) ଅତି ରୋଚକ ଭାବରେ ବର୍ଣ୍ଣିତ । ଖାଲି ତ ନରମାଂସ ନୁହେଁ, ନରରକ୍ତ ମଧ୍ୟ ସେମାନେ ପାଣି ଭଳି ପିଇ ଯାଉଥିଲେ । ଉଭୟ ପୁରୁଷ ଓ ସ୍ତ୍ରୀଙ୍କ ନିକଟରେ ମଦିରା ଓ ରକ୍ତ ଥିଲା ଅତି ପ୍ରିୟ ପାନୀୟ । କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ ପରେ ତା'ଲାଗି ପ୍ରଚୁର ପରିମାଣରେ ନରରକ୍ତ ପିଇବାର ଆବଶ୍ୟକତା ଥିଲା । ତେଣୁ ପୂର୍ବରୁ ତା'ଲାଗି କେତେଗୁଡ଼ିଏ ମାଠିଆରେ ନରରକ୍ତ ଭରିକରି ରଖାଯାଇଥିବା କଥା ରାମାୟଣରେ (୬ । ୬୦ । ୩୩) ଉଲ୍ଲିଖିତ । ସୀତାଙ୍କୁ ଅଶୋକବନରେ ଜଗି ରହିଥିବା ରାକ୍ଷସମାନେ ଶୀଘ୍ର ମଦିରା ସହିତ ସୀତାଙ୍କ ମାଂସ ସେମାନଙ୍କୁ ମିଳିଯିବ ବୋଲି ଅନୁଚିନ୍ତାରେ

ଭାର ଆନନ୍ଦିତ ହୋଇ ଉଠିଥିବା କଥା ରାମାୟଣରେ ଠାଏ (୫ । ୨୪ । ୪୯) ବର୍ଣ୍ଣିତ । ବିରାଧ ରାକ୍ଷସ ରାମ-ଲକ୍ଷ୍ମଣଙ୍କୁ ଦେଖି କହିଥିଲା :

"ଯୁବୟୋଃ ପାପୟୋଶ୍ଚାହଂ ପାସ୍ୟାମି ରୁଧିରଂ ମୃଧେ" । (୨୫)

ଅର୍ଥାତ୍ ଯୁଦ୍ଧସ୍ଥଳରେ ମୁଁ ତୁମ ଦୁଇ ପାପୀଙ୍କ ରକ୍ତ ପିଇବି । ରାକ୍ଷସମାନଙ୍କ ପାଇଁ ରାମାୟଣରେ ଠାଏ (୭ । ୭୦ । ୨୩) ଯେଉଁ 'ମାଂସଶୋଣିତଭୋଜନାଃ' (ମାଂସ ଓ ରକ୍ତ ଖାଉଥିବା ବ୍ୟକ୍ତିସମୂହ) ବିଶେଷଣଟିର ପ୍ରୟୋଗ କରାଯାଇଛି ତହିଁରୁ ସେମାନଙ୍କର ମାଂସ ଓ ରକ୍ତ ପ୍ରତି ଥିବା ଲାଳସାର ପୂର୍ଣ୍ଣ ପରିଚୟ ମିଳିଥାଏ ।

ରାକ୍ଷସମାନେ ସାମାଜିକ ଶିଷ୍ଟାଚାରରେ କୌଣସି ମତେ ଆର୍ଯ୍ୟମାନଙ୍କଠାରୁ ପଛୁଆ ନଥିଲେ । କନିଷ୍ଠର ବରିଷ୍ଠଙ୍କ ପ୍ରତି ମାନ୍ୟତା ଦେଖାଇବା ଏବଂ ବରିଷ୍ଠଙ୍କର କନିଷ୍ଠ ପ୍ରତି ସ୍ନେହ ଓ ଆଶୀର୍ବାଦ ଦେଖାଇବା ସେମାନଙ୍କ ମଧ୍ୟରେ ଥିଲା ଏକ ପ୍ରଚଳିତ ଶିଷ୍ଟାଚାର । ବ୍ୟାସଙ୍କ ଭାଷାରେ :

"ଶିଷ୍ଟାଚାର ଔର୍ ଲୋକ-ବ୍ୟବହାର ମେଂ ରାକ୍ଷସ ପ୍ରାୟ ଆର୍ଯୋଂ କା ହୀ ଅନୁସରଣ କରତେ ଥେ । ଯୁଦ୍ଧକ୍ଷେତ୍ର ମେଂ ଜାନେ ସେ ପହିଲେ କୁମ୍ଭକର୍ଣ୍ଣ ନେ ଅପନେ ବଡ଼େ ଭାଇ ରାବଣ କା ଆଲିଙ୍ଗନ କରକେ ଉସକେ ପ୍ରଦକ୍ଷିଣା କୀ ଔର୍ ସିର ସେ ଅଭିବାଦନ କିୟା । ଜବ ରାବଣ ରାମ କେ ସାଥ ଯୁଦ୍ଧ କରନେ ପହିଲୀ ବାର ଜାନେ ଲଗା, ତବ ମନ୍ତ୍ରୋଂ କେ ପବିତ୍ର ଘୋଷ ସେ ଉସକେ ଲିଏ ମଙ୍ଗଲ-କାମନା କୀ ଗଈ ।" (୨୬)

ରାବଣ ଯେତେବେଳେ ମାରୀଚର ଆଶ୍ରମକୁ ଯାଇଥିଲା, ସେତେବେଳେ ସେ (ମାରୀଚ) ପାଦ୍ୟ, ଅର୍ଘ୍ୟ, ଆସନ ଆଦି ଦେଇ ତା'କୁ ସ୍ୱାଗତ କରିଥିଲା । ଇନ୍ଦ୍ରଜିତ୍ ଯୁଦ୍ଧଭୂମିକୁ ଯିବାର ଅବ୍ୟବହିତ ପୂର୍ବରୁ ସ୍ୱୀୟ ପିତା-ମାତାଙ୍କୁ ସମ୍ମାନ ଦେଖାଇଥିଲା ଏବଂ ସେମାନଙ୍କଠାରୁ ଆଶୀର୍ବାଦ ପାଇଥିଲା । ରାମଙ୍କ ଶରଣ ନେଲାବେଳେ ବିଭୀଷଣ ତାଙ୍କୁ ଯଥାବିଧି ବିନମ୍ରତା ପ୍ରଦର୍ଶନ କରିଥିଲେ । ଆର୍ଯ୍ୟ ପତିବ୍ରତା ନାରୀ ନିଜ ସ୍ୱାମୀଙ୍କ ପ୍ରତି ଯେପରି ଭାବରେ ଅନୁଗତା ଥାଆନ୍ତି ଏବଂ ଯେପରି ଭାବରେ ସ୍ୱାମୀଙ୍କୁ ଭକ୍ତି, ସମ୍ମାନ ଓ ପ୍ରେମ ପ୍ରଦର୍ଶନ କରନ୍ତି, ମନ୍ଦୋଦରୀଙ୍କର ନିଜ ସ୍ୱାମୀଙ୍କ ପ୍ରତି ବ୍ୟବହାର ଠିକ୍ ଅନୁରୂପ ଥିଲା । ରାମାୟଣରେ ରାକ୍ଷସ-ରାଜସଭାର ଯେପରି ବର୍ଣ୍ଣନା ଦିଆଯାଇଛି, ତହିଁରୁ ସୂଚନା ମିଳେ ଯେ ତାହାର ସଭାସଦମାନେ ରାଜକୀୟ ସଭାର ଶିଷ୍ଟାଚାର ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ଥିଲେ । ଅଯୋଧ୍ୟାର ରାଜସଭାରେ ପ୍ରଦର୍ଶିତ ଶିଷ୍ଟାଚାରଠାରୁ ତାହା କୌଣସି ଗୁଣରେ ଊଣା ନଥିଲା ।

ଆର୍ଯ୍ୟମାନଙ୍କ ପରି ରାକ୍ଷସମାନଙ୍କ ମଧ୍ୟରେ 'ସ୍ୱସ୍ତ୍ୟୟନ' କର୍ମର ଅତି ମାନ୍ୟତା ଥିଲା । କୌଣସି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ତାହା କିପରି ଶୁଭ ମଧ୍ୟ ଦେଇ ସଂଘଟିତ ହୁଏ, ସେହି କାମନା କରି ଯେଉଁ ମାଙ୍ଗଳିକ କର୍ମ କରାଯାଏ ତାହାର ନାମ ହେଉଛି 'ସ୍ୱସ୍ତ୍ୟୟନ' । ଯୁଦ୍ଧଯାତ୍ରା, ଅଭିଷେକ, ବିବାହାନୁଷ୍ଠାନ ଆଦିର ଅବ୍ୟବହିତ ପୂର୍ବରୁ ଏହି କର୍ମ କରାଯାଇଥାଏ । ରାମାୟଣରେ ଠାଏ (୬ । ୯୫ । ୨) ରାକ୍ଷସମାନଙ୍କର ଯୁଦ୍ଧଯାତ୍ରା ପ୍ରସଙ୍ଗରେ କୁହାଯାଇଛି :

କୃତସ୍ୱସ୍ତ୍ୟୟନାଃ ସର୍ବେ ରଣମଭିମୁଖା ଯଯୁଃ ।

ଅର୍ଥାତ୍ ସମସ୍ତେ ସ୍ୱସ୍ତ୍ୟୟନ କର୍ମ କରିସାରିବା ଉତ୍ତାରୁ ଯୁଦ୍ଧାଭିମୁଖରେ ଯାତ୍ରା କରିଥିଲେ ।

ଆର୍ଯ୍ୟମାନଙ୍କ ଭଳି ରାକ୍ଷସମାନେ ତପସ୍ୟା ମଧ୍ୟ କରୁଥିଲେ । କିନ୍ତୁ ଉଭୟଙ୍କ ତପସ୍ୟାର ଲକ୍ଷ୍ୟ ନେଇ ପ୍ରଭେଦ ରହୁଥିଲା । ଆର୍ଯ୍ୟମାନଙ୍କ ଲକ୍ଷ୍ୟ ଥିଲା ଆଧ୍ୟାତ୍ମିକ ସିଦ୍ଧି ହାସଲ କରିବା । ଅନ୍ୟ ପକ୍ଷରେ ରାକ୍ଷସମାନଙ୍କର ଲକ୍ଷ୍ୟ ଥିଲା ଭୌତିକ ସିଦ୍ଧି, ଶାରୀରିକ ବଳ ଆଦି ହାସଲ କରିବା । ଆର୍ଯ୍ୟମାନଙ୍କ ତପସ୍ୟାର ଲକ୍ଷ୍ୟ ଥିଲା ସଂସାରର ମଙ୍ଗଳ-ସାଧନ । ଅନ୍ୟ ପକ୍ଷରେ ରାକ୍ଷସମାନଙ୍କ ତପସ୍ୟାର ଲକ୍ଷ୍ୟ ଥିଲା ନିଜର ମଙ୍ଗଳସାଧନ । ରାକ୍ଷସମାନେ ଯେପରି ସ୍ୱାର୍ଥାନ୍ୱେଷୀ ଥିଲେ, ସେମାନଙ୍କ ତପସ୍ୟା ମଧ୍ୟ ଥିଲା ଅନୁରୂପ ଭାବରେ ସ୍ୱାର୍ଥପରାୟଣ ତଥା କାମନାବାସନାସିକ୍ତ । ରାବଣ ଠିକ୍ ସେହି ଲକ୍ଷ୍ୟ ନେଇ କଠୋର ତପସ୍ୟା କରିଥିଲା ଏବଂ ତା'ର ଲକ୍ଷ୍ୟ ହାସଲ କରିଥିଲା । ରାବଣର ତପସ୍ୟା କେତେ ଦୂର କଠୋର ଥିଲା ଏବଂ ତାହାର ପୁଣ୍ୟଫଳ କେତେ ଦୂର ପ୍ରଭୂତ ଥିଲା, ତାହା ହନୁମାନ୍‌ଙ୍କ କଣ୍ଠର ନିମ୍ନୋକ୍ତ ବାଣୀରୁ ସ୍ପଷ୍ଟ ଜଣା ପଡ଼ିବ :

ସର୍ବଥା ତପ୍ରକୃଷ୍ଟୋଽସୌ ରାବଣୋ ରାକ୍ଷସେଶ୍ୱରଃ ।
ଯସ୍ୟ ତାଂ ସ୍ପୃଶତୋ ଗାତ୍ରଂ ତପସା ନ ବିନାଶିତମ୍ । (୨୨)

ଅର୍ଥାତ୍ ରାକ୍ଷସରାଜ ରାବଣ ମହାନ୍ ତପୋବଳସମ୍ପନ୍ନ ଜଣାପଡ଼ୁଛି, ଯାହା ଫଳରେ ସେ ସୀତାଙ୍କୁ ସ୍ପର୍ଶ କରିଥିଲେ ମଧ୍ୟ ତା'ର ଅଙ୍ଗ ନଷ୍ଟ ହୋଇଯାଇ ନାହିଁ । ରାମବାଣର ଆଘାତ ପାଇ ସାରିବା ଉତ୍ତାରୁ ରାକ୍ଷସ ମାରୀଚ ଭୟରେ ତା'ର ରାକ୍ଷସବୃତ୍ତି ଛାଡ଼ିଦେଇ ମୃଗଚର୍ମ ପରିଧାନ କରିଥିଲା ଏବଂ ଋଷି-ମୁନିଙ୍କ ପରି ତପସ୍ୟାରେ ମଗ୍ନ ରହିଥିଲା । ରାବଣ ଭଳି ତା'ର ଭାଇ କୁମ୍ଭକର୍ଣ୍ଣ ଓ ବିଭୀଷଣ ମଧ୍ୟ କଠୋର ତପସ୍ୟା କରିଥିବା କଥା ରାମାୟଣରେ ବର୍ଣ୍ଣିତ ।

ଆର୍ଯ୍ୟମାନଙ୍କ ଭଳି ରାକ୍ଷସମାନଙ୍କ ଭିତରେ ମଧ୍ୟ ଶାସ୍ତ୍ରଜ୍ଞାନ ଅତି ମାନ୍ୟତା ପାଉଥିଲା । କିନ୍ତୁ ଏହି ଜ୍ଞାନକୁ ସେମାନେ କ୍ୱଚିତ୍ କାର୍ଯ୍ୟରେ ପରିଣତ କରୁଥିଲେ । ରାବଣର ପାଣ୍ଡିତ୍ୟ କିଛି କମ୍ ନଥିଲା । ଅଥଚ ସେ ପରସ୍ତ୍ରୀ-ଅପହରଣର ପାପରେ ଲିପ୍ତ ରହୁଥିଲା । ଏହାର କାରଣ ହେଉଛି ସେ ଇନ୍ଦ୍ରିୟସମୂହକୁ ଜୟ କରିପାରିନଥିଲା । ରାକ୍ଷସମାନଙ୍କ ଜ୍ଞାନ ଥିଲା ବିଗ୍ରହନିଷ୍ଠ; ତାହା ଆଦୌ ଆଗ୍ରହନିଷ୍ଠ ନଥିଲା । ସେମାନଙ୍କ ଧର୍ମର ପରିଣତି ଥିଲା କାମ । ବାସ୍ତବିକ ଏହି ଚିନ୍ତାଧାରା ରାକ୍ଷସ ମହୋଦୟଙ୍କର ବାଣୀରେ ପ୍ରକଟିତ ହୋଇଛି ଯେତେବେଳେ ସେ ରାବଣର ରାଜସଭାରେ ବାନରପକ୍ଷ ସମର୍ଥନ କରି କହୁଛି, "ଧର୍ମଂ କାମଫଳଂ ବିଦ୍ଧି" ଅର୍ଥାତ୍ କାମକୁ ଧର୍ମର ଫଳ ବୋଲି ବୁଝିବାକୁ ହେବ । ଏବଂବିଧ ଆଗ୍ରହହୀନତା ରାକ୍ଷସମାନଙ୍କ ଜ୍ଞାନକୁ କଳୁଷିତ କରିଦେଇଥିଲା । ତାହା ସତ୍ତ୍ୱେ ସେମାନେ ଯେ ଜ୍ଞାନହୀନ ବା ବିଦ୍ୟାହୀନ ଥିଲେ ଏ କଥା ଭାବିବା ଠିକ୍ ହେବ ନାହିଁ । ରାବଣର ମୃତ୍ୟୁରେ ବିଭୀଷଣ ବିଳାପ କରି ତାକୁ 'ମହାତପାଃ' (ମହାନ୍ ତପସ୍ୱୀ)' 'ବେଦାନ୍ତଗଃ' (ବେଦାନ୍ତପାରଗ), 'ଆହିତାଗ୍ନିଃ' (ଅଗ୍ନିହୋତ୍ରୀ) ନାମରେ ସମ୍ବୋଧନ କରିଥିବାର ପ୍ରମାଣ ଆମେ ରାମାୟଣରେ (୬।୧୦୯।୨୩) ପାଇଥାଉଁ । ଯୁଦ୍ଧକୁ ଯିବା ପୂର୍ବରୁ କୁମ୍ଭକର୍ଣ୍ଣ ରାବଣ ସମ୍ମୁଖରେ ନାନା ପ୍ରକାର ଶାସ୍ତ୍ରୋକ୍ତି ଉଦ୍ଧାର କରି ସୀତାଙ୍କୁ ରାମଙ୍କ ହସ୍ତରେ ପ୍ରତ୍ୟର୍ପଣ କରିବା ପାଇଁ ଯେଉଁ ସୁପରାମର୍ଶ ଦେଇଥିଲା, ତାହା ଏଠାରେ ସ୍ମରଣୀୟ । ଏହା ଅତି ରୋଚକ ଭାବରେ ରାମାୟଣରେ (୬।୬।୧୪-୧୬) ବର୍ଣ୍ଣିତ । ଠିକ୍ ଏହି ଅବସରରେ ମହୋଦର ନାମକ ଆଉ ଜଣେ ରାକ୍ଷସ ରାବଣକୁ ଧର୍ମ, ଅର୍ଥ, କାମ ମୋକ୍ଷ ଏହି ଚତୁର୍ବର୍ଗ ଫଳ ସମ୍ପର୍କରେ ବୁଝାଇଥିଲା ଏବଂ ସୀତାଙ୍କୁ ଫେରାଇ ଦେବା ପାଇଁ ପରାମର୍ଶ ଦେଇଥିଲା । (୨୮) ରାବଣର କନିଷ୍ଠ ପୁତ୍ର ଅତିକାୟ ସମ୍ପର୍କରେ ରାମାୟଣରେ କୁହାଯାଇଛି (୬।୨୧।୨୯) ଯେ ସେ ଥିଲା ଖୁବ୍ ଜ୍ଞାନୀ, ବୃଦ୍ଧ ବ୍ୟକ୍ତିଙ୍କ ପ୍ରତି ସେବାନିଷ୍ଠ, ବେଦଜ୍ଞ, ସବଂଶସ୍ତ୍ର ପ୍ରୟୋଗରେ କୁଶଳ, ସୁଯୋଗ୍ୟ ଅଶ୍ୱାରୋହୀ ତଥା ଗଜାରୋହୀ, ପ୍ରବୀଣ ଧନୁର୍ଦ୍ଧର ଏବଂ ରାଜନୀତି ତଥା କୂଟନୀତିରେ ପାରଙ୍ଗମ । ଏଥିରୁ ରାକ୍ଷସମାନେ ଯେ ଏକ ବୁଦ୍ଧିଜୀବୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ ତାହାର ଯଥେଷ୍ଟ ସୂଚନା ଆମକୁ ମିଳୁଛି ।

ତା' ପରେ ଆର୍ଯ୍ୟ-ରାକ୍ଷସ ପାରସ୍ପରିକ ବିବାହ କଥା ବିଚାର୍ଯ୍ୟ । ରାବଣ ସୀତାଙ୍କୁ ବିବାହ କରିବା ପାଇଁ ଯେତେବେଳେ ପ୍ରସ୍ତାବ ଆଣିଦେଇଥିଲା,

ସୀତା ତାହାଙ୍କୁ ମୂଳେ ମୂଳେ ପ୍ରତ୍ୟାଖ୍ୟାନ କରିଦେଇଥିଲେ ଏବଂ କହିଥିଲେ ଯେ ମନୁଷ୍ୟ ଓ ରାକ୍ଷସମାନଙ୍କ ମଧ୍ୟରେ ବିବାହ ଅସମ୍ଭବ । 'ମନୁଷ୍ୟ' ଅର୍ଥ ଏଠାରେ 'ଆର୍ଯ୍ୟ ମନୁଷ୍ୟ' ବୋଲି ବୁଝିବାକୁ ହେବ । ଏଥିରୁ ଏହି ସୂଚନା ମିଳୁଛି ଯେ ଆର୍ଯ୍ୟ-ରାକ୍ଷସ ବିବାହ ସାଧାରଣ ଭାବରେ ଥିଲା ଅସମ୍ଭବ । କିନ୍ତୁ କେତେକ ଅସାଧାରଣ ପରିସ୍ଥିତିରେ ଏହା ସମ୍ପନ୍ନ ହୋଇଥିବାର ପ୍ରମାଣ ଆମେ ରାମାୟଣରେ ପାଇଥାଉଁ । ରାବଣ ଅନେକ ଆର୍ଯ୍ୟ ରାଜକନ୍ୟାଙ୍କୁ ବଳପୂର୍ବକ ଅପହରଣ କରି ଆଣି ସେମାନଙ୍କୁ ବିବାହ କରିଥିଲା । କୈକସୀ ଥିଲା ରାକ୍ଷସୀ । ସେ ଆର୍ଯ୍ୟ ଋଷି ବିଶ୍ରବାଙ୍କୁ ପତିରୂପରେ ବରଣ କରିଥିଲା । ଏଭଳି ବିବାହ ଆଦୌ ସଂଘଟିତ ହେଉ ନଥିଲେ ସୂର୍ପଣଖା ରାମ ଓ ଲକ୍ଷ୍ମଣଙ୍କୁ ପତି ରୂପରେ ପାଇବାର କାମନା କରି ନଥାନ୍ତା ଏବଂ ରାବଣ ଆର୍ଯ୍ୟ କନ୍ୟା ବେଦବତୀଙ୍କୁ ବିବାହ କରିବା ପାଇଁ ପ୍ରସ୍ତାବ ଉପସ୍ଥାପିତ କରିନଥାନ୍ତା । ଅତଏବ, କେତେକ ଅସାଧାରଣ ପରିସ୍ଥିତିରେ ଆର୍ଯ୍ୟରାକ୍ଷସ ବିବାହ ସଂଘଟିତ ହେଉଥିଲା ବୋଲି ଆମକୁ ବିଶ୍ୱାସ କରିବାକୁ ହେବ ।

ପୂର୍ବରୁ କୁହାଯାଇଛି ଯେ ରାକ୍ଷସମାନେ ଏକ ସଭ୍ୟ ତଥା ସମୃଦ୍ଧ ଜାତି ଥିଲେ । ରାବଣର ଶାସନକାଳରେ ଏହି ସମୃଦ୍ଧି ଚରମ ସ୍ତରରେ ପହଞ୍ଚିଥିବାର ମନେହୁଏ । ତା' ରାଜ୍ୟରେ ଭୌତିକ ଐଶ୍ୱର୍ଯ୍ୟ ଭରପୁର ରହିଥିଲା; କୌଣସି ଜିନଷର ଅଭାବ ନଥିଲା । ସଙ୍ଗୀତ, ଚିତ୍ରକଳା, ନୃତ୍ୟ, ଗୀତ ଆଦି କଳାର ସମ୍ୟକ୍ ବିକାଶ ଘଟିଥିଲା । ହନୁମାନ୍ ସୀତାଙ୍କ ଅନୁସନ୍ଧାନରେ ଯାଇ ଲଙ୍କାରେ ଯଦ୍ୱା ଯାହା ଦେଖିଥିଲେ ତାହା ଅତି ରୋଚକ ଭାବରେ ରାମାୟଣରେ (୫।୧୨) ବର୍ଣ୍ଣିତ । ଅବଶ୍ୟ ଏଥିରେ କିଛିଟା କାବ୍ୟିକ ଅତିରଞ୍ଜନ ଥାଇପାରେ, କଳ୍ପନାର ବିଳାସ ଥାଇପାରେ । କିନ୍ତୁ ମୂଳତଃ ଲଙ୍କା ଯେ ଥିଲା ଏକ ସମୃଦ୍ଧ ନଗରୀ ଏଥିରେ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ହନୁମାନ୍ ସେଠାରେ ନାଗରିକମାନଙ୍କ ଆମୋଦ-ପ୍ରମୋଦ ଲାଗି ଚିତ୍ରଗୃହ, ନିଶାଗୃହ, ଲତାଗୃହ, କ୍ରୀଡ଼ାଗୃହ, ପୁଷ୍ପଗୃହ ଓ ଆପାନଶାଳା (ମଧୁଶାଳା ବା ପାନଗୃହ) ଆଦି ଦେଖିବାକୁ ପାଇଥିଲେ । ଲଙ୍କାରେ କିପରି ଭାବରେ ସଙ୍ଗୀତଚର୍ଚ୍ଚା ହେଉଥିଲା, ତାହାର ବର୍ଣ୍ଣନା ମଧ୍ୟ ଆମେ ରାମାୟଣରେ (୫।୪।୧୦) ଦେଖିବାକୁ ପାଇଥାଉଁ । ତତ୍ସମ୍ପର୍କରେ କୁହାଯାଇଛି :

ଶୁଶ୍ରାବ ରୁଚିରଂ ଗୀତଂ ତ୍ରିସ୍ଥାନସ୍ୱରଭୂଷିତମ୍ ।

ଅର୍ଥାତ୍ ସେ (ହନୁମାନ୍) ହୃଦୟ, କଣ୍ଠ ଓ ମୂର୍ଦ୍ଧା ଏହି ତିନି ସ୍ଥାନରୁ ଉଦ୍‌ଗତ ହେଉଥିବା ମଧୁର ଗୀତର ଝଙ୍କାର ଶୁଣିବାକୁ ପାଇଲେ । ଏଥିରୁ ଏହି ସୂଚନା ମିଳୁଛି ଯେ ଲଙ୍କାର ସଙ୍ଗୀତଜ୍ଞମାନେ ନାନା ପ୍ରକାର ସ୍ୱରରେ ସଙ୍ଗୀତ ପରିବେଷଣ କରିବାର କୁଶଳତା ହାସଲ କରିଥିଲେ । ରାକ୍ଷସମାନଙ୍କ ରାଜଧାନୀର ନିର୍ମାଣ କୌଶଳ ତଥା ସେମାନଙ୍କ ମଧ୍ୟରେ ଥିବା କଳାପ୍ରବଣତା ଉପରେ ମନ୍ତବ୍ୟ ଦେବାକୁ ଯାଇ ଶର୍ମା ଯାହା କହିଛନ୍ତି ତାହା ଏଠାରେ ଉଲ୍ଲେଖନୀୟ । ତାଙ୍କ ଭାଷାରେ :

> The general description of their town, particularly of their royal palace is a sure evidence of the high architectural skill of the Rakshasas. One can gather a similar impression about dance, music and painting among them from the graphic picture of the sala of Ravana's harem. (୨୯)

ରାବଣର ବୈଭବ ଦେଖି ହନୁମାନ୍ ଏପରି ବିସ୍ମୟାଭିଭୂତ ହୋଇଯାଇଥିଲେ ଯେ ତାଙ୍କୁ ସ୍ୱର୍ଗପୁରୀରେ ବିଚରଣ କଲାଭଳି ଲାଗିଥିଲା । ତା'ର ଅନ୍ତଃପୁର-ଲଳନାମାନଙ୍କ ସମ୍ପର୍କରେ ତାଙ୍କର ଧାରଣା ହେଲା ଯେ ସେମାନେ ପୂର୍ବ-ଜନ୍ମରେ କିଛି ବିଶେଷ ପୁଣ୍ୟ କରିଥିବାରୁ ଏବେ ସ୍ୱର୍ଗପୁରୀରେ ଆସି ସୁଖମୟ ଜୀବନ ବିତାଉଛନ୍ତି ।

ଉପରୋକ୍ତ ଜନପଦଗୁଡ଼ିକ ବ୍ୟତୀତ ଲଙ୍କାରେ ଆଉ କ'ଣ କ'ଣ ସମୃଦ୍ଧି ଥିଲା, ସେ ସମ୍ପର୍କରେ ଏଠାରେ ସାମାନ୍ୟ କିଛିଟା ଆଲୋକପାତ କରିବା ଆବଶ୍ୟକ । ଲଙ୍କାପୁରୀର ଅବସ୍ଥିତି ଥିଲା ତ୍ରିକୂଟ ପର୍ବତର ଶିଖରଦେଶରେ । ତହିଁରେ ଥିବା ରାବଣର ରାଜପ୍ରାସାଦ ଆଉ ଗୋଟିଏ ପର୍ବତ ଉପରେ ନିର୍ମିତ ହୋଇଥିଲା । ତାହାର ଚତୁଃପାର୍ଶ୍ୱରେ ଯେଉଁ ପ୍ରାଚୀର ଥିଲା, ତାହା ଥିଲା ସୁନାରେ ତିଆରି ଏବଂ ତାହା ସୂର୍ଯ୍ୟଙ୍କ ଭଳି ଝଟକୁ-ଥିଲା । ସେହି ପ୍ରାଚୀରକୁ ଭୟାନକ ରାକ୍ଷସମାନେ ରକ୍ଷା କରୁଥିଲେ । ରାବଣର ରାଜପ୍ରାସାଦଟି ରୂପାରେ ତିଆରି ହୋଇଥିବା ବିଭିନ୍ନ ଚିତ୍ର, ସୁନାର ଦ୍ୱାର, ସୁନ୍ଦର ପ୍ରାଙ୍ଗଣ ଓ ରୁଚିର ଅନ୍ତର୍ଦ୍ୱାର ଦ୍ୱାରା ସୁଶୋଭିତ ଥିଲା । ଯୁଦ୍ଧୋପଯୋଗୀ ରଥ ଓ ଅନ୍ୟାନ୍ୟ ବାହନମାନଙ୍କର ଗମନାଗମନ ଲାଗି ତହିଁରେ ସୁନ୍ଦର ଓ ପ୍ରଶସ୍ତ ଦ୍ୱାରମାନ ଥିଲା । ତାହା ଥିଲା ମନ୍ଦର ପର୍ବତ ସମାନ ଉଚ୍ଚ ଏବଂ ତହିଁରେ ନାନା ପ୍ରକାର ଧନରତ୍ନ, ମଣିମୁକ୍ତା ଆଦି

ଭରପୂର ଥିଲା । ତାହା ଥିଲା ରାଜୋଚିତ ସାମଗ୍ରୀସମୂହରେ ପରିପୂର୍ଣ୍ଣ । ସେଠାକାର ସୁନ୍ଦରୀ ରମଣୀମାନଙ୍କ ନୂପୁର ଓ କାଞ୍ଚୀର ଶବ୍ଦରେ ତାହା ନିରନ୍ତ ମୁଖରିତ ହୋଇଉଠୁଥିଲା । ସେଥିରେ ଅନେକଗୁଡ଼ିଏ ଅଟ୍ଟାଳିକା ଥିଲା । ଝରକାଗୁଡ଼ିକ ଥିଲା ବୈଦୂର୍ଯ୍ୟ ଓ ସୁବର୍ଣ୍ଣରେ ମଣ୍ଡିତ । ତାହା ଭିତରେ ନାନା ପ୍ରକାର ଗୃହପାଳିତ ପକ୍ଷୀ ଥିଲେ ଏବଂ ସେମାନଙ୍କ ଭବ୍ୟ କଳରବରେ ତାହା ସତତ ମୁଖରିତ ହୋଇଉଠୁଥିଲା । ପର୍ବତୋପମ ସେହି ପ୍ରାସାଦରେ ଅନେକଗୁଡ଼ିଏ ମଣ୍ଡପ ଥିଲା । ସେଗୁଡ଼ିକ ଆକାରରେ ଥିଲା ବିଶାଳ ଏବଂ ଦେଖିବାକୁ ସୁନ୍ଦର । ପ୍ରାସାଦର ବହିର୍ଭାଗରେ ସୈନିକ ଓ ବିଖ୍ୟାତ ବୀରମାନଙ୍କ ଲାଗି ଭବନମାନ ନିର୍ମିତ ହୋଇଥିଲା । ତାହା ସବୁ ବିଭିନ୍ନ ସାମରିକ ସାଧନ ତଥା ଧନରତ୍ନରେ ଭରପୂର ଥିଲା । ତାହା ମଧ୍ୟରେ ଅନେକ ଉପବନ ଥିଲା । ସେହି ଉପବନଗୁଡ଼ିକ ବିଭିନ୍ନ କଳାତ୍ମକ ଶୈଳୀରେ ସଜ୍ଜିତ ହୋଇଥିଲା । ତାହା ଭିତରେ ଥିବା କ୍ରୀଡ଼ା-ପର୍ବତ, କ୍ରୀଡ଼ା-କୁଞ୍ଜ ଓ କ୍ରୀଡ଼ା-ସରୋବର ଅତି ଆକର୍ଷଣୀୟ ଥିଲା ।

ରାବଣର ଶୟନକକ୍ଷ ଥିଲା ଅତି ସୁନ୍ଦର, ଅତି ମନୋରମ । ତାହା ଥିଲା ସ୍ୱଚ୍ଛ ଓ ବିଶାଳ । ତାହାର ପାହାଚଗୁଡ଼ିକ ଥିଲା ମଣିଜଡ଼ିତ, ସ୍ତମ୍ଭଗୁଡ଼ିକ ଥିଲା ରତ୍ନଜଡ଼ିତ ଏବଂ ଚଟାଣ ଥିଲା ସ୍ଫଟିକନିର୍ମିତ । ହାତୀଦାନ୍ତରେ ନିର୍ମିତ ବିଭିନ୍ନ ନାରୀମୂର୍ତ୍ତି ଦ୍ୱାରା ତାହା ଥିଲା ସୁଶୋଭିତ । ସେଥିରେ ଅନେକଗୁଡ଼ିଏ କୋଠରୀ ଥିଲା । ସବୁ କୋଠରୀରୁ ଅଗୁରୁ ଗନ୍ଧର ମହକ ଛୁଟି ଆସୁଥିଲା ଏବଂ ସବୁ କୋଠରୀ ଥିଲା ଧନରତ୍ନରେ ଭରପୂର । ତାହା ନିକଟରେ ରାବଣର ଅଶୋକବନ ଥିଲା ଯାହାକି ଥିଲା ନନ୍ଦନବନ ସମାନ ଅତୀବ ମନୋରମ ତଥା ଆକର୍ଷଣୀୟ । ରାମାୟଣରେ ଏହି ବନକୁ 'ନେତ୍ରମନଃକାନ୍ତମ୍' ବୋଲି ବର୍ଣ୍ଣନା କରାଯାଇଛି । ଏହାର ତାତ୍ପର୍ଯ୍ୟ ହେଲା, ଏହା ଆଖିକୁ ସୁନ୍ଦର ଦିଶୁଥିଲା ଏବଂ ମନକୁ ମୋହି ଦେଉଥିଲା । ରାବଣର ଯେଉଁ ପୁଷ୍ପକଯାନଟି ଥିଲା ତାହାର ଗତି ଥିଲା ଅବାଧ । ମନ ଇଚ୍ଛିବା ମତେ ତାହା ସେହି ସ୍ଥାନକୁ ଆରୋହୀଙ୍କୁ ନେଇଯାଉଥିଲା । ତାହା ମଧ୍ୟ ଥିଲା ବିଭିନ୍ନ ରତ୍ନ ଓ ମଣିଦ୍ୱାରା ବିମଣ୍ଡିତ । ଏହିପରି ଭାବରେ ଲଙ୍କାପୁରୀର ଓ ତନ୍ମଧ୍ୟରେ ଥିବା ରାବଣର ରାଜପ୍ରାସାଦର ଆହୁରି ଅନେକ ବର୍ଣ୍ଣନା ରାମାୟଣରେ ଦିଆଯାଇଛି । ଏଥିରୁ ରାକ୍ଷସମାନଙ୍କ ଭୌତିକ ସମୃଦ୍ଧିର ପରିଚୟ ମିଳିଥାଏ । ଶର୍ମା ଲଙ୍କାର ସମୃଦ୍ଧି ବର୍ଣ୍ଣନା କରିବା ପ୍ରସଙ୍ଗରେ ଯେଉଁ ନିମ୍ନଲିଖିତ ମନ୍ତବ୍ୟ ଦେଇଛନ୍ତି ତାହା ଏଠାରେ ଯଥାର୍ଥରେ ପ୍ରଣିଧାନଯୋଗ୍ୟ :

> The abundance of gold, silver and other jewels, such as saphire, coral, pearl, diamond, and ruby in the descriptions of the town Lanka gives, in a way, the popular imagination every right to hold that the town was all made up of gold. (୩୦)

ବାସ୍ତବରେ ଏହା ହେଉଛି ସ୍ୱର୍ଣ୍ଣଲଙ୍କାର ଏକ ଭବ୍ୟ ଚିତ୍ର ।

ରାକ୍ଷସମାନଙ୍କ ମଧ୍ୟରେ ଶବକୁ କବର ଦେବାର ପଦ୍ଧତି ପ୍ରଚଳିତ ଥିଲା । କବନ୍ଧର ମୃତ୍ୟୁ ପରେ ରାମ ଲକ୍ଷ୍ମଣ ତାହାର ଶବକୁ ଗୋଟିଏ ଖାତ ଖୋଳି ତାହା ଭିତରେ କବର ଦେଇଥିଲେ । ରାବଣର ମୃତ୍ୟୁ ପରେ ତାହାର ଶବକୁ କବର ଦେବାର ପ୍ରସ୍ତାବ ଉଠିଥିଲା । ସ୍ୱୟଂ ବିଭୀଷଣ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ । ରାମ କିନ୍ତୁ ଏହାକୁ ସମର୍ଥନ କରିନଥିଲେ । ସେ ଆର୍ଯ୍ୟରୀତିରେ ତା'ର ଶବସଂସ୍କାର କରାଇଥିଲେ । ରାମଙ୍କ ଉଦ୍ଦେଶ୍ୟ ଥିଲା ରାକ୍ଷସମାନଙ୍କୁ ଆର୍ଯ୍ୟସଂସ୍କୃତିରେ ଦୀକ୍ଷିତ କରାଇବା । ସେହି ଲକ୍ଷ୍ୟକୁ ଚରିତାର୍ଥ କରିବାକୁ ଯାଇ ସେ ଯଥାର୍ଥରେ ରାବଣର ଶବସଂସ୍କାର କରାଇଥିଲେ । ସେହିଦିନୁ ରାକ୍ଷସମାନେ ଶବସଂସ୍କାର ପଦ୍ଧତିକୁ ଅନୁସରଣ କରିବାକୁ ଲାଗିଲେ ।

ରାକ୍ଷସମାନଙ୍କର ସୈନ୍ୟ-ସଂଗଠନ ଆର୍ଯ୍ୟମାନଙ୍କର ସୈନ୍ୟ-ସଂଗଠନ ଭଳି ନିର୍ଦ୍ଦିଷ୍ଟ ନୀତି-ନିୟମକୁ ଅନୁସରଣ କରୁଥିଲା । ଆର୍ଯ୍ୟରୀତିରେ ଶତ୍ରୁକୁ ପଦାନତ କରିବାପାଇଁ ଆର୍ଯ୍ୟମାନଙ୍କ ଭଳି ସେମାନେ ମଧ୍ୟ ସାମ, ଦାନ, ଦଣ୍ଡ ଓ ଭେଦନୀତିର ଆଶ୍ରୟ ନେଉଥିଲେ । ଆବଶ୍ୟକ ସ୍ଥଳରେ ସେମାନେ ଯୁଦ୍ଧ କରୁଥିଲେ କିମ୍ବା ସନ୍ଧି କରୁଥିଲେ । ରାବଣ ତା'ଠାରୁ ଦୁର୍ବଳତର ଶତ୍ରୁମାନଙ୍କୁ ଯୁଦ୍ଧରେ ପରାସ୍ତ କରି ପଦାନତ କରିଥିବା ବେଳେ ତା'ଠାରୁ ଅଧିକତର ବଳବାନ୍ ଶତ୍ରୁମାନଙ୍କ ସହିତ ସନ୍ଧି-ସ୍ଥାପନ କରିଥିଲା । ବାନରରାଜ ବାଲୀ ଓ ହୈହୟରାଜ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ସହିତ ସନ୍ଧିସ୍ଥାପନ ମୂଳରେ ରାବଣର ଏହି ଲକ୍ଷ୍ୟ ସାଧିତ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ରାମଙ୍କ ବଳବିକ୍ରମ ବିଷୟରେ ତା'ର ଭ୍ରମ ଧାରଣା ରହିଥିଲା । ତେଣୁ ସେ ତାଙ୍କ ସହିତ ସନ୍ଧି ନକରି ଯୁଦ୍ଧ କରିବାପାଇଁ ଆଗେଇ ଆସିଥିଲା । କୁମ୍ଭକର୍ଣ୍ଣ କିନ୍ତୁ ରାମଙ୍କ ବଳବିକ୍ରମ ବିଷୟରେ ଅବଗତ ଥିଲା ଏବଂ ସୀତାଙ୍କୁ ଅପହରଣ କରିବାଦ୍ୱାରା ଯେଉଁ ମହାପାପ ହୋଇଛି, ତା'ର ଫଳ ନିଶ୍ଚିତ ଭାବରେ ରାବଣକୁ ଭୋଗିବାକୁ ପଡ଼ିବ ବୋଲି ମନେ ମନେ ଆଶଙ୍କା ଆଣୁଥିଲା । ସେ ତେଣୁ ରାବଣକୁ ରାମଙ୍କ ସହିତ ସନ୍ଧି-ସ୍ଥାପନ କରିବାପାଇଁ ବାରମ୍ବାର ଉପଦେଶ ଦେଇଆସୁଥିଲା । ତା'ର ଏହି

ଉପଦେଶ ବାଣୀ ରାମାୟଣରେ (୬ । ୬୩ । ୫-୧୬) ଅତି ରୋଚକ ଭାବରେ ବର୍ଣ୍ଣିତ । ବିଭୀଷଣ ମଧ୍ୟ ରାମଙ୍କ ଶକ୍ତି ବିଷୟରେ ସମ୍ପୂର୍ଣ୍ଣ ରୂପେ ଅବହିତ ଥାଇ ରାବଣଙ୍କୁ ରାମଙ୍କ ସହିତ ସନ୍ଧି-ସ୍ଥାପନ ଲାଗି ଖୁବ୍ ପ୍ରବର୍ତ୍ତାଇଥିଲେ । କିନ୍ତୁ ରାବଣ କାହାରି କଥା ଶୁଣିନଥିଲା । ଶେଷକୁ କୁମ୍ଭକର୍ଣ୍ଣ ବାଧ୍ୟ ହୋଇ ରାମଙ୍କ ସହିତ ଯୁଦ୍ଧରତ ହୋଇ ଫଳରେ ମୃତ୍ୟୁ-ବରଣ କଲା । ବିଭୀଷଣ ମଧ୍ୟ ରାବଣପକ୍ଷ ତ୍ୟାଗ କରି ରାମଙ୍କ ଶରଣ ପଶିଲେ ।

ଆର୍ଯ୍ୟମାନଙ୍କ ଯୁଦ୍ଧନୀତି ଏବଂ ରାକ୍ଷସମାନଙ୍କ ଯୁଦ୍ଧନୀତି ମଧ୍ୟରେ ଏକ ମୌଳିକ ପ୍ରଭେଦ ବିଦ୍ୟମାନ ଥିଲା । ଏହାକୁ ସ୍ପଷ୍ଟ କରିଦେବାକୁ ଯାଇ ବ୍ୟାସ ଯଥାର୍ଥରେ କୁହନ୍ତି :

> ଜହାଂ ଆର୍ଯ୍ୟ ଲୋଗ ଯୁଦ୍ଧ ମେଂ ଉଚିତ ଔର୍ ନିଷ୍କପଟ ସାଧନୋଂ କା ସହାରା ଲେତେ ଥେ, ଓ୍ୱହାଂ ରାକ୍ଷସ ଶବ୍ଦ କୋ ପରାସ୍ତ କରନେ ମେଂ ଧୋଖେଧଡ଼ୀ କା ଆଶ୍ରୟ ଲେନେ କେ ଲିଏ କୁଖ୍ୟାତ ଥେ । (୩୧)

ଯେ କୌଣସି ମତେ ଲକ୍ଷ୍ୟକୁ ହାସଲ କରିବା ଥିଲା ରାକ୍ଷସମାନଙ୍କର ରଣକୌଶଳ । ସେଥିରେ ନୀତି-ଅନୀତିର ପ୍ରଶ୍ନ ହିଁ ଉଠୁନଥିଲା । ସେମାନେ କୂଟଯୁଦ୍ଧ କରୁଥିଲେ ଯାହା କି ଆର୍ଯ୍ୟମାନଙ୍କ ପକ୍ଷରେ ଥିଲା ନିନ୍ଦନୀୟ । ସେମାନଙ୍କୁ ତେଣୁ ରାମାୟଣରେ (୬ । ୫୦ । ୧୫) 'କୂଟଯୋଧିନଃ' (କୂଟ-ଯୁଦ୍ଧ କରୁଥିବା ବ୍ୟକ୍ତିସମୂହ) ବୋଲି କୁହାଯାଇଛି । ରାବଣ, ଇନ୍ଦ୍ରଜିତ୍ ଆଦି ରାକ୍ଷସମାନେ ଛଳଯୁଦ୍ଧ କରିବାରେ ଥିଲେ ଅତି ପ୍ରବୀଣ । ଲଙ୍କା-ଯୁଦ୍ଧର ବର୍ଣ୍ଣନ ପ୍ରସଙ୍ଗରେ ରାକ୍ଷସମାନଙ୍କଦ୍ୱାରା କପଟ-ଯୁଦ୍ଧ ସଂଘଟିତ ହୋଇଥିବାର ଅନେକ ଉଦାହରଣ ଆମେ ଦେଖିବାକୁ ପାଇଥାଉଁ ।

ରାକ୍ଷସମାନଙ୍କର ଯୁଦ୍ଧରେ ସୈନ୍ୟ-ଚାଳନା ଏକ ସୁନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅନୁସାରେ କରାଯାଉଥିବାର ପ୍ରମାଣ ରାମାୟଣର ଅଧ୍ୟୟନରୁ ମିଳିଥାଏ । ରାବଣର ମଧ୍ୟ ଆର୍ଯ୍ୟମାନଙ୍କ ଭଳି ଚତୁରଙ୍ଗ ସେନା (ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ ଓ ପଦାତିକ) ଥିଲା । ସେହି ସେନାର ଅଧ୍ୟକ୍ଷଙ୍କୁ କୁହାଯାଉଥିଲା ସେନାପତି । ତାଙ୍କ ଅଧୀନରେ ଅନେକ ବଳାଧ୍ୟକ୍ଷ ଥିଲେ । ଲଙ୍କାଦୁର୍ଗର ଫାଟକଗୁଡ଼ିକରେ କଡ଼ା ପହରାର ବ୍ୟବସ୍ଥା କରାଯାଇଥିଲା । ଦୁର୍ଗ ମଧ୍ୟରେ କେତେଗୁଡ଼ିଏ ଗୁପ୍ତଗୃହ ଥିଲା । ସେଗୁଡ଼ିକୁ କୁହାଯାଇଥିଲା 'କୂଟାଗାର' । ସମ୍ଭବତଃ ଭୂଗର୍ଭରେ ସୈନ୍ୟମାନଙ୍କୁ ତଥା ଅସ୍ତ୍ରଶସ୍ତ୍ରଗୁଡ଼ିକୁ ଲୁଚାଇ ରଖିବା ଉଦ୍ଦେଶ୍ୟରେ ଏଗୁଡ଼ିକ ନିର୍ମିତ ହୋଇଥିଲା । ଲଙ୍କା ଯୁଦ୍ଧରେ ରାମଙ୍କ ପକ୍ଷରୁ ପ୍ରଥମେ ଲଙ୍କାଦୁର୍ଗ ଉପରେ ଆକ୍ରମଣ

ହୋଇଥିଲା । ରାବଣ ଏହା ଜାଣିବା ମାତ୍ରେ ତା'ର କର୍ତ୍ତବ୍ୟ ସ୍ଥିର କରି ନେଇଥିଲା । ସେ ସେନାପତିଙ୍କୁ ଡ଼ାକି କହିଥିଲା :

ଶୀଘ୍ରଂ ଭେରୀନିନାଦେନ ସ୍ଫୁଟଂ କୋଣାହତେନ ମେ ।
ସମାନୟଧ୍ୱଂ ସୈନ୍ୟାନି ବକ୍ତବ୍ୟଂ ଚ ନ କାରଣମ୍ । (୩୨)

ଅର୍ଥାତ୍ ତୁମ୍ଭେମାନେ ସମସ୍ତେ ଶୀଘ୍ର ଭେରୀ-ନାଦ କରାଇ ଏବଂ ଢ଼େଙ୍ଗୁରା ପିଟାଇ ସୈନ୍ୟମାନଙ୍କୁ ଏକଜୁଟ କରାଅ, କିନ୍ତୁ ସେମାନଙ୍କୁ ଏହାର କାରଣ ବିଷୟରେ କିଛି ସୂଚନା ଦିଅନାହିଁ । ଏଥିରୁ ଜଣା ପଡ଼ୁଛି ଯେ କୌଣସି ଆକ୍ରମଣକୁ ପ୍ରତିହତ କରିବାପାଇଁ ରାକ୍ଷସମାନଙ୍କର ଶକ୍ତି, ସାହସ ତଥା ସୈନ୍ୟ-ବଳ ଯଥେଷ୍ଟ ପରିମାଣରେ ଥିଲା ଏବଂ ଅତି ସ୍ୱଳ୍ପ ସମୟ ମଧ୍ୟରେ ସେମାନେ ସେଥିପାଇଁ ପ୍ରସ୍ତୁତ ହୋଇଯାଇ ପାରୁଥିଲେ ।

ଆର୍ଯ୍ୟମାନଙ୍କ ଭଳି ରାକ୍ଷସମାନଙ୍କ ମଧ୍ୟରେ ରାଜତନ୍ତ୍ର-ଶାସନ ପ୍ରଚଳିତ ଥିଲା । ଉଭୟ ଗୋଷ୍ଠୀର ଶାସକଙ୍କୁ ରାଜା ବୋଲି କୁହାଯାଉଥିଲା । ରାଜାଙ୍କୁ ରାଜଧର୍ମ ପାଳିବାରେ ସୁପରାମର୍ଶ ଦେବାପାଇଁ ରାଜସଭା ଥିଲା । କୌଣସି ଗୋଟିଏ ସଙ୍କଟମୟ ପରିସ୍ଥିତି ଉପୁଜିଲେ ରାବଣ ତାହାର ରାଜସଭାକୁ ଆହୂତ କରୁଥିବାର ପ୍ରମାଣ ଆମେ ରାମାୟଣରେ ପାଇଥାଉଁ । ଉଭୟ ଗୋଷ୍ଠୀର ଶାସନପଦ୍ଧତିରେ ଏତେଟା ସମାନତା ଥିଲେ ମଧ୍ୟ କିଛିଟା ପୃଥକ୍‌ତା ଥିଲା । ତାହା ହେଲି :

(କ) ଆର୍ଯ୍ୟମାନଙ୍କ କ୍ଷେତ୍ରରେ ଜଣେ ରାଜାଙ୍କ ଅଧୀନରେ ଅନେକ ରାଜା ଥିଲେ । ସେ କ୍ଷେତ୍ରରେ ସେହି ରାଜାଙ୍କୁ କୁହାଯାଉଥିଲା ଚକ୍ରବର୍ତ୍ତୀ ସମ୍ରାଟ୍ । କିନ୍ତୁ ରାକ୍ଷସମାନଙ୍କ କ୍ଷେତ୍ରରେ ଜଣେ ମାତ୍ର ରାଜା ଥିଲେ ।

(ଖ) ଆର୍ଯ୍ୟମାନଙ୍କର ଅନେକ ନଗର ଥିଲି; କିନ୍ତୁ ରାକ୍ଷସମାନଙ୍କର ଗୋଟିଏ ନଗର ଥିଲା, ଯାହା କି ଥିଲା ସେମାନଙ୍କ ଦେଶର ରାଜଧାନୀ । ଉଦାହରଣ-ସ୍ୱରୂପ ରାବଣର ଲଙ୍କା ନାମକ ଗୋଟିଏ ନଗର ଥିଲା ।

(ଗ) ରାକ୍ଷସମାନଙ୍କ ସମ୍ପର୍କରେ 'ଗଣ' ଓ 'କୁଳବୃଦ୍ଧ' ଶବ୍ଦଦ୍ୱୟର ବାରମ୍ବାର ଉଲ୍ଲେଖରୁ ଜଣାଯାଏ ଯେ ସେମାନଙ୍କ ମଧ୍ୟରେ ଏକ ପ୍ରକାର ଗଣତନ୍ତ୍ର-ଶାସନ (ପୂର୍ଣ୍ଣ ଗଣତନ୍ତ୍ର କିନ୍ତୁ ନୁହେଁ) ପ୍ରଚଳିତ ଥିଲା ।

(ଘ) ରାକ୍ଷସମାନଙ୍କର ଶାସନ ଥିଲା ରାଜତନ୍ତ୍ର ଓ ଗଣତନ୍ତ୍ର ଶାସନର ଏକ ମିଶ୍ରିତ ବ୍ୟବସ୍ଥା ।

ଉପରୋକ୍ତ ଆଲୋଚନାରୁ ଆମେ ରାକ୍ଷସମାନଙ୍କର ସାମାଜିକ, ରାଜନୈତିକ, ସାଂସ୍କୃତିକ ତଥା ଧାର୍ମିକ ସ୍ଥିତି ସମ୍ପର୍କରେ ସମ୍ୟକ୍ ଜ୍ଞାନ ପାଇପାରୁ । ଆଉ ମଧ୍ୟ ସେମାନେ କିପରି ବିଭିନ୍ନ ଭୌଗିକ ସମୃଦ୍ଧିର ଅଧିକାରୀ ହୋଇ-ଉଠିଥିଲେ, ତାହାର ସୂଚନା ପାଇପାରୁ ।

**ବାନର :**

ରାକ୍ଷସମାନଙ୍କ ଅନ୍ତରକ୍ତ ଆଉ ଏକ ଆର୍ଯ୍ୟେତର ଗୋଷ୍ଠୀ ରାମାୟଣରେ ପ୍ରମୁଖ ସ୍ଥାନ ଅଧିକାର କରିଛନ୍ତି । ସେମାନେ ହେଉଛନ୍ତି ବାନର । ବାନର ଶବ୍ଦର ଅର୍ଥ ହେଉଛି ମାଙ୍କଡ଼ । ରାମାୟଣରେ ବାଲ୍ମୀକି ବାନରମାନଙ୍କ ଲାଗି 'କପି', 'ଶାଖାମୃଗ' ଆଦି ଶବ୍ଦର ବ୍ୟବହାର କରିଛନ୍ତି ଯାହାର ଅର୍ଥ ବି ହେଉଛି ମାଙ୍କଡ଼ । କିନ୍ତୁ ପ୍ରକୃତରେ ସେମାନେ ମାଙ୍କଡ଼ ନଥିଲେ । ସେମାନଙ୍କର ଆକୃତି ପ୍ରାୟ ମାଙ୍କଡ଼ର ଆକୃତି ସହିତ ମେଳ ଖାଇଯାଉଥିଲା । ଅଥବା ଏହା ହୋଇପାରେ ଯେ ସେମାନେ ନିଜ ଅଙ୍ଗରେ ବାନର-ଲାଞ୍ଛନ ଅଙ୍କିତ କରାଉଥିଲେ । ଅଥବା ଆଉ ମଧ୍ୟ ଏକଥା ହୋଇପାରେ ଯେ ବାନର ଶବ୍ଦଟିର ବନ ଶବ୍ଦ ସହିତ ସମ୍ବନ୍ଧ ଅଛି । ସେମାନେ ଏକ ବନ୍ୟଗୋଷ୍ଠୀ ଜାତି ହୋଇଥିବାରୁ ସେମାନଙ୍କୁ କୁହାଯାଉଥିଲା ବାନର । କିନ୍ତୁ ପ୍ରକୃତରେ ସେମାନେ ଥିଲେ ମନୁଷ୍ୟ ଏବଂ ଏକ ଅର୍ଯ୍ୟେତର ଗୋଷ୍ଠୀର ଅନ୍ତର୍ଭୁକ୍ତ ଯେଉଁ ଗୋଷ୍ଠୀ ଆର୍ଯ୍ୟ-ସଂସ୍କୃତି ଦ୍ୱାରା ପ୍ରଭାବାନ୍ୱିତ ହୋଇଥିଲା । ଭାରତତତ୍ତ୍ୱବିତ୍ ସି: ବଲ୍‌କ୍ ମଧ୍ୟ ଏହି ମତର ପୁଷ୍ଟି ସାଧନ କରି କହନ୍ତି ଯେ ବାନରମାନେ ହେଉଛନ୍ତି ବିନ୍ଧ୍ୟାଞ୍ଚଳର ଆଦିମ ଅଧିବାସୀ ଏବଂ ସେମାନଙ୍କ ପତାକାରେ ଅଥବା ଦେହରେ ବାନର-ଲାଞ୍ଛନ ଅଙ୍କିତ ହେଉଥିଲା । (୩୩) ବୈଦ୍ୟ ମଧ୍ୟ ଠିକ୍ ଅନୁରୂପ କଥା କହନ୍ତି । ତାଙ୍କ ମତରେ ବାନରମାନଙ୍କ ଆକୃତି ଥିଲା କପିସଦୃଶ । ତେଣୁ ବାଲ୍ମୀକି ସେମାନଙ୍କ ଉଦ୍ଦେଶ୍ୟରେ କପି-ପର୍ଯ୍ୟାୟର ଶବ୍ଦମାନ ପ୍ରୟୋଗ କରିଛନ୍ତି । ତାଙ୍କ ଭାଷାରେ :

> The Vanaras were the aborigines of the south who were called by that name from their monkeyish appearance. They were also like monkeys active, ferocious and given up to pleasure. (୩୪)

ମନ୍ମଥନାଥ ରାୟଙ୍କ ଭଳି ବିଦ୍ୱାନ୍ ବାନରମାନଙ୍କୁ ଆର୍ଯ୍ୟମାନଙ୍କର ବଂଶଧର 'ବ୍ରାତ୍ୟ' ବୋଲି କହନ୍ତି । ବ୍ରାତ୍ୟମାନେ ହେଉଛନ୍ତି ଭିନ୍ନ ମତବାଦୀ ଆର୍ଯ୍ୟ, ଯେଉଁମାନେ ମୂଳଗୋଷ୍ଠୀକୁ ପରିତ୍ୟାଗ କରି ଦକ୍ଷିଣଭାରତକୁ ଚାଲି ଆସିଥିଲେ ଏବଂ ସେଠାରେ ବହୁ ବର୍ଷ ରହିବା ଫଳରେ ସେମାନେ ମୂଳ ଆର୍ଯ୍ୟ-ସଂସ୍କୃତିକୁ ଭୁଲିଯାଇ ଅସଭ୍ୟ-ବର୍ବର ହୋଇଉଠିଥିଲେ । ରାମାୟଣ-ଯୁଗ ବେଳକୁ ସେମାନଙ୍କର ଏହି ଦଶା ଥିଲା । (୩୫) ଏହା କିନ୍ତୁ ବିଶ୍ୱାସଯୋଗ୍ୟ ନୁହେଁ । ଆର୍ଯ୍ୟମାନେ କ୍ରମେ କ୍ରମେ ସେମାନଙ୍କ ସଭ୍ୟତା ଓ ସଂସ୍କୃତିକୁ ଭାରତର ପୂର୍ବ ଓ ଦକ୍ଷିଣ ଦିଗରେ କ୍ରମେ କ୍ରମେ ବିସ୍ତାର କରିବାରେ ଲାଗିଥିଲେ । ଏହା ଅବିରତ ଭାବରେ ଚାଲିଥିଲା । ଏଣୁ ତଥାକଥିତ ବ୍ରାତ୍ୟମାନେ ନିଶ୍ଚିତ ଭାବରେ ଆର୍ଯ୍ୟ-ସଂସ୍କୃତିର ପ୍ରଭାବ-ବଳୟ ମଧ୍ୟକୁ ମଝିରେ ମଝିରେ ଆସୁଥିବେ । ଅତଏବ ସେମାନେ ସଭ୍ୟ ଜାତିରୁ ଅସଭ୍ୟ ବର୍ବର ସ୍ତରକୁ ଖସିଆସିବାର ପ୍ରଶ୍ନ ହିଁ ଉଠୁନାହିଁ । ସେମାନଙ୍କର ଯେଉଁ ଲାଙ୍ଗୁଳ ଥିବା କଥାର ଉଲ୍ଲେଖ ରାମାୟଣରେ ଅଛି, ତାହା ପ୍ରକୃତରେ ଲାଙ୍ଗୁଳ ନୁହେଁ । ତାହା ହେଉଛି ଲାଙ୍ଗୁଳ ଆକାରରେ ପରିଧାନର କିଛି ଅଂଶ ପଛକୁ ଓହଳିଥିବାର ସୂଚକ । ଏବେ ମଧ୍ୟ ଓଡ଼ିଶାର କୋରାପୁଟ ଜିଲ୍ଲାର ଏକ ନିର୍ଦ୍ଦିଷ୍ଟ ଆଦିବାସିଗୋଷ୍ଠୀ ଏହିଭଳି ପରିଧାନ ବ୍ୟବହାର କରିଥାନ୍ତି । ସେମାନେ 'ଲାଞ୍ଜିଆ ସଉରା' ନାମରେ ଖ୍ୟାତ । ଆଣ୍ଡାମାନ ଦ୍ୱୀପପୁଞ୍ଜରେ ମଧ୍ୟ ଏଭଳି ଏକ ଆଦିବାସୀ ଜାତି ଅଛନ୍ତି । ଗଙ୍ଗବଂଶର ରାଜା ଲାଙ୍ଗୁଳା ନରସିଂହ ଦେବ ମଧ୍ୟ ଏହିଭଳି ପୁଚ୍ଛ ଥିବା ପୋଷାକ ପିନ୍ଧୁଥିଲେ । ଅତଏବ, ବାନରମାନଙ୍କର ପ୍ରକୃତରେ ଲାଞ୍ଜ ନଥିଲା । ଓଡ଼ିଶାର ମୟୂରଭଞ୍ଜ କେନ୍ଦୁଝର ଅଞ୍ଚଳରେ 'ବାନର୍' ନାମଧେୟ ଏକ ଆଦିବାସିଗୋଷ୍ଠୀ ଅଛନ୍ତି । ବାଲ୍ମୀକି-ବର୍ଣ୍ଣିତ ବାନରମାନଙ୍କ ସହିତ ସେମାନଙ୍କର କିଛି ସମ୍ପର୍କ ଅଛି କି ନାହିଁ ତାହା ଗବେଷଣାସାପେକ୍ଷ । ତେଣୁ ବହୁ ପ୍ରମାଣ ଦୃଷ୍ଟେ ବାନରମାନଙ୍କୁ ଏକ ଆର୍ଯ୍ୟେତର ଜାତି ବୋଲି ଆମକୁ ଧରିବାକୁ ପଡ଼ିବ । ରାକ୍ଷସମାନଙ୍କଠାରୁ ସେମାନଙ୍କର ପାର୍ଥକ୍ୟ ହେଲା ଏହି ଯେ ସେମାନେ ବହୁ ପୂର୍ବରୁ ଆର୍ଯ୍ୟ-ସଂସ୍କୃତିର ପ୍ରଭାବ-ବଳୟ ମଧ୍ୟକୁ ଆସିଯାଇଥିଲେ ଏବଂ ରାକ୍ଷସମାନେ ତାହା ଭିତରକୁ ପରେ ଆସିଥିଲେ ।

ବାନରମାନେ ଛଦ୍ମବେଶ ଧରିବାରେ ଥିଲେ ଭାରି ପାରଙ୍ଗମ । ସେମାନେ ଇଚ୍ଛା ଅନୁସାରେ ରୂପ ଧାରଣ କରିପାରୁଥିଲେ । ତେଣୁ ସେମାନଙ୍କୁ ରାମାୟଣରେ ଠାଏ (୪ । ୧୯ । ୧୦) 'କାମରୂପିଣଃ' (ଇଚ୍ଛାନୁସାରେ ରୂପ ଧରିପାରୁଥିବା ବ୍ୟକ୍ତିସମୂହ) ବୋଲି ଚର୍ଚ୍ଚିତ କରାଯାଇଛି । ରାମାୟଣରେ

(୧ । ୧୭ । ୨-୪) ବାଲ୍ମୀକି ସେମାନଙ୍କ ବହୁବିଧ ଗୁଣର ପ୍ରଶଂସା କରିଛନ୍ତି । ତାଙ୍କ ବକ୍ତବ୍ୟ ଅନୁସାରେ :

କ) ସେମାନେ ଥିଲେ ଖୁବ୍ ବଳବାନ୍;
ଖ) ସେମାନଙ୍କୁ ମାୟା-ବିଦ୍ୟା ଭଲ ଜଣା ଥିଲା;
ଗ) ସେମାନେ ଥିଲେ ଶୂର-ବୀର;
ଘ) ସେମାନଙ୍କ ଗତି ଥିଲା ପବନର ଗତି ସହିତ ସମାନ;
ଙ) ସେମାନେ ଥିଲେ ନୀତିଜ୍ଞ;
ଚ) ସେମାନେ ଥିଲେ ବୁଦ୍ଧିମାନ୍;
ଛ) ସେମାନେ ଥିଲେ ବିଷ୍ଣୁଙ୍କ ଭଳି ପ୍ରବଳ ପରାକ୍ରମୀ;
ଜ) କେହି ସେମାନଙ୍କୁ ପରାସ୍ତ କରିପାରୁନଥିଲେ;
ଝ) ବିଭିନ୍ନ ଉପାୟମାନ ସେମାନଙ୍କୁ ଜଣା ଥିଲା; ଏବଂ
ଞ) ସକଳ ପ୍ରକାର ଦିବ୍ୟାସ୍ତ୍ରର ପ୍ରୟୋଗ ସେମାନଙ୍କୁ ଜଣା ଥିଲା ।

ଏଥିରୁ ଜଣାପଡ଼ୁଛି ଯେ ସେମାନେ ମୂଳତଃ ଆର୍ଯ୍ୟେତର ଗୋଷ୍ଠୀର ଥିଲେ ହେଁ ଆର୍ଯ୍ୟସଂସ୍କୃତି ଦ୍ୱାରା ପ୍ରଭାବିତ ହେବା ଫଳରେ ଏକ ସଭ୍ୟ ତଥା ବୀର ଜାତି ରୂପରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ ଏବଂ ବହୁ ସଦ୍‌ଗୁଣର ଅଧିକାରୀ ହୋଇପାରିଥିଲେ ।

କିଷ୍କିନ୍ଧାରେ ଥିବା ବାନରମାନଙ୍କର ଆକୃତି ବିଷୟରେ ରାମାୟଣରେ ଠାଏ ବର୍ଣ୍ଣନା କରାଯାଇଛି । ଏହି ଅନୁକ୍ରମରେ କୁହାଯାଇଛି :

ନଖଦଂଷ୍ଟ୍ରାୟୁଧାଃ ସର୍ବେ ବୀରା ବିକୃତଦର୍ଶନାଃ ।
ସର୍ବେ ଶାର୍ଦ୍ଦୂଳଦଂଷ୍ଟ୍ରାଶ୍ଚ ସର୍ବେ ବିକୃତଦର୍ଶନାଃ ।। (୩୬)

ଅର୍ଥାତ୍ ସେମାନେ ସମସ୍ତେ ଥିଲେ ବୀର ପୁରୁଷ । ନଖ ଓ ଦାନ୍ତ ହିଁ ଥିଲା ସେମାନଙ୍କ ଅସ୍ତ୍ର । ସେମାନେ ଭାରି ବିକଟାଳ ଦେଖାଯାଉଥିଲେ । ସେମାନଙ୍କ ସମସ୍ତଙ୍କ ଦାନ୍ତ ଥିଲା ବାଘର ଦାନ୍ତ ସମାନ । ସେମାନଙ୍କ ସମସ୍ତଙ୍କ ଆଖି ଖୋଲା ଥିଲା । ବାନରମାନେ ଯେ ଅନ୍ୟ ଅସ୍ତ୍ରର ବ୍ୟବହାର ଜାଣିନଥିଲେ ତାହା ନୁହେଁ । ସକଳ ଦିବ୍ୟାସ୍ତ୍ର ବିଷୟରେ ସେମାନଙ୍କର ଜ୍ଞାନ ଥିଲା ବୋଲି ତ ପୂର୍ବରୁ କୁହାଯାଇଛି । କିନ୍ତୁ ସ୍ୱୀୟ ନଖ ଓ ଦାନ୍ତ ଥିଲା ସେମାନଙ୍କର ପ୍ରଧାନ ଆୟୁଧ । ଏହି ଆୟୁଧଦ୍ୱାରା ସେମାନେ ସବୁ କିଛି ଲକ୍ଷ୍ୟ ହାସଲ କରିପାରୁଥିଲେ । ସେମାନଙ୍କ ଦେହର ରଙ୍ଗ ଥିଲା ସୁନା ଭଳି । ରାମାୟଣରେ (୪ । ୧୫ । ୩) ବାଲୀଙ୍କୁ 'କନକପ୍ରଭଃ' (ସୁନା ରଙ୍ଗର)

ବୋଲି କୁହାଯାଇଛି । ପୁନଶ୍ଚ ସୁଗ୍ରୀବଙ୍କ ଦେହର ରଙ୍ଗ ପ୍ରସଙ୍ଗରେ ଆଉ ଠାଏ (୪ । ୧୪ । ୧୯) କୁହାଯାଇଛି ଯେ ସେ ଥିଲେ 'ହେମପିଙ୍ଗଳଃ' (ସୁନା ଭଳି ପିଙ୍ଗଳ ରଙ୍ଗବିଶିଷ୍ଟ) । ଆଉ ଠାଏ (୬ । ୪୨ । ୧୪) ଯୁଦ୍ଧରତ ବାନରମାନଙ୍କୁ 'ତାମ୍ରବଦନାଃ' ବୋଲି କୁହାଯାଇଛି । ଏହାର ତାତ୍ପର୍ଯ୍ୟ ହେଲା ସେମାନଙ୍କ ମୁହଁ ଟିମାନ ଥିଲା ତମ୍ବା ଭଳି ଲାଲ ରଙ୍ଗର । ପୁନଶ୍ଚ ସେହି ଶ୍ଳୋକରେ ସେମାନଙ୍କୁ 'ହେମାଭାଃ' (ସୁନା ରଙ୍ଗର) ବୋଲି ମଧ୍ୟ କୁହାଯାଇଛି । ଏଠାରେ ଲକ୍ଷ୍ୟ କରିବାର କଥା ଯେ ରାକ୍ଷସମାନଙ୍କ ଦେହର ରଙ୍ଗ କଳା ଥିଲାବେଳେ ବାନରମାନଙ୍କ ଦେହର ରଙ୍ଗ ଥିଲା ସୁନା ଭଳି ହଳଦିଆ ।

ବାନରମାନଙ୍କ ମାନସିକ ସ୍ଥିତି ବିଷୟରେ ମଧ୍ୟ ବର୍ଣ୍ଣନା ରାମାୟଣରେ ଦେଖିବାକୁ ମିଳିଥାଏ । ସେମାନଙ୍କୁ ଅନେକତ୍ର 'ଚପଳମତି' ବୋଲି କୁହାଯାଇଛି । ଏହି ଚପଳତା ଥିଲା ସେମାନଙ୍କର ଏକ ସ୍ୱାଭାବିକ ଗୁଣ । ଶର୍ମାଙ୍କ ଭାଷାରେ :

> Inconsistency and ficklemindedness are stated to be the outstanding characteristics of their nature. (୩୭)

ରାମାୟଣରେ ଠାଏ (୬। ୫୭ । ୯) ସ୍ପଷ୍ଟ ଭାବରେ କୁହାଯାଇଛି ଯେ ବାନରମାନେ ଥିଲେ 'ଚପଳଚିତ୍ତାଃ' (ଚପଳଚିତ୍ତବିଶିଷ୍ଟ) ଏବଂ 'ଅବିନୀତାଃ, (ଉଦ୍ଧତ) । ରାମ ନିର୍ଦ୍ଦିଷ୍ଟ ସମୟରେ ଅଯୋଧ୍ୟାକୁ ଫେରିବେ ବୋଲି ହନୁମାନ୍ ଭରତଙ୍କୁ କଥା ଦେଇଥିଲେ । କିନ୍ତୁ ସେହି ସମୟରେ ସେ ନଫେରିବାରୁ ଭରତ ଭାବିନେଲେ ଯେ ବାସ୍ତବିକ ହନୁମାନ୍‌ଙ୍କ କଥା ବିଶ୍ୱାସଯୋଗ୍ୟ ନୁହେଁ; ତାହା କପିସୁଲଭ ଚପଳତା ମାତ୍ର (କାପେୟୀ ଚପଳତା) । ସେମାନେ ଥିଲେ ଏକ ପଛୁଆ ଜାତି । ଆର୍ଯ୍ୟମାନଙ୍କ ଭଳି ସଂଯତ ଆଚରଣ ସେମାନଙ୍କଠାରେ ନଥିଲା । ତେଣୁ ସେମାନଙ୍କଠାରେ ଏଭଳି ଚପଳତା ଓ ଔଦ୍ଧତ୍ୟ ରହିବା ସ୍ୱାଭାବିକ । ଅସଭ୍ୟ ଜାତିର ଲୋକମାନେ କଥାବାର୍ତ୍ତା କଲାବେଳେ ମଧ୍ୟ ଶୃଙ୍ଖଳା ରକ୍ଷା କରିବା ଜାଣନ୍ତି ନାହିଁ । ଏକାଧିକ ବ୍ୟକ୍ତି ଏକା ସାଙ୍ଗରେ କଥା କହିଥାନ୍ତି । ବାନରମାନେ ଠିକ୍ ଏହି ପ୍ରକୃତିର ଥିଲେ । ସମୁଦ୍ରକୂଳରେ ସୀତାଙ୍କ ଅପହରଣ ସମ୍ବାଦ ଦେବାକୁ ଗଲାବେଳେ ସମ୍ପାତି ସେମାନଙ୍କୁ ଏପରି ଅବସ୍ଥାରେ ଦେଖିଥିଲା । ସେ ତେଣୁ ସେମାନଙ୍କୁ ନୀରବ ହେବାପାଇଁ ସାବଧାନ କରିଦେଇ କହିଥିଲା (୪ । ୬୦ । ୩) :

କୃତ୍ୱା କଃଶବ୍ଦମେକାଗ୍ରାଃ ଶୃଣ୍ୱନ୍ତୁ ହରୟୋ ମମ ।

ଅର୍ଥାତ୍ ବାନରମାନେ ପାଟିତୁଣ୍ଡ ନକରି ଏକ ମନରେ ମୋ' କଥା ଶୁଣନ୍ତୁ । ଖାଲି ଏତିକି ନୁହେଁ, ଜୀବନର ଶେଷ ମୁହୂର୍ତ୍ତରେ ସେମାନେ ରାମଙ୍କ ଅନୁଗମନ କରି ସରଯୂରେ ଝାସ ଦେବାକୁ ଯିବା ସମୟରେ ମଧ୍ୟ ଏଭଳି ପାଟିତୁଣ୍ଡ କରିବାକୁ ଭୁଲିଯାଇ ନଥିଲେ ଯାହାକି ରାମାୟଣରେ ଆଉ ଠାଏ (୭ । ୧୦୯ । ୧୬) ବର୍ଣ୍ଣିତ । ବାଲ୍ମୀକି ସେମାନଙ୍କର ଏହି ଶବ୍ଦକୁ 'କିଲକିଳା' ନାମରେ ଆଖ୍ୟାତ କରିଛନ୍ତି ।

ବାନରମାନେ ଦଳବଦ୍ଧ ଜୀବନଯାପନ କରୁଥିଲେ । ସମ୍ପଦ ଓ ବିପଦରେ ସେମାନେ ପରସ୍ପରର ସାଥୀ ହୋଇ ରହୁଥିଲେ । ଏଭଳି ଦଳବଦ୍ଧ ହୋଇ ରହିବା ଦ୍ୱାରା ସେମାନଙ୍କର ପରସ୍ପର ପ୍ରତି ପ୍ରେମଭାବ ବଢ଼ିବା ସଙ୍ଗେ ସଙ୍ଗେ ଦଳର ନେତାଙ୍କ ପ୍ରତି ଆନୁଗତ୍ୟ ମଧ୍ୟ ବଢ଼ୁଥିଲା । ଅଙ୍ଗଦଙ୍କ ନେତୃତ୍ୱରେ ସୀତାଙ୍କୁ ଖୋଜିବା ପାଇଁ ଯାଇଥିବା ବାନରମାନେ ଗୋଟି ଗୋଟି ଦଳରେ ବିଭକ୍ତ ହୋଇ ସେହି କାମଟି କରିଥିଲେ ଖୁବ୍ ଶୀଘ୍ର ସେହି ତାହାକୁ ଶେଷକରି ଦେଇଥାନ୍ତେ । କିନ୍ତୁ ସେମାନେ ତାହା ନକରି ସମସ୍ତେ ଏକାଠି ରହି ସୀତାଙ୍କୁ ଖୋଜିବାକୁ ଲାଗିଲେ । ହନୁମାନ୍ ଏକାକୀ ଲଙ୍କାକୁ ଯିବାର କାରଣ ହେଲା, ସମୁଦ୍ର ପାରିହୋଇ ସେଠାକୁ ଯିବାର ସାମର୍ଥ୍ୟ ଅନ୍ୟ ବାନରମାନଙ୍କର ନଥିଲା । ଅଙ୍ଗଦ ଯେତେବେଳେ ସୀତାଙ୍କୁ ଖୋଜି ନପାଇବା ଫଳରେ ହତାଶ ହୋଇଉଠିଥିଲେ ଏବଂ ଆତ୍ମହତ୍ୟା କରିବାକୁ ବସିଥିଲେ, ଅନ୍ୟ ବାନରମାନେ ସମସ୍ତେ ମଧ୍ୟ ସେତେବେଳେ ତାଙ୍କ ପଦାଙ୍କ ଅନୁସରଣ କରି ଆତ୍ମହତ୍ୟା କରିବାକୁ ବସିଥିଲେ । ଏହି କଥା ରାମାୟଣରେ (୪ । ୫୫ । ୧୯-୨୦) ଅତି ରୋଚକ ଭାବରେ ବର୍ଣ୍ଣିତ । ସେମାନେ ସର୍ବଦା ନେତାଙ୍କୁ ହିଁ ଅନୁକରଣ ତଥା ଅନୁସରଣ କରୁଥିଲେ । ସାଧାରଣ ମାଙ୍କଡ଼ମାନଙ୍କ ଭଳି ସେମାନଙ୍କ ଅନୁକରଣ-ପ୍ରବୃତ୍ତି ଥିଲା ଖୁବ୍ ଗଭୀର ।

ବାନରମାନଙ୍କର ଖାଦ୍ୟ ଥିଲା ଅତି ସରଳ । ସେମାନେ ଏକ ବନଚର ଜାତି ହୋଇଥିବାରୁ ଜୀବନଧାରଣ ପାଇଁ ବିଶେଷ ଭାବରେ ପ୍ରକୃତିଦତ୍ତ ଫଳ-ମୂଳ ଉପରେ ନିର୍ଭର କରୁଥିଲେ । ସେମାନେ ମଧୁ ପିଉଥିଲେ ଏବଂ 'ମୈରେୟ' ନାମକ ଏକ କଡ଼ା ମଦ ବି ପିଉଥିଲେ । ମଧୁ ଶବ୍ଦଟି ବାନର-ମାନଙ୍କ ଉଦ୍ଦେଶ୍ୟରେ ବେଳେ ବେଳେ ମଧୁ ଅର୍ଥରେ ଏବଂ ଆଉ ବେଳେ ବେଳେ ମଦ ଅର୍ଥରେ ରାମାୟଣରେ ବ୍ୟବହୃତ । ଉଭୟ ସ୍ତ୍ରୀ-ପୁରୁଷ ସମସ୍ତେ

ମଦ ପିଉଥିଲେ । ମଦ ପିଇ ସେମାନେ ଉନ୍ମତ୍ତପ୍ରାୟ ହୋଇଯାଉଥିଲେ । ସୀତାଙ୍କୁ ଠାବ କରି ଫେରି ଆସିବା ବାଟରେ ସେମାନେ ରାଜାଜ୍ଞାକୁ ଉଲ୍ଲଙ୍ଘନ କରି ସୁଗ୍ରୀବଙ୍କ ମଧୁବନରେ ବଳପୂର୍ବକ ପଶିଥିଲେ ଏବଂ ସେଠାରେ ମହୁ ଓ ମଦ ପିଇଥିଲେ । ସେମାନେ ସେଠାରେ ଏଭଳି ଉନ୍ମତ୍ତ ହୋଇ-ଉଠିଥିଲେ ଯେ ସେମାନଙ୍କ ଦୌରାତ୍ମ୍ୟରେ ସାରା ମଧୁବନଟି ଉଜୁଡ଼ି ଯାଇଥିଲା । ସେମାନେ ଉଦ୍ୟାନରକ୍ଷକମାନଙ୍କୁ ମାର-ଧର କରି ସେଠାରୁ ତଡ଼ିଦେଇଥିଲେ । ଏପରି କରିବାର କୁପରିଣତି ଯେ କ'ଣ ହୋଇପାରେ ସେ ବିଷୟରେ ସେମାନେ ସାମାନ୍ୟ ଟିକିଏ ହେଲେ ବି ଚିନ୍ତା କରିନଥିଲେ । ବାନରମାନଙ୍କ କ୍ଷେତ୍ରରେ କୃଷି କରି ଫସଲ ଉତ୍ପାଦନ କରୁଥିବା କଥାର କେଉଁଠି ହେଲେ ଉଲ୍ଲେଖ ରାମାୟଣରେ ନାହିଁ । ଗୋପାଳନ ବିଷୟରେ ମଧ୍ୟ ରାମାୟଣ ସମ୍ପୂର୍ଣ୍ଣ ନୀରବ । ସମ୍ଭବତଃ ବାନରମାନଙ୍କୁ କୃଷି ଓ ଗୋପାଳନର କୌଶଳ ଅଜ୍ଞାତ ଥିଲା । ପ୍ରକୃତିଦତ୍ତ ଫଳମୂଳର ପ୍ରାଚୁର୍ଯ୍ୟ ହେତୁ ସେମାନଙ୍କୁ ଅନ୍ୟ ପ୍ରକାର ଖାଦ୍ୟ ଉପରେ ନିର୍ଭର କରିବାକୁ ପଡ଼ୁନଥିଲା । ସେମାନେ ଆଦୌ ମାଂସାହାରୀ ନଥିଲେ । ବାସ୍ତବିକ ସାରା ପୃଥିବୀରେ ମାଂସ ନଖାଇ ରହୁଥିବା ଆଦିମ ଅଧିବାସୀ ବାନରମାନଙ୍କ ବ୍ୟତୀତ ଆଉ କେହି ନଥିଲେ ।

ବାନରମାନଙ୍କର ପରିଧାନ ଥିଲା ଅତି ସରଳ । ତାହା ଥିଲା ଅତି କ୍ଷୁଦ୍ର ଗୋଟିଏ ଅଧୋବସ୍ତ୍ର ଏବଂ ସମଧିକ କ୍ଷୁଦ୍ର ଏକ ଉତ୍ତରୀୟ । ଅଧୋବସ୍ତ୍ରଟିକୁ ଏପରି ଭାବରେ ପରିଧାନ କରାଯାଉଥିଲା ଯେ ପଛରେ ଏକ ପୁଚ୍ଛ ଦୋଳାୟମାନ ହେଉଥିବା ଭଳି ତାହା ଦିଶୁଥିଲା । ତାହା ହିଁ ଥିଲା ସେମାନଙ୍କର ବହୁଚର୍ଚ୍ଚିତ ଲାଙ୍ଗୁଳ । ସେମାନେ ସିଲାଇ ପୋଷାକ ପିନ୍ଧୁଥିବା କଥାର କେଉଁଠି ହେଲେ ଉଲ୍ଲେଖ ନାହିଁ । ସିଲାଇ କାମ ନିଶ୍ଚିତ ଭାବରେ ସେମାନଙ୍କୁ ଜଣା ନଥିଲା । ରାମାୟଣରେ ଠାଏ (୪ । ୬୧ । ୬୮) କେତେକ ବାନର ଉଲଗ୍ନ ରହୁଥିବାର ବର୍ଣ୍ଣନା ଅଛି । ଏହାର ଦୁଇଟି ସମ୍ଭାବନା ଅଛି । ହୁଏତ ସେମାନଙ୍କ ପରିହିତ ବସ୍ତ୍ରଟିର ଆକାର ଏତେ କ୍ଷୁଦ୍ର ହୋଇଥିବ ଯେ ତାହା ସେମାନେ ପ୍ରାୟ ଉଲଗ୍ନ ଥିବାର ଭ୍ରମ ଉପୁଜାଉଥିବ । ଅଥବା ହୁଏତ ପ୍ରକୃତରେ କେତେକ ବାନର ଉଲଗ୍ନ ରହୁଥିବେ । ଏବେ ବି ତ କେତେକ ଆଦିବାସୀ ଉଲଗ୍ନ ରହୁଛନ୍ତି । ତେଣୁ ରାମାୟଣ-ଯୁଗରେ କେତେକ ବାନର ଉଲଗ୍ନ ରହୁଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ପାରିବନାହିଁ । ବାନରମାନେ ଲଢ଼ିବା ସମୟରେ ନିଜର ଅଧୋବସ୍ତ୍ରକୁ ଖୁବ୍ ଦୃଢ଼ ଭାବରେ ଅଣ୍ଟାରେ ବାନ୍ଧି

ଦେଉଥିଲେ । ସୁଗ୍ରୀବ ବାଲୀଙ୍କ ସହିତ ଯୁଦ୍ଧ କଲା ବେଳେ ନିଜ ବସ୍ତ୍ରକୁ ଏହିପରି ଭାବରେ ଅଣ୍ଟାରେ ବାନ୍ଧିଦେଇଥିବା କଥା ରାମାୟଣରେ (ଗାଢ଼ଂ ପରିହିତଃ, ୪ । ୧୨ । ୧୫) ବର୍ଣ୍ଣିତ । ପାରିବାରିକ ଶୋକପାଳନ ଅବସରରେ ବାନରମାନେ ମଳିନ ବସ୍ତ୍ର ପରିଧାନ କରୁଥିଲେ । ବାଲୀଙ୍କ ମୃତ୍ୟୁରେ ଶୋକପାଳନ ଅବସରରେ ସୁଗ୍ରୀବ ଏହିପରି ମଳିନ ବସ୍ତ୍ର (କ୍ଲିନ୍ନବାସସମ୍) ପରିଧାନ କରିଥିବା କଥା ରାମାୟଣରେ (୪ । ୨୬ । ୧) ଉଲ୍ଲିଖିତ । ବାନରମାନେ ଖୁବ୍ ଅଲଙ୍କାରପ୍ରିୟ ଥିଲେ । ବାଲୀ ନିଜ କଣ୍ଠରେ ହେମମାଳା ପିନ୍ଧିଥିବା କଥା ରାମାୟଣରେ ବର୍ଣ୍ଣିତ । ଆଉ ମଧ୍ୟ ବାନର-ନାରୀମାନେ ଖୁବ୍ ଅଲଙ୍କାର ପ୍ରିୟ ଥିବା କଥା ବି (ଭୂଷଣୋତ୍ତମଭୂଷିତାଃ) ତହିଁରେ (୪ । ୩୩ । ୨୩) ଉଲ୍ଲିଖିତ ।

ବାନରମାନଙ୍କ ରାଜଧାନୀ ଥିଲା କିଷ୍କିନ୍ଧା ସହରରେ । ଏହାର ସ୍ୱରୂପ କିପରି ଥିଲା, ସେ ବିଷୟରେ ନାନା ପ୍ରକାର ମତ ଦେଖାଯାଏ । ଗୋଟିଏ ମତ ହେଉଛି ଏହା ଥିଲା ଗୋଟିଏ ପର୍ବତର ଗୁହା । ଅନ୍ୟ ଗୋଟିଏ ମତ ହେଲା, ଏହାର ଚତୁଃପାର୍ଶ୍ୱେ ନିବୁଜ ଭାବରେ ପାହାଡ଼-ପର୍ବତ ଘେରିକରି ରହିଥିବାରୁ ଏହା ଗିରି-ଗୁହା ଭଳି ପ୍ରତୀତ ହେଉଥିଲା । ଏହା ଥିଲା ଦେଶର ଅନ୍ୟାନ୍ୟ ରାଜଧାନୀ ଭଳି ଗୋଟିଏ ସହର, ଯଦିଓ ଅଯୋଧ୍ୟା କିମ୍ବା ଲଙ୍କା ଭଳି ଏହା ସେତେଟା ଧନଶାଳୀ ନଥିଲା । ଶର୍ମା ହେଉଛନ୍ତି ପ୍ରଥମୋକ୍ତ ମତର ଜଣେ ପ୍ରବକ୍ତା । ତାଙ୍କର ବକ୍ତବ୍ୟ ହେଲା :

> In spite of all the glitter of a capital town and the royal palace, Kishkindha and the residential quarters of Vali and Sugriv remain a mountain cave (giriguha). (୩୮)

ସୁଗ୍ରୀବଙ୍କ ଆହ୍ୱାନକ୍ରମେ ବାଲୀ ଯୁଦ୍ଧ କରିବାଲାଗି ନଗରରୁ ବାହାରକୁ ବାହାରି ଆସିଥିଲେ । ଏହି କଥାକୁ ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି 'ନିଷ୍ପପାତ ଗୁହାମୁଖାତ୍' (୪ । ୭ । ୨୬) ପଙ୍କ୍ତିଟି ବ୍ୟବହାର କରିଛନ୍ତି । ଏହାର ଅର୍ଥ ହେଲା ବାଲୀ ଗୁହାମୁହଁରୁ ବାହାରକୁ ବାହାରିଆସିଲେ । ଏହି ପଙ୍କ୍ତି ଉପରେ ଭିତ୍ତି କରି ଶର୍ମା ବାନରମାନଙ୍କ ରାଜଧାନୀ ଗିରିଗୁହା ମଧ୍ୟରେ ଥିଲା ବୋଲି କହିଛନ୍ତି । ଏହା କିନ୍ତୁ ବିଶ୍ୱାସଯୋଗ୍ୟ ନୁହେଁ । କିଷ୍କିନ୍ଧାର ଯେଉଁଭଳି ବର୍ଣ୍ଣନା ଅନ୍ୟତ୍ର ଦିଆଯାଇଛି, ତହିଁରୁ ସୂଚିତ ହୁଏ ଯେ ତାହା ଥିଲା ଏକ ପ୍ରଶସ୍ତ ସ୍ଥାନ, ସଂକୀର୍ଣ୍ଣ ଗିରିଗୁହା କିନ୍ତୁ ନୁହେଁ । ଲକ୍ଷ୍ମଣ ରାମଙ୍କ ପାଖରୁ ଆସି

ସୁଗ୍ରୀବଙ୍କୁ ସୀତାଙ୍କ ଅନୁସନ୍ଧାନ ବିଷୟରେ ସ୍ମରଣ କରିବା ଉଦ୍ଦେଶ୍ୟରେ କିଷ୍କିନ୍ଧା ନଗରରେ ପହଞ୍ଚିଥିଲେ । ରାମାୟଣର କଥନ ଅନୁଯାୟୀ (୪ । ୩୩ । ୧) ସେହି 'ଗୁହା'ଟି ଥିଲା 'ରମ୍ୟା' ବା ଅତି ରମଣୀୟ । ସାମାନ୍ୟ ଗୁହାଟିଏ ବା କେତେ ଦୂର ରମଣୀୟ ହୋଇପାରିବ ? ରାମାୟଣରେ (୪ । ୩୩) ଏଥିରେ ନାନା ପ୍ରକାର ବୃକ୍ଷ, ପୁଷ୍ପ, ଗୁଳ୍ମ, ପ୍ରାସାଦ, ରାଜମାର୍ଗ ଓ ନଦୀ-ନାଳ ଆଦି ଭରପୂର ଥିବାର ବର୍ଣ୍ଣନା ଅଛି । ଅତଏବ ଏହା ସାଧାରଣରେ ବୁଝିଲା ଭଳି ଆଦୌ ଗିରିଗୁହାଟିଏ ନଥିଲା । ବ୍ୟାସ ମଧ୍ୟ ଏହି ମତଟିକୁ ପରିପୁଷ୍ଟ କରିଥାନ୍ତି, ଯେଉଁଠି ସେ କହନ୍ତି :

> ଯଦି ଗୁଫା ଅବଶ୍ୟ ସାମାନ୍ୟ ଅର୍ଥ ମେଂ' ସମ୍ଝୀ ଜାନେଓ୍ୱାଲୀ ପାର୍ବତୀୟ ଗୁହା ନହୀଂ ହୋଗୀ । (୩୧)

ରାମାୟଣରେ ବାଲ୍ମୀକି ବାନରମାନଙ୍କ ଘନବସତି ଥିବାର ବର୍ଣ୍ଣନା କରିଛନ୍ତି । ଏଭଳି ଘନ ଜନବସତି ଗିରି-ଗୁହାଟି ଭିତରେ ଗଢ଼ିଉଠିଥିବା ଆଦୌ ସମ୍ଭବ ନୁହେଁ । ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ କିଷ୍କିନ୍ଧା ଗୋଟିଏ ସାଧାରଣ ଭାବରେ ସମୃଦ୍ଧ ସହର ଥିଲା ବୋଲି ଆମକୁ ଗ୍ରହଣ କରିବାକୁ ହେବ ।

ବାନରମାନଙ୍କର ଏକ ସ୍ୱତନ୍ତ୍ର 'କପିରାଜ୍ୟ' ଥିଲା । ସେମାନଙ୍କୁ 'ହରିଗଣ' ବୋଲି କୁହାଯାଉଥିଲା । ହରିଗଣର ତିନି ଶାଖା ଥିଲା, ଯଥା, ଋକ୍ଷ, ଗୋଲାଙ୍ଗୁଳ ଓ ବାନର । ସାଧାରଣ ଅର୍ଥରେ ଋକ୍ଷ ଭାଲୁକୁ ବୁଝାଇଥାଏ । ଋକ୍ଷମାନେ କିନ୍ତୁ ଭାଲୁ ନଥିଲେ । ସେମାନେ ଋକ୍ଷ ପର୍ବତ ଓ ତାହାର ଆଖ-ପାଖ ଅଞ୍ଚଳରେ ରହୁଥିଲେ । ତେଣୁ ସେମାନଙ୍କର ନାମ ଥିଲା ଋକ୍ଷ । ଏବେ ମଧ୍ୟ ଦକ୍ଷିଣ ଭାରତରେ ଲୋକମାନେ ନିଜ ନାମ ସହିତ ସ୍ଥାନର ନାମଟିକୁ ସଂଯୁକ୍ତ କରିଥାନ୍ତି । ଏହି ପରଂପରା ଅତି ପ୍ରାଚୀନ ବୋଲି ମନେହୁଏ । ଗୋଲାଙ୍ଗୁଳଙ୍କ ସଂପର୍କରେ କୁହାଯାଇଛି ଯେ (୭ । ୨୭ । ୩୨) ସେମାନେ ଥିଲେ ଖୁବ୍ ବଳବାନ୍ ଏବଂ ସେମାନଙ୍କ ମୁହଁଟିମାନ ଥିଲା କଳା । ବାନରମାନେ ଥିଲେ ଏହି ଦୁଇ ଗୋଷ୍ଠୀଠାରୁ ଅପେକ୍ଷାକୃତ ଅଧିକତର ସଭ୍ୟ । ଏମାନେ ଏହିପରି ଭାବରେ ତିନି ଗୋଷ୍ଠୀରେ ବିଭକ୍ତ ହୋଇଥିଲେ ହେଁ ବାଲ୍ମୀକି ତାଙ୍କ କାବ୍ୟରେ ଅନେକତ୍ର ସମସ୍ତଙ୍କୁ ବାନର ବୋଲି ହିଁ ଅଭିହିତ କରିଆସିଛନ୍ତି ।

ବାନରମାନଙ୍କର ନିଜର ରାଜନୈତିକ ସଂଗଠନ ବି ଥିଲା ଏବଂ ନିର୍ଦ୍ଦିଷ୍ଟ ନୀତି-ନିୟମ ଅନୁସାରେ ରାଜ୍ୟଶାସନ ଚାଲୁଥିଲା । ପୂର୍ବର ଅବସ୍ଥା ଯାହା ଆଉ ନା

କାର୍ଦ୍ଧିକ ଆର୍ଯ୍ୟମାନଙ୍କ ସଂସ୍ପର୍ଶରେ ଆସିବା ଫଳରେ ସେମାନଙ୍କ ରାଜନୈତିକ ଚିନ୍ତାଧାରା ଅନେକ ପରିମାଣରେ ଆର୍ଯ୍ୟ-ଚିନ୍ତାଧାରାକୁ ଅନୁସରଣ କରିଥିଲା । ଆର୍ଯ୍ୟମାନଙ୍କ ଭଳି ସେମାନଙ୍କର ମଧ୍ୟ ଜଣେ ରାଜା ଥିଲେ ଏବଂ ଏହି ରାଜପଦ ପରଂପରାକ୍ରମେ ଜ୍ୟେଷ୍ଠ ପୁତ୍ରଙ୍କୁ ମିଳୁଥିଲା । ରାଜାଙ୍କର ନିଜସ୍ୱ ମନ୍ତ୍ରିମଣ୍ଡଳ ଥିଲା ଏବଂ ମନ୍ତ୍ରୀମାନଙ୍କ ପରାମର୍ଶକ୍ରମେ ରାଜା ରାଜ୍ୟ-ଶାସନ କରୁଥିଲେ । ଦୈନନ୍ଦିନ କାର୍ଯ୍ୟକଳାପକୁ ଛାଡ଼ିଦେଲେ ସମସ୍ତ ମୁଖ୍ୟ କାର୍ଯ୍ୟକଳାପ ଲାଗି ଅମାତ୍ୟମାନଙ୍କର ନିଷ୍ପତ୍ତି ଆବଶ୍ୟକ ପଡ଼ୁଥିଲା । କିଏ ରାଜା ହେବେ ତାହା ଥିଲା ମନ୍ତ୍ରିପରିଷଦର ସହମତିସାପେକ୍ଷ । ଉଦାହରଣସ୍ୱରୂପ ସୁଗ୍ରୀବଙ୍କୁ ରାଜା କରିବାପାଇଁ ମନ୍ତ୍ରିପରିଷଦର ଅନୁମତି ଲୋଡ଼ା ଯାଇଥିଲା । ଏହି ପରିଷଦର ଅନୁମତିକ୍ରମେ ଅଙ୍ଗଦଙ୍କୁ ମଧ୍ୟ ଯୌବରାଜ୍ୟରେ ଅଭିଷିକ୍ତ କରାଯାଇଥିଲା । ସୁଗ୍ରୀବଙ୍କ ରାଜ୍ୟାଭିଷେକ ମଧ୍ୟ ଆର୍ଯ୍ୟମାନଙ୍କ ପଦ୍ଧତିକୁ ଅନୁସରଣ କରି କରାଯାଇଥିଲା । ବାନରରାଜ୍ୟ ସବୁ ଦୃଷ୍ଟିରୁ ଏକ ସ୍ୱତନ୍ତ୍ର ରାଜ୍ୟ ହୋଇଥିଲେ ହେଁ ଏହା ଏକ ସାର୍ବଭୌମ ରାଜ୍ୟ ନଥିଲା । ଏହା ଅଯୋଧ୍ୟାର ଏକ କରଦ ରାଜ୍ୟ ରୂପରେ ପରିଗଣିତ ହେଉଥିଲା । ବାସ୍ତବିକ ଏହି ଯୁକ୍ତି ଦର୍ଶାଇ ବାଲୀ ତାଙ୍କ ସାମ୍ରାଜ୍ୟରେ ଅନ୍ୟାୟ-ଅନାଚାର କରୁଥିବାରୁ ରାମ ତାଙ୍କୁ ମାରିଥିଲେ ବୋଲି ରାମାୟଣରେ (୪ । ୧୮ । ୬) ବର୍ଣ୍ଣିତ । ଏହି ଯୁକ୍ତି ରାମ ନିଜେ ବାଲୀଙ୍କ ଆଗରେ ଦର୍ଶାଇଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ଆମେ ଜାଣିପାରିବା ଯେ ବାନରରାଜ୍ୟ ଥିଲା ସୀମିତ ଭାବରେ ଏକ ସ୍ୱତନ୍ତ୍ର ରାଜ୍ୟ ଏବଂ ତାହା ଇକ୍ଷ୍ୱାକୁମାନଙ୍କର ବଶ୍ୟତା ସ୍ୱୀକାର କରିଥିଲା ।

ବାନରମାନଙ୍କ ମଧ୍ୟରେ ଯୌନାଚାରରେ ଆର୍ଯ୍ୟ ଦୃଷ୍ଟିକୋଣରୁ ଆଦୌ ଶୃଙ୍ଖଳା ନଥିଲା । ସୁଗ୍ରୀବଙ୍କ ସ୍ତ୍ରୀ ରୁମା ଥିଲେ ବାଲୀଙ୍କର ପୁତ୍ରବଧୂ ସମାନ । ସେ କିନ୍ତୁ ସୁଗ୍ରୀବଙ୍କୁ ରାଜ୍ୟରୁ ତଡ଼ିଦେଇ ରୁମାଙ୍କୁ ନିଜର ପତ୍ନୀ କରି ରଖିଥିଲେ । ରାମ ତାଙ୍କର ଏହି ପାପାଚାରକୁ ଏକ କାରଣ ବୋଲି ଧରି ତାଙ୍କୁ ବଧ କରିଥିଲେ । ବାନରବୀର କେଶରୀଙ୍କ ପତ୍ନୀ ଅଞ୍ଜନା ବାୟୁଦେବତାଙ୍କ ସହିତ ସଙ୍ଗମରେ ରତ ହୋଇଥିଲେ ଏବଂ ଏହାର ଫଳଶ୍ରୁତିସ୍ୱରୂପ ହନୁମାନ୍ ଜନ୍ମଲାଭ କରିଥିଲେ । ବାନରମାନେ କାମବେଗ ପ୍ରତି ଅତ୍ୟନ୍ତ ଲାଳସାଗ୍ରସ୍ତ ଥିଲେ । ସୁଗ୍ରୀବ କାମବେଗରେ ମାତି ରାମଙ୍କ ନିକଟରେ ସୀତାଙ୍କୁ ଖୋଜିବାପାଇଁ ଦେଇଥିବା ପ୍ରତିଶ୍ରୁତିକୁ ସଂପୂର୍ଣ୍ଣରୂପେ ଭୁଲିଯାଇଥିଲେ ଏବଂ ଲକ୍ଷ୍ମଣ ତାଙ୍କୁ ଚେତାବନୀ ଦେବାରେ ଯାଇ ସେ ସାବଧାନ ହୋଇଯାଇଥିଲେ । ବାଲୀଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀଙ୍କୁ ସୁଗ୍ରୀବ ସ୍ତ୍ରୀରୂପେ ଗ୍ରହଣ କରିଥିଲେ । ସମ୍ଭବତଃ

ଶତ୍ରୁର ବିଧବା ପତ୍ନୀଙ୍କୁ ସ୍ୱପତ୍ନୀ କରିନେବାର ରୀତି ବାନରମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା ।

ପୂର୍ବରୁ କୁହାଯାଇଛି ଯେ ବାନରମାନେ ଦଳବଦ୍ଧ ଭାବରେ ରହୁଥିଲେ । ସେମାନଙ୍କ ଦଳକୁ କୁହାଯାଉଥିଲା 'ଯୂଥ' । ପ୍ରତିଟି 'ଯୂଥ'ର ଜଣେ ଲେଖାଏଁ ଦଳପତି ଥିଲେ ଯେ କି ଥିଲେ 'ଯୂଥପ' ନାମରେ ଖ୍ୟାତ । ଯୂଥର ସମସ୍ତ ଭଲମନ୍ଦ ଦାୟିତ୍ୱ 'ଯୂଥପ'ଙ୍କ ଉପରେ ନ୍ୟସ୍ତ ଥିଲା । ବାନରମାନେ ବିନା ଦ୍ୱିଧା ଓ ନିର୍ବିବାଦରେ 'ଯୂଥପ'ଙ୍କ ଆଦେଶକୁ ମାନୁଥିଲେ । ଅନେକଗୁଡ଼ିଏ 'ଯୂଥପ'ଙ୍କ ଉପରେ ଆଉ ଜଣେ ଦଳପତି ରହୁଥିଲେ । ତାଙ୍କୁ କୁହାଯାଉଥିଲା 'ମହାଯୂଥପ-ଯୂଥପ' । ଜାମ୍ବବାନ୍ ଏହିପରି ଜଣେ 'ମହା-ଯୂଥପ-ଯୂଥପ' ଥିଲେ । ମହାଯୂଥପ-ଯୂଥପ ହେଉଛନ୍ତି ପ୍ରଧାନ ସେନାପତି ଶ୍ରେଣୀୟ । ସମସ୍ତଙ୍କ ଉପରେ ଯେ ନେତା ଥିଲେ ତାଙ୍କୁ କୁହାଯାଉଥିଲା ରାଜା ଏବଂ ସେ କିଷ୍କିନ୍ଧାରେ ରହୁଥିଲେ ।

ରାମାୟଣର ଅଧ୍ୟୟନରୁ ଆମେ ବାନରମାନଙ୍କ ଧର୍ମ-କର୍ମ ବିଷୟରେ ମଧ୍ୟ ଜ୍ଞାନ ଆହରଣ କରିଥାଉଁ । ସେମାନେ ଆର୍ଯ୍ୟମାନଙ୍କ ଧାର୍ମିକ କୃତ୍ୟମାନ କରୁଥିବାର ଏବଂ ସେମାନଙ୍କ (ଆର୍ଯ୍ୟମାନଙ୍କ) ଦେବତାମାନଙ୍କୁ ପୂଜାର୍ଚ୍ଚନା କରୁଥିବାର ଅନେକ ଦୃଷ୍ଟାନ୍ତ ଆମେ ପାଇଥାଉଁ । ସେମାନେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧତର୍ପଣ ଆଦି କରୁଥିଲେ । ସେମାନଙ୍କ ଅନ୍ତ୍ୟେଷ୍ଟି କ୍ରିୟା, ହୋମ-ଯଜ୍ଞ ଆଦି ଆର୍ଯ୍ୟମାନଙ୍କ ଦ୍ୱାରା ଅନୁସୃତ ପଦ୍ଧତିରେ ହିଁ ହେଉଥିଲା । ସେମାନେ ବ୍ରାହ୍ମଣମାନଙ୍କୁ ଖୁବ୍ ସମ୍ମାନ ଦେଖାଉଥିଲେ ଏବଂ ଉତ୍ସବାନୁଷ୍ଠାନମାନଙ୍କରେ ସେମାନଙ୍କୁ ପ୍ରଚୁର ପରିମାଣରେ ଦାନ ମୁକ୍ତହସ୍ତରେ ଦେଉଥିଲେ । ସୁଗ୍ରୀବ ସ୍ୱୀୟ ଅଭିଷେକୋତ୍ସବ ଅବସରରେ ବ୍ରାହ୍ମଣମାନଙ୍କୁ ନାନା ପ୍ରକାର ଧନ-ରତ୍ନ, ଭୋଜ୍ୟ, ବସ୍ତ୍ର ଆଦି ଦାନସ୍ୱରୂପ ଦେଇଥିବାର ଯେଉଁ ବର୍ଣ୍ଣନା ରାମାୟଣରେ (୪।୨୬।୨୯) ଅଛି, ତାହା ଏହାର ନିଦର୍ଶନ । ଉତ୍ସବାନୁଷ୍ଠାନ, ଯୁଦ୍ଧଯାତ୍ରା ଆଦି ଶୁଭକର୍ମଗୁଡ଼ିକର ଆରମ୍ଭରେ ଆର୍ଯ୍ୟମାନେ ସ୍ୱସ୍ତ୍ୟୟନ କର୍ମ କରିଥାନ୍ତି । ବାନରମାନେ ମଧ୍ୟ ଠିକ୍ ସେହିଭଳି ସ୍ୱସ୍ତ୍ୟୟନକର୍ମ କରୁଥିଲେ । ଲଙ୍କା ଅଭିମୁଖରେ ଯିବାର ଅବ୍ୟବହିତ ପୂର୍ବରୁ ହନୁମାନ୍ ସୂର୍ଯ୍ୟ, ଇନ୍ଦ୍ର, ବାୟୁ, ବ୍ରହ୍ମା ଆଦି ଦେବତାମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରିଥିବା କଥା ରାମାୟଣରେ (୫।୧।୮) ବର୍ଣ୍ଣିତ । ସେ ଅଶୋକବନକୁ ଯିବା ପୂର୍ବରୁ ବିଜୟ କାମନା କରି ବ୍ରହ୍ମା, ଇନ୍ଦ୍ର, ବାୟୁ, ବରୁଣ, ଚନ୍ଦ୍ର, ସୂର୍ଯ୍ୟ, ଅଶ୍ୱିନ, ମରୁତ୍ ତଥା ଋଷି ଓ ଭୂତମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ

ଜଣାଇ ସେମାନଙ୍କୁ ଅଭ୍ୟର୍ଥନା କରିଥିଲେ । ଏହି କଥା ରାମାୟଣର ଆଉ ଠାଏ (୫।୧୩।୨୨-୨୫) ଉଲ୍ଲିଖିତ । ଏହି ଦେବତାମାନେ ତଥା ଦିବ୍ୟ ପୁରୁଷମାନେ ସମସ୍ତେ ହେଲେ ଆର୍ଯ୍ୟ ଦେବମଣ୍ଡଳର ଅନ୍ତର୍ବର୍ତ୍ତୀ । ବାନରମାନଙ୍କ ଧର୍ମଧାରଣାରେ ଯେ ଆର୍ଯ୍ୟପ୍ରଭାବ ଯଥେଷ୍ଟ ଭାବରେ ପଡ଼ିଥିଲା, ଏହା ତାହାର ସୂଚନା ଦେଇଥାଏ ।

ବାନରମାନେ ଅସଭ୍ୟ ଓ ଅଶିକ୍ଷିତ ନଥିଲେ । ବରଂ ସେମାନେ ଥିଲେ ସଭ୍ୟ ଓ ସୁଶିକ୍ଷିତ । ବାଳୀ, ସୁଗ୍ରୀବ, ଅଙ୍ଗଦ, ଜାମ୍ବବାନ୍, ହନୁମାନ୍ ଆଦି ଥିଲେ ଜଣେ ଜଣେ ଶ୍ରେଷ୍ଠ ବୀର । ଏଭଳି ବୀରତ୍ୱ ସେମାନେ ହାସଲ କରି ପାରିଥିଲେ କିପରି ? ଏହା ନିଶ୍ଚୟ ସେମାନଙ୍କର ସାମରିକ ଶିକ୍ଷାର ଫଳ । ସେମାନଙ୍କୁ ନିଶ୍ଚିତ ଭାବରେ ସାମରିକ ବିଦ୍ୟା ଶିକ୍ଷା ଦିଆଯାଉଥିଲା । ବାନର ସୁଷେଣ ଥିଲେ ବୈଦ୍ୟଶାସ୍ତ୍ରରେ ପ୍ରବୀଣ । ତାଙ୍କର ପ୍ରଚେଷ୍ଟା ଫଳରେ ରାମ-ଲକ୍ଷ୍ମଣ ଲଙ୍କାଯୁଦ୍ଧରେ ଏକାଧିକବାର ଆସନ୍ନ ମୃତ୍ୟୁମୁଖରୁ ରକ୍ଷା ପାଇଯାଇଥିଲେ । ବାନର ନୀଳ ଥିଲେ ସେତୁ ନିର୍ମାଣରେ ଜଣେ କୁଶଳୀ ଯନ୍ତ୍ରୀ । ତାଙ୍କର ପ୍ରଚେଷ୍ଟାରେ ସମୁଦ୍ରରେ ସେତୁବନ୍ଧ ପଡ଼ିପାରିଥିଲା । ରାମାୟଣରେ ବାନରମାନଙ୍କ ବିଦ୍ୟାର୍ଜନ ବିଷୟରେ କିଛି ବର୍ଣ୍ଣନା ନଥିଲେ ହେଁ ସେମାନଙ୍କ ଆଚାର-ବ୍ୟବହାରରୁ ଜଣାଯାଏ ଯେ ସେମାନେ ଥିଲେ ସୁଶିକ୍ଷିତ ।

ଏହିପରି ଭାବରେ ବିଚାର କଲେ ଆମେ ଦେଖିବା ଯେ ବାନରମାନେ ଥିଲେ ଏକ ସଭ୍ୟ ତଥା ସୁସଂସ୍କୃତ ଜାତି । ସେମାନଙ୍କ ସଭ୍ୟତା ଓ ସଂସ୍କୃତିର ବିକାଶ ଆର୍ଯ୍ୟପ୍ରଭାବ ଫଳରେ ସମ୍ଭବପର ହୋଇପାରିଥିଲା । ଏହା ଅନୁଧ୍ୟାନ କରିବା ଉତ୍ତାରୁ ସେମାନେ ଯେ ମାଙ୍କଡ଼ ଅଥବା ଭାଲୁ ଥିଲେ, ଏଭଳି ଚିନ୍ତା କରିବାର ଅବକାଶ ହିଁ କାହାରି ରହିବନାହିଁ ।

## ଟିପ୍ପଣୀ

୧ । Ramashraya Sharma, A Socio-Political Study of the Valmiki Ramayana, Motilal Banarasidass (1986), p. 270.

୨ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସମାଜ (୧୯୮୭), ପୃ. ୧୫ ।

୩ । ତତ୍ରୈବ ।

୪ । J. L. Brockington, Righteous Rama—The Evolution of an Epic, Oxford University Press, Delhi (1984), p. 121.

୫ । ରାମାୟଣ, ୨।୮୪।୭ ।

୬ । ଋଗ୍ବେଦ, ୨।୫୦।୩୩ ।

୭ । ଋଗ୍ବେଦ, ୨।୫୦।୪୩ ।

୮ । Abinash Chandra Das, Rigvedic India, p. 248.

୯ । ରାମାୟଣ, ୩ ।୧୪।୩ ।

୧୦ । S. B. Viswanath, Racial Synthesis of Hindu Culture, p. 86.

୧୧ । ରାମାୟଣ, ୩।୭୪।୧୧ ।

୧୨ । Chintamani Vinayak Vaidya, The Riddle of the Ramayana, p. 99.

୧୩ । ଶାନ୍ତିକୁମାର ନାନୂରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ. ୨୮ ।

୧୪ । ଋଗ୍ବେଦ, ସା. ଆର୍. ରାମଚନ୍ଦ୍ର ଦୀକ୍ଷିତାର ଉଦ୍ଧୃତ, ପୃ. ୨୯ ।

୧୫ । ରାମାୟଣ, ୭।୨୩।୫, ୬।୩।୯, ୩।୩୨।୧୪ ।

୧୫-କ । Bimal Charan Law, Historical Geography of Ancient India, Munsiram Manoharlal Publishers (1984), p. 144.

୧୬ । ଶାନ୍ତିକୁମାର ନାନୂରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ. ୨୦ ।

୧୭ । ସୁରେନ୍ଦ୍ରନାଥ ଶତପଥୀ, ଭାରତୀୟ ସଂସ୍କୃତି : ବୈଦିକ ପର୍ବ (୧ମ ଭାଗ), ପୃ. ୭୮-୮୨ ।

୧୭-କ । R. Sharma, op cit., p. 433.

୧୮ । Chintamani Vinayak Vaidya, op. cit., p. 94.

୧୯ । Nabin Chandra Das, A Note on the Antiquity of the Ramayana, p. 6.

୨୦ । R. Sharma, op. cit., p. 272.

୨୧ । Nabin Chandra Das, op. cit., p. 11.

୨୧-କ । ରାମାୟଣ, ୫।୪୨।୨୩ ।

୨୨ । R. Sharma, op. cit., p. 271.

୨୩ । K. S. Ramaswami Sastri, "The Aryan Colonies of Kiskindha and Lanka", Indian Culture, Vol. 5, p. 195.

୨୪ । ରାମାୟଣ, ୫।୪।୧୯-୨୦ ।

୨୫ । ତତ୍ରୈବ, ୩।୨।୧୪ ।

୨୬ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ-୩୫ ।

୨୭ । ରାମାୟଣ, ୫।୫୯।୪ ।

୨୮ । ତତ୍ରୈବ, ୬।୬୫ ।

୨୯ । R. Sharma, op. cit., p. 274,

୩୦ । Ibid., p. 275.

୩୧ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ-୪୪ ।

୩୨ । ରାମାୟଣ, ୬।୩୨।୪୩ ।

୩୩ । ସି. ବଲ୍‌କ୍ (C. Bulcke), ରାମକଥାଉତ୍ପତ୍ତି ଔର ବିକାଶ, ହିନ୍ଦୀ ପରିଷଦ (୧୯୫୦), ପୃ ୧୧୭ ।

୩୪ । Chintamani Vinayak Vaidya, op. cit, p.153.

୩୫ । Manmath Nath Ray, "An Estimate of the Civilization of the Vanaras as depicted in the Ramayana", Prince of Wales Saraswati Bhawan Studies, Vol. V.,1926.

୩୬ । ରାମାୟଣ, ୪।୩୧।୨୪ ।

୩୭ । R. Sharma, op, cit, p. 280.

୩୮ । Ibid., p. 281,

୩୯ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ-୫୭ ।



# ଦ୍ୱିତୀୟ ପରିଚ୍ଛେଦ

# ରାଷ୍ଟ୍ର ଓ ପ୍ରଶାସନ

ସମାଜ ଓ ରାଷ୍ଟ୍ରର ପାରସ୍ପରିକ ସମ୍ପର୍କ ଅତି ନିବିଡ଼ । ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ତେଣୁ ସେ ସମାଜ ମଧ୍ୟରେ ଦଳବଦ୍ଧ ଜୀବନଯାପନ କରିବା ପାଇଁ ଚାହେଁ । ପଶୁମାନେ ତ ଦଳବଦ୍ଧ ଜୀବନଯାପନ କରନ୍ତି । ତା'ହେଲେ ମନୁଷ୍ୟ ଓ ପଶୁ ମଧ୍ୟରେ ପ୍ରଭେଦ ରହିଲା କେଉଁଠି ? ପ୍ରଭେଦ ହେଲା ଏତିକି ଯେ ମନୁଷ୍ୟର ବୁଦ୍ଧିବିବେକ ଅଛି; ଭଲମନ୍ଦକୁ ହେତୁବାଦ ଦୃଷ୍ଟିକୋଣରୁ ବିଚାରିବାର ଶକ୍ତି ଅଛି । ସେ ତେଣୁ ନିଜକୁ ଶୃଙ୍ଖଳିତ କରିବା ପାଇଁ ଚାହେଁ । ତା'ର ଏହି ଅଭିପ୍ସାରୁ ସୃଷ୍ଟି ହେଲା ରାଷ୍ଟ୍ର-ଚେତନା । ମନୁଷ୍ୟ ପ୍ରଥମ କରି କେବେ ରାଷ୍ଟ୍ରୀୟ ଜୀବନର ଅନୁଭୂତି ପାଇଲା ତାହା ବାସ୍ତବିକ ରହସ୍ୟର ଜାଲରେ ବନ୍ଦୀ; ସେ କଥା କେହି କହିପାରିବେ ନାହିଁ । ପ୍ଲାଟୋ ମନୁଷ୍ୟକୁ 'ରାଜନୈତିକ ପ୍ରାଣୀ' ବୋଲି କହିବାର ବହୁ ଶତ ବର୍ଷ ପୂର୍ବରୁ କିନ୍ତୁ ମନୁଷ୍ୟଠାରେ ରାଜନୈତିକ ଚେତନା ଜାଗ୍ରତ ହୋଇ ସାରିଥିଲା । ଏହି ଚେତନା କେବେ ଓ କିପରି ଜାଗ୍ରତ ହେଲା ତାହା ଚିନ୍ତକମାନେ ବିଭିନ୍ନ ପ୍ରକାର କହିଥାନ୍ତି । ପ୍ରାଚୀନ ଭାରତୀୟ ରାଜନୈତିକ ଚିନ୍ତକମାନେ ସେଥିପାଇଁ ବିଭିନ୍ନ କିମ୍ବଦନ୍ତୀର ଆଶ୍ରୟ ନେଇଥାନ୍ତି ଏବଂ ରାଷ୍ଟ୍ରକୁ ଭଗବାନଙ୍କର ମାନବଜାତି ପାଇଁ ଏକ ମହାନ୍ ଅବଦାନ ବୋଲି ଅଭିହିତ କରିଥାନ୍ତି । ଏହି ଦୃଷ୍ଟିରୁ ରାମାୟଣୀୟ ରାଷ୍ଟ୍ରଚେତନା ବିଷୟରେ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ ।

**ରାଷ୍ଟ୍ର :**

ରାମାୟଣୀୟ ରାଷ୍ଟ୍ର-ଚେତନା ବୈଦିକ ରାଷ୍ଟ୍ର-ଚେତନାର ଏକ କ୍ରମିକ ବିକାଶର ଫଳଶ୍ରୁତି । ସେତେବେଳକୁ ଏହି ଚେତନା ସମ୍ପୂର୍ଣ୍ଣ ରୂପେ ଦାନା ଧରିସାଇଥିଲା ଏବଂ ଏହାର ଭୌମିକ ଭିତ୍ତି ପ୍ରତିଷ୍ଠିତ ହୋଇସାରିଥିଲା । ଏହାର ତାତ୍ପର୍ଯ୍ୟ ହେଲା ପ୍ରତ୍ୟେକ ରାଷ୍ଟ୍ରର ଗୋଟିଏ ସୀମା ଥିଲା । ଏଇ ତ ପ୍ରାୟ ଦୁଇ ଶହ ବର୍ଷ ତଳର କଥା । ସେତେବେଳେ ଫରାସୀ ସମ୍ରାଟ୍ ଚତୁର୍ଦ୍ଦଶ ଲୁଇ ବାହୁଆସ୍ଫୋଟ ମାରି କହୁଥିଲେ :

I and the State are one.

ସେ ନିଜକୁ ରାଷ୍ଟ୍ର ସହିତ ସାମିଲ କରୁଥିଲେ ଏବଂ ନିଜର ସ୍ୱାର୍ଥକୁ ରାଷ୍ଟ୍ରର ସ୍ୱାର୍ଥ ବୋଲି ଭାବୁଥିଲେ । କିନ୍ତୁ ଲୋକେ ଏହାକୁ ସ୍ୱୀକାର କରିନଥିଲେ, ଯାହାର ଫଳଶ୍ରୁତି ହେଲା ଫରାସୀ ବିପ୍ଳବ । ବୈଦିକ ରାଷ୍ଟ୍ର ଚେତନା କିନ୍ତୁ ସେପରି ନଥିଲା । ଏଥିରେ ରାଜା ଓ ରାଷ୍ଟ୍ର ଥିଲେ ପରସ୍ପରଠାରୁ ପୃଥକ୍ । ରାଜା ଯେ ହେଉଛନ୍ତି ରାଷ୍ଟ୍ରର ଅଙ୍ଗବିଶେଷ ମାତ୍ର ଏବଂ ରାଷ୍ଟ୍ର ସହିତ ସମକକ୍ଷ ନୁହନ୍ତି, ଏହି ଚିନ୍ତାଧାରା ଆର୍ଯ୍ୟ ରାଜନୈତିକ ଜୀବନକୁ ଯୁଗ ଯୁଗ ଧରି ଆଚ୍ଛନ୍ନ କରି ଆସିଛି । ବୈଦିକ ଯୁଗରେ, ରାମାୟଣ ଯୁଗରେ, ଏପରି କି କୌଟିଲ୍ୟଙ୍କ ସମୟରେ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ମଧ୍ୟ ଏହି ଚିନ୍ତାଧାରା ବଳବତ୍ତର ଥିଲା । ଏ ସମ୍ପର୍କରେ କୌଟିଲ୍ୟଙ୍କ ମତର ବ୍ୟାଖ୍ୟା କରିବାକୁ ଯାଇ କେ. ଏମ୍. ପାନିକର୍ କହନ୍ତି :

> Kautalya says, the State is an organism of seven limbs, the Swami (or the sovereign) the officialdom, the territory, the fort, the Kosa (treasury), the army and the ally, (୧)

ଏହି ସପ୍ତ ଅଙ୍ଗରୁ ଗୋଟିଏ ଅଙ୍ଗର ଅଭାବ ହେଲେ ରାଷ୍ଟ୍ରଗଠନ ଅସମ୍ଭବ । ଯଜୁର୍ବେଦରେ (୯।୨୩) କୁହାଯାଇଛି :

ବୟଂ ରାଷ୍ଟ୍ରେ ଜାଗୃୟାମ ପୁରୋହିତାଃ ।

ଅର୍ଥାତ୍ ଆମେ ପୁରୋହିତମାନେ ରାଷ୍ଟ୍ରରେ ଜାଗ୍ରତ ରହିଅଛୁ । ରାଷ୍ଟ୍ର କିପରି ନ୍ୟାୟୋଚିତ ମାର୍ଗରେ ଚାଲିବ ସେଥିପାଇଁ ବୁଦ୍ଧିଜୀବୀ ପୁରୋହିତମାନେ ସଦା-ଜାଗ୍ରତ ଥିଲେ । ଏହା ସେମାନଙ୍କ ପୁରୋହିତ ନାମକୁ (ଆଗରେ ଥିବା ଲୋକ) ଯଥାର୍ଥରେ ସାର୍ଥକ କରିଥାଏ । ଅଥର୍ବ ବେଦର କଥନ ଅନୁସାରେ (୧୧ । ୩ । ୫) :

ବ୍ରହ୍ମଚର୍ଯ୍ୟେଣ ତପସା ରାଜା ରାଷ୍ଟ୍ରଂ ବିରକ୍ଷତି ।

ଅର୍ଥାତ୍ ବ୍ରହ୍ମଚର୍ଯ୍ୟ-ତପସ୍ୟା ଦ୍ୱାରା ରାଜା ରାଷ୍ଟ୍ରକୁ ରକ୍ଷା କରିଥାନ୍ତି । ରାଜା ଓ ରାଷ୍ଟ୍ର ଯେ ପରସ୍ପରଠାରୁ ପୃଥକ୍ ଏଥିରୁ ଏହି ସତ୍ୟ ପ୍ରକାଶିତ ହେଉଛି ।

ରାଷ୍ଟ୍ରରେ ରାଜାଙ୍କର ନୁହେଁ, ବରଂ ପ୍ରଜାମାନଙ୍କର୍ କିପରି ସ୍ୱାର୍ଥ-

ଭୌମିକତା ତଥା ପ୍ରାଥମିକତା ରହିଛି ସେ ସମ୍ପର୍କରେ ଐତରେୟ ବ୍ରାହ୍ମଣ ମୁଖର । ଏହାର ଗୋଟିଏ ପଙ୍‌କ୍ତି ହେଲା :

ରାଷ୍ଟ୍ରାଣି ବୈ ବିଶଃ । (୨)

ଅର୍ଥାତ୍ ପ୍ରଜାମାନେ ହେଉଛନ୍ତି ରାଷ୍ଟ୍ର । ବୈଦିକ ଚିନ୍ତାଧାରାରେ ତେଣୁ ରାଜା ନୁହନ୍ତି, ପ୍ରଜାମାନେ ହେଉଛନ୍ତି ରାଷ୍ଟ୍ର ସହିତ ସମକକ୍ଷ । ପ୍ରଜାମାନଙ୍କର ମଙ୍ଗଳ ଅର୍ଥ ରାଷ୍ଟ୍ରର ମଙ୍ଗଳ । ପ୍ରଜାମାନଙ୍କର ବିନାଶ ଅର୍ଥ ରାଷ୍ଟ୍ରର ବିନାଶ । ପ୍ରଜାନୁରଞ୍ଜନର ଅର୍ଥ ହେଉଛି ରାଷ୍ଟ୍ରର ଅନୁରଞ୍ଜନ । ରାମାୟଣ-ଯୁଗରେ ମଧ୍ୟ ଏହି ସ୍ଥିତି ଥିଲା । ସେଥିପାଇଁ ପ୍ରଜାନୁରଞ୍ଜନ ଉଦ୍ଦେଶ୍ୟରେ ରାମଙ୍କୁ ନିଜ ପ୍ରିୟତମା ପତ୍ନୀଙ୍କୁ ନିର୍ବାସନ-ଦଣ୍ଡ ଦେବାକୁ ପଡ଼ିଥିଲା । ତାଡ଼କା ରାକ୍ଷସୀର ଅତ୍ୟାଚାରରେ 'ମଲଦ' ଓ 'କରୂଷ' ନାମକ ଦୁଇ ରାଷ୍ଟ୍ରର ଲୋକେ ନଷ୍ଟ-ଭ୍ରଷ୍ଟ ହୋଇ ଯାଇଥିଲେ ଏବଂ ସେହି ଅଞ୍ଚଳ ଗୋଟିଏ ବନରେ ପରିଣତ ହୋଇ ଯାଇଥିଲା । ଏହାର ନାମ ଥିଲା ତାଡ଼କା-ବନ । ପ୍ରଜାମାନଙ୍କ ବିନାଶରେ କିପରି ଏହି ଦୁଇ ରାଷ୍ଟ୍ରର ବିନାଶ ଘଟିଥିଲା ତାହା ରାମାୟଣରେ (୧ । ୨୪ । ୨୫-୨୭) ଅତି ରୋଚକ ଭାବରେ ବର୍ଣ୍ଣିତ । ଅତଏବ, ରାମାୟଣୀୟ ରାଷ୍ଟ୍ର ଥିଲା ପ୍ରଜାନିଷ୍ଠ, ରାଜନିଷ୍ଠ କିନ୍ତୁ ନୁହେଁ । ରାଜାଙ୍କ ଦାୟିତ୍ୱ ଥିଲା ରାଷ୍ଟ୍ରର ଶାସନଭାର ଗ୍ରହଣ କରିବା ।

ପ୍ରାଚୀନ ଭାରତୀୟ ରାଷ୍ଟ୍ରଗଠନ ସମ୍ପର୍କରେ ଏ: ଏସ୍‌: ଆଲ୍‌ଟେକର ଏକ ସୂଚନା ଦେଇଛନ୍ତି ଯାହାକି ଋଗ୍‌ବେଦୀୟ କଥନ ଉପରେ ପ୍ରତିଷ୍ଠିତ । ତାଙ୍କ ବକ୍ତବ୍ୟ ହେଲା :

> The Rig-Vedic evidence shows that the Aryan society in that early period was divided into families, gramas, visas and janas. Gramas seem to have corresponded to a village consisting of people claiming a common descent and a number of such villages joined together by a bond of kinship seem to have constituted a vis. Its chief was known as a Vispati. Several visas made a jana or tribe, which had its own janapati or the king. (୩)

ପ୍ରାଚୀନ ଆର୍ଯ୍ୟମାନେ ଭରତ, ପୁରୁ, ଅନୁ ଆଦି ପାଞ୍ଚଟି ଗୋଷ୍ଠୀ ବା 'ଜନ'ରେ ବିଭକ୍ତ ହୋଇଥିଲେ । ପ୍ରତ୍ୟେକ ଜନର ଜଣେ ଲେଖାଏଁ ଜନପତି ବା ରାଜା ଥିଲେ । କାଳକ୍ରମେ ସେମାନଙ୍କ ଜୀବନରେ ସ୍ଥିରତା ଆସିଗଲା ଏବଂ ସେମାନେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହିବାକୁ ଲାଗିଲେ । ବେଳେ ବେଳେ ବିଭିନ୍ନ 'ଜନ'ର ଲୋକେ ମଧ୍ୟ ମିଳାମିଶି ରହିବାକୁ ଲାଗିଲେ । ସେତେବେଳେ ଦଳୀୟ ଭିତ୍ତିରେ ଗଢ଼ି ଉଠିଥିବା ସେମାନଙ୍କ ରାଜନୈତିକ ସଂସ୍ଥାର ପରିବର୍ତ୍ତନ ଘଟିଲା ଏବଂ ତାହା ଭୌମିକ ଭିତ୍ତିରେ ପ୍ରତିଷ୍ଠିତ ହେବାକୁ ଲାଗିଲା । ଏହାକୁ କୁହାଗଲା 'ରାଷ୍ଟ୍ର' ଯାହାର କି ଏକ ନିର୍ଦ୍ଦିଷ୍ଟ ସୀମା ରହିଲା । ପୂର୍ବରୁ କୁହାଯାଇଛି, ରାମାୟଣ-ଯୁଗ ବେଳକୁ ଏହି ସ୍ଥିତି ସୁଦୃଢ଼ ହୋଇ ସାରିଥିଲା । ରାଷ୍ଟ୍ର ସଂପର୍କରେ ଏଥିରେ ଉଲ୍ଲିଖିତ ବିଭିନ୍ନ ଶବ୍ଦ, ଯଥା, ରାଷ୍ଟ୍ର, ରାଜ୍ୟ, ଜନପଦ, ବିଷୟ ଆଦି ଏହାର ନିଦର୍ଶନ ।

ରାମାୟଣରେ ଆମେ କେବଳ ରାଜତନ୍ତ୍ରୀୟ ରାଷ୍ଟ୍ରର ଉଲ୍ଲେଖ ପାଇଥାଉଁ । କୌଣସିଠାରେ ଗଣତନ୍ତ୍ରର ଉଲ୍ଲେଖ ଦେଖିବାକୁ ମିଳେନାହିଁ । ବିଭିନ୍ନ ରାଷ୍ଟ୍ରର ସୀମାର ବର୍ଣ୍ଣନାରୁ ଜଣାଯାଏ ଯେ ଭାରତ ସେତେବେଳେ ଅନେକଗୁଡ଼ିଏ ରାଷ୍ଟ୍ରରେ ବିଭକ୍ତ ହୋଇଥିଲା । ଅଯୋଧ୍ୟା, କେକୟ, ବିଦେହ, କିଷ୍କିନ୍ଧା ଆଦି ତାହାର ଅନ୍ତର୍ଗତ । ପ୍ରତିଟି ରାଷ୍ଟ୍ରର ଗୋଟିଏ ଲେଖାଏଁ ରାଜଧାନୀ ଥିଲା ଯାହାକୁ କୁହାଯାଉଥିଲା 'ପୁର' । ଏତଦ୍‌ବ୍ୟତୀତ ଆଉ କେତେକ ସହର ମଧ୍ୟ ଥିଲା ଯେଉଁଗୁଡ଼ିକୁ କୁହାଯାଉଥିଲା 'ନଗର' । ଗାଁଗୁଡ଼ିକୁ କୁହାଯାଉଥିଲା 'ଗ୍ରାମ' । କେତେଗୁଡ଼ିଏ ଗାଁ ଗୋପାଳନ ପାଇଁ ପ୍ରସିଦ୍ଧ ଥିଲା । ସେଗୁଡ଼ିକୁ କୁହାଯାଉଥିଲା 'ଘୋଷ' । ରାମାୟଣୀୟ ରାଷ୍ଟ୍ର ଦଳୀୟ ସ୍ଥିତିରୁ ଭୌମିକ ସ୍ଥିତିକୁ ଉନ୍ନୀତ ହୋଇଥିଲେ ହେଁ ତାହାର ରାଜା ଯେ ସମ୍ପୂର୍ଣ୍ଣ ରୂପେ ଦଳୀୟ ବନ୍ଧନରୁ ମୁକ୍ତ ଥିଲେ ତାହା ଭାବିବା ଠିକ୍ ନୁହେଁ । ଏହି ଦଳୀୟ ବନ୍ଧନଟି ଥିଲା ଅତି ପୁରାତନ ଏବଂ ହଜାର ହଜାର ବର୍ଷର ପରଂପରା ଉପରେ ପ୍ରତିଷ୍ଠିତ । ସେଥିପାଇଁ ରାମାୟଣରେ ଅନେକତ୍ର (୨ । ୪ । ୧୫; ୩ । ୮୧ । ୧୧) ଆମେ ରାଜାଙ୍କୁ 'ବିଶାଂ ପତିଃ' ବୋଲି ଅଭିହିତ ହୋଇଥିବାର ଦେଖିବାକୁ ପାଇଥାଉଁ । ରାମାଶ୍ରୟ ଶର୍ମାଙ୍କ ଭଳି କେତେକ ସମାଲୋଚକ ମତ ଦିଅନ୍ତି ଯେ ରାମାୟଣ-ଯୁଗରେ ବୃହତ୍ ରାଷ୍ଟ୍ରର ଅଧୀନରେ କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରମାନ ରହିବାର ସମ୍ଭାବନା ନଥିଲା । ତାଙ୍କର ନିମ୍ନଲିଖିତ ମନ୍ତବ୍ୟ ଏ ସଂପର୍କରେ ଉଲ୍ଲେଖନୀୟ :

A vast State ruled by one emperor and extending from sea to sea, is unknown to the Ramayana.

> The Asvamedhas were, no doubt, common enough but they were performed in the Ramayanic period primarily with a religious or cultural motive. There is nothing to indicate that they led to the subordination of the adjoining states. (୪)

କିନ୍ତୁ ଏ ଧାରଣା ଠିକ୍ ନୁହେଁ । ଅବଶ୍ୟ ଉତ୍ତରରେ ହିମାଳୟ, ଦକ୍ଷିଣରେ ଭାରତ ମହାସାଗର, ପୂର୍ବରେ ବଙ୍ଗୋପସାଗର ଏବଂ ପଶ୍ଚିମରେ ଆରବ ସାଗରକୁ ନେଇ ସାରା ଭୂଖଣ୍ଡଟି ଗୋଟିଏ ବୃହତ୍ ରାଷ୍ଟ୍ରର ଅନ୍ତର୍ଗତ ଥିବାର ବର୍ଣ୍ଣନା ରାମାୟଣରେ ନାହିଁ । କିନ୍ତୁ ଉଭୟ ବୃହତ୍ ରାଷ୍ଟ୍ର ଓ ତାହାର ଅଧୀନସ୍ଥ କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରମାନଙ୍କରୁ ବର୍ଣ୍ଣନା ଡହିଁରେ ଅଛି । 'ସମ୍ରାଟ୍' 'ସର୍ବରାଜ', 'ଚକ୍ରବର୍ତ୍ତୀ', 'ଅଧିରାଜ' ଆଦି ଶବ୍ଦଗୁଡ଼ିକର ଅଯୋଧ୍ୟାର ରାଜାଙ୍କ ପ୍ରତି ପ୍ରୟୋଗ ପ୍ରମାଣ କରେ ଯେ ତାଙ୍କ ଅଧୀନରେ ଶ୍ରେଷ୍ଠ ଶ୍ରେଷ୍ଠ ରାଜାମାନେ ଥିଲେ । ଉଭୟ ଦଶରଥ ଓ ରାମ ଅଶ୍ୱମେଧ ଯଜ୍ଞ କରିଥିଲେ । ଏହି ଯଜ୍ଞର ତାତ୍ପର୍ଯ୍ୟ ହେଲା ଯଜ୍ଞାଶ୍ୱକୁ ବିଭିନ୍ନ ରାଜ୍ୟ ଦେଇ ଯିବାକୁ ହେଉଥିଲା ଏବଂ ଯେଉଁ ଯେଉଁ ରାଜ୍ୟଗୁଡ଼ିକରେ ତାହାର ଗତି ନିର୍ବାଧ ହେଉଥିଲା, ସେହି ରାଜ୍ୟଗୁଡ଼ିକ ଅଶ୍ୱମେଧ ଯଜ୍ଞ କରୁଥିବା ରାଜାଙ୍କ ଅଧୀନସ୍ଥ ବୋଲି ଧରାଯାଉଥିଲା । ଏହି ନିୟମ ବୈଦିକ କାଳରୁ ହିଁ ଚଳି ଆସୁଥିଲା । ଦଶରଥ ଓ ରାମ ଅଶ୍ୱମେଧ ଯଜ୍ଞ କରିବାର ତାତ୍ପର୍ଯ୍ୟ ହେଲା, ସେମାନେ ଚକ୍ରବର୍ତ୍ତୀ ରାଜା ଥିଲେ ଏବଂ ସେମାନଙ୍କ ଅଧୀନରେ ସାମନ୍ତ ରାଜାମାନେ ରହିଥିଲେ । ଅଯୋଧ୍ୟାପୁରୀର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି ଯେ (୧ । ୫ । ୧୪) ତାହା ସାମନ୍ତ ରାଜାମାନଙ୍କ ଦ୍ୱାରା ଭରପୂର (ସାମନ୍ତରାଜସଂଘୈଶ୍ଚ) ରହିଥିଲା । ଦଶରଥ ସ୍ୱୟଂ ମାନମୟୀ କୈକେୟୀଙ୍କୁ ପ୍ରବୋଧନା ଦେବା ପ୍ରସଙ୍ଗରେ କହିଛନ୍ତି ଯେ କୋଶଳ ସମେତ ଆହୁରି ଅନେକ ରାଜ୍ୟ ଉପରେ ତାଙ୍କର ଆଧିପତ୍ୟ ରହିଅଛି । ତାଙ୍କ ଭାଷାରେ ସେଗୁଡ଼ିକ ହେଲା :

ଦ୍ରାବଡ଼ାଃ ସିନ୍ଧୁସୌବୀରାଃ ସୌରାଷ୍ଟ୍ରାଃ ଦକ୍ଷିଣାପଥାଃ ।
ବଙ୍ଗାଙ୍ଗମଗଧାଃ ମତ୍ସ୍ୟାଃ ସମୃଦ୍ଧାଃ କାଶିକୋଶଳାଃ । (୫)

ଅର୍ଥାତ୍ (ମୋ'ର ଅଧୀନ ହେଉଛି) ଧନଶାଳୀ ଦ୍ରାବଡ଼ଦେଶ, ସିନ୍ଧୁଦେଶ, ସୌବୀରଦେଶ, ସୌରାଷ୍ଟ୍ରଦେଶ,' ଦକ୍ଷିଣାପଥ, ବଙ୍ଗଦେଶ, ଅଙ୍ଗଦେଶ,

ମଗଧ ଦେଶ, ମତ୍ସ୍ୟ ଦେଶ, କାଶୀ ଦେଶ ଓ କୋଶଳ ଦେଶ । କୋଶଳ ଦେଶ ଥିଲା ତାଙ୍କ ପୈତୃକ ଦେଶ । ଅତଏବ, ଅନ୍ୟ ଦେଶଗୁଡ଼ିକ ନିଶ୍ଚିତ ଭାବରେ ଥିଲା ତାଙ୍କର କରଦ ଦେଶ । ଅବଶ୍ୟ ତତ୍କାଳୀନ କୋଶଳର ଆୟତନ ସେତେ ବଡ଼ ନଥିଲା । ସ୍ୟନ୍ଦିକା ନଦୀ (ଆଧୁନିକ ସଇ ନଦୀ) ଥିଲା ଏହାର ଦକ୍ଷିଣ ସୀମା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୨ । ୫୦ । ୧୦) ବନଗମନ ସମୟରେ ରାମ ରଥରେ ବସି ଗୋଟିଏ ଦିନରେ ହିଁ ଏହି ସୀମାକୁ ପାରହୋଇ ଯାଇଥିଲେ (ରଥେନ ପୁରୁଷବ୍ୟାଘ୍ରଃ କୋଶଲାନତ୍ୟବର୍ତ୍ତତ) । ଅତଏବ, କୋଶଳ ରାଜ୍ୟର ଆୟତନ କ୍ଷୁଦ୍ର ହେଲେ ହେଁ ତାହାର ଅଧୀନରେ ଯେ ଅନେକଗୁଡ଼ିଏ ରାଜ୍ୟ ରହିଥିଲା ଏଥିରେ ସନ୍ଦେହ ନାହିଁ ।

ରାଜା ଯେ ଦୁଇ ଶ୍ରେଣୀର ଥିଲେ, ଯଥା, ସ୍ୱାଧୀନ ଓ ପରାଧୀନ ଏହା ସୂର୍ପଣଖାର ଗୋଟିଏ ଉକ୍ତିରୁ ଜଣାପଡ଼େ । ନାସାକର୍ଣ୍ଣ-ଛେଦନ ପରେ ସୂର୍ପଣଖା ଲଙ୍କାକୁ ଫେରି ଆସି ସ୍ୱଭ୍ରାତା ରାବଣ ସମ୍ମୁଖରେ ନିବେଦନ କରି କହୁଛି

ଯେଷାଂ ଚାରଶ୍ଚ କୋଷଶ୍ଚ ନୟଶ୍ଚ ଜୟତାଂ ବର ।
ଅସ୍ୱାଧୀନାଂ ନରେନ୍ଦ୍ରାଣାଂ ପ୍ରାକୃତୈସ୍ତେ ଜନୈଃ ସମାଃ । (୭)

ଅର୍ଥାତ୍ ହେ ଶ୍ରେଷ୍ଠ ବିଜୟୀ ! ଯେଉଁ ରାଜାମାନଙ୍କର ଗୁପ୍ତଚରଗଣ, କୋଷ ଓ ନୀତିସମୂହ ନିଜର ଅଧୀନ ନୁହନ୍ତି, ସେଭଳି ରାଜାମାନେ ହେଉଛନ୍ତି ସାଧାରଣ ଲୋକମାନଙ୍କ ସହିତ ସମାନ । ଏହାର ତାତ୍ପର୍ଯ୍ୟ ହେଲା ସାମନ୍ତ ରାଜାମାନଙ୍କର ଗୁପ୍ତଚର-ବିଭାଗ, ରାଜକୋଷ ଓ ଶାସନନୀତିକୁ ସେମାନଙ୍କ ଉପରିସ୍ଥ ଚକ୍ରବର୍ତ୍ତୀ ରାଜା ନିୟନ୍ତ୍ରିତ କରୁଥିଲେ । ଏହି ଅସ୍ୱାଧୀନ ରାଷ୍ଟ୍ର ଗୁଡ଼ିକରେ ସ୍ୱତନ୍ତ୍ର ରାଜାମାନେ ଶାସନ-କାର୍ଯ୍ୟ ନିର୍ବାହ କରୁଥିଲେ ହେଁ ସେଗୁଡ଼ିକ ସର୍ବୋତୋ ଭାବରେ ସାର୍ବଭୌମ ନଥିଲା ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (ଖ୍ରୀ:ପୂ: ୪ର୍ଥ ଶତାବ୍ଦୀ) ଆମେ 'ପ୍ରକୃତି' ଶବ୍ଦର ଉଲ୍ଲେଖ ଦେଖିଥାଉଁ ଯାହାକୁ କି ରାଷ୍ଟ୍ରର ଅଙ୍ଗ ବୋଲି କୁହାଯାଇଛି । ସେଥିରେ ଗୋଟିଏ ସ୍ଥାନରେ କୁହାଯାଇଛି :

ସ୍ୱାମ୍ୟମାତ୍ୟଜନପଦଦୁର୍ଗକୋଷଦଣ୍ଡମିତ୍ରାଣି ପ୍ରକୃତୟଃ । (୭)

ଅର୍ଥାତ୍ ରାଷ୍ଟ୍ରର ପ୍ରକୃତିସମୂହ ବା ଅଙ୍ଗସମୂହ ହେଉଛନ୍ତି ସ୍ୱାମୀ (ରାଜା), ଅମାତ୍ୟ (ମନ୍ତ୍ରୀ), ଜନପଦ, ଦୁର୍ଗ, କୋଷ, ଦଣ୍ଡ (ସେନା-ବାହିନୀ) ଓ ମିତ୍ରଗଣ ।

କେବଳ ଜନପଦଗୁଡ଼ିକର ସମାହାରକୁ ନେଇ ରାଷ୍ଟ୍ର ଗଢ଼ାଯାଇପାରିବ ନାହିଁ । ସେଥିପାଇଁ ଅନ୍ୟ ଛଅଟି ଅଙ୍ଗର ଆବଶ୍ୟକତା ରହିଛି । ରାମାୟଣରେ ଅବଶ୍ୟ 'ପ୍ରକୃତି' ଶବ୍ଦର ବାରମ୍ବାର ଉଲ୍ଲେଖ ଅଛି । କିନ୍ତୁ ଏହା ରାଷ୍ଟ୍ରର ଅଙ୍ଗ ଅର୍ଥରେ ବ୍ୟବହୃତ ହୋଇନାହିଁ । ଅନ୍ୟ ପକ୍ଷରେ ଏହା 'ପ୍ରଜା' ଅର୍ଥରେ ବ୍ୟବହୃତ ହୋଇଛି । ଏହାର ଅର୍ଥ ନୁହେଁ ଯେ ବାଲ୍ମୀକି ରାଷ୍ଟ୍ରର ବିଭିନ୍ନ ଅଙ୍ଗ ବିଷୟରେ ଅବହିତ ନଥିଲେ । ଅନ୍ୟ ପକ୍ଷରେ ସେ ଏ ବିଷୟରେ, ପୂର୍ଣ୍ଣ ଭାବରେ ସଚେତନ ଥିଲେ । ସେ ସ୍ପଷ୍ଟତଃ ଏଗୁଡ଼ିକୁ ରାଷ୍ଟ୍ରର ଅଙ୍ଗ ବୋଲି କହି ନଥିଲେ ମଧ୍ୟ ଯେଉଁ ପରିପ୍ରେକ୍ଷୀରେ ଏଗୁଡ଼ିକର ଉଲ୍ଲେଖ ଅଛି, ତହିଁରୁ ସୂଚିତ ହୁଏ ଯେ ଏଗୁଡ଼ିକ ଥିଲି ରାଷ୍ଟ୍ରର ଅଙ୍ଗ । ଉଦାହରଣସ୍ୱରୂପ ରାମାୟଣରେ ଠାଏ (୪।୬୧।୧୧) ହନୁମାନ୍ ସୁଗ୍ରୀବଙ୍କୁ କହୁଛନ୍ତି :

> ଯସ୍ୟ ଦଣ୍ଡଶ୍ଚ କୋଷଶ୍ଚ ମିତ୍ରାଣ୍ୟାତ୍ମା ପୁରଂ ଜନଃ
> ପୂର୍ଣ୍ଣାଣ୍ୟେତାନି ସର୍ବାଣି ସ ରାଜ୍ୟ ଫଳମଶ୍ନୁତେ ।

ଅର୍ଥାତ୍ ଯେଉଁ ରାଜାଙ୍କର ଦଣ୍ଡ (ସେନା), କୋଷ, ମିତ୍ରସମୂହ, ଆତ୍ମା (ସେ ନିଜେ), ପୁର (ଦୁର୍ଗ) ଓ ଜନ (ଲୋକେ), ଏମାନେ ସମସ୍ତେ ପୂର୍ଣ୍ଣ ରୂପରେ ବିଦ୍ୟମାନ ସେ ରାଜ୍ୟର ସୁଫଳକୁ ଭୋଗ କରିଥାନ୍ତି । ଏଠାରେ 'ଅମାତ୍ୟ'ଙ୍କ ଛଡ଼ା ଅନ୍ୟ ଛଅଟି ଅଙ୍ଗର ଉଲ୍ଲେଖ ଅଛି ଏବଂ 'ଜନପଦ' ସ୍ଥାନରେ 'ଜନ'ର ଉଲ୍ଲେଖ ଅଛି । ଏହା ଯାଜ୍ଞବଲ୍‌କ୍ୟ 'ସ୍ମୃତିର ଅନୁକୂଳ'; କାରଣ ତହିଁରେ 'ଜନ'କୁ ରାଷ୍ଟ୍ରର ସପ୍ତାଙ୍ଗରୁ ଏକତମ ବୋଲି ଧରାଯାଇଛି । (୮) ଏଠାରେ 'ଅମାତ୍ୟ' ଶବ୍ଦର ଉଲ୍ଲେଖ ନଥିଲେ ହେଁ ରାମାୟଣରେ ଅନ୍ୟାନ୍ୟ ରାଷ୍ଟ୍ର-ପରିଚାଳନାରେ ଅମାତ୍ୟମାନଙ୍କର ବିପୁଳ ଭୂମିକା ବିଷୟ ଭୂରି ଭୂରି ଉଲ୍ଲିଖିତ । ଦଶରଥ, ରାମ, ରାବଣ ଆଦି ସମସ୍ତେ ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ନେବା ପୂର୍ବରୁ ଅମାତ୍ୟମାନଙ୍କ ସହିତ ପରାମର୍ଶ କରିଛନ୍ତି । ଅମାତ୍ୟମାନଙ୍କର ମହତ୍ତ୍ୱ ବିଷୟରେ ରାମାୟଣରେ ଠାଏ (୨।୧୦୦।୨୪) କୁହାଯାଇଛି ଯେ ଯଦି ଜଣେ ଅମାତ୍ୟ ମେଧାବୀ, ଶୂରବୀର, ଚତୁର ଏବଂ ନୀତିଜ୍ଞ ହୋଇଥାନ୍ତି, ତା'ହେଲେ ରାଜାଙ୍କୁ ଓ ରାଜକୁମାରଙ୍କୁ ବହୁ ସମ୍ପତ୍ତି ମିଳିଥାଏ । ଉକ୍ତ ସର୍ଗର ୨୬ତମ ଶ୍ଳୋକରେ ଯୋଗ୍ୟ ଅମାତ୍ୟମାନଙ୍କୁ ରାଷ୍ଟ୍ରରେ ନିଯୁକ୍ତ କରିବା ଉପରେ ଗୁରୁତ୍ୱ ଦିଆଯାଇଛି । ଏହିସବୁ ଦୃଷ୍ଟାନ୍ତରୁ ଜଣାଯିବ ଯେ ରାମାୟଣ ଯୁଗରେ ରାଷ୍ଟ୍ରର ବିଭିନ୍ନ ଅଙ୍ଗ ବିଷୟରେ ଜଣାଥିଲା ।

ରାମାୟଣରେ ଗୋଟିଏ ସ୍ଥାନରେ (୨।୧୦୦।୨୬) ରାମ ଭରତଙ୍କୁ କୁଶଳ ପ୍ରଶ୍ନ ପଚାରିବା ପ୍ରସଙ୍ଗରେ କୋଶଳକୁ ଏକ 'ରାଷ୍ଟ୍ର' ବୋଲି କହିଛନ୍ତି ।

ବେଳେ ବେଳେ ରାଷ୍ଟ୍ରକୁ ରାଜ୍ୟ ବୋଲି ମଧ୍ୟ କୁହାଯାଇଛି । ଏହାର କାରଣ ହେଲା, ସେତେବେଳେ ରାଜତନ୍ତ୍ର-ଶାସନ ପ୍ରଚଳିତ ଥିଲା ଏବଂ ରାଜାଙ୍କୁ ନେଇ ରାଷ୍ଟ୍ରର ନାମ 'ରାଜ୍ୟ' ହୋଇଥିଲା ।

ରାଷ୍ଟ୍ରର ସପ୍ତାଙ୍ଗ ବିଷୟ ଉଲ୍ଲେଖ କଲାବେଳେ 'ସ୍ୱାମୀ' ବା ରାଜାଙ୍କ ନାମ ସର୍ବ ପ୍ରଥମେ ଆସିଥାଏ । ଏହା ରାଜାଙ୍କ ପ୍ରାଥମିକତାର ଯଥେଷ୍ଟ ପରିଚାୟକ । ବାସ୍ତବିକ ରାଜତନ୍ତ୍ର-ଶାସନରେ ଏହା ହେବା ସ୍ୱାଭାବିକ । ରାଜାଙ୍କ କୁଶଳ-ମଙ୍ଗଳ ସହିତ ରାଷ୍ଟ୍ରର କୁଶଳ-ମଙ୍ଗଳ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଏହାର ଅର୍ଥ କିନ୍ତୁ ନୁହେଁ ଯେ ରାଷ୍ଟ୍ରର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ରାଜାଙ୍କର ମଙ୍ଗଳ ସାଧନ କରିବା । ବରଂ ଆବଶ୍ୟକ ହେଲେ ରାଷ୍ଟ୍ରର ମଙ୍ଗଳ ଲାଗି ରାଜାଙ୍କୁ ନିଜ ସ୍ୱାର୍ଥକୁ ବଳିଦାନ ଦେବାକୁ ପଡ଼ୁଥିଲା । ରାଜଧର୍ମର ସଂରକ୍ଷଣ ଲାଗି ରାମଙ୍କର ବନବାସ ଏବଂ ତାଙ୍କ ପ୍ରିୟତମା ପତ୍ନୀଙ୍କୁ ନିର୍ବାସନ ଦଣ୍ଡବିଧାନ ଏହାର ଗୋଟିଏ ଗୋଟିଏ ଜ୍ୱଳନ୍ତ ନିଦର୍ଶନ । ରାଷ୍ଟ୍ରରେ କେବଳ ଯେ ରାଜାଙ୍କୁ ପ୍ରାଥମିକତା ଦିଆଯାଉ ନଥିଲା; ତାଙ୍କୁ ଜଣେ ମନୁଷ୍ୟ ରୂପଧାରୀ ଦେବତା ବୋଲି ମଧ୍ୟ ଗଣାଯାଉଥିଲା । ବାଲିଙ୍କୁ ବଧ କରିସାରିବା ପରେ ରାମ ଏହାର ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇ ତାଙ୍କୁ (ବାଲିଙ୍କୁ) ଅନେକ କଥା କହିଛନ୍ତି ଏବଂ ସେ କିପରି ରାଜଧର୍ମରୁ ବିଚ୍ୟୁତ ହୋଇଥିଲେ ତାହା ଦର୍ଶାଇଛନ୍ତି । ତାଙ୍କର ନିମ୍ନୋକ୍ତ ବକ୍ତବ୍ୟ ଏ ସମ୍ପର୍କରେ ଉଲ୍ଲେଖନୀୟ :

> ଦୁର୍ଲଭସ୍ୟ ଚ ଧର୍ମସ୍ୟ ଜୀବିତସ୍ୟ ଶୁଭସ୍ୟ ଚ ।
> ରାଜାନୋ ବାନରଶ୍ରେଷ୍ଠ ପ୍ରଦାତାରୋ **ନ ସଂଶୟଃ** ।।
> ତାନ୍ ନ ହିଂସ୍ୟାନ୍ନଚାକ୍ରୋଶେନାକ୍ଷିପେନାପ୍ରିୟଂ ବଦେତ୍ ।
> ଦେବା ମାନୁଷରୂପେଣ ଚରନ୍ତ୍ୟେତେ ମହୀତଳେ ।। (୯)

ଅର୍ଥାତ୍ ହେ ବାନରଶ୍ରେଷ୍ଠ । ରାଜାମାନେ ଯେ ଦୁର୍ଲଭ ଧର୍ମ, ଜୀବନ ଓ ଲୌକିକ ଅଭ୍ୟୁଦୟ ଆଣି ଦେଇଥାନ୍ତି, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ସେମାନଙ୍କ ପ୍ରତି ହିଂସାଚରଣ କରିବା ଉଚିତ ନୁହେଁ, ସେମାନଙ୍କ ପ୍ରତି ଆକ୍ଷେପ କରିବା ଉଚିତ ନୁହେଁ; ସେମାନଙ୍କ ପ୍ରତି ଅପ୍ରିୟ ବଚନ ପ୍ରୟୋଗ କରିବା ଉଚିତ ନୁହେଁ; କାରଣ ସେମାନେ ହେଉଛନ୍ତି ମନୁଷ୍ୟ ରୂପରେ ପୃଥିବୀରେ ବିଚରଣ କରୁଥିବା ଦେବତା । କେବଳ ଯେ ରାମାୟଣରେ ନୁହେଁ ବୈଦିକ କାଳରୁ ଆରମ୍ଭ କରି ବିଭିନ୍ନ ଗ୍ରନ୍ଥମାନଙ୍କରେ ରାଜାଙ୍କୁ ପ୍ରାଥମିକତା ଦିଆହୋଇଆସିଛି । ତାଙ୍କର ଅଖଣ୍ଡ ପ୍ରଭୁତ୍ୱ ଓ କ୍ଷମତା ତଥା

ରାଷ୍ଟ୍ର ସହିତ ଥିବା ନିବିଡ଼ ଅଙ୍ଗାଙ୍ଗୀ ସମ୍ପର୍କକୁ ଲକ୍ଷ୍ୟ କରି କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ରାଷ୍ଟ୍ର ସହିତ ସମତୁଲ କରିଦେବା ପାଇଁ କୁଣ୍ଠାବୋଧ କରିନାହାନ୍ତି । ତାଙ୍କ ଭାଷାରେ :

ରାଜା ରାଜ୍ୟମିତି ପ୍ରକୃତି-ସଂକ୍ଷେପଃ ।

ଅର୍ଥାତ୍ ରାଷ୍ଟ୍ରର (ସାତଗୋଟି) ପ୍ରକୃତିକୁ ନେଇ ରାଜା । ଏହାର ଅର୍ଥ କିନ୍ତୁ ନୁହେଁ ଯେ ଫରାସୀ ସମ୍ରାଟ୍ ଚତୁର୍ଦ୍ଦଶ ଲୁଇ କହିଲା ଭଳି ରାଷ୍ଟ୍ର ଓ ରାଜା ଏକ । ଏହାର ପ୍ରକୃତ ଅର୍ଥ ହେଉଛି ରାଷ୍ଟ୍ରର ଅନ୍ୟ ସମସ୍ତ ଅଙ୍ଗ (ପ୍ରକୃତି) ମିଶି ରାଜା । ଏହା ରାଷ୍ଟ୍ରରେ ରାଜାଙ୍କ ପ୍ରାଥମିକତାର ସୂଚନା ଦେଉଛି । ପି. ଭି. କାଣେ ଠିକ୍ ଅନୁରୂପ କଥା କହିଛନ୍ତି । ତାଙ୍କ ବକ୍ତବ୍ୟ ହେଲା :

> The authorities are agreed that the ruler is the most important or the first of the seven. Kautalya puts the matter very forcibly and realistically when he states that the briefest exposition of the elements of rajya is to say that the king is the state. (୧୦)

ରାମାୟଣ-ଯୁଗରେ ରାଜାଙ୍କୁ ଠିକ୍ ଅନୁରୂପ ଭାବରେ ପ୍ରାଥମିକତା ଦିଆ-ଯାଉଥିଲା ।

ରାଜା ଏଭଳି ଅଖଣ୍ଡ ପ୍ରଭାବର ଅଧିକାରୀ ଥିଲେ; ଅଥଚ ସେ ଥିଲେ ରାଷ୍ଟ୍ରର ଜଣେ ସେବକ । ତାଙ୍କଠାରେ ପ୍ରଭୁ ଓ ସେବକର ସମନ୍ୱୟ ଘଟିଥିଲା । ସେବକମାନେ ସେବାର ମୂଲ୍ୟ ଦରମା ଆକାରରେ ପାଇଲା ଭଳି ରାଜା ତାଙ୍କ ସେବାର ମୂଲ୍ୟ କର ହିସାବରେ ପାଉଥିଲେ । ଏହାର ପରିମାଣ ଥିଲା ପ୍ରଜାଙ୍କ ଆୟର ଏକ-ଷଷ୍ଠାଂଶ । ଏଣୁ ରାଜାଙ୍କୁ କୁହାଯାଉଥିଲା 'ଷଡ୍ଭାଗୀ ଭୃତ୍ୟ' । ପ୍ରଜାମାନଙ୍କୁ ରକ୍ଷା କରିବା ଥିଲା ତାଙ୍କର ସେବା । ରାମାୟଣ ଯୁଗରେ ଠିକ୍ ଏହି ସ୍ଥିତି ଥିଲା । ରାଜାଙ୍କର ଏବଂବିଧ ସେବକଭାବ ଉପରେ ମନ୍ତବ୍ୟ ଦେବାକୁ ଯାଇ କାଣେ ଆଉଠାଏ କହିଛନ୍ତି :

> Same works describe the king as a servant of the people whose wages or remuneration for

the protection he affords is the taxes he raises. (୧୧)

ବାଲ୍ମୀକିଙ୍କ ବକ୍ତବ୍ୟ ଅନୁସାରେ (ରାମାୟଣ ୩।୬।୧୧) ଯେଉଁ ରାଜା କର ହିସାବରେ ପ୍ରଜାମାନଙ୍କଠାରୁ ସେମାନଙ୍କ ଆୟର ଏକ-ଷଷ୍ଠାଂଶ ନେଇ ପିତା ପୁତ୍ରକୁ ରକ୍ଷା କଲାଭଳି ସେମାନଙ୍କୁ ରକ୍ଷା କରନଥାନ୍ତି, ସେ ଅଧର୍ମରେ ଭାଗୀ ହୁଅନ୍ତି । ଅତଏବ, ରାମାୟଣୀୟ ରାଷ୍ଟ୍ରରେ ରାଜା-ପ୍ରଜାଙ୍କ ସମ୍ପର୍କ ଥିଲା ପିତା-ପୁତ୍ରଙ୍କ ସମ୍ପର୍କ ଭଳି ଅତି ଆପଣାର—ଅତି ନିବିଡ଼ । ପିତା ତ କେବଳ ପୁତ୍ରକୁ ରକ୍ଷା କରନଥାନ୍ତି, ସେ ମଧ୍ୟ ପୁତ୍ରର ସୁଖ-ଦୁଃଖର ସାଥୀ ହୋଇଥାନ୍ତି ଏବଂ ପୁତ୍ର କପରି ସୁଖ-ଶାନ୍ତିରେ ରହିବ ସେଥିପ୍ରତି ଦୃଷ୍ଟି ଦେଇଥାନ୍ତି । ରାଜା ମଧ୍ୟ ଅନୁରୂପ ଭାବରେ ପୁତ୍ରରୂପୀ ପ୍ରଜାଙ୍କର ସୁଖ-ଶାନ୍ତି ପ୍ରତି ଦୃଷ୍ଟି ଦେଇଥାନ୍ତି । ସେ ପ୍ରଜାନୁରଞ୍ଜନ କରଥାନ୍ତି ବୋଲିତ ତାଙ୍କ ନାମ ହୋଇଛି ରାଜା । ମହାଭାରତରେ ସେଥିପାଇଁ କୁହାଯାଇଛି :

ରଞ୍ଜିତାଶ୍ଚ ପ୍ରଜାଃ ସର୍ବାସ୍ତେନ ରାଜେତି ଶବ୍ଦ୍ୟତେ ।

ଅର୍ଥାତ୍ ଏ ପ୍ରଜାନୁରଞ୍ଜନ କରନ୍ତି ବୋଲି ସେମାଙ୍କୁ ରାଜା କୁହାଯାଏ । ରାମାୟଣୀୟ ରାଷ୍ଟ୍ରରେ ରାଜାଙ୍କ ସ୍ଥିତି ମଧ୍ୟ ଥିଲା ଠିକ୍ ଅନୁରୂପ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ରାଷ୍ଟ୍ରରେ ସାର୍ବଭୌମ କ୍ଷମତା କାହାଙ୍କ ଉପରେ ନ୍ୟସ୍ତ ଥିଲା—ରାଜାଙ୍କ ଉପରେ ନା ପ୍ରଜାମାନଙ୍କ ଉପରେ ? ଆମେ ଜାଣୁ ଯେ ମଧ୍ୟଯୁଗୀୟ ହିନ୍ଦୁ ରାଜାମାନେ ସାର୍ବଭୌମ କ୍ଷମତାର ଅଧିକାରୀ ହୋଇ ଉଠିଥିଲେ । ଏଭଳି ସ୍ଥିତି ଆମ ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ବି ଥିଲା । କିନ୍ତୁ ରାମାୟଣ ଗ୍ରନ୍ଥ ଅନୁଧ୍ୟାନ କଲେ ଆମେ ଦେଖୁଁ ଯେ ଏଭଳି ସାର୍ବଭୌମ କ୍ଷମତା ରାଜାଙ୍କ-ଠାରେ ନଥିଲା । ବୈଦିକ ରାଜାମାନଙ୍କର ମଧ୍ୟ ଠିକ୍ ସେହିଭଳି ସ୍ଥିତି ଥିଲା । ପ୍ରଜାମାନେ ସେମାନଙ୍କୁ ନିର୍ବାଚିତ କରୁଥିଲେ । ରାମାୟଣଯୁଗ ବେଳକୁ ରାଜପଦ ପୁରୁଷାନୁକ୍ରମିକ ହୋଇ ସାରିଥିଲେ ମଧ୍ୟ ରାଜାଙ୍କୁ ନିର୍ବାଚିତ କମ୍ବା ନିର୍ବାସିତ କରିବାରେ ପ୍ରଜାମାନଙ୍କର କ୍ଷମତା ପୂର୍ବ ଭଳି ଅକ୍ଷୁଣ୍ଣ ଥିଲା । ଶର୍ମାଙ୍କ ଭାଷାରେ :

In theory and partly in practice also Valmiki recognised that sovereignty primarily vested among the people who had the night not only to

formally sanction a king's succession to the throne but also to stop it if it went against their interests. (୧୨)

ଉଦାହରଣ ସ୍ୱରୂପ ରାମଙ୍କୁ ଯୁବରାଜ କରାଇବା ନିମିତ୍ତ ଦଶରଥ ପ୍ରଜାମାନଙ୍କର ସମ୍ମତି ଅଣାଇବା ଉଦ୍ଦେଶ୍ୟରେ ରାଜସଭାକୁ ଡ଼କାଇଥିଲେ ଏବଂ ସେଥିରେ ବିଭିନ୍ନ ଗୋଷ୍ଠୀର ଲୋକମାନେ ଯୋଗଦେଇ ସେମାନଙ୍କର ସମ୍ମତି ଜ୍ଞାପନ କରିଥିଲେ । ଇକ୍ଷ୍ୱାକୁବଂଶୀୟ ରାଜା ସଗରଙ୍କର ଜ୍ୟେଷ୍ଠପୁତ୍ର ଥିଲେ ଅସମଞ୍ଜସ । ନିୟମ ଅନୁଯାୟୀ ସେ ଯୁବରାଜ ହେବା କଥା । କିନ୍ତୁ ସେ ଥିଲେ ବଡ଼ ଅତ୍ୟାଚାରୀ ତଥା ଦୁଷ୍ଟ ପ୍ରକୃତିର । ତେଣୁ ତାଙ୍କର ଯୁବରାଜ ହେବା ଏବଂ ପରେ ରାଜା ହେବା ପ୍ରଜାମାନେ ଚାହିଁ ନଥିଲେ । ସେମାନଙ୍କ ଇଚ୍ଛା ପ୍ରତି ସମ୍ମାନ ଦେଖାଇବାକୁ ଯାଇ ସଗର ଅସମଞ୍ଜସଙ୍କୁ ରାଜ୍ୟରୁ ନିର୍ବାସିତ କରିଥିଲେ । ରାଜାଙ୍କର ଏହି ପ୍ରଜାନିଷ୍ଠତା ତଥା ପ୍ରଜାନିର୍ଭରଶୀଳତା ଖାଲି ରାମାୟଣ-କାଳରେ ନୁହେଁ, ଏହାର ବହୁ ଶତ ବର୍ଷ ପୂର୍ବରୁ ବୈଦିକ କାଳରେ ମଧ୍ୟ ରାଷ୍ଟ୍ର-ପ୍ରଶାସନର ଥିଲା ଏକ ବିଶିଷ୍ଟ ବିଭବ । ପ୍ରଜାଙ୍କୁ ନେଇଥିଲେ ରାଜା, ରାଜାଙ୍କୁ ନେଇ କିନ୍ତୁ ପ୍ରଜା ନଥିଲେ । ସେଥିପାଇଁ ପରା ରାଜାଙ୍କ ଅଭିଷେକ ମନ୍ତ୍ରରେ (ଅଥର୍ବ ବେଦ, ୩ ।୪ । ୨) ସ୍ପଷ୍ଟ ଭାବରେ କୁହାଯାଇଛି :

ତ୍ୱାଂ ବିଶୋ ବୃଣତାଂ ରାଜ୍ୟାୟ ।

ଅର୍ଥାତ୍ (ହେ ରାଜନ୍ !) ତୁମକୁ ରାଜ୍ୟର ଅଭିବୃଦ୍ଧି ଲାଗି ପ୍ରଜାମାନେ ବରଣ କରନ୍ତୁ । ବାସ୍ତବିକ, ରାଷ୍ଟ୍ରରେ ପ୍ରଜାମାନଙ୍କର ସାର୍ବଭୌମତା ତଥା ପ୍ରାଥମିକତା ଭାରତ ଭଳି ପ୍ରାଚୀନ ସଂସ୍କୃତିସମ୍ପନ୍ନ ଚୀନରେ ମଧ୍ୟ ମାନ୍ୟତା ପାଇଥିଲା । ସେଥିପାଇଁ ତ ଜଣେ ପ୍ରାଚୀନ ଚୈନିକ ଚିନ୍ତକ ମେଙ୍ଗ୍‌ସେ ଯଥାର୍ଥରେ କହିଛନ୍ତି :

The people is the most important element in the country; next come the useful gods of the soil and the crops, and last in importance comes the ruler. (୧୨-କ)

ଅଥଚ ପ୍ରାଚୀନ ପାଶ୍ଚାତ୍ୟ ଚିନ୍ତାଧାରାରେ ଏହାର ଠିକ୍ ବିପରୀତମୁଖୀ ଝଲକ ଦେଖାଦେଇଥାଏ । ରୋମୀୟ ସମ୍ରାଟ୍ ଫ୍ରେଡ଼ରିକ୍ ବାର୍ବାରୋସା (ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀ) ଏବଂ ବାଣୀ ଏ ସମ୍ପର୍କରେ ଉଲ୍ଲେଖନୀୟ :

It is not for the people to give laws to the king' but to obey his command. (୧୨-ଖ)

ସେ ଯାହାହେଉ, ରାମାୟଣୀୟ ରାଜା-ପ୍ରଜାସମ୍ବନ୍ଧିତ ଚିନ୍ତାଧାରାରେ ରାଜା ଓ ପ୍ରଜା ଉଭୟଙ୍କ ପ୍ରତି ଏହି ପ୍ରାଥମିକତା ଦିଆଯାଉଥିଲେ ହେଁ ପ୍ରଜା ଥିଲେ ଅଧିକ ପ୍ରାଥମିକତାର ଅଧିକାରୀ ଏବଂ ରାଜା ଏହି ଅଧିକାରକୁ ଯଥେଷ୍ଟ ମାନ୍ୟତା ପ୍ରଦର୍ଶନ କରୁଥିଲେ ।

**ଆନ୍ତଃରାଷ୍ଟ୍ରୀୟ ସଂପର୍କ :**

ବୈଦିକ କାଳରେ କିପରି ଗୋଷ୍ଠୀ-ଭିତ୍ତିରେ ପ୍ରଥମେ ରାଷ୍ଟ୍ର ଗଠିତ ହୋଇଥିଲା ଏବଂ କାଳକ୍ରମେ କିପରି ଏହା ଭୂମି-ଭିତ୍ତିକ ହୋଇଗଲା ଏବଂ ଏହାର ଏକ ନିର୍ଦ୍ଦିଷ୍ଟ ସୀମା-ସରହଦ ରହିବାକୁ ଲାଗିଲା ତାହା ପୂର୍ବରୁ ଆଲୋଚିତ । ଏହିପରି ଭାବରେ ସ୍ୱତନ୍ତ୍ର ସୀମା-ସରହଦକୁ ନେଇ ଅନେକ-ଗୁଡ଼ିଏ ରାଷ୍ଟ୍ର ଭାରତ-ଭୂମିରେ ମୁଣ୍ଡ ଟେକିବାକୁ ଲାଗିଲା । ରାମାୟଣ-ଯୁଗ ବେଳକୁ କ୍ଷୁଦ୍ର-ବୃହତ୍ ଅନେକଗୁଡ଼ିଏ ରାଷ୍ଟ୍ର ଗଠିତ ହୋଇ ସାରିଥିଲା । ରାଷ୍ଟ୍ରର ବଳ ନିର୍ଭର କରୁଥିଲା ତାହାର ଆୟତନ, ପ୍ରଜାସଂଖ୍ୟା ତଥା ତହିଁରେ ଥିବା ପ୍ରାକୃତିକ ସଂପଦ ଉପରେ । ତେଣୁ ପ୍ରତ୍ୟେକ ରାଷ୍ଟ୍ର ନିଜ ନିଜର ସୀମାବୃଦ୍ଧି କରିବା ଲାଗି ଏବଂ ନିଜ ନିଜର ସୀମାକୁ ସୁରକ୍ଷିତ କରିବାଲାଗି ସଦା-ସର୍ବଦା ଚେଷ୍ଟିତ ଥିଲେ । ସବଳ ରାଷ୍ଟ୍ର ଦୁର୍ବଳ ରାଷ୍ଟ୍ରକୁ ଗ୍ରାସ କରିଯିବା ଥିଲା ଏକ ସ୍ୱାଭାବିକ ଘଟଣା । ତେଣୁ ରାଷ୍ଟ୍ରମାନେ ନିଜ ନିଜର ସ୍ଥିତିକୁ ଦୃଢ଼ ରଖିବାଲାଗି ବିଭିନ୍ନ କୂଟନୀତି ଅବଲମ୍ବନ କରୁଥିଲେ । ଏହି ପ୍ରକ୍ରିୟାରେ ସେତେବେଳେ ଏକ ସୁସଂହତ ଆନ୍ତଃରାଷ୍ଟ୍ରୀୟ ସଂପର୍କ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଗଢ଼ି ଉଠିଥିଲା । ତତ୍‌କାଳୀନ ବିଜିଗୀଷୁ ରାଜାମାନଙ୍କ ଆତ୍ମବିସ୍ତାର ନୀତି ଉପରେ ମନ୍ତବ୍ୟ ଦେବାକୁ ଯାଇ କାଣେ ଯଥାର୍ଥରେ ଆଉଠାଏ କହନ୍ତି :

All our works place before kings this ideal of conquest, domination or self-aggrandisement at the expense of one's weak neighbours. (୧୩)

ରାମାୟଣରେ ରାଜାଙ୍କ ସଂପର୍କରେ ବ୍ୟବହୃତ 'ବିଜିଗୀଷୁ', 'ମିତ୍ର,' ଅମିତ୍ର,' 'ମଧ୍ୟସ୍ଥ', ଓ 'ଉଦାସୀନ' ଆଦି ଶବ୍ଦଗୁଡ଼ିକରୁ ସୂଚନା ମିଳେ ଯେ ବିଭିନ୍ନ ପ୍ରକାର ରାଷ୍ଟ୍ରକୁ ନେଇ ବିଭିନ୍ନ ପ୍ରକାର ରାଷ୍ଟ୍ର-ରାଷ୍ଟ୍ର ସଂପର୍କ ସେତେବେଳେ ଗଢ଼ିଉଠିଥିଲା । (୧୪) ଏହାର ତାତ୍ପର୍ଯ୍ୟ ହେଲା ରାଜା 'ବିଜିଗୀଷୁ'

ହେବାକୁ ଚାହିଁଲେ ବା ରାଜ୍ୟ ଜିଣି ନିଜ ରାଜ୍ୟର ସୀମାକୁ ବଢ଼ାଇବାକୁ ଚାହିଁଲେ ତାଙ୍କୁ ତିନି ପ୍ରକାର ରାଷ୍ଟ୍ର ସହିତ ସମ୍ପର୍କ-ସ୍ଥାପନ କରିବାକୁ ପଡ଼ିବ । ସେହି ରାଷ୍ଟ୍ରଗୁଡ଼ିକ ହେଉଛି ରାମାୟଣୀୟ ଭାଷାରେ 'ମିତ୍ର', 'ଅମିତ୍ର', ଓ 'ଉଦାସୀନ' । 'ମଧ୍ୟସ୍ଥ' ରାଷ୍ଟ୍ର (buffer State) ଏହି ତିନି ପ୍ରକାରରୁ ଗୋଟିଏ ପ୍ରକାର । ରାଷ୍ଟ୍ରରେ ତାହାର ପ୍ରକାର ଅନୁଯାୟୀ ତାହା ସହିତ ସଂପର୍କ ସ୍ଥାପନ କରିବାକୁ ପଡ଼ିବ ।

ରାଷ୍ଟ୍ରର ଛଅ ଅଙ୍ଗ ମଧ୍ୟରେ 'ମିତ୍ର' କପର ଅନ୍ତର୍ଭୁକ୍ତ ତାହା ପୂର୍ବରୁ ଆଲୋଚିତ । ତେଣୁ ରାଷ୍ଟ୍ରର ସମ୍ପ୍ରସାରଣ ତଥା ସଂରକ୍ଷଣରେ ମିତ୍ର-ରାଷ୍ଟ୍ରର ଯଥେଷ୍ଟ ପ୍ରାଧାନ୍ୟ ଥିଲା । ସେତେବେଳେ ରାଷ୍ଟ୍ରର ପ୍ରଧାନ ନୀତି ଥିଲା କପର ଅଧିକରୁ ଅଧିକ ମିତ୍ର ରାଷ୍ଟ୍ରମାନଙ୍କ ସହିତ ନିଜକୁ ସଂଯୁକ୍ତ କରାଇବା । ନିଜେ ଏକାକୀ ଯେଉଁ କାର୍ଯ୍ୟ କରିବା ଥିଲା ଦୁଷ୍କର, ତାହାକୁ ରାଜାମାନେ ମିତ୍ର ରାଜାମାନଙ୍କ ସହାୟତାରେ ଅନାୟାସରେ କରିପାରୁଥିଲେ । ରାବଣ-କବଳରୁ ସୀତାଙ୍କୁ ଉଦ୍ଧାର କରିବା ଲାଗି ରାମଙ୍କର ସୁଗ୍ରୀବଙ୍କ ସହିତ ମିତ୍ରତା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ମିତ୍ରତା ଫଳରେ ସୁଗ୍ରୀବ ମଧ୍ୟ ନିଜ ପତ୍ନୀ ତାରାଙ୍କୁ ବାଲିଙ୍କ କବଳରୁ ଉଦ୍ଧାର କରିଥିଲେ ଏବଂ ତାଙ୍କ (ବାଲିଙ୍କ) ମୃତ୍ୟୁପରେ କିଷ୍କିନ୍ଧାର ରାଜା ହୋଇପାରିଥିଲେ । ହନୁମାନ୍, ଅଙ୍ଗଦ ସମେତ ଅନ୍ୟ ବାନରମାନେ ରାମଙ୍କ କାର୍ଯ୍ୟ ସମ୍ପାଦନ କରିବାକୁ ଯାଇ କେତେ ଯେ କଷ୍ଟ ସ୍ୱୀକାର କରିଥିଲେ ତାହାର ତୁଳନା ନାହିଁ । ସଂକ୍ଷେପରେ କହିବାକୁ ଗଲେ ମିତ୍ର ରାଷ୍ଟ୍ରମାନେ ପାରସ୍ପରିକ ଅଭିବୃଦ୍ଧି ତଥା ବିପଦ-ଆପଦରେ ସହାୟକ ହେଉଥିଲେ ।

ଏ ତ ଗଲା 'ମିତ୍ର ରାଜା' ବା 'ମିତ୍ର ରାଷ୍ଟ୍ର' କଥା । କିନ୍ତୁ 'ଅମିତ୍ର ରାଜା' ବା 'ଅମିତ୍ର ରାଷ୍ଟ୍ର' ପ୍ରତି ନୀତିନିୟମ ଥିଲା ପୃଥକ୍ । କଳେ, ବଳେ କୌଶଳେ ସେହି ରାଜାଙ୍କୁ ବା ରାଷ୍ଟ୍ରକୁ ପଦାନତ କରିବାକୁ ପଡ଼ୁଥିଲା । ଏଥିପାଇଁ ଚାରି ପ୍ରକାର ନୀତିରୁ ସ୍ଥଳ-ବିଶେଷରେ ଏକ ବା ଏକାଧିକ ନୀତିକୁ ପ୍ରୟୋଗ କରିବାକୁ ପଡ଼ୁଥିଲା । ଏହି ନୀତିଗୁଡ଼ିକ ହେଲା ସାମ, ଦାନ, ଭେଦ, ଓ ଦଣ୍ଡ । ଶତ୍ରୁରାଜା ଯଦି ସଦାଚାରୀ ହୋଇଥାନ୍ତି, ତା'ହେଲେ ତାଙ୍କ ସହିତ ସାମନୀତି ବା ଶାନ୍ତି-ନୀତି ଅବଲମ୍ବନ କରିବାକୁ ପଡ଼ିବ; ତାଙ୍କ ସହିତ ସବୁ ପ୍ରକାର ବନ୍ଧୁତା ରକ୍ଷା କରିବାକୁ ପଡ଼ିବ । ଶତ୍ରୁ-ରାଜା ଯଦି ଲୋଭୀ ହୋଇଥାନ୍ତି, ତା'ହେଲେ ତାଙ୍କୁ ଦାନାଦିଦ୍ୱାରା ସନ୍ତୁଷ୍ଟ କରିବାକୁ ପଡ଼ିବ । ଶତ୍ରୁରାଜା ଯଦି ବିଶ୍ୱସନୀୟ ହୋଇ ନଥିବେ, ତା'ହେଲେ ତାଙ୍କ ପ୍ରତି ଭେଦ-ନୀତି ପ୍ରୟୋଗ କରିବାକୁ ପଡ଼ିବ ।

ଏହି ଭେଦ-ନୀତିର ପ୍ରୟୋଗ ଫଳରେ ସେ ଦୁର୍ବଳ ହୋଇଯିବେ ଏବଂ ସେତେବେଳେ ତାଙ୍କୁ ପଦାନତ କରିବାରେ କିଛି ଅସୁବିଧା ହେବନାହିଁ । ଶତ୍ରୁରାଜା ଯଦି ଦୁଷ୍ଟ ତଥା ଦୁର୍ଦ୍ଦାନ୍ତ ପ୍ରକୃତିର ହୋଇଥିବେ, ତେବେ ତାଙ୍କ ପ୍ରତି ଦଣ୍ଡ-ନୀତି ପ୍ରୟୋଗ କରିବାକୁ ପଡ଼ିବ; ତାଙ୍କ ସହିତ ଯୁଦ୍ଧ କରି ତାଙ୍କୁ ପଦାନତ କରିବାକୁ ପଡ଼ିବ । ରାବଣ ପାଇଁ ରାମ ଥିଲେ ସଦାଚାରୀ ଓ ଧର୍ମ-ପରାୟଣ ଶତ୍ରୁ । ସେଥିପାଇଁ ବିଭୀଷଣ ରାମଙ୍କ ସହିତ ସନ୍ଧି-ସ୍ଥାପନ କରି ତାଙ୍କ ହାତରେ ସୀତାଙ୍କୁ ଫେରାଇ ଦେବାପାଇଁ ତା'କୁ (ରାବଣକୁ) ବାରମ୍ବାର ପରାମର୍ଶ ଦେଇଥିଲେ । ରାବଣର ମନ୍ତ୍ରୀ ମାଲ୍ୟବାନ୍ ମଧ୍ୟ ତା'କୁ ସେହିଭଳି ପରାମର୍ଶ ଦେଇଥିଲେ । ରାବଣ କିନ୍ତୁ ସେଥିପ୍ରତି କର୍ଣ୍ଣପାତ କରି ନଥିଲା । ଶାସ୍ତ୍ର ନିର୍ଦ୍ଦିଷ୍ଟ ଏହି ନୀତିକୁ ଅନୁସରଣ ନକରିବା ଫଳରେ ସେ ଶତ୍ରୁଙ୍କୁ ପଦାନତ କରିବ କ'ଣ ଓଲଟି ଶତ୍ରୁଙ୍କ ଦ୍ୱାରା ସବଂଶ ନଷ୍ଟ ହୋଇଯାଇଥିଲା । 'ଦାନ'ନୀତିର ଗୋଟିଏ ଉଦାହରଣ ଆମେ ପାଇଥାଉଁ କୁବେରଙ୍କର ନିଜସ୍ୱ ପୁଷ୍ପକ ବିମାନଟିକୁ ରାବଣର ହାତରେ ଟେକି ଦେବାରେ । ଏହାଦ୍ୱାରା ରାବଣର ଲୋଭ ଉପଶାନ୍ତ ହୋଇ ଯାଇଥିଲା ଏବଂ କୁବେର ମଧ୍ୟ ରାବଣର ଅତ୍ୟାଚାରରୁ ବଞ୍ଚି ଯାଇଥିଲେ । ଶତ୍ରୁପକ୍ଷ ଯଦି ଅଧିକତର ବଳବାନ୍ ହୋଇଥାଏ, ତାହେଲେ ତାକୁ ପରାସ୍ତ କରିବାପାଇଁ ଭେଦନୀତି ପ୍ରୟୋଗ କରାଯାଏ, ସେକଥା ରାବଣକୁ ବିଭୀଷଣ କହିଥିବାର ବର୍ଣ୍ଣନା ଆମେ ରାମାୟଣରେ (୬ । ୯ । ୩୩) ଦେଖିବାକୁ ପାଇଥାଉଁ । ମନ୍ତ୍ରୀ ମାଲ୍ୟବାନ୍ ରାବଣକୁ ରାମଙ୍କ ସହିତ ସନ୍ଧି କରିବା ପାଇଁ ପରାମର୍ଶ ଦେଲାବେଳେ ତା' ମନରେ ସନ୍ଦେହ ହେଲା ଯେ ଶତ୍ରୁପକ୍ଷ ତାଙ୍କଠାରେ (ମାଲ୍ୟବାନ୍‌ଙ୍କଠାରେ) ଭେଦ-ନୀତି ପ୍ରୟୋଗ କରିଛି । ସେଥିପାଇଁ ରାବଣ ମାଲ୍ୟବାନ୍‌ଙ୍କୁ ଖୁବ୍ ଭର୍ତ୍ସନା କରିଥିଲା । ତାହା ରୋଚକ ଭାବରେ ରାମାୟଣରେ (୬ । ୩୬ । ୬) ବର୍ଣ୍ଣିତ । ଦଣ୍ଡ-ନୀତିର ପ୍ରୟୋଗର ଏକ ଜ୍ୱଳନ୍ତ ଉଦାହରଣ ହେଉଛି ରାବଣ । ରାମ ତା'ପାଖକୁ ଅଙ୍ଗଦଙ୍କୁ ଦୂତ ଭାବରେ ପଠାଇ ସୀତାଙ୍କୁ ଫେରାଇ ଦେବାପାଇଁ ପ୍ରସ୍ତାବ ଦେଇଥିଲେ । ରାବଣ କିନ୍ତୁ ଏହି ସନ୍ଧି-ପ୍ରସ୍ତାବକୁ ଅଗ୍ରାହ୍ୟ କରି ଦେଇଥିଲା । ଶେଷକୁ ରାମ ବାଧ୍ୟ ହୋଇ ତା' ପ୍ରତି ଦଣ୍ଡନୀତିର ପ୍ରୟୋଗ କରିଥିଲେ ।

ରାଷ୍ଟ୍ରର ସୁପରିଚାଳନା ନିମିତ୍ତ 'ଷାଡ଼୍‌ଗୁଣ୍ୟ-ନୀତି' ବା ଷଡ଼୍‌ଗୁଣସମ୍ପନ୍ନ ନୀତି ଅନୁସୃତ ହେଉଥିଲା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (୭।୧) ମଧ୍ୟ ଆମେ ଏହି 'ଷାଡ଼୍‌ଗୁଣ୍ୟ' ସମ୍ପର୍କରେ ଉଲ୍ଲେଖ ଥିବାର ଦେଖିବାକୁ ପାଇଥାଉଁ । ବାସ୍ତବିକ ଆର୍ଯ୍ୟ-ମାନଙ୍କ ରାଷ୍ଟ୍ର ପରିଚାଳନାରେ ଏହା ଥିଲା ଏକ ଅପରିହାର୍ଯ୍ୟ ନୀତି । ବ୍ୟକ୍ତିଙ୍କୁ ସାର୍ଥକ

ତଥା ସଫଳ ରାଜା ହେବା ପାଇଁ ଏହି ନୀତିଗୁଡ଼ିକୁ ନିଶ୍ଚିତ ଭାବରେ ଅନୁସରଣ କରିବାକୁ ପଡ଼ୁଥିଲା । ଏହି ନୀତିଗୁଡ଼ିକ ହେଲା ସନ୍ଧି, ବିଗ୍ରହ, ଆସନ, ଯାନ, ସଂଶୟ ଓ ଦ୍ୱୈଧୀ-ଭାବ । ରାମାୟଣରେ, ରାମଙ୍କୁ 'ଷାଡ଼୍‌ଗୁଣ୍ୟ' ବିଷୟରେ ଜ୍ଞାନ ଥିବା ବ୍ୟକ୍ତି ତଥା ନୀତିକାର ବୋଲି (ଷାଡ଼୍‌ଗୁଣ୍ୟସ୍ୟ ପଦଂ ବେତ୍ତା ନୀତିକର୍ତ୍ତା ଚ ରାଘବଃ) ଅଭିହିତ କରାଯାଇଛି । (୧୫) ସନ୍ଧି-ନୀତିକୁ ଅନୁସରଣ କରି ଶତ୍ରୁ ରାଜାଙ୍କ ସହିତ ଶାନ୍ତିସ୍ଥାପନ କରାଯାଇଥାଏ । ଶତ୍ରୁରାଜା ଅଧିକତର ବଳବାନ୍ ଥିଲେ ସାଧାରଣତଃ ଏଭଳି ନୀତି ଅନୁସୃତ ହୋଇଥାଏ । ଏହା ଫଳରେ ଉଭୟ ସବଳ ଓ ଦୁର୍ବଳ ରାଷ୍ଟ୍ରର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବପର ହୋଇଥାଏ । ସୁଗ୍ରୀବ ରାମଙ୍କ ସହିତ ବନ୍ଧୁତା ସ୍ଥାପନ କରିବା ଫଳରେ ବାଲୀଙ୍କଠାରୁ ଅଧିକତର ବଳଶାଳୀ ହୋଇ ଉଠିଥିଲେ । ଏକଥା ବିଦୁଷୀ ତାରା ଲକ୍ଷ୍ୟ କରିପାରିଥିଲେ । ସେ ତେଣୁ ନିଜ ସ୍ୱାମୀ ବାଲୀଙ୍କୁ ସୁଗ୍ରୀବ ଓ ରାମଙ୍କ ସହିତ ସନ୍ଧି ସ୍ଥାପନ କରିବା ପାଇଁ ପରାମର୍ଶ ଦେଇ କହିଥିଲେ :

ଅହଂ ହି ତେ କ୍ଷେମଂ ମନ୍ୟେ ତେନ ରାମେଣ ସୌହୃଦମ୍ ।
ସୁଗ୍ରୀବେଣ ଚ ସଂପ୍ରୀତିଂ ବୈରମୁତ୍ସୃଜ୍ୟ ଦୂରତଃ ।। (୧୬)

ଅର୍ଥାତ୍ ଆପଣ ବୈରଭାବକୁ ଦୂରେଇ ଦେଇ ରାମଙ୍କ ସହିତ ବନ୍ଧୁତା କରନ୍ତୁ ଏବଂ ସୁଗ୍ରୀବଙ୍କ ସହିତ ପ୍ରୀତିଭାବ ସ୍ଥାପିତ କରନ୍ତୁ । ଆପଣଙ୍କ ପକ୍ଷରେ ଏହା ଠିକ୍ ହେବ ବୋଲି ମୁଁ ଭାବୁଛି । ସେହିପରି 'ବିଗ୍ରହ' ଅର୍ଥ ହେଲା ଯୁଦ୍ଧ । କୌଣସି କାରଣରୁ ଶାନ୍ତିର ମାର୍ଗ ରୁଦ୍ଧ ହୋଇଗଲେ ଶତ୍ରୁ ସହିତ ବାଧ୍ୟ ହୋଇ ଯୁଦ୍ଧ କରିବାକୁ ପଡ଼ିବ । କିନ୍ତୁ ଏକଥା ମନେ ରଖିବାକୁ ହେବ ଯେ ସବଳ ଶତ୍ରୁ ସହିତ ଯୁଦ୍ଧ କରିବା ଅନୁଚିତ । ଏହି ନୀତିକୁ ଅନୁସରଣ କରି ତାରା ବାଲୀଙ୍କୁ ସୁଗ୍ରୀବଙ୍କ ସହିତ ଯୁଦ୍ଧ ନ କରିବା ପାଇଁ ପରାମର୍ଶ ଦେଇଥିବା କଥା (ବିଗ୍ରହଂ ମା କୃଥା ବୀର) ରାମାୟଣରେ ଆଉଠାଏ (୪।୧୫।୨୩) ଉଲ୍ଲିଖିତ । 'ଆସନ' ଅର୍ଥ ହେଲା ଶତ୍ରୁର ରାଜଧାନୀକୁ ଘେରାଉକରି ରଖିବା । ରାମ ଲଙ୍କା ଉପରେ ଆକ୍ରମଣ କରିବା ପୂର୍ବରୁ ତାହାକୁ ତାଙ୍କ ବାନରସେନା ଦ୍ୱାରା ଘେରାଉ କରି ରଖିଥିଲେ । ଏହି ସେନାବାହିନୀ ସାଗର ପର୍ଯ୍ୟନ୍ତ ବିସ୍ତୃତ ଥାଇ କପରି ଲଙ୍କାପୁରୀକୁ ଆବେଷ୍ଟି କରି ରଖିଥିଲା (ଲଙ୍କାମୁପନିବିଷ୍ଟାନାଂ ସାଗରଂ ଚାଭିବର୍ତ୍ତିନାମ୍) ତାହା ଅତି ସୁନ୍ଦର ଭାବରେ ରାମାୟଣରେ (୬।୪୨।୧୬) ବର୍ଣ୍ଣିତ । ରାଜଧାନୀକୁ ଘେରାଉକରି ରଖିଥିବାର ଆଉ ଏକ ଦୃଷ୍ଟାନ୍ତ ଆମ୍ଭେ

ଯାଉ ମିଥିଳାନଗରୀରେ । ମିଥିଳେଶ ଜନକ ସ୍ୱପୁତ୍ରୀ ସୀତାଙ୍କୁ ବିବାହ ଦେବାଲାଗି ବୀରତ୍ୱ ପ୍ରଦର୍ଶନର ଏକ ସର୍ତ୍ତ ରଖିଥିଲେ । ଏହା ରାମାୟଣରେ 'ବୀର୍ଯ୍ୟଶୁଳ୍କ' ନାମରେ କଥିତ । ଏହା ଅନୁଯାୟୀ ତାଙ୍କ ପାଖରେ ଥିବା ଶିବଧନୁରେ ଯେ ଗୁଣ ଚଢ଼ାଇ ପାରିବେ, ସେହି ହିଁ ସୀତାଙ୍କ ପାଣି-ଗ୍ରହଣ କରିପାରିବେ । ଅନେକ ବୀର ରାଜା ମହାରାଜା ଆସି ଗୁଣ ଚଢ଼ାଇବାରେ ବ୍ୟର୍ଥ ହୋଇଯାଇଥିଲେ । ସେମାନେ ଶେଷକୁ ସମସ୍ତେ ଏକାଠି ହୋଇ ଜନକଙ୍କ ମିଥିଳାପୁରୀକୁ ଘେରାଉ କରି ରଖିଥିଲେ । ଆମେ 'ଆସନ' ଶବ୍ଦର ବ୍ୟବହାର କିଷ୍କିନ୍ଧାକାଣ୍ଡରେ (୪।୫୪।୧୨) ମଧ୍ୟ ଦେଖିବାକୁ ପାଇଥାଉଁ । ଏହା ମଧ୍ୟ ଘେରାଉ କରିବା ଅର୍ଥରେ ପ୍ରଯୁକ୍ତ । ଏହାର ସଫଳ ପ୍ରୟୋଗ ସମ୍ପର୍କରେ କୁହାଯାଇଛି ଯେ ଏକ ସବଳ ଶକ୍ତି ହିଁ ଅପେକ୍ଷାକୃତ ଦୁର୍ବଳ ଶକ୍ତି ପ୍ରତି ଏହାକୁ ପ୍ରୟୋଗ କରିବା ଉଚିତ । ରାମଚନ୍ଦ୍ର ବାର୍ଷିତାର ମଧ୍ୟ ଏହି ମତର ପୁଷ୍ଟିସାଧନ କରନ୍ତି ଯେଉଁଠି ସେ କହନ୍ତି :

> The third method of asana is loosely interpreted by some scholars as neutrality; but it may mean holding a post against an enemy. (୧୭)

'ଯାନ'ର ଅର୍ଥ ହେଲା ଯୁଦ୍ଧଯାତ୍ରା ଏବଂ ବିଗ୍ରହର ଅର୍ଥ ହେଲା ଯୁଦ୍ଧ । ଏହାର ପ୍ରୟୋଗ କେବଳ ଦୁର୍ବଳ ରାଷ୍ଟ୍ର ପ୍ରତି ଅଥବା ଦୁର୍ବଳ ରାଜାଙ୍କ ପ୍ରତି କରାଯାଇଥାଏ ଯେଉଁଠି କି ବିଜୟଲାଭର ସମ୍ଭାବନା ବେଶି ଥାଏ । ରାମଙ୍କର ବାନରସେନା ଧରି ଲଙ୍କା ପ୍ରତି ଅଭିଯାନ କରିବା ଏବଂ ରାବଣ ସହିତ ଯୁଦ୍ଧ କରିବା ଏହି ନୀତି ପ୍ରୟୋଗର ଜ୍ୱଳନ୍ତ ନିଦର୍ଶନ । ତାହା ପରେ 'ସଂଶୟ' କଥା ବିଚାର୍ଯ୍ୟ । ଏହାର ଅର୍ଥ ହେଲା ସମ୍ୟକ୍ ଭାବରେ କାହାର ଆଶ୍ରୟ ନେବା । ପ୍ରତିପକ୍ଷ ରାଷ୍ଟ୍ର ବା ରାଜା ଦୁର୍ବଳ ଥିଲେ ଗୋଟିଏ ସବଳ ରାଷ୍ଟ୍ର ବା ଜଣେ ସବଳ ରାଜାଙ୍କର ଆଶ୍ରୟ ନେବାକୁ ପଡ଼ିଥାଏ । ଉଦ୍ୱାରା ଶରଣାପନ୍ନ ରାଷ୍ଟ୍ରର ବା ରାଜାଙ୍କର କାର୍ଯ୍ୟସିଦ୍ଧି ଘଟିଥାଏ । ଉଦାହରଣ ସ୍ୱରୂପ ସୁଗ୍ରୀବ ରାମଙ୍କର ଆଶ୍ରୟ ନେଇ ବାଲୀଙ୍କ ଉପରେ ବିଜୟ ହାସଲ କରିଥିଲେ । ବିଭୀଷଣ ରାବଣଦ୍ୱାରା ଲଙ୍କାରୁ ବିତାଡ଼ିତ ହେବା ପରେ ରାମଙ୍କର ଶରଣ ପଶିଥିଲେ ଏବଂ ରାମ-ରାବଣ ଯୁଦ୍ଧର ଫଳଶ୍ରୁତି ସ୍ୱରୂପରେ ସେ ଲଙ୍କାର ରାଜସିଂହାସନ ପାଇଥିଲେ । 'ଦ୍ୱୈଧୀ-ଭାବ'ର ଅର୍ଥ ହେଲା ଶତ୍ରୁ ପ୍ରତି ଦ୍ୱିବିଧ ନୀତି ପ୍ରୟୋଗ କରିବା । ଏହା ଏକ ଛଳନାପୂର୍ଣ୍ଣ

ନୀତି । କୌଣସି ଉପାୟରେ ଶତ୍ରୁ ଉପରେ ବିଜୟ ହାସଲ କରିବା ଥିଲା ଏହି ନୀତିର ଲକ୍ଷ୍ୟ । କିନ୍ତୁ ଏହି ନୀତିର ପ୍ରୟୋଗ ବିଷୟରେ ଆମେ ରାମାୟଣରେ କୌଣସି ଉଦାହରଣ ପାଉନଥାଉଁ ।

ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସୁସମ୍ପର୍କ ସ୍ଥାପିତ କରିବା ନିମିତ୍ତ ମିତ୍ରରାଷ୍ଟ୍ର-ମାନଙ୍କରେ ସ୍ଥାୟୀ ଦୂତାବାସମାନ ନିର୍ମିତ ହେଉଥିବାର ଏବଂ ସେଠାରେ ଦୂତମାନେ ଅବସ୍ଥାପିତ ହେଉଥିବାର ନିଦର୍ଶନ ରାମାୟଣରେ ମିଳେନାହିଁ । କିନ୍ତୁ ରାଜଦୂତପ୍ରଥା ସେତେବେଳେ ପ୍ରଚଳିତ ଥିଲା । ଦୂତମାନଙ୍କ ହାତରେ ଜଣେ ରାଜାଙ୍କ ପାଖରୁ ଆଉ ଜଣେ ରାଜାଙ୍କ ପାଖକୁ ଖବର ପଠାଯାଉଥିଲା । ଦଶରଥଙ୍କ ମୃତ୍ୟୁ ପରେ ଅଯୋଧ୍ୟାରୁ ପାଞ୍ଚ ଜଣ ଦୂତ ଭରତଙ୍କୁ ଡାକି ଆଣିବା ପାଇଁ କେକେୟ ରାଜ୍ୟକୁ ଯାଇଥିବା କଥା ରାମାୟଣରେ ବର୍ଣ୍ଣିତ । ହନୁମାନ୍ ଓ ଅଙ୍ଗଦ ପୃଥକ୍ ପୃଥକ୍ ଅବସରରେ ରାମଙ୍କର ଦୂତ ହୋଇ ଲଙ୍କାକୁ ଯାଇଥିଲେ । ଦୂତଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦିଆଯାଉଥିଲା । ଦୂତଙ୍କର ଅବଶ୍ୟ ନିଜସ୍ୱ କଥା କିଛି କହିବାର ନଥିଲା । ସେ ତାଙ୍କର ପ୍ରଭୁ ରାଜାଙ୍କ କଥା ହିଁ କହୁଥିଲେ । ତାହା ବେଳେ ବେଳେ ଶ୍ରୁତିକଟୁ ହେବାର ସମ୍ଭାବନା ଥିଲା । ତାହା ଯେତେ ଶ୍ରୁତିକଟୁ ହେଲେ ମଧ୍ୟ ଦୂତ ଥିଲେ ଅବଧ । ରାବଣ ହନୁମାନ୍‌ଙ୍କ ଉପରେ କ୍ରୁଦ୍ଧ ହୋଇ ତାଙ୍କୁ ମାରିଦେବା ଲାଗି ବାହାରିଥିଲା । କିନ୍ତୁ ଦୂତବଧ ନୀତିବିରୁଦ୍ଧ କର୍ମ ବୋଲି ବିଭୀଷଣ ରାବଣକୁ ଦର୍ଶାଇ ତାକୁ ସେହି କର୍ମରୁ ନିବୃତ୍ତ କରିଥିଲେ । ରାବଣ ପ୍ରତି ପ୍ରଯୁକ୍ତ ତାଙ୍କର ନିମ୍ନଲିଖିତ ବାଣୀ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ :

> କ୍ଷମସ୍ୱ ରୋଷଂ ତ୍ୟଜ ରାକ୍ଷସେନ୍ଦ୍ର
> ପ୍ରସୀଦ ମେ ବାକ୍ୟମିଦଂ ଶୃଣୁଷ୍ୱ ।
> ବଧଂ ନ କୁର୍ବନ୍ତି ପରାବରଜ୍ଞା
> ଦୂତସ୍ୟ ସନ୍ତୋ ବସୁଧାଧିପେନ୍ଦ୍ରାଃ ।। (୧୮)

ଅର୍ଥାତ୍ ହେ ରାକ୍ଷସରାଜ ! ଆପଣ କ୍ଷମା କରନ୍ତୁ, କ୍ରୋଧକୁ ତ୍ୟାଗ କରନ୍ତୁ, ପ୍ରସନ୍ନ ହୁଅନ୍ତୁ ଏବଂ ମୋ'ର ଏହି କଥା ଶୁଣନ୍ତୁ । ଉଚ୍ଚ-ନୀଚର ଜ୍ଞାନ ରଖୁଥିବା ଶ୍ରେଷ୍ଠ ରାଜାମାନେ ଦୂତଙ୍କୁ ବଧ କରନ୍ତି ନାହିଁ । ଦୂତମାନଙ୍କ ହସ୍ତରେ ମିତ୍ର ରାଜାଙ୍କ ପାଖକୁ ଉପହାର-ସାମଗ୍ରୀମାନ ପଠାଯାଉଥିଲା । ଅଯୋଧ୍ୟାରୁ ପ୍ରେରିତ ଦୂତମାନେ କେକୟରାଜଙ୍କ ନିକଟକୁ ବିଭିନ୍ନ ଉପହାର ସାମଗ୍ରୀ ଧରି ଯାଇଥିଲେ । ଏହିପରି ଭାବରେ ଦୂତମାନେ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବାରେ ସହାୟକ ହେଉଥିଲେ ।

**ରାଜା :**

ସାରା ରାମାୟଣ ମହାକାବ୍ୟଟିକୁ ଅନୁଧ୍ୟାନ କଲେ ଆମେ ଦେଖୁଁ ଯେ ରାଜା ହେଉଛନ୍ତି ସମସ୍ତ ରାଜନୈତିକ, ସାମାଜିକ ତଥା ସାଂସ୍କୃତିକ କାର୍ଯ୍ୟକଳାପର କେନ୍ଦ୍ରବିନ୍ଦୁ । ଧର୍ମର ରକ୍ଷକ ଭାବରେ ସେ ମଧ୍ୟ ଧାର୍ମିକ ଅଭିବୃଦ୍ଧିର ଏକ ଦୃଢ଼ ଭିତ୍ତିସ୍ତମ୍ଭ । ବାସ୍ତବିକ, ମାରୀଚ ରାବଣଙ୍କୁ ଉପଦେଶ ଦେବା ଅନୁକ୍ରମରେ (୩।୪୧।୧୦) କହୁଛି ଯେ ରାଜା ହେଉଛନ୍ତି ଧର୍ମର ମୂଳ (ରାଜମୂଳୋ ହି ଧର୍ମଶ୍ଚ) । ମହାକାବ୍ୟଟିର ଆରମ୍ଭ ହୋଇଛି ରାଜା ଦଶରଥଙ୍କ ସମୟରେ ଅଯୋଧ୍ୟାର ଅବସ୍ଥା ବର୍ଣ୍ଣନା କରିବାରେ ଏବଂ ଶେଷ ହୋଇଛି ରାମରାଜ୍ୟର ବିଭିନ୍ନ ସ୍ଥିତି ବିଷୟରେ ଆଲୋକପାତ କରିବାରେ । ମଝିରେ (ଅଯୋଧ୍ୟାକାଣ୍ଡ ୧୦୦ତମ ସର୍ଗରେ) ରାମ ଭରତଙ୍କୁ ଅଯୋଧ୍ୟାର କୁଶଳ-ମଙ୍ଗଳ ପ୍ରଶ୍ନ ପଚାରିବା ଅବସରରେ ଜଣେ ଉତ୍ତମ ରାଜାଙ୍କ ଶାସନକାଳରେ ରାଷ୍ଟ୍ରର କପରି ସର୍ବବିଧ ଉନ୍ନତି ସାଧିତ ହୁଏ, କପରି ଧର୍ମରକ୍ଷା ହେବା ସଙ୍ଗେ ସଙ୍ଗେ ପ୍ରଜାମାନେ ସୁଖଶାନ୍ତିରେ ଜୀବନନିର୍ବାହ କରନ୍ତି, ତାହା ସୂଚାଇ ଦେଇଛନ୍ତି । ଶେଷରେ ସେ ଉପସଂହାର କ୍ରମରେ କହୁଛନ୍ତି :

> ରାଜା ତୁ ଧର୍ମେଣ ହି ପାଲୟିତ୍ୱା
> ମହାମତିର୍ଦଣ୍ଡଧରଃ ପ୍ରଜାନାମ୍ ।
> ଅବାପ୍ୟ କୃତ୍ସ୍ନାଂ ବସୁଧାଂ ଯଥାବ-
> ଦିତଶ୍ଚ୍ୟୁତଃ ସ୍ୱର୍ଗମୁପୈତି ବିଦ୍ୱାନ୍ ।। (୧୯)

ଅର୍ଥାତ୍ ଏହିପରି ଭାବରେ ଦଣ୍ଡଧାରଣ କରିଥିବା ବିଦ୍ୱାନ୍ ରାଜା ପ୍ରଜାମାନଙ୍କୁ ପାଳନ କରି ସାରା ପୃଥିବୀକୁ ଯଥାବିଧି ନିଜ ଅଧିକାରରେ ରଖିନିଅନ୍ତି ଏବଂ ଦେହତ୍ୟାଗ ପରେ ସ୍ୱର୍ଗଲୋକକୁ ଯାଆନ୍ତି । ପ୍ରଜାମାନେ ସୁଖୀ ରହିଲେ ରାଜାଙ୍କର ଯେ ସ୍ୱର୍ଗପ୍ରାପ୍ତି ଘଟେ ଏହା ଥିଲା ସେତେବେଳେ ରାଜାଙ୍କର ଏକ ଦୃଢ଼ ଧାରଣା । ତେଣୁ ଉତ୍ତମ ରାଜାମାନେ ସେହି ଲକ୍ଷ୍ୟକୁ ପାଇବା ପାଇଁ ଆପ୍ରାଣ ଉଦ୍ୟମଶୀଳ ଥିଲେ । ଏହି ଉଦ୍ୟମ କରିବାରେ ରାଜାମାନେ ରାଷ୍ଟ୍ରୀୟ ସକଳ କାର୍ଯ୍ୟକଳାପର କେନ୍ଦ୍ରବିନ୍ଦୁ ହୋଇଉଠିଥିଲେ । ଜେ. ଏଲ୍. ବ୍ରକିଙ୍ଗ୍ଟନ ମଧ୍ୟ ଏହି ମତର ସମର୍ଥକ । ତାଙ୍କ ଭାଷାରେ :

> The king surrounded by his courtiers forms the natural focus of society throughout the epic, (୨୦)

ରାଷ୍ଟ୍ରର ସପ୍ତଅଙ୍ଗ ମଧ୍ୟରେ ସ୍ୱାମୀ ବା ରାଜାଙ୍କୁ ପ୍ରଥମ ସ୍ଥାନ ଦିଆଯାଇଛି । ପାରମ୍ପରିକ ରାଜଧର୍ମ ଅନୁଯାୟୀ ରାଜ୍ୟଶାସନ କରି ପ୍ରଜାମାନଙ୍କର ପ୍ରଶଂସା ଭାଜନ ହେବା ଥିଲା ପ୍ରତ୍ୟେକ ରାଜାଙ୍କର ଜୀବନର ଲକ୍ଷ୍ୟ ତଥା ବ୍ରତ । ଶର୍ମାଙ୍କ ବକ୍ତବ୍ୟ ଅନୁଯାୟୀ :

> The greatest praise a monarch claimed in that period was that he ruled his state in accordance with the dictates of dharma, as then understood by him and his people. (୨୦-କ)

ଏଥିରୁ ରାମାୟଣୀୟ ରାଜାଙ୍କର କଉଁଠି ପ୍ରାଥମିକତା ଥିଲା, ତାହା ସହଜରେ ଅନୁମେୟ ।

ଏହି ପ୍ରାଥମିକତା ଥିଲା ବୈଦିକ ପରମ୍ପରା ଉପରେ ଆଧାରିତ । ବୈଦିକ ଯୁଗରେ ପୁରୋହିତଙ୍କ ଭଳି ରାଜାଙ୍କର ମହତ୍ତ୍ୱ ମଧ୍ୟ କିଛି କମ୍ ନଥିଲା । ରାଜ୍ୟର ଶାସକ ହିସାବରେ ସେ ଥିଲେ ଯଥେଷ୍ଟ ଶକ୍ତିମାନ୍ । ସେ ଥିଲେ ସବୁ ଶକ୍ତିର ଆକର-କ୍ଷେତ୍ର । ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମର ସେ ଥିଲେ ରକ୍ଷକ । ଜେ. ଡବ୍ଲ୍ୟୁ କାନ୍ ଏମ୍ ଡେରେଟ୍‌ଙ୍କ ଭାଷାରେ :

> The raja was viewed as the apex of a broad-based pyramid of authority judicial and administrative. (୨୦-ଖ)

ରାଜାଙ୍କର ସୃଷ୍ଟି କିପରି ହେଲା ତତ୍‌ସମ୍ପର୍କରେ ଐତରେୟ ବ୍ରାହ୍ମଣରେ (୧।୩।୩) ଗୋଟିଏ ଗଳ୍ପ ଅଛି । ଏହି ଗଳ୍ପଟି ହେଲା, ଦେବତା ଓ ଅସୁରମାନଙ୍କ ମଧ୍ୟରେ ପୂର୍ବେ ବାରମ୍ବାର ଯୁଦ୍ଧ ହେଉଥିଲା । ପ୍ରତ୍ୟେକଟି ଯୁଦ୍ଧରେ କିନ୍ତୁ, ଦେବତାମାନେ ହାରିଯାଉଥିଲେ । ସେମାନେ ଏହାର କାରଣ ଅନୁଧ୍ୟାନ କରି ଜାଣିପାରିଲେ ଯେ ଅସୁରମାନଙ୍କ ମଧ୍ୟରେ ଜଣେ ରାଜା ଅଛନ୍ତି । ଅଥଚ ଦେବତାମାନଙ୍କର କେହି ରାଜା ନାହାନ୍ତି । ସେମାନେ ସେଉଠୁ ସୋମଙ୍କୁ ରାଜା ବୋଲି ବାଛିଲେ । ଉକ୍ତ ବ୍ରାହ୍ମଣର ଭାଷାରେ :

ତେ ସୋମଂ ରାଜାମକୁର୍ବନ୍ ।

ଅର୍ଥାତ୍ ସେମାନେ ସୋମଙ୍କୁ ରାଜା କଲେ । ଏଥିରୁ ଏହି କାହାଣୀରେ ଆମେ ସନ୍ଧିତ୍ସପାରିବା ଯେ ରାଜା-ପଦବୀ ପ୍ରଥମେ ଥିଲା ନିର୍ବାଚନମୂଳକ ଏବଂ

ପ୍ରାକୃତିକ ବିପଦ ଅଥବା ଯୁଦ୍ଧ-ବିଗ୍ରହ ଥିଲା ଏହାର ପୃଷ୍ଠଭୂମି । ପାନିକର ମଧ୍ୟ ଏହି ମତର ପୁଷ୍ଟି ସାଧନ କରିଥାନ୍ତି । ତାଙ୍କ ଭାଷାରେ :

> The earliest allusion to kingship is in the Vedas. The researches of scholars have established that Vedic kingship was generally elective in character and was for the purpose of ensuring leadership in the fight of Aryan communities against the local people. (୨୧)

କିନ୍ତୁ କାଳକ୍ରମେ ରାଜପଦ ପୁରୁଷାନୁକ୍ରମିକ ହୋଇଗଲା ଏବଂ ଏହା ରାଜାଙ୍କ ଜ୍ୟେଷ୍ଠ ପୁତ୍ରଙ୍କ ପ୍ରାପ୍ୟ ବୋଲି ଗଣା ହେବାକୁ ଲାଗିଲା । ଅବଶ୍ୟ ପ୍ରଜାମାନଙ୍କ ଦ୍ୱାରା ରାଜା ନିର୍ବାଚିତ ହେଉଥିବାର ମନ୍ତ୍ରମାନ ସେହିସବୁ ଅକ୍ଷୁଣ୍ଣ ଭାବରେ ରାଜାଙ୍କ ରାଜ୍ୟାଭିଷେକରେ ବୋଲାଯିବାକୁ ଲାଗିଲା । ଏ ସମ୍ପର୍କରେ ପ୍ରଜାମାନଙ୍କ କ୍ଷମତା ଯେ ସମ୍ପୂର୍ଣ୍ଣ ରୂପେ ଚାଲିଗଲା ତାହା ନୁହେଁ । ରାଜାଙ୍କ ନିର୍ବାଚନରେ ପ୍ରଜାମାନଙ୍କର କିଛି କହିବାର ଅଧିକାର ରହିଲା । ରାମାୟଣ-ଯୁଗରେ ମଧ୍ୟ ଏହି ସ୍ଥିତି ଥିଲା । ସେଥିପାଇଁ ରାମଙ୍କୁ ଯୁବରାଜ-ପଦରେ ଅଭିଷିକ୍ତ କରିବା ପାଇଁ ଦଶରଥ ପ୍ରଜାମାନଙ୍କର ସହମତି ଚାହିଁଥିଲେ ଏବଂ ସେହି ଉଦ୍ଦେଶ୍ୟରେ ରାଜସଭା ଡ଼କାଇଥିଲେ । ସେଥିପାଇଁ ଇକ୍ଷ୍ୱାକୁ ନରେଶ ସଗରଙ୍କ ଜ୍ୟେଷ୍ଠପୁତ୍ର ଅସମଞ୍ଜ ଦୁଷ୍ଟ ପ୍ରକୃତିର ଓ ଅତ୍ୟାଚାରୀ ହୋଇଥିବାରୁ ପ୍ରଜାମାନଙ୍କ ଇଚ୍ଛା ଅନୁସାରେ ରାଜାଙ୍କ ଦ୍ୱାରା ରାଜ୍ୟରୁ ନିର୍ବାସିତ ହୋଇଥିଲେ । ରାଜା ନୃଗ ନିଜ ପୁତ୍ରଙ୍କୁ ଉତ୍ତରାଧିକାରୀ ଭାବରେ ସ୍ୱୀକାର କରିବା ପାଇଁ ପ୍ରଜାମାନଙ୍କୁ, ନଗମର ପ୍ରତିନିଧିମାନଙ୍କୁ, ମନ୍ତ୍ରୀମାନଙ୍କୁ ତଥା ପୁରୋହିତଙ୍କୁ ଡ଼କାଇ ଏକ ସଭା କରିଥିଲେ ଏବଂ ସେଥିରେ ତାଙ୍କ ପ୍ରସ୍ତାବ ଉପରେ ସେମାନଙ୍କର ସହମତି ନେଇଥିଲେ । (୨୨) ରାଜାଙ୍କର କିଏ ଉତ୍ତରାଧିକାରୀ ହେବେ ସେ ବିଷୟରେ ସେ କେବଳ ପ୍ରସ୍ତାବଟିଏ ଦେଇ-ପାରୁଥିଲେ । ଶେଷ ନିଷ୍ପତ୍ତି ପ୍ରଜାମାନଙ୍କ ପ୍ରତିନିଧି ସମୂହ ତଥା ମନ୍ତ୍ରୀମାନଙ୍କ ଉପରେ ନ୍ୟସ୍ତ ଥିଲା । ଦଶରଥ ତେଣୁ ରାମଙ୍କୁ ଯୁବରାଜ କରିବାର ପ୍ରସ୍ତାବ ରାଜସଭା ଆଗରେ ଦେଇ ବିନମ୍ର ଭାବରେ ନିବେଦନ କରିଥିଲେ ଯେ ରାମଙ୍କ ଅପେକ୍ଷା ଯଦି ଆଉ କେହି ଯୋଗ୍ୟତର ବ୍ୟକ୍ତି ସଭ୍ୟମାନଙ୍କ ଦୃଷ୍ଟିରେ ଥାଆନ୍ତି, କିନ୍ତୁ ତା'ହେଲେ ସେମାନେ ତାଙ୍କ ନାମ ଘୋଷଣା କରିପାରନ୍ତି । ବୁଦ୍ଧଙ୍କ ସମୟରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ମଧ୍ୟ ରାଜାଙ୍କୁ ନିର୍ବାଚନ

କରିବାରେ ଏବଂ ଅତ୍ୟାଚାରୀ ରାଜାଙ୍କୁ ଗାଦିଚ୍ୟୁତ କରାଇବାରେ ପ୍ରଜାମାନଙ୍କ କ୍ଷମତା ଅକ୍ଷୁଣ୍ଣ ରହିଥିଲା । ଉଦାହରଣସ୍ୱରୂପ 'ଖଣ୍ଡହାଲ ଜାତକ ଗଳ୍ପ'ରେ ପ୍ରଜାମାନେ ଅତ୍ୟାଚାରୀ ରାଜା ଖଣ୍ଡହାଲଙ୍କୁ ଗାଦିରୁ ହଟାଇ ତାଙ୍କ ପ୍ରାଣ ନେଇଥିବା କଥା ବର୍ଣ୍ଣିତ । ଅତଏବ, ରାମାୟଣ-କାଳରେ ରାଜପଦ ପୁରୁଷାନୁକ୍ରମିକ ଭାବରେ ତଥା ପ୍ରଜାମାନଙ୍କ ଦ୍ୱାରା ନିର୍ବାଚନ ମାଧ୍ୟମରେ ଏକ ସମନ୍ୱିତ ପଦ୍ଧତିରେ ବ୍ୟକ୍ତିବିଶେଷଙ୍କୁ ପ୍ରାପ୍ତ ହେଉଥିଲା ।

ରାଜାଙ୍କ ଜ୍ୟେଷ୍ଠପୁତ୍ର ଯଦି ଯୋଗ୍ୟ ଥିବେ, ତାଙ୍କର ରାଜା ହେବାଟା ନିଶ୍ଚିତ । ଯଦି କୌଣସି କ୍ଷେତ୍ରରେ ଏଭଳି ଯୋଗ୍ୟତା ଥାଇ ଜ୍ୟେଷ୍ଠପୁତ୍ର ରାଜା ହୋଇ ନପାରିଲେ, ତା'ହେଲେ କ'ଣ ହେବ ? ବାସ୍ତବିକ ରାମଙ୍କ କ୍ଷେତ୍ରରେ ତ ତାହା ହିଁ ଘଟିଥିଲା । ଏହାର ଉତ୍ତର ମଧ୍ୟ ବାଲ୍ମୀକି ବିଭିନ୍ନ ରାମାୟଣୀୟ ପାତ୍ରଙ୍କ ମୁଖରେ ଦିଆଇଛନ୍ତି । ସମ୍ପୃକ୍ତ ଯୋଗ୍ୟ ରାଜପୁତ୍ରଙ୍କୁ ତିନୋଟି ପନ୍ଥାରୁ ଯେକୌଣସି ଗୋଟିଏ ପନ୍ଥାକୁ ଆଶ୍ରୟ କରିବାକୁ ହେବ । ପ୍ରଥମ ପନ୍ଥାଟି ହେଲା ସେ ରାଜାଙ୍କୁ ହତ୍ୟା କରି ବଳପୂର୍ବକ ରାଜ୍ୟ ଶାସନକୁ ନିଜ ହାତକୁ ନେଇପାରନ୍ତି । ଲକ୍ଷ୍ମଣ କୈକେୟୀ ଓ ଦଶରଥ ଉଭୟଙ୍କ ଉପରେ ଦୋଷାରୋପ କରିବାକୁ ଯାଇ ରାମଙ୍କୁ ପରାମର୍ଶ ଦେଇ କହିଛନ୍ତି (୨।୨୧।୧୨-୧୩) ଯେ କୈକେୟୀଙ୍କ ପ୍ରରୋଚନାରେ ପିତା ରାମଙ୍କୁ ରାଜ୍ୟରୁ ବଞ୍ଚିତ କରିଛନ୍ତି; ତେଣୁ ସେ (ପିତା) ବଧର ଯୋଗ୍ୟ । ରାମ ଅବଶ୍ୟ ପିତାଙ୍କ ଆଦେଶ ଶିରୋଧାର୍ଯ୍ୟ ବୋଲି ଏହି ପରାମର୍ଶ ପ୍ରତି କର୍ଣ୍ଣପାତ କରିନାହାନ୍ତି । ଦ୍ୱିତୀୟ ପନ୍ଥାଟି ହେଲା ସେ ରାଜାଙ୍କୁ ବନ୍ଦୀ କରି ବଳପୂର୍ବକ ରାଜଗାଦି ଦଖଲ କରିପାରନ୍ତି । ବାସ୍ତବିକ ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିବା ଦଶରଥ ଏଭଳି କରିବା ପାଇଁ ରାମଙ୍କୁ ନିଜେ ପରାମର୍ଶ ଦେଇଥିଲେ । ରାମ କିନ୍ତୁ ତାହାକୁ ଗ୍ରହଣ କରିନଥିଲେ । ଏ ସମ୍ପର୍କରେ ଦଶରଥଙ୍କ ବକ୍ତବ୍ୟ ହେଲା :

> ଅହଂ ରାଘବ କୈକେୟ୍ୟା ବରଦାନେନ ମୋହିତଃ ।
> ଅଯୋଧ୍ୟାୟାଂ ତ୍ୱମେବାଦ୍ୟ ଭବ ରାଜା ନିଗୃହ୍ୟ ମାମ୍ ।। (୨୬)

ଅର୍ଥାତ୍ ହେ ରଘୁନନ୍ଦନ ରାମ ! ମୁଁ କୈକେୟୀଙ୍କୁ ବରଦାନ କରିବା ଦ୍ୱାରା ମୋହିତ ହୋଇ ଯାଇଛି । ତୁମେ ମତେ ବନ୍ଦୀ କରିନେଇ ଆଜି ଅଯୋଧ୍ୟାର ରାଜା ହୁଅ । ସେହି ରାଜପୁତ୍ରଙ୍କ ପାଇଁ ତୃତୀୟ ପନ୍ଥାଟି ଥିଲା ପ୍ରଜାମାନଙ୍କ ଉପରେ ନିର୍ଭରଶୀଳ । ସେ ସମ୍ପୃକ୍ତ ରାଜ୍ୟକୁ ତ୍ୟାଗ କରି ପ୍ରଜାମାନଙ୍କୁ

ସାଥିରେ ଧରି ଅନ୍ୟ କୌଣସି ସ୍ଥାନରେ ଯାଇ ନୂତନ ରାଜ୍ୟଟିଏ ସ୍ଥାପିତ କରିପାରନ୍ତି । ରାମ ଯୁବରାଜ ନହୋଇ ବନକୁ ଯିବାରେ ଅଯୋଧ୍ୟାର ପ୍ରଜାମାନେ ଅଯୋଧ୍ୟାକୁ ଛାଡ଼ି ତାଙ୍କ ସହିତ ବନକୁ ଯିବା ପାଇଁ ବାହାରି କରିଥିଲେ । କାରଣ ସେମାନଙ୍କର ମତ ହେଲା ଯେ ରାମ ଯେଉଁଠି ନାହାନ୍ତି, ସେଠି ସେମାନଙ୍କର ରାଜ୍ୟ ନାହିଁ ଏବଂ ରାମ ଯେଉଁଠି ଅଛନ୍ତି ସେଠି ସେମାନଙ୍କର ରାଜ୍ୟ ଅଛି । ସେମାନଙ୍କର ମୁଖ-ନିଃସୃତ ଏହି ବାଣୀ ରାମାୟଣରେ (୨।୩୭।୨୫-୨୭) ଅତି ରୋଚକ ଭାବରେ ବର୍ଣ୍ଣିତ । ଏହି ଯେଉଁ ତିନି ପନ୍ଥାର କଥା ରାମାୟଣରେ ଉଲ୍ଲେଖ କରାଯାଇଛି, ତାହାକୁ କାଳ୍ପନିକ କହି ଏଡ଼ାଇ ଦିଆଯାଇ ପାରିବ ନାହିଁ । ରାମାୟଣ ଯୁଗରେ ହୁଏତ କେତେକ କ୍ଷେତ୍ରରେ ଏହିଭଳି ଘଟନାମାନ ଘଟିଥିବ ଯାହାକୁ ଭିତ୍ତିଭୂମି ରୂପେ ଗ୍ରହଣ କରି ବାଲ୍ମୀକି ଏଭଳି କଥା ଲେଖିଛନ୍ତି ।

ପୂର୍ବରୁ କୁହାଯାଇଛି ଯେ ରାଜପଦ ସାଧାରଣତଃ ରାଜାଙ୍କ ଜ୍ୟେଷ୍ଠ ପୁତ୍ରଙ୍କୁ ହିଁ ମିଳୁଥିଲା । ରାଜାଙ୍କ ଜୀବଦ୍ଦଶାରେ ଉକ୍ତ ଜ୍ୟେଷ୍ଠ ପୁତ୍ରଙ୍କୁ ଯୁବରାଜ-ପଦରେ ଆନୁଷ୍ଠାନିକ ଭାବରେ ଅଭିଷିକ୍ତ କରି ଯାଉଥିଲା । ପରେ ଯୌବରାଜ୍ୟରେ ସ୍ଥଳାଭିଷିକ୍ତ ହୋଇଗଲେ ଅନ୍ୟ କୌଣସି ବିଶେଷ କାରଣ ନଥିଲେ ସେହି ବ୍ୟକ୍ତି ହିଁ ରାଜା ହେଉଥିଲେ । ସେଥିପାଇଁ ଦଶରଥ ତାଙ୍କ ଜୀବଦ୍ଦଶାରେ ରାମଙ୍କୁ ଯୁବରାଜ-ପଦରେ ଅଭିଷିକ୍ତ କରାଇ ଦେବାପାଇଁ ଚାହିଁଥିଲେ । ଅବଶ୍ୟ ଭାଗ୍ୟର ବିଡ଼ମ୍ବନା ହେତୁ ତାହା କାର୍ଯ୍ୟରେ ପରିଣତ ହୋଇପାରିନଥିଲା । ବେଳେ ବେଳେ କାହାକୁ ଯୁବରାଜ-ପଦରେ ଅଭିଷିକ୍ତ କରାଇବା ପୂର୍ବରୁ ରାଜା ମୃତ୍ୟୁ-ବରଣ କରୁଥିଲେ । ଏଭଳି କ୍ଷେତ୍ରରେ କାହାକୁ ରାଜା କରିବାକୁ ହେବ, ତାହାର ନିର୍ଣ୍ଣୟ 'ରାଜକର୍ତ୍ତାରଃ' ବା ରାଜା-ନିରୂପଣ କରୁଥିବା ବ୍ୟକ୍ତିଗଣଙ୍କ ଉପରେ ପଡ଼ୁଥିଲା । ମନ୍ତ୍ରି-ପରିଷଦର ଯେଉଁ ସଦସ୍ୟମାନେ ନୂତନ ରାଜାଙ୍କ ନିଯୁକ୍ତି ବିଷୟରେ ପ୍ରସ୍ତାବ ବାଢ଼ୁଥିଲେ, ସେମାନଙ୍କୁ 'ରାଜକର୍ତ୍ତା' ବୋଲି କୁହାଯାଉଥିଲା । ରାଜା ଦଶରଥ ଠିକ୍ ଏହିଭଳି ପରିସ୍ଥିତିରେ ମୃତ୍ୟୁବରଣ କରିଥିଲେ । ତେଣୁ 'ରାଜକର୍ତ୍ତା'ମାନେ ବସି ଭରତଙ୍କୁ ରାଜା ହେବାପାଇଁ ମାତୁଳାଳୟରୁ ଡ଼କାଇ ଆଣିବା ନିମିତ୍ତ ନିଷ୍ପତ୍ତି ନେଇଥିଲେ । ଏହା ଅତି ରୋଚକ ଭାବରେ ରାମାୟଣରେ (୨ । ୬୭ । ୨) ବର୍ଣ୍ଣିତ । ବ୍ରକିଙ୍ଗ୍‌ଟନ୍ ମଧ୍ୟ ଏହି ମତର ପୁଷ୍ଟିସାଧନ କରିଥାନ୍ତି । ତାଙ୍କ ଭାଷାରେ :

There is strong suggestion at the beginning of 2.61 that the group of Brahmanas called

raja-kartarah, literally king-makers, do genuinely have some choice in whom they elect as Dasaratha's successor. (୨୩-କ)

ବୁଦ୍ଧଙ୍କ ସମୟରେ ମଧ୍ୟ ଏଭଳି ରାଜକର୍ତ୍ତା'ମାନେ ଥିବା ବିଷୟ ଆମେ ବୌଦ୍ଧ ଜାତକ ଗଳ୍ପମାନ ଅନୁଧ୍ୟାନ କରିବା ଫଳରେ ଜାଣିପାରିଥାଉଁ ।

ଯଦି କୌଣସି କାରଣରୁ କେହି ରାଜା ହୋଇପାରୁନଥିଲେ, ତା' ହେଲେ ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ନ୍ୟାସୀ (trustee) ଭାବରେ ରାଜ୍ୟର ଶାସନଭାର ଗ୍ରହଣ କରିବାକୁ ପଡ଼ୁଥିଲା । ଉପଯୁକ୍ତ ରାଜା ମିଳିବା ଯାଏ ଏଭଳି ବ୍ୟବସ୍ଥା ବଳବତ୍ତର ରହୁଥିଲା । ଭରତ ହେଉଛନ୍ତି ନ୍ୟାସୀଙ୍କର ଏକ ଜ୍ୱଳନ୍ତ ନିଦର୍ଶନ । ରାଜାଙ୍କ ଜ୍ୟେଷ୍ଠପୁତ୍ର ରାମ ଚତୁର୍ଦ୍ଦଶ ବର୍ଷର ବନବାସକାଳ ସାଙ୍ଗ କରିବା ଉତ୍ତାରୁ ଅଯୋଧ୍ୟାକୁ ଫେରିଆସି ସେଠାକାର ରାଜସିଂହାସନ ଅଧିକାର କରିବେ । ତେଣୁ ତାଙ୍କ ଅନୁପସ୍ଥିତିରେ ତାଙ୍କ କନିଷ୍ଠ ଭ୍ରାତା ଭରତ ନ୍ୟାସୀ ହିସାବରେ କୋଶଳର ରାଜ୍ୟଭାର ବହନ କରିଥିଲେ । ରାମ ଅଯୋଧ୍ୟାକୁ ଫେରିବା ଉତ୍ତାରୁ ଭରତ ତାଙ୍କୁ ରାଜ୍ୟର ସକଳ ଦାୟିତ୍ୱ ପ୍ରତ୍ୟର୍ପଣ କରିଦେଇଥିଲେ । ସେ ଯେ ଜଣେ ନ୍ୟାସୀ ମାତ୍ର ଥିଲେ ଏ କଥା ଭରତ ନିଜ କଣ୍ଠରେ ସ୍ୱୀକାର କରିଛନ୍ତି । ରାମ ଅଯୋଧ୍ୟାକୁ ଫେରିବାରେ ସେ ତାଙ୍କୁ କହିଛନ୍ତି :

ଏତଦ୍‌ଭବେ ସକଳଂ ରାଜ୍ୟଂ ନ୍ୟାସଂ ନିର୍ଯାପିତଂ ମୟା ।
ଅବେକ୍ଷତାଂ ଭବାନ୍ କୋଷଂ କୋଷ୍ଠାଗାରଂ ଗୃହଂ ବଳମ୍ । (୨୪)

ଅର୍ଥାତ୍ ମୁଁ ଏହି ସାରା ରାଜ୍ୟକୁ ନ୍ୟାସୀ ଭାବରେ ରଖିଥିଲି । ଆପଣ ଏବେ ରାଜକୋଷ, କୋଠି, ଘର ଓ ସେନାବାହିନୀକୁ ଦେଖିନିଅନ୍ତୁ । ଭରତ ଯଦି ସ୍ଥାୟୀ ଭାବରେ କୋଶଳର ରାଜା ହୋଇଥାନ୍ତେ, ତେବେ ରାମଙ୍କ ପ୍ରତ୍ୟାବର୍ତ୍ତନ ପରେ ତାଙ୍କୁ ରାଜଗାଦି ଫେରାଇବାର ପ୍ରଶ୍ନ ହିଁ ଉଠି ନଥାନ୍ତା ଏବଂ ରାଜାଙ୍କ ଜ୍ୟେଷ୍ଠ ପୁତ୍ରଙ୍କ ରାଜଗାଦି ଉପରେ ଥିବା ପାରଂପରିକ ଅଧିକାର କ୍ଷୁଣ୍ଣ ହୋଇଥାନ୍ତା । ଏଣୁ ସମୟ ଯେତେ ଦୀର୍ଘ ହେଲେ ବି ଭରତଙ୍କୁ ଅସ୍ଥାୟୀ ଭାବରେ ନ୍ୟାସୀ ହୋଇ ରାଜାଙ୍କ କର୍ତ୍ତବ୍ୟନିର୍ବାହ କରିବାକୁ ପଡ଼ିଥିଲା ।

ଦଶରଥ କୈକେୟୀଙ୍କୁ ବିବାହ କଲାବେଳେ ତାଙ୍କ ପିତା ଅଶ୍ୱପତିଙ୍କ ନିକଟରେ ପ୍ରତିଶ୍ରୁତି ଦେଇଥିଲେ ଯେ ତାଙ୍କ (କୈକେୟୀଙ୍କ) ଗର୍ଭରୁ ସମ୍ଭୂତ ପୁତ୍ର ହିଁ ଅଯୋଧ୍ୟାରେ ରାଜଗାଦି ପାଇବେ । ସେତେବେଳେ ସେ ଥିଲେ

କୈକେୟୀଙ୍କ ରୂପରେ ମୋହିତ ଏବଂ ସେଥିପାଇଁ ଏଭଳି ପ୍ରତିଶ୍ରୁତିଟିଏ ଦେଇଥିଲେ । ସେତେବେଳେ ସେ ହୁଏତ ଭାବିଥିବେ ଯେ କୈକେୟୀଙ୍କ ସନ୍ତାନ ତାଙ୍କର ଜ୍ୟେଷ୍ଠ ପୁତ୍ର ହୋଇଗଲେ ତାଙ୍କ ପ୍ରତିଶ୍ରୁତି ରକ୍ଷା ହେବା ସଙ୍ଗେ ସଙ୍ଗେ ପାରଂପରିକ ଉତ୍ତରାଧିକାର ସଂପର୍କୀୟ ନୀତି ମଧ୍ୟ ରକ୍ଷା ପାଇଯିବ । କିନ୍ତୁ ବିଧିର ବିଧାନରେ କୌଶଲ୍ୟାଙ୍କ ଗର୍ଭସମ୍ଭୂତ ରାମ ହେଲେ ତାଙ୍କର ଜ୍ୟେଷ୍ଠ ପୁତ୍ର । ସେ ତେଣୁ ରାଜସଭା ମାଧ୍ୟମରେ ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରାଇ ଦେବାପାଇଁ ଚାହିଁଥିଲେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ କୈକେୟୀ ମାଗିଥିବା ବରକୁ ସେ ସ୍ପଷ୍ଟ ଭାବରେ ମଞ୍ଜୁର କରିନଥିଲେ । ସେ ସ୍ପଷ୍ଟ ଭାବରେ କହିନଥିଲେ ଯେ ରାମ ବଣକୁ ଯାଆନ୍ତୁ ଏବଂ ଭରତ ରାଜା ହୁଅନ୍ତୁ । ସେ ଏକ ପ୍ରକାର ଧର୍ମ-ସଙ୍କଟରେ ପଡ଼ିଯାଇଥିଲେ । ସେ ତେଣୁ ରାମଙ୍କୁ ପରାମର୍ଶ ଦେଇଥିଲେ ଯେ ରାମ ତାଙ୍କୁ ବନ୍ଦୀ କରି ଅଯୋଧ୍ୟାର ରାଜ-ସିଂହାସନକୁ ଅଧିକାର କରନ୍ତୁ । ଏଥିରୁ ଏହି ଧାରଣା ଉପୁଜୁଛି ଯେ ଜ୍ୟେଷ୍ଠପୁତ୍ରଙ୍କର ରାଜଗାଦି ପାଇବା ଥିଲା ଅଲଂଘନୀୟ । ରାଜା ଯେତେ ଶକ୍ତିଶାଳୀ କିମ୍ବା ମନୋମୁଖୀ ହେଲେ ମଧ୍ୟ ତାଙ୍କ ପକ୍ଷରେ ଏହି ନୀତିଟିକୁ ଟାଳିଦେବା ଥିଲା ଏକାନ୍ତ ଅସମ୍ଭବ । ଅବଶ୍ୟ ସେହି ଜ୍ୟେଷ୍ଠ ପୁତ୍ର ଗୁଣବାନ୍ ହୋଇଥିବା ଆବଶ୍ୟକ । ଦଶରଥ ରାମଙ୍କୁ ଯୁବରାଜ କରାଇବା ପାଇଁ ରାଜସଭା ସମ୍ମୁଖରେ ପ୍ରସ୍ତାବ ଦେବାର ପ୍ରଧାନ କାରଣ ଥିଲା, ସେ (ରାମ) ଥିଲେ ସବୁ ଗୁଣରେ ଶ୍ରେଷ୍ଠ (ସର୍ବୈଃ ଗୁଣୈଃ ଶ୍ରେଷ୍ଠଃ ମମାତ୍ମଜଃ) । (୨୫)

ଦଶରଥଙ୍କ ରାଜତ୍ୱ ସମୟରେ ଅଯୋଧ୍ୟାର ଅବସ୍ଥା ସଂପର୍କରେ ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହାକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ସବୁ ଦୃଷ୍ଟିରୁ ବିଚାର କଲେ ଏଠାରେ ଲୋକମାନଙ୍କର ଅଭିବୃଦ୍ଧି ଘଟିଥିଲା । ଘରଆଡ଼େ ସୁଖ-ଶାନ୍ତି ଭରପୂର ଥିଲା । ରାମଙ୍କ ଶାସନ କାଳରେ ପୁଣି ଏହି ଅଭିବୃଦ୍ଧି ବହୁ ଗୁଣରେ ବଢ଼ିଯାଇଥିଲା । ସେଥିପାଇଁ ତ ରାମରାଜ୍ୟ ଆମ ପାଇଁ ଏକ ସୁଖସମୃଦ୍ଧିଭରା ପ୍ରବାଦ ରାଜ୍ୟ ହୋଇ ରହିଆସିଛି । ଏହାର ମୂଳରେ ଅବଶ୍ୟ ରାଜା ଓ ପ୍ରଜା ଉଭୟଙ୍କର ହାତ ଥିଲା; ଉଭୟଙ୍କର ସହଯୋଗ ଥିଲା । କିନ୍ତୁ ମୁଖ୍ୟତଃ ରାଜାଙ୍କ ବ୍ୟକ୍ତିତ୍ୱ ଥିଲା ଦେଶର ସୁଶାସନ ପାଇଁ ଦାୟୀ । ରାଜା ଭଲ ନହେଲେ ପ୍ରଜା-ସହଯୋଗ ଆସିବ ବା କୁଆଡ଼ୁ ? ସେଥିପାଇଁ ତ ରାମାୟଣୀୟ ରାଜାଙ୍କ ବିଷୟରେ ସ୍ୱାମୀ ନିଃଶ୍ରେୟସାନନ୍ଦ ଯଥାର୍ଥରେ କହନ୍ତି :

The king's personality was no doubt the mainspring of the progress the country made. (୨୬)

ବାସ୍ତବରେ ରାଜାଙ୍କ ସଦ୍‌ଗୁଣରାଶି ତଥା ଯୋଗ୍ୟତା ସମ୍ପର୍କରେ ରାମାୟଣରେ ଏଭଳି ବର୍ଣ୍ଣନାମାନ ରହିଛି ଯେ ସେଗୁଡ଼ିକର ଅଧିକାରୀ ହେବାପାଇଁ ରାଜାମାନଙ୍କୁ ଯେ ଅତି କଠିନ ପରିଶ୍ରମ କରିବାକୁ ପଡୁଥିବ ଏବଂ କଠିନ ଶୃଙ୍ଖଳାବଦ୍ଧ ପ୍ରଶିକ୍ଷଣ ମଧ୍ୟ ଦେଇ ଗତି କରିବାକୁ ପଡୁଥିବ, ଏଥିରେ ଆଦୌ ସନ୍ଦେହ ନାହିଁ । ରାଜାଙ୍କଠାରେ କୌଣସି ଦୁର୍ଗୁଣକୁ ସହ୍ୟ କରାଯାଉନଥିଲା । କାରଣ ସେତେବେଳେ ବିଶ୍ୱାସ କରାଯାଉଥିଲା ଯେ ରାଜାଙ୍କର ସକଳ ଦୋଷ, ସକଳ ଦୁର୍ବଳତା, ସକଳ ଦୁର୍ଗୁଣ, ସକଳ ପାପର ଫଳ ପ୍ରଜାମାନଙ୍କୁ ହିଁ ଭୋଗ କରିବାକୁ ପଡ଼ିବ । ରାଜାମାନେ ଯଦି ଉତ୍ତମ ଶୀଳସମ୍ପନ୍ନ ଓ ପୁଣ୍ୟବାନ୍ ହୋଇଥାନ୍ତି, ତେବେ ସେମାନେ ରାଜ୍ୟର ଅଭ୍ୟୁଦୟ ଆଣି ଦେବାର ସମର୍ଥ ହେବେ । ରାମ ବାଲିଙ୍କୁ କହିଥିବା ଭାଷାରେ (୪ । ୧୮ । ୪୧) :

ଦୁର୍ଲଭସ୍ୟ ଚ ଧର୍ମସ୍ୟ ଜୀବିତସ୍ୟ ଶୁଭସ୍ୟ ଚ ।
ରାଜାନୋ ବାନର ଶ୍ରେଷ୍ଠ ପ୍ରଦାତାରୋ ନ ସଂଶୟଃ ।

ଅର୍ଥାତ୍ ହେ ବାନରଶ୍ରେଷ୍ଠ ! ରାଜାମାନେ ଯେ ଦୁର୍ଲଭ ଧର୍ମ, ଜୀବନ ଓ ଲୌକିକ ଅଭ୍ୟୁଦୟ ଦେବାରେ ସମର୍ଥ, ଏଥିରେ ଜମା ସନ୍ଦେହ ନାହିଁ ।

ରାମାୟଣର ବିଭିନ୍ନ ଚରିତ୍ର ବିଭିନ୍ନ ସ୍ଥାନରେ ରାଜାଙ୍କର କି କି ଗୁଣ ଥିବା ଆବଶ୍ୟକ ତଦ୍‌ବିଷୟରେ ଉଲ୍ଲେଖ କରିଛନ୍ତି । ତହିଁରୁ ରାମାୟଣ-କାଳୀନ ରାଜାଙ୍କର କି କି ଯୋଗ୍ୟତା ଥିବା ଆବଶ୍ୟକ ବୋଲି ବିଚାର କରାଯାଉଥିଲା, ସେ ବିଷୟରେ ଧାରଣା କରିହେବ । ସ୍ୱୟଂ ରାମ ରାଜାମାନଙ୍କ ସ୍ୱରୂପ ବିଷୟରେ ବାଲିଙ୍କୁ ବୁଝାଇ ଦେବାକୁ ଯାଇ କହିଛନ୍ତି :

ଦେବା ମାନୁଷରୂପେଣ ଚରନ୍ତ୍ୟେତେ ମହୀତଳେ । (୨୭)

ଅର୍ଥାତ୍ ଏମାନେ (ରାଜାମାନେ) ମନୁଷ୍ୟରୂପ ଧରି ପୃଥିବୀରେ ଚଳ-ପ୍ରଚଳ ହେଉଥିବା ଦେବଗଣ । ରାବଣର ମତ ମଧ୍ୟ ଥିଲା ଅନୁରୂପ । ତା' ମତରେ (୩ । ୪୦ । ୧୨-୧୪) ତେଜସ୍ୱୀ ରାଜା ଅଗ୍ନି, ଇନ୍ଦ୍ର, ସୋମ, ଯମ ଓ ବରୁଣ ଏହି ପଞ୍ଚଦେବତାଙ୍କ ସ୍ୱରୂପକୁ ଧାରଣ କରି ରହିଥାନ୍ତି । ସେମାନଙ୍କଠାରେ ଏହି ଦେବତାମାନଙ୍କର ଗୁଣ, ଯଥା, ପ୍ରତାପ, ପରାକ୍ରମ, ସୌମ୍ୟଭାବ, ଦଣ୍ଡ ଓ ପ୍ରସନ୍ନତା ବିଦ୍ୟମାନ । ଏଣୁ ସକଳ ଅବସ୍ଥାରେ ରାଜାମାନଙ୍କୁ ସମ୍ମାନ ଦେଖାଇବା ତଥା ପୂଜା କରିବା ଉଚିତ । ମାରୀଚ ରାକ୍ଷସକୁ ମାୟାମୃଗ ସାଜିବାପାଇଁ ପରାମର୍ଶ ଦେବା ଅବସରରେ ସେ ରାଜାଙ୍କ ମହତ୍ତ୍ୱ ଦର୍ଶାଇବାକୁ

ଯାଇ ଏଭଳି କହୁଥିଲା । ଏଥିରୁ ଜଣାପଡ଼ୁଛି ଯେ ରାମାୟଣକାଳ ବେଳକୁ ରାଜାଙ୍କଠାରେ ଦେବତ୍ୱ ଆରୋପିତ ହୋଇ ସାରିଲାଣି ଯେଉଁ ସ୍ଥିତି କ ବୈଦିକ କାଳରେ ଆଦୌ ନଥିଲା । ଅବଶ୍ୟ ଶତପଥ ବ୍ରାହ୍ମଣରେ (୫ । ୪ । ୫ । ୪) ରାଜାଙ୍କୁ ଇନ୍ଦ୍ର ବୋଲି କୁହାଯାଇଛି । ଉକ୍ତ ବ୍ରାହ୍ମଣରେ ମଧ୍ୟ ଆଉ ଠାଏ (୫ । ୨ । ୧ । ୨୪) ତାଙ୍କୁ 'ପ୍ରଜାପତି' ବୋଲି କୁହାଯାଇଛି । ଏହାକୁ ଭିତ୍ତି କରି କେତେକ ପଣ୍ଡିତ କହନ୍ତି ଯେ ବୈଦିକ କାଳରେ ଅନ୍ତତଃ ବ୍ରାହ୍ମଣ-କାଳରେ ରାଜାଙ୍କଠାରେ ଦେବତ୍ୱ ଆରୋପିତ ହୋଇସାରିଥିଲା । ଏହା କିନ୍ତୁ ଠିକ୍ ନୁହେଁ । ରାଜା ଶତ୍ରୁମାନଙ୍କର ହନ୍ତା ବୋଲି ହେଲେ ଇନ୍ଦ୍ର । ପୁଣି ସେ ପ୍ରଜାମାନଙ୍କର ପାଳକ ବୋଲି ହେଲେ ପ୍ରଜାପତି । ସେ ଯାହା ହେଉ, ରାମାୟଣୀୟ ରାଜା କିନ୍ତୁ ଦେବତାଙ୍କ ଆସନ ଅଧିକାର କରିସାରିଥିଲେ । ଖାଲି ସେତିକି ନୁହେଁ, ରାଜାଙ୍କ ହସ୍ତରେ ଦଣ୍ଡିତ ହୋଇଥିବା ବ୍ୟକ୍ତି ସ୍ୱର୍ଗକୁ ଯାଏ ବୋଲି ରାମାୟଣରେ (୪ । ୧୮ । ୩୧) ମଧ୍ୟ ବର୍ଣ୍ଣିତ ଅଛି ।

ରାମାୟଣର ଆରମ୍ଭରେ ହିଁ ବାଲ୍ମୀକି ନାରଦଙ୍କୁ ଜଣେ ଆଦର୍ଶ ରାଜାଙ୍କର ସ୍ୱରୂପ ବର୍ଣ୍ଣନ' କରି ସେଭଳି ରାଜା କିଏ ଅଛନ୍ତି ବୋଲି ପ୍ରଶ୍ନ ପଚାରିଛନ୍ତି । ତାଙ୍କ ମତରେ (୧ । ୧ । ୨-୪) ଆଦର୍ଶ ରାଜା ହେଉଛନ୍ତି ଗୁଣବାନ୍, ପରାକ୍ରମୀ, ଧର୍ମଜ୍ଞ, କୃତଜ୍ଞ, ସତ୍ୟବାଦୀ, ଦୃଢ଼ପ୍ରତିଜ୍ଞ, ସଦାଚାରୀ, ସକଳ ପ୍ରାଣୀଙ୍କର ହିତ-ସାଧକ, ବିଦ୍ୱାନ୍, ସାମର୍ଥ୍ୟବାନ୍, ପ୍ରିୟଦର୍ଶନ, ମନର ନିୟନ୍ତ୍ରକ, କ୍ରୋଧଜିତ୍, କାନ୍ତିମାନ୍, ଅନିନ୍ଦକ ତଥା ସଂଗ୍ରାମରେ ଜଣେ ଅଜେୟ ଯୋଦ୍ଧା । ଏଭଳି ଆଦର୍ଶ ରାଜା ହେଉଛନ୍ତି ରାମ ବୋଲି ନାରଦ ଉତ୍ତର ଦେଇଛନ୍ତି ଏବଂ ଆଦର୍ଶ ରାଜାଙ୍କର ଆଉ କେତେକ ରୂପ-ଗୁଣ ଆଣି ଉପସ୍ଥାପିତ କରିଛନ୍ତି । ତାଙ୍କ ଭାଷାରେ (୧ । ୧ । ୮-୧୯) ଜଣେ ଆଦର୍ଶ ରାଜାଙ୍କ ବ୍ୟକ୍ତିତ୍ୱ ଅତୀବ ଆକର୍ଷଣୀୟ ଏବଂ ସେ ସହଜରେ ଅନ୍ୟମାନଙ୍କ ଉପରେ ପ୍ରଭାବ ପକାଇପାରନ୍ତି । ତାଙ୍କର ମୋଟା ମୋଟା କାନ୍ଧ, ବଡ଼-ବଡ଼ ହାତ, ଗୁଡ଼ି ଓସାରିଆ ଏବଂ ବେକଟି ଦେଖିବାକୁ ଶଙ୍ଖ ଭଳି ଥିଲା । ତାଙ୍କ ଗଳାତଳେ ଥିବା ହଂସୁଲି ହାଡ଼ ଉପରେ ମାଂସ ଭରିରହିଥାଏ । ତାଙ୍କର ବାହୁଯୁଗଳ ଜାନୁ ପର୍ଯ୍ୟନ୍ତ ପ୍ରଲମ୍ବିତ । ତାଙ୍କ ମସ୍ତକ ଓ ଲଲାଟ ଖୁବ୍ ସୁନ୍ଦର ଏବଂ ଗତି ମନମତାଣିଆ । ତାଙ୍କ ଶରୀର ମଧ୍ୟମ ଓ ଡ଼ଉଲ-ଡ଼ାଉଲ ଏବଂ ଦେହର ରଙ୍ଗ ଚକ୍‌ଚକ୍ । ତାଙ୍କ ଆଖି ଦିଓଟି ବଡ଼-ବଡ଼ । ସେ ବୁଦ୍ଧିମାନ୍, ନୀତିଜ୍ଞ, ସୁବକ୍ତା, ଜ୍ଞାନୀ, ବେଦପାରଙ୍ଗମ ଏବଂ ସକଳ ଶାସ୍ତ୍ର ବିଷୟରେ ଅଭିଜ୍ଞ । ତାଙ୍କ ସ୍ମରଣ-ଶକ୍ତି ଅସାଧାରଣ ଏବଂ ସେ ଜଣେ ପ୍ରତିଭାବାନ୍ ପୁରୁଷ । ସେ ଧୈର୍ଯ୍ୟବାନ୍, ଜିତେନ୍ଦ୍ରିୟ, ସତ୍ୟନିଷ୍ଠ,

ପବିତ୍ର, ଯଶସ୍ୱୀ, ଏବଂ ଶ୍ରୀସମ୍ପନ୍ନ । ତାଙ୍କ ବିଚାର-ବୁଦ୍ଧି ଅତି ଉତ୍ତମ ଏବଂ ହୃଦୟ ଖୁବ୍ ଉଦାର । ଏତଦ୍ୱାରା ରାଜାଙ୍କୁ ସକଳ ରୂପ ଓ ଗୁଣର ଆଧାର ରୂପରେ ବର୍ଣ୍ଣନା କରାଯାଇଛି ।

ହନୁମାନ୍ ମଧ୍ୟ ରାଜାଙ୍କ ବିଷୟରେ ଅନୁରୂପ ମତ ପ୍ରକାଶ କରିଛନ୍ତି । ତାଙ୍କ ବକ୍ତବ୍ୟରେ ରାଜାଙ୍କର ଆଉ କେତୋଟି ଗୁଣ ଯୋଡ଼ାହୋଇଛି । ତାଙ୍କ ଭାଷାରେ (୫ । ୩୫ । ୮-୧୧) ଆଦର୍ଶ ରାଜାଙ୍କ ମୁଖମଣ୍ଡଳ ହେଉଛି ପୂର୍ଣ୍ଣଚନ୍ଦ୍ରଙ୍କ ଭଳି ସୁନ୍ଦର । ତାଙ୍କ ବଡ଼-ବଡ଼ ଆଖିଦିଓଟି ଦେଖିବାକୁ ପଦ୍ମଫୁଲ ସମାନ । ସେ ରୂପ, ଔଦାର୍ଯ୍ୟ, ତେଜ, କ୍ଷମା, ବୁଦ୍ଧି ଓ ଯଶରେ ଭରପୂର । ସେ ସଦାଚାରୀ ତଥା ଧର୍ମ ଓ ଚତୁର୍ବର୍ଣ୍ଣର ରକ୍ଷକ । ସେ ଅଭାବ କାନ୍ତିମାନ୍ ଓ ରାଜନୀତି-ବିଦ୍ୟାରେ ପରିପୂର୍ଣ୍ଣ ଜ୍ଞାନୀ । ସେ ବ୍ରାହ୍ମଣମାନଙ୍କର ଉପାସକ, ଜ୍ଞାନୀ, ଶୀଲବାନ୍ ତଥା ବିନୟୀ । ବେଦ-ବେଦାଙ୍ଗ ପ୍ରତି ତାଙ୍କର ଖୁବ୍ ନିଷ୍ଠା । ସାମୁଦ୍ରିକ-ଶାସ୍ତ୍ର ଅନୁଯାୟୀ ଶୁଭ ବୋଲି ଗଣାଯାଉଥିବା ଅଙ୍ଗ-ପ୍ରତ୍ୟଙ୍ଗଦ୍ୱାରା ସେ ପରିଶୋଭିତ ।

ଅଯୋଧ୍ୟା ସର୍ବଦା ଆଦର୍ଶ ରାଜାମାନଙ୍କ ଦ୍ୱାରା ଶାସିତ ହୋଇଆସୁଥିଲା । ତେଣୁ ଅଯୋଧ୍ୟାର ଜନତା ଆଦର୍ଶ ରାଜାଙ୍କ ଗୁଣ-ଗ୍ରାମ ବିଷୟରେ ସମ୍ପୂର୍ଣ୍ଣ ରୂପେ ଅବହିତ ଥିଲେ । ସେମାନଙ୍କ କହିବା ଅନୁସାରେ (୨ । ୨ । ୨୮-୪୭) ଆଦର୍ଶ ରାଜା ହେଉଛନ୍ତି ବୀର୍ଯ୍ୟବାନ୍, ସ୍ଥିତପ୍ରଜ୍ଞ, ବିଦ୍ୱାନ୍, ବେଦ-ବେଦାଙ୍ଗ ସମେତ ସକଳ ବିଦ୍ୟାରେ ପାରଙ୍ଗମ, ମିଷ୍ଟଭାଷୀ ଓ ସାଧୁ ପୁରୁଷ । ସେ ଈର୍ଷ୍ୟା, ଅସୂୟା ଓ ମାତ୍ସର୍ଯ୍ୟ ଆଦି ଦୁର୍ଗୁଣଠାରୁ ଦୂରରେ ଥାଆନ୍ତି । ସେ ବୃଦ୍ଧମାନଙ୍କୁ ତଥା ବ୍ରାହ୍ମଣମାନଙ୍କୁ ସର୍ବଦା ପୂଜା କରୁଥାନ୍ତି । ସେ ଚରିଶାନ୍ତ, କୃତଜ୍ଞ, ସଦାଚାରୀ, ଶୀଲବାନ୍, ପ୍ରଜାପ୍ରିୟ ତଥା ଦୟାଳୁ । ତାଙ୍କଠାରେ ଆଳସ୍ୟ ନଥାଏ କିମ୍ବା ବୃଥା ଅଭିମାନ ନଥାଏ । ସେ କ୍ଷମାଶୀଳ ତଥା କୋମଳ । ଧର୍ମ, ଅର୍ଥ ଓ କାମର ଜ୍ଞାନ ତାଙ୍କଠାରେ ବିଦ୍ୟମାନ । ସେ ଗମ୍ଭୀର କଥାକୁ ଗୋପନ ଭାବରେ ରଖିପାରନ୍ତି । ସେ ଭାଷା-ଜ୍ଞାନରେ ନିପୁଣ ଏବଂ ସଙ୍ଗୀତ, ବାଦ୍ୟ ତଥା ଚିତ୍ର-ବିଦ୍ୟାରେ ମଧ୍ୟ ସମଧିକ ପାରଦର୍ଶୀ । ଶତ୍ରୁ ଉପରେ ଆକ୍ରମଣ କରିବା ଏବଂ ଶତ୍ରୁକୁ ଆଘାତ ଦେବା ଉଭୟ ବିଦ୍ୟାରେ ସେ ନିପୁଣ । ସେନା-ସଞ୍ଚାଳନର ନିପୁଣତା ତାଙ୍କଠାରେ ବିଦ୍ୟମାନ । ସେ ଦୋଷଦୃଷ୍ଟିରହିତ, ରୂପବାନ୍ ତଥା ପରାକ୍ରମୀ । ଭିତରେ ଓ ବାହାରେ ସେ ଅତି ଶୁଦ୍ଧ । ସେ କାହାକୁ ଦୋଷଦୃଷ୍ଟିରେ ଦେଖନ୍ତି ନାହିଁ । ଯୁକ୍ତି-ତର୍କ କରିବାରେ ସେ

ଦେବଗୁରୁ ବୃହସ୍ପତିଙ୍କ ସମାନ । ସେ ମିତ୍ରେଗ, ତରୁଣ, ଅସାଧାରଣ ବକ୍ତା । ତାଙ୍କଠାରେ ଦେଶ-କାଳ-ପାତ୍ରର ଜ୍ଞାନ ବିଦ୍ୟମାନ । ତାଙ୍କଠାରେ ଦୈନ୍ୟଭାବ ଆଦୌ ନାହିଁ ।

ବାଲୀଙ୍କ ଭାଷାରେ (୪ । ୧୭ । ୨୯-୩୨) ରାଜା ଇନ୍ଦ୍ରିୟସମୂହକୁ ସଂଯତ କରି ରଖିଥାନ୍ତି । ତାଙ୍କ ମନ ନିଜ ଅଧୀନରେ ଥାଏ । କ୍ଷମା, ଧର୍ମ, ଧୈର୍ଯ୍ୟ ଓ ପରାକ୍ରମ ଆଦି ଗୁଣରେ ସେ ପରିପୂର୍ଣ୍ଣ । ସେ ଅପରାଧୀମାନଙ୍କୁ ସମୁଚିତ ଦଣ୍ଡ ଦେଇଥାନ୍ତି । ରାଜାଙ୍କର କର୍ତ୍ତବ୍ୟ ହେଉଛି ସେ ସ୍ୱେଚ୍ଛାଚାରୀ ହେବେ ନାହିଁ । ସେ ମିତ୍ର ଓ ବିନୟ, ଦଣ୍ଡ ଓ ଅନୁଗ୍ରହ, ଏସବୁର ଦୁରୁପଯୋଗ କରିବେ ନାହିଁ ।

ରାଜାଙ୍କର ପରମ କର୍ତ୍ତବ୍ୟ ଥିଲା ଅନାବଶ୍ୟକ ହିଂସାରୁ ବିରତ ରହିବା । ଯେତିକି ବଳପ୍ରୟୋଗ କିମ୍ବା ହିଂସାଚରଣ କରିବାକୁ ପଡ଼ୁଥିଲା ସେ ସେତିକି ହିଁ କରୁଥିଲେ । ଲକ୍ଷ୍ମଣଙ୍କର ରାମଙ୍କୁ ଦେଇଥିବା ଉପଦେଶବାଣୀ ଏ ସଂପର୍କରେ ଉଲ୍ଲେଖନୀୟ । ସୀତାଙ୍କୁ ହରାଇ ରାମ ଅତିଶୟ ଦୁଃଖଜର୍ଜର ତଥା କ୍ରୁଦ୍ଧ ହୋଇଉଠିଛନ୍ତି । ସେହି ମାନସିକ ଅବସ୍ଥାରେ ସେ ସାରା ସଂସାରକୁ ଜାଳିପୋଡ଼ି ଦେବାକୁ ବସିଛନ୍ତି । ଲକ୍ଷ୍ମଣ ତାଙ୍କୁ ସାନ୍ତ୍ୱନା ଦେଇ ରାଜଧର୍ମ ବିଷୟରେ ସୂଚନା ଦେବାକୁ ଯାଇ କହିଛନ୍ତି :

ନୈକସ୍ୟ ତୁ କୃତେ ଲୋକାନ୍ ବିନାଶୟିତୁମର୍ହସି । (୨୮)

ଅର୍ଥାତ୍ କୌଣସି ଗୋଟିଏ ଅପରାଧ ଲାଗି ଆପଣଙ୍କର ସାରା ସଂସାରକୁ ନଷ୍ଟ କରିଦେବା ଉଚିତ ହେବନାହିଁ । ରାମ ଯେତେବେଳେ ବନବାସ-ଅବସରରେ ରାକ୍ଷସମାନଙ୍କୁ ମାରିବାକୁ ଲାଗିଥିଲେ, ସୀତା ସେତେବେଳେ ତାଙ୍କୁ ଚେତାଇ ଦେବାକୁ ଯାଇ କହିଥିଲେ ଯେ ତାଙ୍କର ଉଚିତ ହେଉଛି କେବଳ ଦୋଷୀକୁ ଦଣ୍ଡ ଦେବା । ଅତି ମାତ୍ରାରେ ହିଂସା କର୍ମରୁ ତାଙ୍କର ନିବୃତ୍ତ ହେବା ଉଚିତ । ବିନା ଶତ୍ରୁତାରେ କାହା ପ୍ରତି ନିଷ୍ଠୁରତା ଦେଖାଇବା (ବିନା ବୈରଂ ଚ ରୌଦ୍ରତା) ଉଚିତ ନୁହେଁ ବୋଲି ସୀତା ସ୍ପଷ୍ଟ ଭାବରେ (୩।୯।୪) ତାଙ୍କୁ କହିଥିଲେ ।

ରାମାୟଣୀୟ ରାଜା କିପରି ପ୍ରଜାମାନଙ୍କ ଦୃଷ୍ଟିରେ ନିଜକୁ ଦୋଷ-ରହିତ ଭାବରେ ପ୍ରତିଭାତ କରାଇବେ ସେଥିପାଇଁ ସତତ ଉଦ୍ୟମଶୀଳ ଥିଲେ ଏବଂ ନିଜର ଦୋଷ-ଦୁର୍ବଳତା ପାଇଁ ନିଜକୁ ଦଣ୍ଡ ଦିଆଇବାରେ ପଶ୍ଚାତ୍‌ପଦ ହେଉନଥିଲେ । ଲୋକଶକ୍ତିକୁ ତାଙ୍କର ଭୟ ଥିଲା । ତାଙ୍କ ସମ୍ପର୍କରେ

ପ୍ରଜାମାନେ କେଉଁଠି କି ପ୍ରକାର କଥାବାର୍ତ୍ତା କରୁଛନ୍ତି, ଗୁପ୍ତଚରମାନଙ୍କ ମାଧ୍ୟମରେ ସେହି ତଥ୍ୟ ସେ ସଂଗ୍ରହ କରୁଥିଲେ ଏବଂ ପରେ ନିଜକୁ ସଂଶୋଧିତ କରାଇ ନେଉଥିଲେ । ସେଥିପାଇଁତ ପ୍ରଜାନୁରଞ୍ଜନ ଉଦ୍ଦେଶ୍ୟରେ ରାଜା ରାମଙ୍କୁ ସ୍ୱପତ୍ନୀ ସୀତାଙ୍କୁ ନିର୍ବାସନଦଣ୍ଡ ଦେବାକୁ ପଡ଼ିଥିଲା । ଏ ଦଣ୍ଡ ଖାଲି ତ ସୀତାଙ୍କ ପାଇଁ ନୁହେଁ, ଏହା ମଧ୍ୟ ଥିଲା ରାମଙ୍କ ପାଇଁ ଅଭିପ୍ରେତ । ସୀତାଙ୍କ ବିରହରେ ରାମ ଅଯୋଧ୍ୟାପୁରୀରେ କାଟିଥିବା ଦୟନୀୟ ଜୀବନକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ବାସ୍ତବିକ ରାମ ନିଜକୁ ହିଁ ଦଣ୍ଡିତ କରାଇଥିଲେ । ରାଜା ଯେତେ ବଡ଼ ଶକ୍ତିଶାଳୀ, ପ୍ରଭାବଶୀଳ ତଥା ଯଥେଚ୍ଛାଚାରୀ ହୋଇଥିଲେ ମଧ୍ୟ ଲୋକଶକ୍ତି ଓ ଲୋକମତ ପ୍ରତି ତାଙ୍କର ସର୍ବଦା ଭୟ ରହୁଥିଲା । ଏଥିରୁ ସୂଚନା ମିଳେ ଯେ ସାର୍ବଭୌମତ୍ୱ ଲୋକମାନଙ୍କଠାରେ ରହୁଥିଲା, ରାଜାଙ୍କଠାରେ କଦାପି ନୁହେଁ । ରାବଣ ଭଳି ଅତ୍ୟାଚାରୀ ତଥା ଦୁଷ୍ଟବୁଦ୍ଧିସଂପନ୍ନ ରାଜାର ମଧ୍ୟ ଲୋକମତ ପ୍ରତି ଭୟ ଥିଲା । ହନୁମାନ୍ ଅଶୋକବନକୁ ନଷ୍ଟ-ଭ୍ରଷ୍ଟ କରି-ଦେଇଥିଲେ ଏବଂ ଅନେକ ରାକ୍ଷସ ବୀରଙ୍କ ପ୍ରାଣ ନେଇଥିଲେ । ଶେଷରେ ତାଙ୍କୁ ଇନ୍ଦ୍ରଜିତ୍ ବନ୍ଦୀ କରିଆଣି ରାବଣ ସମ୍ମୁଖରେ ଉପସ୍ଥାପିତ କରାଇଥିଲା । ରାବଣ ସେତେବେଳେ ଅତିଶୟ କ୍ରୋଧବଶତଃ ତାଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଇଥିଲା, ଠିକ୍ ସେତିକବେଳେ ବିଭୀଷଣ ତାକୁ ପରାମର୍ଶ ଦେବାକୁ ଯାଇ କହିଥିଲେ (୫।୫୨।୬) ଯେ ଦୂତଙ୍କୁ ମାରିବା ହେଉଛି ଲୋକଦୃଷ୍ଟିରେ ନିନ୍ଦିତ କର୍ମ (ଲୋକବୃତ୍ତେଷୁ ଗର୍ହିତମ୍) । ତେଣୁ ଏହି କଥାକୁ ମାନିଯାଇ ଲୋକାପବାଦ ଭୟରେ ରାବଣ ତାଙ୍କୁ ପ୍ରାଣଦଣ୍ଡ ଦେବାରୁ ନିବୃତ୍ତ ରହିଥିଲା । ରାଜାଙ୍କର ପାରିବାରିକ ତଥା ରାଜକୀୟ ଜୀବନ ଉପରେ ପ୍ରଜା-ମାନଙ୍କର ସର୍ବଦା ତୀକ୍ଷ୍ଣ ଦୃଷ୍ଟି ରହୁଥିଲା; କାରଣ ତାଙ୍କର ଭଲମନ୍ଦ ଉପରେ ସାରା ରାଷ୍ଟ୍ରର ଭଲମନ୍ଦ ଥିଲା ନିର୍ଭରଶୀଳ । ଏତଦ୍ଦ୍ୱାରା ରାଜାଙ୍କ ଜୀବନ ଏକ ଆଦର୍ଶ ଜୀବନ ହୋଇଉଠୁଥିଲା ଏବଂ ରାଜା-ପ୍ରଜା ସଂପର୍କ ନିବିଡ଼ ହୋଇଉଠୁଥିଲା । ରାଜା ଯେତେ ଭଲ ହେଲେ ମଧ୍ୟ ତାଙ୍କର ଭୁଲକୁ ପ୍ରଜାମାନେ ନିର୍ବାଧରେ ସମାଲୋଚନା କରିବାକୁ ଛାଡ଼ୁନଥିଲେ । ସେଥିପାଇଁ ସେମାନଙ୍କର କିଛି ହିଁ ଭୟ ନଥିଲା । ରାମଙ୍କ ବନଗମନ ସମୟରେ ଯେତେବେଳେ ସୀତାଙ୍କୁ ବଲ୍କଳ ଧାରଣ କରିବାକୁ ପଡ଼ିଲା ସେତେବେଳେ ପ୍ରଜାମାନେ ସେହି ଦୃଶ୍ୟକୁ କମା ସହି ପାରିଲେନାହିଁ । ସେମାନେ ନୃପତି ଦଶରଥଙ୍କୁ ଧିକ୍କାର କରିବାକୁ ଲାଗିଲେ ତାହାର ଉଲ୍ଲେଖ ଆମେ ରାମାୟଣରେ (୨।୩୮।୧) ଦେଖିବାକୁ ପାଇଥାଉଁ । ଖାଲି ସେତିକି ନୁହେଁ, ରାଜାଙ୍କୁ ଛାଡ଼ି ସେମାନେ ରାମଙ୍କ ଅନୁଗମନ କରିବାର ଇଚ୍ଛା ମଧ୍ୟ (ଗଚ୍ଛନ୍ତମନୁଗଚ୍ଛାମୋ

ଯନ ଗଚ୍ଛତ ରାଘବଃ) ପ୍ରକାଶ କରିଥିଲେ । ରାଜାଙ୍କୁ ପ୍ରଜାମାନେ ସମ୍ପର୍କ ଛାଡ଼ିଦେବାଠାରୁ ବଳକର ଆଉ ବଡ଼ ଦଣ୍ଡ ନାହିଁ । ସେଭଳି କଠୋର ଦଣ୍ଡ ଦେବାକୁ ବି ସେମାନେ ପଛାଇ ନଥିଲେ । ରାଜାଙ୍କୁ କିପରି ରାଷ୍ଟ୍ରର ଭଲମନ୍ଦ ପାଇଁ ଉତ୍ତରଦାୟୀ କରାଯାଉଥିଲା, ସେ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ଅକ୍ଷୟକୁମାର ବନ୍ଦ୍ୟୋପାଧ୍ୟାୟ ଯଥାର୍ଥରେ କହନ୍ତି :

> ରାଜ୍ୟକେ ଭିତର କହିଂ ପାପ କୀ ପ୍ରବଲତା ହୋନେ ପର, କହିଂ ଦୁର୍ଭିକ୍ଷ ୟା ମହାମାରୀ ହୋନେ ପର, କହିଂ ସଂଘର୍ଷ, ଅଶାନ୍ତି ୟା ଅକାଲ-ମୃତ୍ୟୁ ହୋନେ ପର ତଥା କହିଂ ପ୍ରଜାଗଣ କେ ମାନବ-ଜୀବନ କେ ଆଧ୍ୟାତ୍ମିକ ଆଦର୍ଶ ସେ ଚ୍ୟୁତ ହୋନେ ପର ସତ୍ପୁରୁଷ ରାଜା କୋ ହୀ ଉତ୍ତରଦାୟୀ ମାନତେ ଥେ । (୨୯)

ଏହିପରି ଭାବରେ ରାମାୟଣ-ଯୁଗରେ ରାଜା ପ୍ରଜାଙ୍କ ମଧ୍ୟରେ ସୁମଧୁର ସମ୍ପର୍କ ସ୍ଥାପିତ ହୋଇପାରିଥିଲା ।

ରାଜା ରାଷ୍ଟ୍ରର ସକଳ ଶୁଭାଶୁଭ ନିମିତ୍ତ ଉତ୍ତରଦାୟୀ ହେବା ସଙ୍ଗେ ସଙ୍ଗେ ସର୍ବତୋଭାବରେ ଥିଲେ ତାହାର ଶାସନକର୍ତ୍ତା । ମନ୍ତ୍ରିପରିଷଦ ଥିଲା; ଅମାତ୍ୟମାନେ ଥିଲେ; ପୁରୋହିତ ଥିଲେ; ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ମଧ୍ୟ ଥିଲେ । ତାହା ସତ୍ତ୍ୱେ ରାଜାଙ୍କଠାରେ ହିଁ ସର୍ବୋଚ୍ଚ ଶାସନ-କ୍ଷମତା ନ୍ୟସ୍ତ ଥିଲା । ସକଳ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ତାଙ୍କଦ୍ୱାରା ହିଁ କରାଯାଉଥିଲା । ଅବଶ୍ୟ ରାଜଧର୍ମ ସମ୍ପର୍କୀୟ ନୀତି-ନିୟମମାନ ତାଙ୍କପାଇଁ ଅଙ୍କୁଶ ସଦୃଶ କାର୍ଯ୍ୟ କରୁଥିଲା । କିନ୍ତୁ ରାଜା ନଥିଲେ ମୁହୂର୍ତ୍ତିକ ପାଇଁ ମଧ୍ୟ ଶାସନ-କାର୍ଯ୍ୟ ଚାଲି ପାରୁନଥିଲା । ରାମ ବନକୁ ଚାଲି ଯାଇଥାନ୍ତି ଏବଂ ଦଶରଥ ତାଙ୍କୁ ଝୁରି ଝୁରି ଦେହତ୍ୟାଗ କରିଥାନ୍ତି । ଭରତ ମାତୁଳାଳୟ କେକୟ ରାଜ୍ୟରୁ ଫେରିନଥାନ୍ତି । ସେତେବେଳେ ଅଯୋଧ୍ୟା ସିଂହାସନରେ କେହି ରାଜା ନଥାନ୍ତି । ସେଥିପାଇଁ ମାର୍କଣ୍ଡେୟ ଆଦି ଋଷିମାନେ ମନ୍ତ୍ରୀମାନଙ୍କ ସହିତ ଶୀଘ୍ର ଭରତଙ୍କୁ ଡ଼କାଇ ଆଣି ରାଜା କରାଇବା ଲାଗି ବିଚାର-ଆଲୋଚନା କଲେ । ଏହି ଆଲୋଚନା ବେଳେ ସେମାନେ ଅରାଜକ ରାଜ୍ୟରେ କି କି ଦୁରବସ୍ଥା ଘଟେ ସେହି ବିଷୟରେ ମନ୍ତବ୍ୟମାନ ଦେଇଛନ୍ତି ଯାହା କି ରାମାୟଣରେ (୨।୬୭।୯-୩୧) ଅତି ରୋଚକ ଭାବରେ ବର୍ଣ୍ଣିତ । ଏଣୁ ରାଜାଙ୍କ ଅବର୍ତ୍ତମାନତାରେ ଦଣ୍ଡେମାନ ଶାସନକାର୍ଯ୍ୟ ଚାଲିବାକୁ ସେତେବେଳେ କଳ୍ପନା ହିଁ କରା ଯାଉନଥିଲା । ରାଜା ଯେ ରାଜଧାନୀରେ ଅସ୍ଥାୟୀ ଭାବରେ ଅନୁପସ୍ଥିତ ରହୁନଥିଲେ, ସେ କଥା ଭାବିବା ଠିକ୍ ହେବନାହିଁ । ବିଭିନ୍ନ କାରଣରୁ

ତାଙ୍କର ଏଭଳି ଅନୁପସ୍ଥିତି ଘଟୁଥିଲା । କିନ୍ତୁ ତାଙ୍କ ଅବର୍ତ୍ତମାନତାରେ ଶାସନକାର୍ଯ୍ୟ କିଏ ଚଳାଇବେ, ତାହାର ବ୍ୟବସ୍ଥା ସେ କରିସାରିବା ଉତ୍ତାରୁ ଯାଇ ରାଜଧାନୀ ଛାଡ଼ୁଥିଲେ । ଭଗୀରଥଙ୍କୁ ଏଠାରେ ଉଦାହରଣସ୍ୱରୂପ ନିଆଯାଇପାରେ । ସେ ଗଙ୍ଗାଦେବୀଙ୍କୁ ପୃଥିବୀପୃଷ୍ଠକୁ ଆଣିବା ଲାଗି ବନଭୂମିକୁ ଘୋର ତପସ୍ୟା ଲାଗି ଯାଇଥିଲେ । ତତ୍‌ପୂର୍ବରୁ ସେ ଶାସନଦାୟିତ୍ୱ ମନ୍ତ୍ରୀମାନଙ୍କ ହସ୍ତରେ ସମର୍ପି (ମନ୍ତ୍ରିଷ୍ୱାଧାୟ ତଦ୍ ରାଜ୍ୟମ୍) ଦେଇଥିଲେ । ଗଙ୍ଗାବତରଣ ଉତ୍ତାରୁ ଯଥାବିଧି ପିତୃଗଣଙ୍କ ଶ୍ରାଦ୍ଧ କରି ସେ ରାଜଧାନୀକୁ ଫେରିଆସିଥିଲେ ଏବଂ ପୁନର୍ବାର ମନ୍ତ୍ରୀମାନଙ୍କ ହସ୍ତରୁ ଶାସନଦାୟିତ୍ୱ ଗ୍ରହଣ କରିଥିଲେ । (୩୦) ଠିକ୍ ଅନୁରୂପ ଭାବରେ ଶୂଦ୍ରମୁନି ଶମ୍ବୂକଙ୍କୁ ଦଣ୍ଡ ଦେବା ଉଦ୍ଦେଶ୍ୟରେ ରାମ ଅଯୋଧ୍ୟା ଛାଡ଼ିବା ପୂର୍ବରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ହସ୍ତରେ ରାଜ୍ୟଭାର ସମର୍ପିତ କରିଦେଇ ଯାଇଥିଲେ ।

ପୂର୍ବରୁ କୁହାଯାଇଛି ଯେ ସତ୍ୟବାଦିତା ଥିଲା ରାଜାଙ୍କର ବହୁ ସୁଗୁଣ ମଧ୍ୟରେ ଅନ୍ୟତମ । ରାଜା ଯେ ଖାଲି ସତ୍ୟ କହୁଥିଲେ ତାହା ନୁହେଁ । ତାଙ୍କର ସକଳ ଆଚରଣରେ ସତ୍ୟ ପ୍ରତି ନିଷ୍ଠା ପ୍ରକଟିତ ହେଉଥିଲା । ରାଜାଙ୍କ ଗୁଣରେ ପ୍ରଜା । ତେଣୁ ରାଜାଙ୍କ ସତ୍ୟନିଷ୍ଠତାର ପ୍ରଭାବ ପ୍ରଜାମାନଙ୍କ ଉପରେ ମଧ୍ୟ ପଡ଼ୁଥିଲା । ରାଜା ଓ ପ୍ରଜା ଉଭୟ ଥିଲେ ସତ୍ୟର ପୂଜକ । କେହି ମିଥ୍ୟାଚାର ବିଷୟ ଚିନ୍ତା ହିଁ କରୁନଥିଲେ । ରାଜାଙ୍କର ଓ ରାଜ୍ୟର ଏଭଳି ସତ୍ୟ ପ୍ରତି ଏକନିଷ୍ଠତା ତଥା ଶ୍ରଦ୍ଧା ଥିଲା ବୈଦିକ ପରମ୍ପରା ଉପରେ ଆଧାରିତ । ରାମାୟଣ ଯୁଗରେ ଏହି ପରମ୍ପରାକୁ ଯଥେଷ୍ଟ ମାନ୍ୟତା ଦିଆଯାଉଥିବାର ନିଦର୍ଶନ ଆମେ ରାମଙ୍କର ଗୋଟିଏ ମନ୍ତବ୍ୟରୁ ପାଇଥାଉଁ । ଜାବାଳି ମୁନିଙ୍କର ନାସ୍ତିକ ମତକୁ ଖଣ୍ଡନ କରିବାକୁ ଯାଇ ସେ କହୁଛନ୍ତି :

ସତ୍ୟମେବାନୃଶଂସଂ ଚ ରାଜବୃତ୍ତଂ ସନାତନମ୍ ।
ତସ୍ମାତ୍ ସତ୍ୟାତ୍ମକଂ ରାଜ୍ୟଂ ସତ୍ୟେ ଲୋକଃ ପ୍ରତିଷ୍ଠିତଃ ।। (୩୧)

ଅର୍ଥାତ୍ ସତ୍ୟର ପାଳନ ହିଁ ରାଜାମାନଙ୍କର ଦୟାଶୀଳ ଧର୍ମ ତଥା ସନାତନ ଆଚାର । ତେଣୁ ରାଜ୍ୟ ହେଉଛି ସତ୍ୟସ୍ୱରୂପ । ସତ୍ୟରେ ହିଁ ସମ୍ପୂର୍ଣ୍ଣ ଲୋକ ପ୍ରତିଷ୍ଠିତ । ଖାଲି ସେତିକି ନୁହେଁ, ସତ୍ୟର ମହତ୍ତ୍ୱ ପ୍ରତିପାଦିତ କରିବାପାଇଁ ରାମ ପୁଣି କହୁଛନ୍ତି :

ସତ୍ୟମେବେଶ୍ୱରୋ ଲୋକେ ସତ୍ୟେ ଧର୍ମଃ ସଦାଶ୍ରିତଃ ।
ସତ୍ୟମୂଳାନି ସର୍ବାଣି ସତ୍ୟାନ୍ନାସ୍ତି ପରଂ ପଦମ୍ ।। (୩୬)

ଅର୍ଥାତ୍ ଜଗତରେ ସତ୍ୟ ହିଁ ଈଶ୍ୱର । ସର୍ବଦା ସତ୍ୟର ଆଧାର ଉପରେ ଧର୍ମ ପ୍ରତିଷ୍ଠିତ । ସତ୍ୟ ହିଁ ସବୁ ଜିନିଷର ମୂଳ । ସତ୍ୟକୁ ବାଦ ଦେଇ ଅନ୍ୟ କୌଣସି ପରମ ପଦ ନାହିଁ । ମହାଭାରତରେ ମଧ୍ୟ ସତ୍ୟକୁ ସମଧିକ ମାନ୍ୟତା ଦିଆଯାଇ କୁହାଯାଇଛି :

ସତ୍ୟଂ ବ୍ରହ୍ମ ତପଃ ସତ୍ୟଂ ସତ୍ୟଂ ସୃଜତି ଚ ପ୍ରଜାଃ ।
ସତ୍ୟେନ ଧାର୍ଯ୍ୟତେ ଲୋକଃ ସ୍ୱର୍ଗଂ ସତ୍ୟେନ ଗଚ୍ଛତି ।। (୩୬-କ)

ଅର୍ଥାତ୍ ସତ୍ୟ ହେଉଛି ବ୍ରହ୍ମ; ସତ୍ୟ ହେଉଛି ତପସ୍ୟା; ସତ୍ୟ ପ୍ରଜାସୃଷ୍ଟି କରିଥାଏ; ସତ୍ୟ ଜଗତକୁ ଧାରଣ କରିଛି; ଏବଂ ସତ୍ୟଦ୍ୱାରା ମନୁଷ୍ୟ ସ୍ୱର୍ଗକୁ ଯାଏ । ସାରା ରାମାୟଣକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ସତ୍ୟ-ଅସତ୍ୟର ଯେଉଁ ନିରନ୍ତର ସଂଘର୍ଷ ଚାଲିଛି, ତହିଁରେ ପରିଶେଷରେ ସତ୍ୟର ହିଁ ଜୟ ହୋଇଛି । ରାମାୟଣୀୟ ରାଜା ସର୍ବଦା ସତ୍ୟବ୍ରତୀ ହୋଇଛନ୍ତି । ସେ ଯେତେବେଳେ ସତ୍ୟ-ପଥରୁ ପାଦ ଖସାଇ ଦେଇଛନ୍ତି, ସେତେବେଳେ ତାଙ୍କର ପତନ ହୋଇଛି । ପିତୃସତ୍ୟକୁ ପାଳନ କରିବାକୁ ଯାଇ ରାମଙ୍କର ଚଉଦ ବର୍ଷ ପାଇଁ ବନଗମନକୁ ବାଦ ଦେଲେ ସତ୍ୟ ପ୍ରତି ଆଉ ଅଧିକତର ନିଷ୍ଠାର କ'ଣ ବା ନିଦର୍ଶନ ହୋଇପାରିବ ? ରାଜାଙ୍କର ସତ୍ୟନିଷ୍ଠତା ହେତୁ ସାରା ରାଜ୍ୟରେ ସତ୍ୟ ପ୍ରତି ଆଦର-ସମ୍ମାନ ଓ ନିଷ୍ଠା ଅକ୍ଷୁଣ୍ଣ ରହିପାରିଥିଲା । ବାସ୍ତବିକ ରାଜା ଓ ପ୍ରଜା ଉଭୟଙ୍କର ସତ୍ୟ ପ୍ରତି ଏଭଳି ଅନନ୍ୟ ଶ୍ରଦ୍ଧା ତଥା ନିଷ୍ଠା ଥିବାର ଦୃଷ୍ଟାନ୍ତ ପୃଥିବୀର ଅନ୍ୟ କୌଣସି ସମକାଳୀନ ସଭ୍ୟତାରେ ଦେଖିବାକୁ ମିଳେ ନାହିଁ । ଏହି ସତ୍ୟନିଷ୍ଠତାର ପ୍ରଭାବ ଭାରତୀୟମାନଙ୍କ ଉପରେ ଏଭଳି ଭାବରେ ପଡ଼ିଥିଲା ଯେ ମେଘାସ୍ଥିନିସ୍ ମଧ୍ୟ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) କୌଣସି ଭାରତୀୟ ମିଥ୍ୟା କହୁନଥିବାର ଦେଖି ଅତୀବ ଚମତ୍କୃତ ହୋଇଯାଇଥିବା କଥା ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି ।

ଭରତ ଯେତେବେଳେ ଚିତ୍ରକୂଟ-ଆଶ୍ରମକୁ ଆସି ରାମଙ୍କୁ ଅଯୋଧ୍ୟାକୁ ଫେରାଇ ନେବାପାଇଁ ଅନୁରୋଧ କରିଥିଲେ, ସେହି ଅବସରରେ ରାମ ତାଙ୍କୁ ରାଜନୀତିସମ୍ପର୍କୀୟ ଅନେକଗୁଡ଼ିଏ ପ୍ରଶ୍ନ ପଚାରିଥିଲେ । ଏହା ରାମାୟଣର ଅଯୋଧ୍ୟା କାଣ୍ଡସ୍ଥ ୧୦୦ତମ ସର୍ଗରେ ବର୍ଣ୍ଣିତ । ଏହି ସର୍ଗଟି 'କଚ୍ଚିତ୍ସର୍ଗ' ନାମରେ ପରିଚିତ; କାରଣ ଏହାର ଅଧିକାଂଶ ଶ୍ଳୋକ 'କଚ୍ଚିତ୍' ଶବ୍ଦକୁ

ହିଁ ଆରମ୍ଭ କରାଯାଇଛି । ଏଥିରୁ ଜଣାପଡ଼ିବ ସେତେବେଳେ ରାଜାମାନଙ୍କଠାରେ କିଭଳି ଆଗ୍ରହ-ବ୍ୟବହାର ଆଶା କରାଯାଉଥିଲା । ରାମ ପଚାରିଥିଲେ, "ତୁମେ ଧର୍ମରେ ତତ୍ପର ଥିବା ବିଦ୍ୱାନ୍, ବ୍ରହ୍ମଜ୍ଞ, ଇକ୍ଷ୍ୱାକୁକୁଳର ପୁରୋହିତ ମହାତେଜସ୍ୱୀ ବଶିଷ୍ଠଙ୍କୁ ପୂଜା କରୁଛ ତ ? ସେହି ପୁରୋହିତଙ୍କ ଜନ୍ମ ଉତ୍ତମ କୁଳରେ । ସେ ବିନୟୀ ଓ ବହୁଶ୍ରୁତ । ସେ କାହାଙ୍କର ଦୋଷ ବାଛନ୍ତି-ନାହିଁ । ସେହି ପୁରୋହିତଙ୍କୁ ତୁମେ ପୂର୍ଣ୍ଣ ଭାବରେ ସତ୍କାର କରୁଛ ତ ? ହବନ କରିବାର ଠିକଣା ସମୟ କେତେବେଳେ ତାହା ସେ ତୁମକୁ ଆସି ବତାଉଛନ୍ତି ତ ? ତୁମେ ଦେବଗଣଙ୍କୁ, ପିତୃଗଣଙ୍କୁ, ଗୁରୁଜନଗଣଙ୍କୁ, ପିତୃସମ ଆଦରଣୀୟ ବୃଦ୍ଧମାନଙ୍କୁ, ବୈଦ୍ୟମାନଙ୍କୁ ଓ ବ୍ରାହ୍ମଣମାନଙ୍କୁ ସମ୍ମାନ କରୁଛ ତ ? ତୁମେ ଭୃତ୍ୟମାନଙ୍କୁ ମଧ୍ୟ ଆଦର-ସମ୍ମାନ କରୁଛ ତ ? ତୁମେ ନିଜ ଭଳି ଶୂରବୀର, ଶାସ୍ତ୍ରଜ୍ଞ, ଜିତେନ୍ଦ୍ରିୟ, କୁଳୀନ ତଥା ବାହାର ଇଙ୍ଗିତରୁ ମନର କଥା ବୁଝିପାରୁଥିବା ଭଲ ଯୋଗ୍ୟ ବ୍ୟକ୍ତିମାନଙ୍କୁ ମନ୍ତ୍ରିପଦରେ ନିଯୁକ୍ତ କରୁଛ ତ ? ନୀତିଶାସ୍ତ୍ରଜ୍ଞ ଅମାତ୍ୟମାନଙ୍କ ସହିତ ତୁମେ ମନ୍ତ୍ରଣା କରୁଛ ତ ଏବଂ ସେମାନେ ଏହି ମନ୍ତ୍ରଣାକୁ ଗୋପନ ରଖୁଛନ୍ତି ତ ? ତୁମେ ଅସମୟରେ ନିଦ୍ରା ଯାଉନାହଁ ତ ଏବଂ ଯଥା ସମୟରେ ନିଦ୍ରାତ୍ୟାଗ କରୁଛ ତ ? କୌଣସି ଗୂଢ଼ ବିଷୟ ଏକାକୀ ହିଁ ବିଚାର କରୁନାହଁ ? ଅଥବା ବହୁତ ଲୋକଙ୍କ ସାଥିରେ ବସିକରି ତ ମନ୍ତ୍ରଣା କରୁନାହଁ ? ତୁମର ଗୁପ୍ତ ମନ୍ତ୍ରଣା କୌଣସି ଉପାୟରେ ଶତ୍ରୁ ପାଖକୁ ଚାଲି ଯାଉନାହିଁ ତ ? ଏଭଳି କାର୍ଯ୍ୟ ଅଛି ଯାହାର ସାଧନ ଶ୍ରେଷ୍ଠ ହେଲେ ମଧ୍ୟ ଫଳ ଅତୀବ ମହତ୍ତ୍ୱପୂର୍ଣ୍ଣ । ସେହି କାର୍ଯ୍ୟ କରିବାପାଇଁ ନିଷ୍ପତ୍ତି କରିସାରିବା ଉତ୍ତାରୁ ତୁମେ ତାହାକୁ ଶୀଘ୍ର ଆରମ୍ଭ କରୁଛ ନା ନାହିଁ ? ତୁମେ କ'ଣ କରିବାକୁ ଯାଉଛ, ସେହି କାର୍ଯ୍ୟର ପରିସମାପ୍ତି ପରେ ଯାଇ ଅନ୍ୟ ରାଜାମାନେ ସେ ବିଷୟରେ ଖବର ପାଉଛନ୍ତି ତ ? ଆଗରୁ ତୁମର ଭାବୀ କର୍ମ ବିଷୟରେ ସେମାନଙ୍କୁ ସମ୍ବାଦ ପହଞ୍ଚି ଯାଉନାହିଁ ତ ? ଇତ୍ୟାଦି ଇତ୍ୟାଦି ।" ଏହିଭଳି ଆହୁରି ଅନେକ ରାଜନୀତି ସମ୍ପର୍କୀୟ ଉପାଦେୟ ପ୍ରଶ୍ନମାଳା ସେ ଭରତଙ୍କୁ ପଚାରିଥିଲେ । ସେହିସବୁ ଥିଲା ଏକାନ୍ତ ଭାବରେ ରାଜଧର୍ମ ପାଳନର ଅନୁପନ୍ଥୀ । ଭରତ ରାଜଧର୍ମ ପାଳନର ନୀତିସମୂହ ବିଷୟରେ ସମ୍ପୂର୍ଣ୍ଣ ଭାବରେ ଅବହିତ ତଥା ସଜାଗ ଅଛନ୍ତି କି ନାହିଁ ବୋଲି ସେ ଜାଣିବାକୁ ଚାହିଁଥିଲେ । ଏହି ପ୍ରଶ୍ନଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ରାଜ୍ୟ-ଶାସନ ସମ୍ପର୍କୀୟ ଏପରି କୌଣସି ବିଷୟ ନାହିଁ, ଯାହାପାଇଁ ରାଜାଙ୍କ ମୁଣ୍ଡ ବିଆଉ ନଥିଲା । ରାଜାଙ୍କ ପ୍ରଭୁତ୍ୱର ପ୍ରସାରିତ ହସ୍ତ ରାଷ୍ଟ୍ରଶାସନର କ୍ଷୁଦ୍ର-ବୃହତ୍ ସକଳ ବିଭାବକୁ ସେତେବେଳେ ସ୍ପର୍ଶ କରିଥିଲା ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଏତେ ବଡ଼ ଦାୟିତ୍ୱ ରାଜା ତୁଲାଉଥିଲେ କିପରି ? ପୁଣି ତାହା ସହିତ ନୃତ୍ୟଗୀତ ଆଦି କଳାତ୍ମକ କାର୍ଯ୍ୟାବଳୀ ସହିତ ସେ ନିଜକୁ ସାମିଲ କରିପାରୁଥିଲେ କିପରି ? ଏତେ ବଡ଼ ଗୁରୁ ଦାୟିତ୍ୱ ମୁଣ୍ଡାଇବା ପରେ ତାଙ୍କୁ ଚିତ୍ତବିନୋଦନ ଲାଗି ଅବସର ବା ମିଳୁଥିଲା କିପରି ? ସେ ଦୈନିକ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟନିର୍ଘଣ୍ଟ ଅନୁଯାୟୀ କାର୍ଯ୍ୟରତ ରହୁଥିଲେ ନା ନାହିଁ ? ଅଥବା ଯେତେବେଳେ ଯେଉଁ କାମ ଜୁଟୁଥିଲା ତାହାକୁ ସେ କରିଦେଉଥିଲେ ? ଏହିସବୁ ପ୍ରଶ୍ନର ଉତ୍ତର ଆମେ ରାମାୟଣର ଉତ୍ତରକାଣ୍ଡରେ ବର୍ଣ୍ଣିତ ରାମଙ୍କ ଦୈନନ୍ଦିନ କାର୍ଯ୍ୟକଳାପରୁ ଜାଣିପାରିବା । (୩୩) ଏହାକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ଏକ ସୁପରିକଳ୍ପିତ କାର୍ଯ୍ୟନିର୍ଘଣ୍ଟ ଅନୁଯାୟୀ ରାମ ତାଙ୍କର ଦୈନନ୍ଦିନ କାର୍ଯ୍ୟ ନିର୍ବାହ କରୁଥିଲେ । ଏହି କାର୍ଯ୍ୟ-ନିର୍ଘଣ୍ଟରେ ବିଭିନ୍ନ କାର୍ଯ୍ୟପାଇଁ ପୃଥକ୍ ପୃଥକ୍ ସମୟ ଧାର୍ଯ୍ୟ କରାଯାଉଥିଲା । ଏଭଳି ଯୋଜନାବଦ୍ଧ କାର୍ଯ୍ୟନିର୍ଘଣ୍ଟ ଥିବା ହେତୁ କୌଣସି କାର୍ଯ୍ୟ ଯଥାଯଥ ଭାବରେ ସମାପନ କରିବାରେ କିଛି ଅସୁବିଧା ହେଉନଥିଲା । ରାମଙ୍କ ଦୈନନ୍ଦିନ କାର୍ଯ୍ୟ ହେଲା, ପ୍ରତିଦିନ ସୂର୍ଯ୍ୟୋଦୟ ପୂର୍ବରୁ ସେ ନିଦ୍ରାତ୍ୟାଗ କରି ଜାଗି ଉଠିଥାନ୍ତି । ତାଙ୍କୁ ଜଗାଇବା ପାଇଁ ବନ୍ଦିଗଣ ସ୍ତୁତିପାଠ ତଥା ସଙ୍ଗୀତଗାନ କରିଥାନ୍ତି । ଉଠିବା ପରେ ସେ ସ୍ନାନ କରନ୍ତି ଏବଂ ବସ୍ତ୍ରାଭୂଷଣ ଧାରଣ କରି କୁଳଦେବତାଙ୍କୁ, ପିତୃଗଣଙ୍କୁ ତଥା ବିପ୍ରଗଣଙ୍କୁ ପୂଜା କରନ୍ତି । ତା' ପରେ ସେ ବାହ୍ୟ କକ୍ଷକୁ ଯାଆନ୍ତି ଏବଂ ସେଠାରେ ସାର୍ବଜନିକ କାର୍ଯ୍ୟ-ନିର୍ବାହ କରନ୍ତି । ଏଠାରେ ଅମାତ୍ୟମାନେ, ପୁରୋହିତମାନେ, ସେନାଧିକାରୀମାନେ, ଜାନପଦମାନେ, ସାମନ୍ତ ରାଜାମାନେ, ଏବଂ ଋଷିମାନେ ତାଙ୍କ ସହିତ ସଭାରେ ମିଳିତ ହୁଅନ୍ତି । ସେମାନଙ୍କ ସହିତ ବିଭିନ୍ନ ବିଷୟରେ ବିଚାର-ଆଲୋଚନା କରି ସେ ରାଜକାର୍ଯ୍ୟ ନିର୍ବାହ କରନ୍ତି । ଏହି ସଭାର ସେ ଥାଆନ୍ତି ସଭାପତି ବା ମୁଖ୍ୟ । ତେଣୁ ସେହି ହିସାବରେ ତାଙ୍କୁ ସଭାର ସଞ୍ଚାଳନ ଦାୟିତ୍ୱ ବହନ କରିବାକୁ ପଡ଼ୁଥାଏ । ସାଧାରଣ ଜନତା ରାଜସଭାରେ ତାଙ୍କୁ ସାକ୍ଷାତ୍ କରି ସେମାନଙ୍କ ଆପତ୍ତି ଅଭିଯୋଗ ଜଣାଇଥାଆନ୍ତି । ସ୍ତ୍ରୀ-ପୁରୁଷ ସମସ୍ତେ କିପରି ନିର୍ବାଧରେ ଓ ସହଜରେ ନିଜ ନିଜର ଅଭିଯୋଗ ରାଜାଙ୍କ ଆଗରେ ଉପସ୍ଥାପିତ କରୁଥିଲେ ତାହା ରାମାୟଣରେ (୭।୫୩।୫) ବର୍ଣ୍ଣିତ । ରାଜକାର୍ଯ୍ୟରେ ବ୍ୟସ୍ତ ନଥିବା ବେଳେ ସେ ମୁନିମାନଙ୍କ ଠାରୁ ଧର୍ମପ୍ରବଚନ ଶୁଣନ୍ତି । ଅପରାହ୍ଣ ସମୟରେ ସେ ନିଜ ଅନ୍ତଃପୁରସ୍ଥ ଅଶୋକବନରେ ସୀତାଙ୍କ ସହିତ ବିତାଇଥାଆନ୍ତି । ଦିନର ଶେଷ ସମୟରେ ସେ ମଧ୍ୟ-କକ୍ଷକୁ ଯାଆନ୍ତି ଏବଂ ସେଠାରେ ଗୁପ୍ତଚରମାନଙ୍କ ସହିତ ମହତ୍ତ୍ୱପୂର୍ଣ୍ଣ ବିଷୟରେ ମନ୍ତ୍ରଣା

କରନ୍ତି । ରାମ ଯାହା କରୁଥିଲେ, ସ୍ଥୂଳତଃ ସବୁ ରାଜା ତାହା ହିଁ କରୁଥିଲେ । ସନ୍ଧ୍ୟା ଓ ରାତ୍ରିରେ ରାମ କ'ଣ କରୁଥିଲେ ଅଥବା ଅନ୍ୟ ରାଜାମାନେ କ'ଣ କରୁଥିଲେ ସେ ବିଷୟରେ କୌଣସି ସୂଚନା ରାମାୟଣରେ ଦିଆଯାଇନାହିଁ । ଶର୍ମା ମଧ୍ୟ ଏହି ମତର ପୁଷ୍ଟି ସାଧନ କରନ୍ତି । ତାଙ୍କ ଭାଷାରେ :

> The Ramayana does not say much directly about the king's programme in the evening and the night. (୩୪)

ଅବଶ୍ୟ ରାବଣ ସମ୍ପର୍କରେ କୁହାଯାଇଛି ଯେ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେ ନୃତ୍ୟ-ଗୀତ ଉପଭୋଗ କରୁଥିଲା ଏବଂ ସ୍ତ୍ରୀମାନଙ୍କ ସହିତ କାମ-ବିଳାସରେ ରତ ରହୁଥିଲା ।

**ରାଜ୍ୟାଭିଷେକ :**

ରାମାୟଣୀୟ ରାଜାଙ୍କୁ ରାଜଗାଦିରେ ବସିବା ପୂର୍ବରୁ ଆନୁଷ୍ଠାନିକ ଭାବରେ ଅଭିଷିକ୍ତ ହେବାକୁ ପଡ଼ୁଥିଲା । ଏହାକୁ କୁହାଯାଉଥିଲା 'ରାଜ୍ୟାଭିଷେକ' । ଠିକ୍ ସେହିପରି ରାଜାଙ୍କ ଜୀବିତାବସ୍ଥାରେ ଭବିଷ୍ୟତର ରାଜାଙ୍କୁ ଯୁବରାଜପଦରେ ଅଭିଷିକ୍ତ ହେବାକୁ ପଡ଼ୁଥିଲା । ଏହାକୁ କୁହାଯାଉଥିଲା 'ଯୌବରାଜ୍ୟାଭିଷେକ' । ଏହି ଅଭିଷେକ ପରମ୍ପରାଟି ଥିଲା ଅତି ପ୍ରାଚୀନ ଯାହା କି ବୈଦିକ କାଳରୁ ଚାଲି ଆସୁଥିଲା । ଏଥିରେ ଯେଉଁ ମନ୍ତ୍ରଗୁଡ଼ିକ ବୋଲାଯାଉଥିଲା ସବୁ ଥିଲା ବୈଦିକ ମନ୍ତ୍ର । ଐତରେୟ ବ୍ରାହ୍ମଣରେ (୮ । ୩୯) ବୈଦିକ କାଳରେ କରାଯାଇଥିବା ବହୁ ରାଜାଙ୍କ ଅଭିଷେକୋତ୍ସବ କଥାର ଉଲ୍ଲେଖ ଅଛି । ତହିଁରେ କେଉଁ ରାଜାଙ୍କ ଅଭିଷେକ କେଉଁ ଋଷିଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା, ତାହାର ମଧ୍ୟ ବର୍ଣ୍ଣନା ଅଛି । ରାମାୟଣକାଳୀନ ଅଭିଷେକୋତ୍ସବରେ ପ୍ରାୟ ଏହି ନୀତି-ନିୟମ ଅନୁସୃତ ହେଉଥିଲା ।

ରାମାୟଣରେ ଅନେକ ଅଭିଷେକର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ପ୍ରଥମ ଅଭିଷେକଟି ହେଉଛି ରାମଙ୍କ ସମ୍ପର୍କୀୟ ଯାହାର ବର୍ଣ୍ଣନା ଅଯୋଧ୍ୟାକାଣ୍ଡରେ ଅଛି । ତାହା ହେଉଛି ରାମଙ୍କ ଯୌବରାଜ୍ୟାଭିଷେକ ଯାହା କି ବିଭିନ୍ନ ଆୟୋଜନ ସତ୍ତ୍ୱେ ଭାଗ୍ୟର ବିଡ଼ମ୍ବନା ହେତୁ ହୋଇପାରିନଥିଲା । ତତ୍ପରେ କିଷ୍କିନ୍ଧା-କାଣ୍ଡରେ ଅଛି ସୁଗ୍ରୀବଙ୍କର ବାନର-ରାଜ୍ୟରେ ରାଜପଦରେ ଅଭିଷିକ୍ତ ହେବାର ବର୍ଣ୍ଣନା । ତତ୍ପରେ ଆସେ ବିଭୀଷଣଙ୍କ ଲଙ୍କାର ରାଜପଦରେ ଅଭିଷିକ୍ତ

ହେବାର ବର୍ଣ୍ଣନା । ଏହା ହେଉଛି ଦୁଇଟି ପର୍ଯ୍ୟାୟରେ । ପ୍ରଥମ ପର୍ଯ୍ୟାୟର ଅଭିଷେକ ହୋଇଛି ରାମଙ୍କ ଲଙ୍କାରେ ପ୍ରବେଶ ପୂର୍ବରୁ ଯେତେବେଳେ ବିଭୀଷଣ ଆସି ତାଙ୍କର ଶରଣାପନ୍ନ ହୋଇଥିଲେ । ସେତେବେଳେ ରାମ ତାଙ୍କୁ ଲଙ୍କାର ରାଜା ବୋଲି ଅଭିଷେକ ମାଧ୍ୟମରେ ଘୋଷଣା କରିଥିଲେ । ଦ୍ୱିତୀୟ ପର୍ଯ୍ୟାୟର ଅଭିଷେକ ହୋଇଛି ରାବଣବଧ ପରେ । ତତ୍ପରେ ଆସିଛି ଅଯୋଧ୍ୟାକୁ ଫେରିବା ପରେ ରାମଙ୍କର ଅଭିଷେକ । ରାମ ଓ ବିଭୀଷଣ ଉଭୟଙ୍କ ଅଭିଷେକର ବର୍ଣ୍ଣନା ଅଛି ଯୁଦ୍ଧକାଣ୍ଡରେ । ଏତଦ୍‌ବ୍ୟତୀତ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କ ପୁତ୍ରମାନଙ୍କ ରାଜ୍ୟାଭିଷେକର ବିବରଣୀ ଉତ୍ତରକାଣ୍ଡରେ ଦେଖିବାକୁ ମିଳିଥାଏ । (୩୫) ଏହି ସମସ୍ତ ବିବରଣୀକୁ ଏକତ୍ର ବିଚାର କଲେ ଆମେ ରାମାୟଣକାଳୀନ ଅଭିଷେକ ବିଷୟରେ ଏକ ସ୍ଥୂଳ ଧାରଣା କରିପାରିବା ।

ରାଜ୍ୟାଭିଷେକର ଠିକ୍‌ଠାକ୍ ବ୍ୟବସ୍ଥା କରିବାର ଦାୟିତ୍ୱ ରାଜପୁରୋହିତଙ୍କ ଉପରେ ନ୍ୟସ୍ତ ଥିଲା । ହବନ ଓ ଅନ୍ୟାନ୍ୟ କୃତ୍ୟଲାଗି କେତେକ ଆବଶ୍ୟକ ସାମଗ୍ରୀ ପୂର୍ବରୁ ସଂଗ୍ରହ କରାଯାଉଥିଲା । ସେଗୁଡ଼ିକ ହେଲା, ଚାରି ସମୁଦ୍ର, ପବିତ୍ର ନଦୀ, ସରୋବର ତଥା ତୀର୍ଥସମୂହର ଜଳ, ସୁବର୍ଣ୍ଣ-ରତ୍ନ, ଦେବ-ପୂଜନର ସାମଗ୍ରୀ, ସବୁ ପ୍ରକାର ଔଷଧି, ଶ୍ୱେତ ପୁଷ୍ପର ମାଳା, ଘିଅ, ମହୁ, ନୂଆ ଲୁଗା, ସୁସଜ୍ଜିତ ରାଜକୀୟ ରଥ, ଅସ୍ତ୍ର-ଶସ୍ତ୍ର, ଚତୁରଙ୍ଗିଣୀ ସେନା, ସୁନ୍ଦର ଲକ୍ଷଣଯୁକ୍ତ ହାତୀ, ଦୁଇଟି ଚାମର, ଧ୍ୱଜା, ସୁବର୍ଣ୍ଣଭୂଷିତ ଶ୍ୱେତଛତ୍ର, ଷଣ୍ଢର ଶିଙ୍ଗ, ଅନୁଲେପନ, ଅଙ୍ଗରାଗ, ଚନ୍ଦନ, ଅକ୍ଷତ, ପ୍ରିୟଙ୍ଗୁ, ଦହି, ସୁନ୍ଦର ଓ ଦାମିକା ଜୋତା, ନିଆଁ ଭଳି ଦାଉ ଦାଉ ଜଳଉଠୁଥିବା ସୁନାର ଶହେଟି କଳଶ, ଦୁଇ ଶିଙ୍ଗରେ ସୁନା ଗୁଡ଼ାଣି ହୋଇଥିବା ଗୋଟିଏ ଷଣ୍ଢ, ବାଘ-ଛାଲ, ଅଭିଷେକ ଲାଗି ଆବଶ୍ୟକ ହେଉଥିବା ସୁନାର ପୀଢ଼ା (ଭଦ୍ରପୀଠ) ତଥା ଅନ୍ୟାନ୍ୟ ଆବଶ୍ୟକ ସାମଗ୍ରୀସମୂହ । ଏହି ଜିନିଷଗୁଡ଼ିକୁ ଅଗ୍ନିଶାଳାରେ ଏକାଠି କରି ରଖି-ଦିଆଯାଇଥାଏ । ବ୍ରାହ୍ମଣମାନେ ସ୍ୱସ୍ତି-ବାଚନ କରନ୍ତି । ତେଣୁ ସେମାନଙ୍କ ପାଇଁ ଆସନ, ଦକ୍ଷିଣା ଆଦିର ମଧ୍ୟ ବ୍ୟବସ୍ଥା କରାଯାଇଥାଏ । ଏହି ଉତ୍ସବର ସୁନ୍ଦର ବସ୍ତ୍ରାଭରଣଭୂଷିତା କନ୍ୟାମାନଙ୍କର ତଥା ଗଣିକାମାନଙ୍କର ମଧ୍ୟ ଆବଶ୍ୟକତା ହୋଇଥାଏ । ଅଭିଷେକର ଗୋଟିଏ ଦିନ ପୂର୍ବରୁ ରାଜକୁମାର ଓ ତାଙ୍କ ପତ୍ନୀଙ୍କୁ ଉପବାସବ୍ରତ ପାଳନ କରିବାକୁ ପଡ଼ିଥାଏ । ଉଭୟଙ୍କୁ ବ୍ରହ୍ମଚର୍ଯ୍ୟବ୍ରତ ପାଳନପୂର୍ବକ ନାରାୟଣଙ୍କ ଉଦ୍ଦେଶ୍ୟରେ ପୂଜନ ଓ ହବନ କରିବାକୁ ପଡ଼ିଥାଏ । ରାଜ୍ୟାଭିଷେକ ଦିବସର ପ୍ରାତଃକାଳରେ ବ୍ରାହ୍ମଣମାନଙ୍କୁ ମନ୍ଦିରସମୂହରେ ତଥା ସାର୍ବଜନୀନ ସ୍ଥାନସମୂହରେ ଭୂରି ଭୋଜନ ଦେବାର

ବ୍ୟବସ୍ଥା କରାଯାଇଥାଏ । ନଗର ସାରା ପତାକା ଉଡ଼ାଯାଇଥାଏ ଏବଂ ରାସ୍ତା-ଗୁଡ଼ିକୁ ପରିଷ୍କାର-ପରିଚ୍ଛନ୍ନ କରି ସେଗୁଡ଼ିକରେ ପାଣି ଛିଞ୍ଚାଯାଇଥାଏ । ଏହି ଉତ୍ସବର ଆଡ଼ମ୍ବରରେ ପୂର୍ଣ୍ଣ ଚାକଚକ୍ୟ ପ୍ରକଟିତ ହୋଇଥାଏ ।

ରାଜସଭାର ସଦସ୍ୟବୃନ୍ଦ, ବ୍ୟବସାୟୀ ଓ ନାଗରିକବୃନ୍ଦ, ଶ୍ରମିକ ସଂଘ-ଗୁଡ଼ିକର ପ୍ରଧାନବୃନ୍ଦ, ସାମନ୍ତ ରାଜାବୃନ୍ଦ, ମନ୍ତ୍ରିବୃନ୍ଦ, ପ୍ରଧାନ ସେନାପତି ତଥା ପ୍ରମୁଖ ରାଜକର୍ମଚାରୀବୃନ୍ଦ ବଡ଼ ଉଦ୍‌ବିଗ୍ନ ହୋଇ ଅଭିଷେକର ଲଗ୍ନର ପ୍ରତୀକ୍ଷାରେ ସ୍ୱ ସ୍ୱ ଆସନରେ ଅଧିଷ୍ଠିତ ଥାଆନ୍ତି । ଅଭିଷେକସଂସ୍କାର ରାଜ-ପ୍ରାସାଦର ଅଗ୍ନିଶାଳା ମଧ୍ୟରେ ସମ୍ପନ୍ନ ହୋଇଥାଏ । ପ୍ରଥମେ ରାଜକୁମାର ଓ ତାଙ୍କ ପତ୍ନୀଙ୍କ ଉଦ୍ଦେଶ୍ୟରେ ବ୍ରାହ୍ମଣମାନେ ସ୍ୱସ୍ତିବାଚନ କରନ୍ତି ଏବଂ ସେ ଦୁହିଁଙ୍କୁ ଆଶୀର୍ବାଦ କରନ୍ତି । ତତ୍ପରେ ସେ ଦୁହେଁ ଯାଇ କୁଶ ବିଛାହୋଇଥିବା ବେଦୀରେ ସଂସ୍ଥାପିତ ଅଗ୍ନିଦେବଙ୍କ ଉଦ୍ଦେଶ୍ୟରେ ହବନ କରନ୍ତି । ତତ୍ପରେ ଦୁହେଁ ଯାଇ ସୁନାର ପୀଢ଼ାରେ ବସନ୍ତି । ତାହା 'ଭଦ୍ରାସନ' ନାମରେ ନାମିତ । ସର୍ବପ୍ରଥମେ ବ୍ରାହ୍ମଣ ଓ ଋତ୍ୱିକ୍‌ମାନେ ବୈଦିକ ମନ୍ତ୍ର ଉଚ୍ଚାରଣ-ପୂର୍ବକ ପବିତ୍ର ଜଳରେ ଅଭିଷେକ କରନ୍ତି । ପରେ ପରେ କ୍ରମାନ୍ୱୟରେ କନ୍ୟାମାନେ, ମନ୍ତ୍ରୀମାନେ, ସୈନିକ ଅଧିକାରୀ ତଥା ବୈଶ୍ୟମାନେ ଅଭିସେଚନ କରନ୍ତି । ଏହିପରି ସେସବୁ ଶ୍ରେଣୀର ଲୋକଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ଅଭିସେଚିତ ହୁଅନ୍ତି । ଏହାର ତାତ୍ପର୍ଯ୍ୟ ହେଲା, ସେ ହେଉଛନ୍ତି ସବୁ ଶ୍ରେଣୀର ଲୋକଙ୍କଦ୍ୱାରା ନିର୍ବାଚିତ ଏବଂ ସବୁ ଶ୍ରେଣୀର ଲୋକଙ୍କର କାଙ୍‌କ୍ଷିତ ପାତ୍ର ।

ଅଭିଷେକ ଜଳଦ୍ୱାରା ସେଚିତ ହେବା ପରେ ରାଜକୁମାର ଆନୁଷ୍ଠାନିକ ଭାବରେ ରାଜା ହୋଇଯାଆନ୍ତି । ସେ ନବୀନ କୌଶେୟ ବସ୍ତ୍ର ପିନ୍ଧି, ନାନା ପ୍ରକାର ଆନୁଲେପନ ତଥା ଆଭରଣଦ୍ୱାରା ଭୂଷିତ ହୋଇ ପତ୍ନୀଙ୍କ ସହିତ ସଭା-ଗୃହକୁ ଆସନ୍ତି ଏବଂ ସେଠାରେ ସମସ୍ତଙ୍କୁ ଦର୍ଶନ ଦିଅନ୍ତି । ସପତ୍ନୀକ ରାଜା ରତ୍ନ-ସିଂହାସନ ଉପରେ ରତ୍ନର ମୁକୁଟ ଧାରଣ କରି ବସନ୍ତି । ପୁରୋହିତଙ୍କ ଦ୍ୱାରା ରାଜାଙ୍କ ମସ୍ତକରେ ଏହି ମୁକୁଟଟି ପିନ୍ଧାଇ ଦିଆଯାଇଥାଏ । ତାଙ୍କ ମସ୍ତକ ଉପରେ ଶ୍ୱେତଛତ୍ର ଟଣାଯାଇଥାଏ ଏବଂ ଦୁଇ ପଟରେ ଚାମରଦ୍ୱାରା ବ୍ୟଜନ କରାଯାଉଥାଏ । ସାମନ୍ତ ରାଜାମାନେ, ବ୍ୟବସାୟୀମାନେ ତଥା ଅନ୍ୟମାନେ ତାଙ୍କୁ ଉପହାରମାନ ଆଣି ଦେଇଥାନ୍ତି । ସେ ମଧ୍ୟ ଲୋକମାନଙ୍କୁ ପୁରସ୍କାର ଆଦି ଦେଇ ସନ୍ତୁଷ୍ଟ କରିଥାନ୍ତି ।

ତାହା ପରେ ରାଜାଙ୍କୁ ପୁଷ୍ପରଥରେ ବସାଇ ରାଜଧାନୀର ରାସ୍ତାରେ ଏକ ବିରାଟ ଚତୁରଙ୍ଗର ପଟୁଆରରେ ନିଆଯାଉଥାଏ । ରଥରେ ସୁନା ଗୁଡ଼ୁଣି ହୋଇଥାଏ ଏବଂ ସେଥିରେ ଝୁଲୁଥିବା ବସ୍ତ୍ରରେ ସୁନାର ଜରି-କାମ କରା ଯାଇଥାଏ । ତାହାକୁ ଧଳାରଙ୍ଗର ଗୃରୋଟି ଘୋଡ଼ା ଟାଣୁଥାନ୍ତି । ରାଜାଙ୍କ ବସିବା ଜାଗାରେ ବାଘଗ୍ଲଲ ବିଛାଯାଇଥାଏ । ରଥରେ ଯେଉଁ ପତାକା ଉଡ଼ୁଥାଏ ତହିଁରେ ରାଜ୍ୟର ଜାତୀୟ ପତାକାର ଚିହ୍ନ ଅଙ୍କିତ ଥାଏ । ପ୍ରତ୍ୟେକ ରାଜାଙ୍କର ସ୍ୱତନ୍ତ୍ର ପତାକା ଥାଏ । ଉଦାହରଣ ସ୍ୱରୂପ ଅଯୋଧ୍ୟାର ରାଜାଙ୍କ ପତାକାରେ ମନ୍ଦାର ଫୁଲର ଚିହ୍ନ ଥାଏ । ରଥରେ ଯେଉଁ ବିରାଟ ଶ୍ୱେତ ଛତ୍ରଟି ଥାଏ ତାହା ଥାଏ ଶତ ଶଲାକାରେ ମଣ୍ଡିତ । ତାହାର ବେଣ୍ଟଟି ଥାଏ ସୁନାର ଏବଂ ତହିଁରେ ମଣି ଓ ରତ୍ନ ଖଚିତ ହୋଇଥାଏ । ଅଭିଷେକରେ ଉପସ୍ଥିତ ଥିବା ସମସ୍ତ ରାଜକର୍ମଚାରୀ ଏହି ପଟୁଆରରେ ନିଜକୁ ସାମିଲ୍ କରିଥାନ୍ତି ।

'ଯୌବରାଜ୍ୟାଭିଷେକ' 'ରାଜ୍ୟାଭିଷେକ' ଠାରୁ ସାମାନ୍ୟ ପୃଥକ୍ ଥାଏ । କାରଣ ଯୌବରାଜ୍ୟାଭିଷେକରେ ଜଣଙ୍କୁ ଯୁବରାଜପଦରେ ଅଭିଷିକ୍ତ କରାଯାଇ-ଥାଏ । ଏହା ତାଙ୍କ ପିତାଙ୍କ ଜୀବଦ୍ଦଶାରେ ହିଁ ଘଟିଥାଏ । ସେ ହୋଇଥାନ୍ତି ଭବିଷ୍ୟତର ରାଜା । ରାମଙ୍କ ଅସମ୍ପୂର୍ଣ୍ଣ ଯୌବରାଜ୍ୟାଭିଷେକରୁ ଆମେ ନିମ୍ନଲିଖିତ ସୂଚନା ପାଇଥାଉଁ ।

(କ) ଯୁବରାଜ ରାଜାଙ୍କର ଜ୍ୟେଷ୍ଠପୁତ୍ର ହୋଇଥିବା ଆବଶ୍ୟକ ।

(ଖ) ତାଙ୍କ ପାଖରେ ଭବିଷ୍ୟତର ରାଜା ହେବାଲାଗି ସକଳ ଗୁଣ ଥିବା ଆବଶ୍ୟକ ।

(ଗ) ରାଜା ଖାଲି ଚାହିଁଲେ ତାଙ୍କ ଜ୍ୟେଷ୍ଠପୁତ୍ରଙ୍କୁ ଯୁବରାଜ କରାଇ ଦେଇପାରିବେ ନାହିଁ । ସେଥିପାଇଁ ମନ୍ତ୍ରିପରିଷଦ ଓ ରାଜସଭାର ସମର୍ଥନ ଥିବା ଆବଶ୍ୟକ ।

(ଘ) ରାଜାଙ୍କୁ ପ୍ରଥମେ ମନ୍ତ୍ରିପରିଷଦରେ ପ୍ରସ୍ତାବଟିକୁ ପକାଇ ମଞ୍ଜୁର କରାଇ ନେବାକୁ ହେବ ।

(ଙ) ତତ୍ପରେ ତାଙ୍କୁ ଏହାକୁ ଲୋକ ପ୍ରତିନିଧିମାନଙ୍କର ସଭାରେ ଉପସ୍ଥାପିତ କରିବାକୁ ହେବ ଏବଂ ସେହି ସଭାର ମଧ୍ୟ ମଞ୍ଜୁର କରାଇ ନେବାକୁ ହେବ ।

(ଚ) ତତ୍ପରେ ସେ ଯୁବରାଜଙ୍କୁ ଆଣି ସଭାର ସଭ୍ୟମାନଙ୍କୁ ଆନୁଷ୍ଠାନିକ ଭାବରେ ଚିହ୍ନାଇଦେବେ ଏବଂ ସଭାର ନିଷ୍ପତ୍ତି ତାଙ୍କୁ ଜଣାଇଦେବେ ।

ରାମଙ୍କ ଅସମ୍ପୂର୍ଣ୍ଣ ଯୌବରାଜ୍ୟାଭିଷେକରୁ ଯୁବରାଜ ଓ ଯୁବରାଣୀଙ୍କର ତପଶ୍ଚର୍ଯ୍ୟା ସମ୍ପର୍କରେ ଏକ ସୂଚନା ଆମ୍ଭେ ପାଇଥାଉଁ । ଅଭିଷେକର ପୂର୍ବଦିନ ରାମ ଓ ସୀତାଙ୍କୁ ଗୋଟିଏ ଗୃହରେ ତପସ୍ୱି-ତପସ୍ୱିନୀଙ୍କ ଭଳି କୁଶ-ଶଯ୍ୟାରେ ଶୋଇବାକୁ ପଡ଼ିଥିଲା । ଏତେ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ସେ ଦୁହିଁଙ୍କୁ ଏଭଳି କୁଶ-ଶଯ୍ୟାରେ କାହିଁକି ଶୋଇବାପାଇଁ କୁହାଯାଇଥିଲା ? ଏହାର ତାତ୍ପର୍ଯ୍ୟ ହେଲା, ପ୍ରଜାମାନଙ୍କୁ ସୁଖ-ଶଯ୍ୟା ଦେବାପାଇଁ ଭବିଷ୍ୟତର ରାଜା ଓ ରାଣୀଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟକୁ ବଳିଦେଇ ସେମାନଙ୍କ ସୁଖ-ସ୍ୱାଚ୍ଛନ୍ଦ୍ୟ ବିଷୟ ଚିନ୍ତା କରିବାକୁ ହେବ । ସେମାନଙ୍କ ନିଜ ସ୍ୱାର୍ଥକୁ ସାଧାରଣ ଜନତାଙ୍କ ସ୍ୱାର୍ଥ ସହିତ ସାମିଲ କରାଇ ଦେବାକୁ ହେବ । ଏହାକୁ ପ୍ରତୀକାତ୍ମକ ଭାବରେ କୁହାଯାଉଥିଲା 'ତପଶ୍ଚର୍ଯ୍ୟା' ବା କଷ୍ଟସାଧନ । ରାଜା-ରାଣୀଙ୍କୁ ପ୍ରଜାଙ୍କ ସୁଖ ଲାଗି କଷ୍ଟ ସହିବାକୁ ହେବ, ଏହି ନୀତିରେ ସେମାନଙ୍କୁ ରାଜପଦଗ୍ରହଣର ବହୁ ପୂର୍ବରୁ ଶିକ୍ଷିତ କରାଇ ଦିଆଯାଉଥିଲା । ଭାରତର ସାଧାରଣ ଜନତାଙ୍କ ଅବସ୍ଥା ପ୍ରତି ସହାନୁଭୂତିଶୀଳ ହୋଇ ମହାତ୍ମା ଗାନ୍ଧି ଆଣ୍ଠୁ-ଲୁଗୁ ଲୁଗା ଖଣ୍ଡିଏ ପିନ୍ଧୁଥିଲେ । ଏଥିରେ ଯେଉଁ ଦର୍ଶନ ପ୍ରତିଫଳିତ, ଯୁବରାଜ-ଯୁବରାଣୀଙ୍କ କୁଶ-ଶଯ୍ୟାରେ ଶୟନରେ ଅବିକଳ ସେହି ଦର୍ଶନ ହିଁ ଥିଲା ପ୍ରତିଫଳିତ । ଏହି ସୁସ୍ଥ ପରଂପରାର ମହନୀୟତା କେତେ ତାହା ସହଜରେ ଉପଲବ୍ଧ୍ୟ ।

ପ୍ରଜାମାନଙ୍କର ଯୌବରାଜ୍ୟାଭିଷେକରେ କିପରି ନିଷ୍ପତ୍ତିମୂଳକ ଭୂମିକା ରହିଥିଲା ତାହାର ସମ୍ୟକ୍ ସୂଚନା ଏଥିରୁ ମିଳିଥାଏ । ଶର୍ମା ମଧ୍ୟ ଏହି ମତକୁ ସମର୍ଥନ କରି କହନ୍ତି :

> The above account dearly shows that the appOintment of a prince as the heir-apparent was not merely a matter of course, nor did it depend entirely on the sweet will of the reigning king. It is amply clear that the people exercised effective control in the selection of their would-be ruler (୩୬)

ରାମାୟଣରେ ବାନର ଓ ରାକ୍ଷସମାନଙ୍କ କ୍ଷେତ୍ରରେ ମଧ୍ୟ 'ଯୁବରାଜ' ଶବ୍ଦର ବ୍ୟବହାର ଦେଖାଯାଇଥାଏ । କିନ୍ତୁ କିପରି ଭାବରେ ଏହି ଯୁବରାଜ-ନିର୍ବାଚନ କରାଯାଉଥିଲା, ତାହାର କୌଣସି ଉଲ୍ଲେଖ ତହିଁରେ ନାହିଁ ।

ସେମାନଙ୍କ କ୍ଷେତ୍ରରେ 'ଯୌବରାଜ୍ୟାଭିଷେକ' ହେଉଥିଲା କି ନାହିଁ ତାହାର ମଧ୍ୟ କୌଣସି ଉଲ୍ଲେଖ ନାହିଁ । ତେବେ ବିଭୀଷଣ ଓ ସୁଗ୍ରୀବ ରାଜା ହେଲାବେଳେ 'ରାଜ୍ୟାଭିଷେକ' ମଧ୍ୟ ଦେଇ ଗତି କରିଥିବାରୁ ରାକ୍ଷସ ଓ ବାନରମାନଙ୍କର ଯୁବରାଜ ମଧ୍ୟ 'ଯୌବରାଜ୍ୟାଭିଷେକ' ମଧ୍ୟ ଦେଇ ଗତି କରୁଥିବେ ବୋଲି ଆମେ ଅନୁମାନ କରିପାରିବା ।

ଯୁବରାଜଙ୍କୁ କୌଣସି ନିର୍ଦ୍ଦିଷ୍ଟ ବିଭାଗର ଦାୟିତ୍ୱ ଦିଆଯାଉଥିଲା କି ନାହିଁ ସେ ବିଷୟରେ ରାମାୟଣରେ କିଛି ସ୍ପଷ୍ଟ ସୂଚନା ମିଳେନାହିଁ । ତେବେ ଏ କଥା ନିଃସନ୍ଦେହ ରୂପରେ କୁହାଯାଇପାରେ ଯେ ସେ ରାଜାଙ୍କୁ ବିଭିନ୍ନ ରାଜ-କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଏହି କାର୍ଯ୍ୟ ସମାହିତ କରିବାରେ ଭାବୀ ରାଜା ହେବା ନିମିତ୍ତ ତାଙ୍କୁ ଉପଯୁକ୍ତ ପ୍ରଶିକ୍ଷଣର ସୁଯୋଗ ମିଳିଯାଉଥିଲା । ରାମ ଆନୁଷ୍ଠାନିକ ଭାବରେ ଯୁବରାଜ ନହେବା ପୂର୍ବରୁ ମଧ୍ୟ ଦୁଷ୍ଟ ରାକ୍ଷସମାନଙ୍କୁ ଦମନ କରିବାପାଇଁ ବିଶ୍ୱାମିତ୍ରଙ୍କ ସାଥିରେ ତାଙ୍କ ଆଶ୍ରମକୁ ଯାତ୍ରା କରିଥିଲେ । ପିତାଦେଶରେ ସେ ମଧ୍ୟ ବେଳେବେଳେ ପୌରକାର୍ଯ୍ୟ ସମ୍ପାଦନ କରୁଥିଲେ ଏବଂ ଏଥିରେ ପ୍ରଜାମାନେ ଖୁବ୍ ସନ୍ତୁଷ୍ଟ ଥିଲେ । ଯୁବରାଜ ଅଙ୍ଗଦ ସୀତାଙ୍କ ଅନ୍ୱେଷଣରେ ଯାଇଥିବା ବାନରଦଳର ନେତୃତ୍ୱ ଗ୍ରହଣ କରିଥିଲେ ।

**ମନ୍ତ୍ରିପରିଷଦ :**

ରାମାୟଣୀୟ ଶାସନତନ୍ତ୍ରର ତିନିଗୋଟି ମୁଖ୍ୟ ଅଙ୍ଗ ଥିଲା । ପ୍ରଥମଟି ହେଲା ମନ୍ତ୍ରିପରିଷଦ, ଦ୍ୱିତୀୟଟି ସଭା ଏବଂ ଶେଷଟି ତୀର୍ଥ ବା ଶାସନାଧିକାରିଗଣ । ଏହି ତିନି ଅଙ୍ଗ ବିଷୟରେ ପୃଥକ୍ ପୃଥକ୍ ଭାବରେ ଆଲୋଚନା କରାଯାଉଛି । ବର୍ତ୍ତମାନ ମନ୍ତ୍ରିପରିଷଦ କଥା ବିଚାର୍ଯ୍ୟ । ମନ୍ତ୍ରିପରିଷଦରେ ଦୁଇ ପ୍ରକାର ସଭ୍ୟ ଥିଲେ, ଯଥା ସରକାରୀ ଓ ବେସରକାରୀ । ସରକାରୀ ସଭ୍ୟମାନଙ୍କର ନାମ ଥିଲା 'ଅମାତ୍ୟ' ଏବଂ ବେସରକାରୀ ସଭ୍ୟମାନଙ୍କ ନାମ ଥିଲା 'ମନ୍ତ୍ରୀ' । ରାମ ସ୍ୱପାଦୁକା-ଦ୍ୱୟ ସହିତ ଭରତଙ୍କୁ ଅଯୋଧ୍ୟାକୁ ଫେରାଇ ଦେବା ଅବସରରେ ତାଙ୍କୁ ଉପଦେଶ ଦେଇ କହିଥିଲେ :

ଅମାତ୍ୟୈଶ୍ଚ ସୁହୃଦ୍‌ଭିଶ୍ଚ ବୁଦ୍ଧିମଦ୍‌ଭିଶ୍ଚ ମନ୍ତ୍ରିଭିଃ ।
ସର୍ବକାର୍ଯ୍ୟାଣି ସମ୍ମନ୍ତ୍ର୍ୟ ମହାନ୍ତ୍ୟପି ହି କାରୟ ॥ (୩୭)

ଅର୍ଥାତ୍ ଅମାତ୍ୟମାନଙ୍କ ସହିତ, ବନ୍ଧୁମାନଙ୍କ ସହିତ ଏବଂ ବୁଦ୍ଧିମାନ୍ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ତୁମେ ସବୁକାମ, ତାହା ଯେତେ ବଡ଼ ହେଉ ନା କାହିଁକି,

କରାଇଦିଅ । ଏଠାରେ 'ଅମାତ୍ୟ' ଓ 'ମନ୍ତ୍ରୀ' କହିଲେ ପୃଥକ୍ ପୃଥକ୍ ବ୍ୟକ୍ତିଙ୍କୁ ବୁଝାଉଛି । ଅମାତ୍ୟମାନେ ରାଜକୋଷରୁ ଦରମା ନେଉଥିଲେ ଏବଂ ସେମାନେ ରାଜଧାନୀରେ ରହୁଥିଲେ । ମନ୍ତ୍ରୀମାନଙ୍କ ମଧ୍ୟରୁ କେତେକ ରାଜଧାନୀରେ ରହୁଥିଲେ ଏବଂ ଆଉ କେତେକ ରାଜଧାନୀ ବାହାରେ ରହୁଥିଲେ । ମନ୍ତ୍ରୀମାନେ ଥିଲେ ଗୁରୁଜନ ଶ୍ରେଣୀୟ । ଏଣୁ ସେମାନଙ୍କୁ କୁହାଯାଉଥିଲା ଗୁରବଃ । କୌଣସି ମହତ୍ତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ନେବା ପୂର୍ବରୁ ରାଜା ସେମାନଙ୍କୁ ଡ଼କାଇ ଆଣି ସେମାନଙ୍କର ପରାମର୍ଶ ନେଉଥିଲେ । ସେମାନେ ସମସ୍ତେ ଥିଲେ ବ୍ରାହ୍ମଣ । ଅମାତ୍ୟମାନଙ୍କ ଦାୟିତ୍ୱରେ ଭିନ୍ନ ଭିନ୍ନ ବିଭାଗମାନ ରହୁଥିଲା । ମନ୍ତ୍ରୀମାନେ ଏକ ପରାମର୍ଶଦାତା ସମିତିର କାର୍ଯ୍ୟ କରୁଥିଲା ବେଳେ ଅମାତ୍ୟମାନେ ଆଜିକାଲିକାର ଭାଷାରେ କ୍ୟାବିନେଟ୍ ବା ମନ୍ତ୍ରିମଣ୍ଡଳର କାର୍ଯ୍ୟ କରୁଥିଲେ । ମନ୍ତ୍ରୀ ଓ ଅମାତ୍ୟମାନଙ୍କୁ ନେଇ ମନ୍ତ୍ରିପରିଷଦ ଗଠିତ ହୋଇଥିଲା । ରାଜା ଉଭୟ ଶ୍ରେଣୀର ବ୍ୟକ୍ତି-ମାନଙ୍କ ପରାମର୍ଶ ନେଇ ଶାସନ କାର୍ଯ୍ୟ ନିର୍ବାହ କରୁଥିଲେ । ରାଜା କେତେବେଳେ ମନ୍ତ୍ରୀମାନଙ୍କ ପରାମର୍ଶ ଲୋଡ଼ୁଥିଲେ ତ ଆଉ କେତେବେଳେ ଅମାତ୍ୟମାନଙ୍କ ପରାମର୍ଶ ଲୋଡ଼ୁଥିଲେ ଏବଂ ପୁଣି କେତେବେଳେ ଉଭୟ ଗୋଷ୍ଠୀର ପରାମର୍ଶ ଲୋଡ଼ୁଥିଲେ । ଦଶରଥ ତାଙ୍କ ଅମାତ୍ୟମାନଙ୍କ ସହିତ ପରାମର୍ଶ କରିସାରିବା ଉତ୍ତାରୁ ମନ୍ତ୍ରୀମାନଙ୍କୁ ଡ଼କାଇ ରାମଙ୍କ ଯୌବରାଜ୍ୟାଭିଷେକ ବିଷୟରେ ସେମାନଙ୍କ ସହିତ ମଧ୍ୟ ପରାମର୍ଶ କରିଥିବା କଥା ରାମାୟଣରେ ବର୍ଣ୍ଣିତ । ଦଶରଥଙ୍କ ଅମାତ୍ୟମାନେ ହେଲେ ଧୃଷ୍ଟି, ଜୟନ୍ତ, ବିଜୟ, ସିଦ୍ଧାର୍ଥ, ଅର୍ଥସାଧକ, ଅଶୋକ, ଧର୍ମପାଳ ଓ ସୁମନ୍ତ୍ର । ସେହିପରି ତାଙ୍କର ମନ୍ତ୍ରୀମାନେ ହେଲେ ବଶିଷ୍ଠ, ବାମଦେବ ଓ ଅନ୍ୟ ବ୍ରାହ୍ମଣଗଣ । ମନ୍ତ୍ରୀମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ରାଜପୁରୋହିତ । ତାଙ୍କର ରାଜାଙ୍କ ଉପରେ ଅଖଣ୍ଡ କ୍ଷମତା ଥିଲା । ଦଶରଥଙ୍କୁ ରାମାୟଣରେ (୨।୧୨।୨) 'ବଶିଷ୍ଠଙ୍କର ବଶବର୍ତ୍ତୀ' ବୋଲି କହିବାର ତାତ୍ପର୍ଯ୍ୟ ଅଛି ଏଇଠି । ବାନର ଓ ରାକ୍ଷସମାନଙ୍କ ମଧ୍ୟରେ ବି ଏହିପରି 'ମନ୍ତ୍ରୀ' ଓ 'ଅମାତ୍ୟ' ଦୁଇ ଶ୍ରେଣୀର ବ୍ୟକ୍ତି ମନ୍ତ୍ରିପରିଷଦରେ ଥିଲେ । ରାମାୟଣରେ (୪।୩।୨୨) ହନୁମାନଙ୍କୁ ସୁଗ୍ରୀବଙ୍କର 'ସଚିବ' ବା 'ଅମାତ୍ୟ' ବୋଲି କୁହାଯାଇଛି । ବାଳୀଙ୍କ ମୃତ୍ୟୁପରେ ସୁଗ୍ରୀବଙ୍କ ରାଜ୍ୟାଭିଷେକ ଲାଗି ଯେଉଁମାନେ ଆଗ୍ରହ ପ୍ରକାଶ କରିଥିଲେ (୪ । ୧ । ୨୦-୨୧) ସେମାନଙ୍କୁ 'ମନ୍ତ୍ରୀ' ବୋଲି କୁହାଯାଇଛି । ରାବଣ ସାଥିରେ ତା'ର ସଚିବ ବା 'ଅମାତ୍ୟ'ମାନେ ଦିଗ୍‌ବିଜୟ ଲାଗି ଯାଇଥିଲେ । ସୀତା ହରଣକାର୍ଯ୍ୟରୁ ନିବୃତ୍ତ ରହିବାପାଇଁ ମାରୀଚ ରାବଣକୁ ପରାମର୍ଶ ଦେଇ କହୁଛି (୩ । ୪ । ୬), "ତୁମକୁ ଏଭଳି ଦୁଷ୍ଟ

କର୍ମରେ ପ୍ରବର୍ତ୍ତିବା ପାଇଁ ବାଧା ନଦେବାର ଅଧିକାର ଭୂମ ସଚିବମାନଙ୍କର ଅଛି କି ? ତା'ର ସଭ୍ୟର ପରାମର୍ଶଦାତା ତତ୍ତ୍ୱଜ୍ଞ ମନ୍ତ୍ରୀମାନେ ଥିଲେ ପୃଥକ୍ ବ୍ୟକ୍ତିଗଣ । ବିଭୀଷଣ ତାଙ୍କର ଯେଉଁ ଗୃହଜଣ ସାଥୀଙ୍କୁ ଧରି ରାମଙ୍କର ଶରଣାପନ୍ନ ହୋଇଥିଲେ ସେମାନେ ଥିଲେ ତାଙ୍କର 'ଅମାତ୍ୟ' । ଏହିପରି ଭାବରେ ଅମାତ୍ୟ-ମନ୍ତ୍ରୀଙ୍କ ଭେଦଭାବ ଆର୍ଯ୍ୟ, ବାନର ଓ ରାକ୍ଷସ ସକଳ ମନ୍ତ୍ରିପରିଷଦରେ ବିଦ୍ୟମାନ ଥିଲା ।

ରାଜାଙ୍କ ମନ୍ତ୍ରୀ ହେବା କମ୍ ବଡ଼ ସୌଭାଗ୍ୟର କଥା ନଥିଲା । ମାନ୍ୟତା ଅଣାଇବା ଦୃଷ୍ଟିରୁ ତାହା ଥିଲା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଅବଶ୍ୟ ରାଜା ମନ୍ତ୍ରୀଙ୍କୁ ନିଯୁକ୍ତ କରୁଥିଲେ । କିନ୍ତୁ ଥରେ ଜଣେ ମନ୍ତ୍ରୀ ଭାବରେ ନିଯୁକ୍ତ ହୋଇଗଲେ ତାଙ୍କୁ ସେହି ପଦରୁ ବାହାର କରିଦେବା ରାଜାଙ୍କ ପକ୍ଷରେ ଥିଲା ଅତୀବ କଷ୍ଟକର । ଡେରେଟ୍ (Derret) ମଧ୍ୟ ଏହି ମତର ପରିପୋଷଣ କରି କହନ୍ତି :

> There was a mantriparished to which the king might have recourse. Promotion to such a council was within his gift but unfurtunately removal from it was nearly impossible. (୩୮-କ)

ସେଥିପାଇଁ ମନ୍ତ୍ରୀମାନେ ରାଜାଙ୍କ ଅଙ୍ଗୁଳି ନିର୍ଦ୍ଦେଶରେ କାର୍ଯ୍ୟ ନକରି ଧର୍ମର ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲେ ଏବଂ ରାଜା ମଧ୍ୟ ସେମାନଙ୍କର ସଦୁପଦେଶ ପାଇ ପାରୁଥିଲେ ।

ଅମାତ୍ୟମାନେ କିଭଳି କାର୍ଯ୍ୟ-ସମ୍ପାଦନ କରୁଥିଲେ ତାହାର ବର୍ଣ୍ଣନା ମଧ୍ୟ ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ସ୍ୱକୀୟ କାର୍ଯ୍ୟ-ସମ୍ପାଦନ କଲାବେଳେ ସେମାନଙ୍କୁ ଉତ୍ତମ ବସ୍ତ୍ର ଓ ଆଭରଣ (ସୁବାସସଃ ସୁବେଶାଶ୍ଚ) ଧାରଣ କରିବାକୁ ପଡ଼ୁଥିଲା । (୩୮) ଏହା ଫଳରେ ସେମାନେ ଅଧସ୍ତନ କର୍ମଚାରୀ ତଥା ପ୍ରଜାଗଣଙ୍କର ସମ୍ମାନାର୍ହ ହୋଇପାରୁଥିଲେ । ରାଜାଙ୍କ ବିଶିଷ୍ଟ ଯାତ୍ରା-ମାନଙ୍କରେ ଅମାତ୍ୟଗଣ ତଥା ମନ୍ତ୍ରିଗଣ ତାଙ୍କର ସହଗମନ କରୁଥିଲେ । ରାବଣର ଯୁଦ୍ଧଯାତ୍ରାରେ ତା'ର ଅମାତ୍ୟମାନେ ସାଥିରେ ଯାଇଥିବା କଥା ପୂର୍ବରୁ ବର୍ଣ୍ଣିତ । ରାମଙ୍କ ବିବାହୋତ୍ସବରେ ରାଜା ଦଶରଥ ମିଥିଳାକୁ ଯାଇଥିବା ସମୟରେ କିପରି ଅମାତ୍ୟମାନେ, ପ୍ରଧାନମନ୍ତ୍ରୀ (ପୁରୋହିତ) ତଥା ମନ୍ତ୍ରୀମାନେ ତାଙ୍କର ସହଗମନ କରିଥିଲେ ତାହାର ବର୍ଣ୍ଣନା ଆମେ ରାମାୟଣରେ (୧।୬୯।୪-୫) ପାଇଥାଉଁ । ଭରତ ନନ୍ଦିଗ୍ରାମରେ ଥାଇ ଶାସନକାର୍ଯ୍ୟ

ସମାହିତ କରୁଥିବା ସମୟରେ ମନ୍ତ୍ରୀ ଓ ପୁରୋହିତ ତାଙ୍କୁ ଘେରି କରି ରହିଥିବା କଥା (ବୃତୋ ମନ୍ତ୍ରି-ପୁରୋହିତୈଃ) ରାମାୟଣରେ ଆଉଠାଏ (୨ । ୧୧୫ । ୧) ଉଲ୍ଲିଖିତ । କିନ୍ତୁ ସେତେବେଳେ ତାଙ୍କ ଅମାତ୍ୟମାନେ ରାଜଧାନୀ ଅଯୋଧ୍ୟାରେ ଥାଇ ନିଜ ନିଜ ବିଭାଗଗୁଡ଼ିକର କାର୍ଯ୍ୟ ସମ୍ପାଦନ କରୁଥିଲେ । ଅମାତ୍ୟମାନଙ୍କ ଉପରେ କାର୍ଯ୍ୟକାରିଣୀ କ୍ଷମତା (executive power) ନ୍ୟସ୍ତ ଥିଲା । ମନ୍ତ୍ରୀମାନେ କେବଳ ପରାମର୍ଶ ହିଁ ଦେଉଥିଲେ । ବନବାସରୁ ଫେରିବା ପରେ ସଚିବମାନେ ବା ଅମାତ୍ୟମାନେ କିପରି ରାମଙ୍କ ରାଜ୍ୟାଭିଷେକର ଝିକିନିଖି ବ୍ୟବସ୍ଥାମାନ କରିଥିଲେ, ତାହା ରାମାୟଣରେ ଆଉଠାଏ (୬ । ୧୨୮ । ୨୩-୨୪) ଅତି ରୋଚକ ଭାବରେ ବର୍ଣ୍ଣିତ ।

**ସଭା :**

ବର୍ତ୍ତମାନ ରାମାୟଣୀୟ 'ସଭା' କଥା ବିଚାର୍ଯ୍ୟ । ଏହା ଥିଲା ବୈଦିକ 'ସଭା' ଓ 'ସମିତି'ର ଏକ କ୍ରମବିକଶିତ ତଥା ସମନ୍ୱିତ ସଂସ୍କରଣ । ବୈଦିକ 'ସମିତି' ଥିଲା 'ବିଶଃ' ବା ପ୍ରଜାମାନଙ୍କର ଏକ ସଂଘ । ଏହି ସମିତି ରାଷ୍ଟ୍ରୀୟ ଜୀବନସମ୍ବନ୍ଧୀୟ ସାର୍ବଜନିକ କାର୍ଯ୍ୟାବଳୀର ଦେଖାଶୁଣା କରୁଥିଲା । 'ସମିତି'କୁ ବୃଦ୍ଧ ପ୍ରବୀଣ ଓ ଜ୍ଞାନୀ ଲୋକମାନଙ୍କର ଆଉ ଏକ ସଂଘ ଥିଲା, ଯାହାକୁ କୁହାଯାଉଥିଲା 'ସଭା' । ବୈଦିକ 'ସମିତି' ଓ 'ସଭା' ଯଥାକ୍ରମେ ଇଂଲଣ୍ଡର House of Commons ଓ House of Lords ସହିତ ତୁଳନୀୟ । ରାମାୟଣ ସମୟ ବେଳକୁ ଏହି ଦୁଇଟି ଅନୁଷ୍ଠାନ ଏକତ୍ରିତ ହୋଇ-ଯାଇଥିଲା । ସେହି ଅନୁଷ୍ଠାନକୁ କୁହାଯାଉଥିଲା 'ସଭା' । ଏଥିରେ ଉଭୟ ପ୍ରଜାମାନଙ୍କର ପ୍ରତିନିଧି ତଥା ପ୍ରବୀଣ ଓ ବିଜ୍ଞ ଲୋକମାନେ ସଭ୍ୟ ଥିଲେ । ଏ ସମ୍ପର୍କରେ ଶର୍ମା ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> Valmiki's Sabha is a place of meeting for the king and his ministers, it is a social club where perhaps people play and gossip, it is the king's court where justice is meted out to the appellant, and lastly it is an 'Assembly' which discusses important matters concerning the State. (୩୧)

ଏହି ସଭାର କାର୍ଯ୍ୟକାରିତା ସମ୍ପର୍କରେ ରାମାୟଣରେ ଯେଉଁ ବର୍ଣ୍ଣନା ରହିଛି, ତାହା ଅନୁଶୀଳନୀୟ । ଅଯୋଧ୍ୟା ଓ ଲଙ୍କାର ସଭା ସମ୍ପର୍କରେ ପୃଥକ୍ ପୃଥକ୍

ବର୍ଣ୍ଣନାମାନ ରହିଛି । ଉଭୟ ସଭାର କାର୍ଯ୍ୟକାରିତା ମଧ୍ୟରେ ଅନେକ ସାମ୍ୟ ଥିଲେ ମଧ୍ୟ କେତେକ ବୈଷମ୍ୟ ଥିବାର ପରିଲକ୍ଷିତ ହୋଇଥାଏ ।

ଅଯୋଧ୍ୟାର ସଭାଗୃହ ରାଜପ୍ରାସାଦର ଗୋଟିଏ ଅଙ୍ଗ ହୋଇ ରହିଥିଲା । ରାମାୟଣର ବର୍ଣ୍ଣନାରୁ ଜଣାଯାଏ ଯେ (୨।୪।୧; ୨।୪।୩; ୨।୧୦।୯-୧୦) ଦଶରଥ ନିଜ ଭବନରୁ ବାହାରି ସଭାଗୃହରେ ପ୍ରବେଶ କରୁଥିଲେ ଏବଂ ଅଧିବେଶନର ପରିସମାପ୍ତି ପରେ ନିଜ ଭବନକୁ ଫେରି ଆସୁଥିଲେ । ସଭାଗୃହର ଉନ୍ମୁକ୍ତ ଖୋଲା ଥିଲା । ରାମାୟଣରେ ଠାଏ (୨।୩।୨୭) ଲେଖାଅଛି ଯେ ଦଶରଥ ସଭାଗୃହରେ ଅବସ୍ଥାନ କରିଥିବା ସମୟରେ ରାମଙ୍କୁ ରାଜମାର୍ଗରେ ଆସୁଥିବାର (ପ୍ରାସାଦସ୍ଥଃ ଦଶରଥୋ ଦଦର୍ଶାୟାନ୍ତ-ମାତ୍ମଜମ୍) ଦେଖିପାରିଥିଲେ । କିନ୍ତୁ ଲଙ୍କାର ସଭାଗୃହ ରାଜପ୍ରାସାଦର ଅଙ୍ଗବିଶେଷ ହୋଇନଥିଲା । ଏହା କିଛିଟା ଦୂରରେ ଥିଲା । ରାବଣର ସ୍ୱଭବନରୁ ବାହାରି ସଭାକୁ ଯିବା ସମ୍ପର୍କରେ କୁହାଯାଇଛି :

> ତମାସ୍ଥାୟ ରଥଶ୍ରେଷ୍ଠଂ ମହାମେଘସମସ୍ୱନମ୍ ।
> ପ୍ରଯଯୌ ରକ୍ଷସାଂ ଶ୍ରେଷ୍ଠୋ ଦଶଗ୍ରୀବଃ ସଭାଂ ପ୍ରତି ।। (୪୦)

ଅର୍ଥାତ୍ ମହାମେଘର ଗର୍ଜନ ଭଳି ଘର୍ଘର ଶବ୍ଦ କରି ଯାଉଥିବା ସେହି ସୁନ୍ଦର ରଥଟିରେ ବସି ରାକ୍ଷସଶିରୋମଣି ଦଶଗ୍ରୀବ ସଭାଗୃହ ଆଡ଼କୁ ଗଲେ । ପୁନଶ୍ଚ ରାବଣର ସଭାଗୃହ ଅଯୋଧ୍ୟାର ସଭାଗୃହ ଭଳି ଉନ୍ମୁକ୍ତ ପଟେ ଖୋଲା ନଥିଲା । ଏକ ନିର୍ଜନ ଘର ମଧ୍ୟରେ ଏହାର ଅଧିବେଶନ ଚାଲୁଥିବାରୁ ଏହାର ବିବରଣୀ ସମ୍ପର୍କରେ ଜନସାଧାରଣ ଅବଗତ ହେବାର କୌଣସି ସମ୍ଭାବନା ନଥିଲା । ଏଥିରୁ ଜଣାପଡ଼ୁଛି ଯେ ରାକ୍ଷସ ରାଜାମାନେ ଆନୁଷ୍ଠାନିକ ସଭାଟିଏ କରାଉଥିଲେ ମଧ୍ୟ ଜନସାଧାରଣଙ୍କ ଠାରୁ ଅନେକ କିଛି ଗୋପନ ରଖିବାକୁ ଚାହୁଁଥିଲେ । ସେମାନଙ୍କ ସମାଜ ଆର୍ଯ୍ୟସମାଜ ଭଳି ଏକ ମୁକ୍ତ ସମାଜ ନଥିଲା । ଦୁଇ ସଭାର ବିବରଣୀକୁ ତୁଳନା କଲେ ଆମେ ଦେଖିବା ଯେ ରାକ୍ଷସସଭାରେ ସବୁବେଳେ ଭଲ ପରାମର୍ଶ ଗୃହୀତ ହେଉନଥିଲା । ରାଜାଙ୍କର ଇଚ୍ଛା ମୁତାବକ ସେଠାରେ ନିଷ୍ପତ୍ତି ନିଆଯାଉଥିଲା । ଉଦାହରଣ ସ୍ୱରୂପ ରାବଣର ସଭାରେ ପରଦାରାପହରଣ ନିନ୍ଦନୀୟ ବୋଲି ବିଭୀଷଣ କହିଥିଲେ ଏବଂ ରାମଙ୍କ ଭଳି ଜଣେ ପ୍ରବଳ ଶତ୍ରୁଙ୍କ ସହିତ ମୁକାବିଲା ମନୋଭାବ ରଖିବା ଶୁଭଙ୍କର ହେବନାହିଁ ବୋଲି ଦର୍ଶାଇ ସୀତାଙ୍କୁ ରାମଙ୍କ ହସ୍ତରେ ପ୍ରତ୍ୟର୍ପଣ କରିଦେବାପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ରାବଣଦ୍ୱାରା ଏହି ପ୍ରସ୍ତାବ ଗୃହୀତ ହୋଇନଥିଲା ।

ଅଯୋଧ୍ୟାର ସଭାସଦମାନେ ସୁନ୍ଦର ସୁନ୍ଦର ବସ୍ତ୍ରାଭୂଷଣରେ ମଣ୍ଡିତ ହୋଇ ଆସୁଥିଲେ ଏବଂ ଦେହରେ ସୁବାସିତ ଅନୁଲେପନ ଦେଉଥିଲେ । ଏହି ସଭା ସମ୍ପର୍କରେ ରାମାୟଣରେ ଠାଏ (୨।୮୨।୨) କୁହାଯାଇଛି :

ବସ୍ତ୍ରାଙ୍ଗରାଗପ୍ରଭୟା ଦ୍ୟୋତିତା ସା ସଭୋତ୍ତମା ।

ଅର୍ଥାତ୍ ସେହି ଶ୍ରେଷ୍ଠ ସଭାଟି ବସ୍ତ୍ର ଓ ଅଙ୍ଗରାଗର (ସଭାସଦମାନଙ୍କର) ଦୀପ୍ତିରେ ଝଟକି ଉଠୁଥିଲା । ସଭାସଦମାନଙ୍କୁ ଦୂତମାନଙ୍କ ହାତରେ କମ୍ବା ସମ୍ବାଦ ବାହକମାନଙ୍କ ହାତରେ ସଭାରେ ଉପସ୍ଥିତ ହେବା ପାଇଁ ନିମନ୍ତ୍ରିତ କରାଯାଉଥିଲା ।

ସଭାରେ ରାଜା ଅଧ୍ୟକ୍ଷ ଆସନ ଅଲଙ୍କୃତ କରୁଥିଲେ । ସଭାସଦ୍‌ମାନେ ସମସ୍ତେ ସଭାରେ ତାଙ୍କ ଆଡ଼କୁ ମୁହଁ କରି ବସୁଥିଲେ । ସାମନ୍ତ ରାଜାମାନେ ତଥା ଅନ୍ୟ ସଭାସଦ୍‌ମାନେ ଦଶରଥଙ୍କ ରାଜସଭାରେ କିପରି ତାଙ୍କୁ ସମ୍ମାନ ପ୍ରଦର୍ଶନ ପୂର୍ବକ ତାଙ୍କ ଆଡ଼କୁ ମୁହଁ କରି ବସିଥିଲେ ତାହା ରାମାୟଣରେ (୨।୧।୫୦) ଉଲ୍ଲିଖିତ । ସଭାସଦମାନେ ରାଜାଙ୍କର ବଚସ୍କର ନଥିଲେ । ଅନ୍ୟ ପକ୍ଷରେ ସେମାନେ ମୁକ୍ତ, ନିର୍ବାଧ ତଥା ନିର୍ଭୀକ ଭାବରେ ସ୍ୱମତକୁ ଉପସ୍ଥାପିତ କରୁଥିଲେ । ରାଜା ମଧ୍ୟ ଏଭଳି ମୁକ୍ତ ଆଲୋଚନାର ପରମ୍ପରାକୁ ଯଥେଷ୍ଟ ମାନ୍ୟତା ଦେଖାଉଥିଲେ । ସେଥିପାଇଁ ତ ଦଶରଥ ରାମଙ୍କୁ ଯୁବରାଜ କରାଇବା ନିମିତ୍ତ ସଭାସଦମାନଙ୍କ ଆଗରେ ପ୍ରସ୍ତାବ ଉପସ୍ଥାପିତ କଲାବେଳେ ସ୍ପଷ୍ଟ ଭାବରେ କହିଥିଲେ ଯେ ଯଦି ସେମାନେ ରାମଙ୍କଠାରୁ ଅଧିକତର ଗୁଣବାନ୍ କେହି ଅଛନ୍ତି ବୋଲି ଭାବୁଥାନ୍ତି, ତେବେ ତାଙ୍କୁ ଯୁବରାଜପଦ ଦେବାପାଇଁ ସ୍ଥିର କରନ୍ତୁ । ଅତଏବ, ତତ୍କାଳୀନ ସଭାର ସଞ୍ଚାଳନରେ ଗଣତାନ୍ତ୍ରିକ ନୀତିକୁ ଖୁବ୍ ସମ୍ମାନ ଦର୍ଶାଯାଉଥିଲା । ଆଧୁନିକ ଗଣତନ୍ତ୍ରରେ ଅବଶ୍ୟ ବହୁ ମତରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇ-ଯାଉଛି । କିନ୍ତୁ ତତ୍କାଳୀନ ସଭାରେ ସମସ୍ତ ନିଷ୍ପତ୍ତି ଏକମତ ଉପରେ ହିଁ ପ୍ରତିଷ୍ଠିତ ଥିଲା । ଜଣେ କେହି ବିରୋଧୀ ମତ ଦେଉଥିବା ପର୍ଯ୍ୟନ୍ତ ପ୍ରସ୍ତାବଟି ଗୃହୀତ ହେଉନଥିଲା । ଆବଶ୍ୟକ ଯୁକ୍ତି ଦର୍ଶାଇ ତାଙ୍କର ବିରୋଧୀ ମତଟିକୁ ଖଣ୍ଡିତ କରିଦେଲା ଉତ୍ତାରୁ ସେ ମଧ୍ୟ ସେହି ପ୍ରସ୍ତାବରେ ଏକମତ ହେଉଥିଲେ । ସଭାସଦମାନେ ଥିଲେ ସମସ୍ତେ ଧର୍ମନିଷ୍ଠ । ତେଣୁ ଧର୍ମାନୁମୋଦିତ ନିଷ୍ପତ୍ତି ନେବାରେ କାହାରି ଦ୍ୱିମତ ନଥିଲା । ଧର୍ମର ରକ୍ଷକ ରାଜାଙ୍କ ପକ୍ଷରେ ମଧ୍ୟ ସେହି ନିଷ୍ପତ୍ତିକୁ ମାନ୍ୟତା ଦର୍ଶାଇ ତାହାକୁ କାର୍ଯ୍ୟକାରୀ କରିବାପାଇଁ କିଛି ହିଁ ଆପତ୍ତି ରହୁନଥିଲା ।

ପୂର୍ବରୁ ବୁଝାଯାଇଛି ଯେ ସଭାରେ ରାଜା ହିଁ ଅଧ୍ୟକ୍ଷତା କରୁଥିଲେ । ରାଜାଙ୍କ ଅବର୍ତ୍ତମାନରେ ରାଜପୁରୋହିତ ପ୍ରଧାନମନ୍ତ୍ରୀ ହିସାବରେ ଏହାର ଅଧ୍ୟକ୍ଷତା କରୁଥିଲେ । ଅଯୋଧ୍ୟାର ପ୍ରଥମ ସଭାରେ ଦଶରଥ ଅଧ୍ୟକ୍ଷତା କରିଥିଲେ । କିନ୍ତୁ ଦ୍ୱିତୀୟ ସଭା ବେଳକୁ ସେ ଇହଧାମରେ ନଥିଲେ । ରାମ ବନବାସ କରିଥିଲେ ଏବଂ ଭରତ ମାଉଳାଳୟରୁ ଫେରି ରାଜ୍ୟଭାର ଗ୍ରହଣ କରିନଥିଲେ । ବିଧି ଅନୁସାରେ ଅଯୋଧ୍ୟାର କୌଣସି ରାଜା ସେତେବେଳେ ନଥିବାରୁ ବଶିଷ୍ଠଙ୍କୁ ପୁରୋହିତ ହିସାବରେ ସଭାପତିତ୍ୱ କରିବାକୁ ପଡ଼ିଥିଲା । ଏହି କଥା ରାମାୟଣରେ (୨ । ୮୧ । ୧) ବିସ୍ତୃତ ଭାବରେ ବର୍ଣ୍ଣିତ । ବଶିଷ୍ଠ ସେତେବେଳେ ଭରତଙ୍କୁ କହିଥିଲେ, "ଏହି ରାଜ୍ୟ ତୁମକୁ ତୁମର ପିତା ଓ ଜ୍ୟେଷ୍ଠ ଭ୍ରାତା ଦେଇ ଯାଇଛନ୍ତି । ତୁମେ ଏହାର ରାଜା ହୋଇ ଏହାକୁ ଉପଭୋଗ କର ଏବଂ ମନ୍ତ୍ରୀମାନଙ୍କ ପରାମର୍ଶ ନେଇ ରାଜ୍ୟଶାସନ କର ।" ଭରତ କିନ୍ତୁ ଏଥିରେ ରାଜି ହୋଇନଥିଲେ । ଜ୍ୟେଷ୍ଠ ଭ୍ରାତାଙ୍କ ଜୀବଦ୍ଦଶାରେ ତାଙ୍କର ରାଜଗାଦି ଗ୍ରହଣ କରିବା ଅନ୍ୟାୟ ବୋଲି ସେ କହିଥିଲେ ଏବଂ ରାମଙ୍କୁ ବନବାସରୁ ଫେରାଇଆଣି ତାଙ୍କ ହସ୍ତରେ ରାଜପଦ ଅର୍ପଣ କରିବାପାଇଁ ଦାବି କରିଥିଲେ । ସଭା ମଧ୍ୟ ତାଙ୍କର ଏହି ପ୍ରସ୍ତାବକୁ ସମର୍ଥନ କରିଥିଲା । ଶେଷରେ ସଭାର ଅଧ୍ୟକ୍ଷ ପୁରୋହିତ ବଶିଷ୍ଠ ସଭାର ଏହି ନିଷ୍ପତ୍ତିକୁ ଗ୍ରହଣ କରିଥିଲେ । ଏଥିରୁ ଜଣାପଡ଼ୁଛି ଯେ ଅଯୋଧ୍ୟାରେ ସଭାର ନିର୍ଣ୍ଣୟ ଥିଲା ଚରମ ତଥା ନିଷ୍ପତ୍ତିମୂଳକ । ଏହି ନିଷ୍ପତ୍ତିକୁ ଅତିକ୍ରମ କରି ଆଉ କିଛି କରିବାର ଅଧିକାର ରାଜାଙ୍କର କିମ୍ବା ଆଉ କାହାର ନଥିଲା । ଶର୍ମା ମଧ୍ୟ ଏହି ମତର ପୃଷ୍ଟିସାଧନ କରି କହନ୍ତି :

The above accounts make it clear that the popular Sabha was an important institution in the administration of Ayodhya. (୪୧)

ରାଜାଙ୍କୁ ମନ୍ତ୍ରୀମାନଙ୍କ ଭଳି ସଭା ସହିତ ଗୁରୁତ୍ୱପୂର୍ଣ୍ଣ ବିଷୟରେ ପରାମର୍ଶ କରିବାକୁ ପଡ଼ୁଥିଲା । ସଭା ଥିଲା ମନ୍ତ୍ରୀମାନଙ୍କଠାରୁ ବା ମନ୍ତ୍ରିପରିଷଦଠାରୁ ଏକ ବୃହତ୍ତର ଅନୁଷ୍ଠାନ । ତାହାର ନିଷ୍ପତ୍ତି ସର୍ବତୋଭାବରେ ଥିଲା ଅଲଙ୍ଘନୀୟ ।

ସଭାର ସଭ୍ୟମାନେ ଥିଲେ ଉଭୟ ସରକାରୀ ଓ ବେସରକାରୀ । ସରକାରୀ ସଭ୍ୟମାନେ ହେଲେ ମନ୍ତ୍ରିଗଣ ଏବଂ ଅମାତ୍ୟ ବା ସଚିବଗଣ । ବେସରକାରୀ ସଭ୍ୟମାନେ ହେଲେ ଲୋକମାନଙ୍କର ପ୍ରତିନିଧିଗଣ ଏବଂ ସାମନ୍ତ

ରାଜାଗଣ ଯେଉଁମାନେ କି ରାଜାଙ୍କ ବଶ୍ୟତା ସ୍ୱୀକାରପୂର୍ବକ ତାଙ୍କୁ କର ଦେଉଥିଲେ । ଲୋକମାନଙ୍କ ପ୍ରତିନିଧିଗଣଙ୍କୁ କୁହାଯାଉଥିଲା 'ପୌର-ଜାନପଦ-ଗଣ' । 'ପୁର' ବା ନଗରର ପ୍ରତିନିଧି ହେଲେ 'ପୌର' ଏବଂ 'ଜନପଦ' ବା ଗାଁଗଣ୍ଡାର ପ୍ରତିନିଧି ହେଲେ 'ଜାନପଦ' । ସଭାର ଏହି 'ପୌର-ଜାନପଦ' ଅଙ୍ଗଟି ଥିଲା ଖୁବ୍ ଶକ୍ତିଶାଳୀ । ପୌର-ଜାନପଦ' ମଧ୍ୟରେ ରହୁଥିଲେ 'ନିଗମ' ବା ବାଣିଜ୍ୟିକ ଅନୁଷ୍ଠାନସମୂହର ପ୍ରତିନିଧିଗଣ (ନୈଗମାଃ), କୃଷକ ତଥା ଗୋପାଳମାନଙ୍କ ପ୍ରତିନିଧିଗଣ (ଗ୍ରାମଘୋଷମହତ୍ତରାଃ), କାରିଗର ବା ଶିଳ୍ପୀମାନଙ୍କ ପ୍ରତିନିଧିଗଣ (ଶ୍ରେଣୀମୁଖ୍ୟାଃ) ଏବଂ ଲୋକମାନଙ୍କ ମୁଖ୍ୟଗଣ (ଜନମୁଖ୍ୟାଃ) । ଏମାନେ ନିର୍ବାଚିତ ହେଉଥିଲେ କି ରାଜାଙ୍କ ଦ୍ୱାରା ନିଯୁକ୍ତ ହେଉଥିଲେ, ତାହାର କୌଣସି ସ୍ପଷ୍ଟ ସୂଚନା ଆମେ ରାମାୟଣରେ ପାଉନାହୁଁ । ଏମାନଙ୍କ ନାମକରଣରୁ କୌଣସି ପ୍ରକାର ନିର୍ବାଚନ ସହିତ ଏମାନେ ସମ୍ପର୍କିତ ଥିବେ ବୋଲି ଅନୁମାନ କରିବାର ଯଥେଷ୍ଟ କାରଣ ଅଛି ।

ସଭାର ଅଧିବେଶନକୁ ବେଳେ ବେଳେ ସଭ୍ୟମାନଙ୍କ ଅତିରିକ୍ତ ଅନ୍ୟମାନଙ୍କୁ ମଧ୍ୟ ଡ଼କାଯାଉଥିଲା । କୌଣସି ଆଲୋଚନା ପ୍ରସଙ୍ଗରେ ଅନ୍ୟମାନଙ୍କର ସମ୍ପୃକ୍ତି ଆବଶ୍ୟକ ହେଲେ ସେମାନଙ୍କୁ ମଧ୍ୟ ସଭାକୁ ଡକାଯାଉଥିଲା । ଦଶରଥଙ୍କ ମୃତ୍ୟୁ ପରେ ଭରତଙ୍କୁ ରାଜପଦ ଦେବା ଉଦ୍ଦେଶ୍ୟରେ ଯେତେବେଳେ ବଶିଷ୍ଠଙ୍କ ଅଧ୍ୟକ୍ଷତାରେ ଅଯୋଧ୍ୟାର ସଭା ବସିଥିଲା, ସେତେବେଳେ ଭରତଙ୍କ ମାତୁଳ ଯୁଧାଜିତ୍‌ଙ୍କୁ ଉକ୍ତ ସଭାକୁ ଡକାଯାଇଥିବାର ବର୍ଣ୍ଣନା ରାମାୟଣରେ (୨।୮୧।୧୩) ଦେଖିବାକୁ ମିଳିଥାଏ ।

ଅଯୋଧ୍ୟା ସଭାର ବିବରଣୀସମୂହ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ସଭା ଆରମ୍ଭରେ ଅଧ୍ୟକ୍ଷଙ୍କ ପକ୍ଷରୁ ଆଲୋଚନା ଆରମ୍ଭ କରାଯାଉଥିଲା । ଏହି ଆଲୋଚନାର ଆରମ୍ଭ ରାଜା ଦଶରଥ କିମ୍ବା ପୁରୋହିତ ବଶିଷ୍ଠ ଅଧ୍ୟକ୍ଷ ହିସାବରେ କରୁଥିଲେ । ସରକାରଙ୍କ ତରଫରୁ ସଭା ଡକାଗଲେ ଆଲୋଚନା ଆରମ୍ଭ ସରକାରଙ୍କଦ୍ୱାରା ହେବାର ପରମ୍ପରା ଏବେ ମଧ୍ୟ ପ୍ରଚଳିତ । ଠିକ୍ ଏହି ନୀତି ସେତେବେଳେ ମଧ୍ୟ ଅନୁସୃତ ହେଉଥିଲା । ରାଜା କିମ୍ବା ପୁରୋହିତ ଆଲୋଚନା ଆରମ୍ଭ କରୁଥିଲେ ଏବଂ ପ୍ରସ୍ତାବ ଉପସ୍ଥାପିତ କରୁଥିଲେ ହେଁ ଶେଷ ନିଷ୍ପତ୍ତିଟି ସଭା ଉପରେ ହିଁ ଛାଡ଼ିଦିଆଯାଉଥିଲା ।

ବର୍ତ୍ତମାନ ରାବଣର ସଭା ବିଷୟରେ କିଛିଟା ସୂଚନାଯାଉ । ପୂର୍ବରୁ କୁହାଯାଇଛି ଯେ ରାବଣର ସଭାଗୃହ ଅଯୋଧ୍ୟାର ସଭାଗୃହ ଭଳି ରାଜ-

ପ୍ରାସାଦର ଅଙ୍ଗୀଭୂତ ହୋଇନଥିଲା । ଏଠାକୁ ଆସିବାପାଇଁ ରାବଣଙ୍କୁ ରଥର ଉପଯୋଗ କରିବାକୁ ପଡୁଥିଲା । ଆର୍ଯ୍ୟମାନଙ୍କ ଭଳି ରାକ୍ଷସମାନେ ମଧ୍ୟ ରାଜ୍ୟର ଅଭିବୃଦ୍ଧି ଲାଗି ତଥା ଶତ୍ରୁ ଉପରେ ବିଜୟ ପାଇବାଲାଗି ମନ୍ତ୍ରୀମାନଙ୍କର ସତ୍ପରାମର୍ଶ ଉପରେ ନିର୍ଭରଶୀଳ ଥିଲେ । ରାମ ଯେତେବେଳେ ବାନର ସେନାବାହିନୀ ଦ୍ୱାରା ଲଙ୍କାକୁ ଘେରାଉ କରିନେଲେ, ରାବଣ ସେତେବେଳେ ବଡ଼ ଉଦ୍‌ବିଗ୍ନ ହୋଇ ମନ୍ତ୍ରୀମାନଙ୍କର ପରାମର୍ଶ ଗ୍ରହିଲା । କାରଣ ତା'ର ବିଶ୍ୱାସ ଥିଲା ଯେ ସେମାନଙ୍କ ସତ୍ପରାମର୍ଶକୁ ଆଶ୍ରୟ କରି ସେ ନିଶ୍ଚିତ ଭାବରେ ବିଜୟୀ ହୋଇ ଉଠିବ । ସେ ତେଣୁ ସେମାନଙ୍କୁ କହିଲା :

ମନ୍ତ୍ରମୂଲଂ ଚ ବିଜୟଂ ପ୍ରବଦନ୍ତି ମନସ୍ୱିନଃ ।
ତସ୍ମାତ୍ ବୈ ରୋଚୟେ ମନ୍ତ୍ରଂ ରାମଂ ପ୍ରତି ମହାବଲାଃ ।। (୪୨)

ଅର୍ଥାତ୍ ହେ ମହାବଳୀ ବୀରଗଣ ! ଜ୍ଞାନୀ ଲୋକମାନେ କହିଥାନ୍ତି ଯେ ବିଜୟର ମୂଳ କାରଣ ହେଉଛି ମନ୍ତ୍ରୀମାନଙ୍କର ସତ୍ପରାମର୍ଶ । ସେଥିପାଇଁ ରାମଙ୍କ ବିଷୟରେ ଆପଣମାନଙ୍କଠାରୁ ପରାମର୍ଶ ନେବା ଉଚିତ ବୋଲି ମୁଁ ମନେକରୁଛି । ତାହାପରେ ସୁମନ୍ତ୍ରଣା ଓ କୁମନ୍ତ୍ରଣା କ'ଣ ସେ ବିଷୟର ସେ ବ୍ୟାଖ୍ୟା କରି କହିଥିଲା । ତାହା ପରବର୍ତ୍ତୀ ସପ୍ତମ ଶ୍ଳୋକରୁ ୧୪ଶ ଶ୍ଳୋକ ମଧ୍ୟରେ ବର୍ଣ୍ଣିତ । ରାବଣର ବକ୍ତବ୍ୟର ସାରକଥା ହେଲା :

କ) ସଂସାରରେ ଉତ୍ତମ, ମଧ୍ୟମ, ଓ ଅଧମ ଏହିଭଳି ତିନି ପ୍ରକାର ପୁରୁଷ ଥାଆନ୍ତି;

ଖ) ଯେଉଁ ପୁରୁଷ ମନ୍ତ୍ର-ନିର୍ଣ୍ଣୟରେ ସମର୍ଥ ମିତ୍ରମାନଙ୍କ ସହିତ ଓ ସୁଖ-ଦୁଃଖର ସାଥୀ ବନ୍ଧୁ-ବାନ୍ଧବମାନଙ୍କ ସହିତ ପରାମର୍ଶ କରିଥାନ୍ତି ଏବଂ ଦୈବର ସହାୟତାରେ କାର୍ଯ୍ୟସମ୍ପାଦନରେ ଯତ୍ନବାନ୍ ହୋଇଥାନ୍ତି, ତାଙ୍କୁ ଉତ୍ତମ ପୁରୁଷ କୁହାଯାଏ;

ଗ) ଯେ ଏକାକୀ ନିଜର କର୍ତ୍ତବ୍ୟ ନିରୂପଣ କରନ୍ତି, ଏକାକୀ ଧର୍ମ-କାର୍ଯ୍ୟରେ ଲଗ୍ନ ରହନ୍ତି ତଥା ଏକାକୀ ସବୁ କାମ କରନ୍ତି ତାଙ୍କୁ ମଧ୍ୟମ ପୁରୁଷ କୁହାଯାଏ;

ଘ) ଯେ ଗୁଣ-ଦୋଷର ବିଚାର ନକରି ଏବଂ ଦୈବର ବି ଆଶ୍ରୟ ନନେଇ କାମ ଆରମ୍ଭ କରନ୍ତି ଏବଂ ପୁଣି ତାହାକୁ ମଝିରୁ ଛାଡ଼ିଦିଅନ୍ତି କିମ୍ବା ତାହା ପ୍ରତି ଅବହେଳା ଦେଖାନ୍ତି ତାଙ୍କୁ ଅଧମ ପୁରୁଷ କୁହାଯାଏ,

ଙ) ପୁରୁଷଭେଦ ଭଳି ଉତ୍ତମ, ମଧ୍ୟମ ଓ ଅଧମ, ଏହିଭଳି ମନ୍ତ୍ରଭେଦ ଅଛି;

ଚ) ଯେଉଁଥିରେ ଶାସ୍ତ୍ରୋକ୍ତ ଦୃଷ୍ଟିରୁ ସବୁ ମନ୍ତ୍ରୀ ଏକମତି ହୋଇ ପ୍ରବୃତ୍ତ ହୋଇଥାନ୍ତି ତାହାକୁ ଉତ୍ତମ ମନ୍ତ୍ରଣା କୁହାଯାଏ;

ଛ) ଯେଉଁଥିରେ ଆରମ୍ଭରୁ କିଛିଟା ମତଭେଦ ଥିଲେ ମଧ୍ୟ ଶେଷରେ ସବୁ ମନ୍ତ୍ରୀ ସହମତ ହୁଅନ୍ତି, ତାହାକୁ ମଧ୍ୟମ ମନ୍ତ୍ରଣା କୁହାଯାଏ; ଏବଂ

ଜ) ଯେଉଁଥିରେ ଆରମ୍ଭରୁ ଭିନ୍ନ ମତ ଥାଇ ସ୍ପର୍ଦ୍ଧାପୂରକ ଭାଷଣମାନ କରା-ଯାଇଥାଏ ଓ ଶେଷରେ ପରସ୍ପର ବିରୋଧୀ ମତ ଆସେ, ତାହା କଲ୍ୟାଣକର ହୋଇନଥାଏ ଏବଂ ତେଣୁ ତାହାକୁ ଅଧମ ମନ୍ତ୍ରଣା ବୋଲି କୁହାଯାଏ ।

ଏତକ କହି ରାବଣ ମନ୍ତ୍ରୀମାନଙ୍କୁ ସୁମନ୍ତ୍ରଣା ଦେବାଲାଗି ଅନୁରୋଧ କରିଥିଲା । ଏହି ଦୃଷ୍ଟିରୁ ରାକ୍ଷସପ୍ରଶାସନରେ ମଧ୍ୟ 'ସଭା'ର ସମଧିକ ଗୁରୁତ୍ୱ ରହିଥିଲା ବୋଲି ମନେହୁଏ ।

ଏଥିରୁ ଜଣାପଡ଼ୁଛି ଯେ ଉତ୍ତମ ତଥା କଲ୍ୟାଣକାରୀ ମନ୍ତ୍ରଣା କ'ଣ ସେ କଥା ରାବଣକୁ ଭଲ ଭାବରେ ଜଣାଥିଲା । କିନ୍ତୁ ତା'ର ସଭାର ଆଲୋଚନା ତଥା ତା'ର ନିଷ୍ପତ୍ତିକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ସବୁବେଳେ ସେ ଠିକଣା ନିଷ୍ପତ୍ତି ନେଇପାରୁନଥିଲା । ବିଶେଷ କରି ରାମ-ସୀତାଙ୍କ ସମ୍ପର୍କରେ ତା'ର ନିଷ୍ପତ୍ତି ଜମା ଠିକଣା ନଥିଲା । ଏହାର କାରଣ ହେଲା, ପ୍ରଥମତଃ ସୀତାଙ୍କ ପ୍ରତି ତା'ର ଅତ୍ୟନ୍ତ ମୋହଭାବ ଥିଲା । ଦ୍ୱିତୀୟତଃ ସେ ରାମଙ୍କ ଶକ୍ତି ବିଷୟରେ କଳନା କରି ପାରିନଥିଲା । ତୃତୀୟତଃ ତାର ନିଜ ଶକ୍ତି ଉପରେ ଅତ୍ୟଧିକ ବିଶ୍ୱାସ ଓ ଆସ୍ଥା ଥିଲା ଏବଂ ସେଥିନେଇ ତା'ର ଖୁବ୍ ସ୍ପର୍ଦ୍ଧା ବି ଥିଲା । ଚତୁର୍ଥତଃ ତା'ର ଅଧିକାଂଶ ସଭାସଦ୍‌ମାନେ ଚାଟୁକାର ଓ ଯୁଦ୍ଧଖୋର ମନୋବୃତ୍ତିର ଥିଲେ । ସେମାନେ ଶାନ୍ତି ନଚାହିଁ କେବଳ ଯୁଦ୍ଧ ହିଁ ଚାହୁଁଥିଲେ । ତେଣୁ ସୁମନ୍ତ୍ରଣା କ'ଣ ତାହା ରାବଣ ଜାଣିଥିଲେ ମଧ୍ୟ ତାହାକୁ କାର୍ଯ୍ୟକାରୀ କରିବାର ସ୍ପୃହା ତାର ନଥିଲା ।

ଲଙ୍କାସଭାର ପ୍ରଥମ ଅଧିବେଶନରେ ପ୍ରହସ୍ତ, ଦୁର୍ମୁଖ, ବଜ୍ରବାହୁ ଆଦି ରାକ୍ଷସମାନେ ଶତ୍ରୁସେନାକୁ ଧରାଶାୟୀ କରିଦେବାପାଇଁ ରାବଣକୁ ଯେଉଁ ପ୍ରୋତ୍ସାହନ ଦେଇଥିଲେ ତାହା ରାମାୟଣରେ (୬।୮) ଅତି ରୋଚକ ଭାବରେ ବର୍ଣ୍ଣିତ । ସେମାନେ ରାବଣକୁ ଖୁବ୍ ଉତ୍ତେଜିତ କରାଇଦେଇଥିଲେ ।

ବିଭୀଷଣ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯେ କି ତାଙ୍କୁ ସଦୁପଦେଶ ଦେବାକୁ ଯାଇ କହିଥିଲେ :

ତ୍ୟଜାଶୁ କୋପଂ ସୁଖଧର୍ମନାଶନଂ
ଭଜସ୍ୱ ଧର୍ମଂ ରତିକୀର୍ତ୍ତିବର୍ଦ୍ଧନମ୍ ।
ପ୍ରସୀଦ ଜୀବେମ ସପୁତ୍ରବାନ୍ଧବାଃ
ପ୍ରଦୀୟତାଂ ଦାଶରଥାୟ ମୈଥିଳୀ ॥ (୪୩)

ଅର୍ଥାତ୍ ଭାଇ ! ଆପଣ କ୍ରୋଧ ତ୍ୟାଗ କରନ୍ତୁ; କାରଣ ତାହା ସୁଖ ତଥା ଧର୍ମକୁ ନଷ୍ଟ କରିଦେଇଥାଏ । ଆପଣ ଧର୍ମର ସେବା କରନ୍ତୁ; କାରଣ ତାହା ସୁଖ ଓ ଯଶକୁ ବଢ଼ାଇଥାଏ । ଆମ ଉପରେ ଆପଣ ପ୍ରସନ୍ନ ହୁଅନ୍ତୁ ଯାହା ଫଳରେ ଆମେ ପୁତ୍ରମାନଙ୍କ ସହିତ ତଥା ବନ୍ଧୁ-ବାନ୍ଧବଙ୍କ ସହିତ ସୁଖରେ ବଞ୍ଚି ରହିପାରିବୁ । ଏହି ଦୃଷ୍ଟିରୁ ମୋ'ର ଆପଣଙ୍କ ନିକଟରେ ପ୍ରାର୍ଥନା ହେଉଛି, ଆପଣ ଦଶରଥନନ୍ଦନ ରାମଙ୍କ ହସ୍ତରେ ମିଥିଳା-ନନ୍ଦିନୀ ସୀତାଙ୍କୁ ପ୍ରତ୍ୟର୍ପଣ କରିଦିଅନ୍ତୁ । ଏହା ଥିଲା ଅତ୍ୟନ୍ତ ସାଧୁ ପରାମର୍ଶ । ରାବଣ କିନ୍ତୁ ଏହା ଉପରେ କିଛି ନିଷ୍ପତ୍ତି ନନେଇ ସେଦିନର ସଭାକୁ ସାଙ୍ଗ କରି ଦେଇଥିଲି ଏବଂ ରାଜଭବନକୁ ଚାଲି ଯାଇଥିଲି ।

ରାକ୍ଷସ-ସଭାର ଦ୍ୱିତୀୟ ଅଧିବେଶନର ବର୍ଣ୍ଣନା ଅଛି ଯୁଦ୍ଧକାଣ୍ଡସ୍ଥ ୧୧ଶ ସର୍ଗରେ । ଏଠାରେ ଆମେ ଉକ୍ତ ସଭାର ବୈଭବ ସମ୍ପର୍କରେ ଉଲ୍ଲେଖ ଦେଖିବାକୁ ପାଇଥାଉଁ । ସକାଳ ହେବାରେ ରାବଣ ଏକ ସୁନ୍ଦର ରଥରେ ବସି ସଭାଗୃହ ଅଭିମୁଖରେ ଯାତ୍ରା କରିଥିଲି । ସେହି ରଥକୁ ଟାଣୁଥିବା ଘୋଡ଼ାମାନେ ଖୁବ୍ ସୁନ୍ଦର ଭାବରେ ତାଲିମ୍ ପାଇଥିଲେ । ରଥରେ ସୁନାର ଝାଲେଣି ଲାଗିଥିଲି ଏବଂ ତହିଁରେ ମଣି-ମୁକ୍ତା ଖଞ୍ଜା ଯାଇଥିଲି । ତାହା ସାଥେ ସାଥେ ରାକ୍ଷସମାନେ ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ହୋଇ ଚାଲୁଥିଲେ । ସେମାନେ ସମସ୍ତେ ଥିଲେ ସୁନ୍ଦର ବସ୍ତ୍ରାଭରଣରେ ବିମଣ୍ଡିତ । ସେମାନଙ୍କ ମଧ୍ୟରୁ କେତେ ଜଣ ରଥରେ ବସିଥିଲେ ତ ଆଉ କେତେଜଣ ହାତୀରେ ବସିଥିଲେ । ରାବଣର ମସ୍ତକ ଉପରେ ଶ୍ୱେତଛତ୍ର ଟେଣା ଯାଇଥିଲି । ରାକ୍ଷସମାନଙ୍କ ରଥଗୁଡ଼ିକର ଘର୍ଘର ନାଦ ସହିତ ହଜାର ହଜାର ଶଙ୍ଖ ଓ ତୂରୀର ଧ୍ୱନି ମିଳିତ ହୋଇ ଏକ ଅପୂର୍ବ ଗୁଞ୍ଜରଣ ସୃଷ୍ଟି କରୁଥିଲି

ମାର୍ଗର ଦୁଇ ପଟେ ହାତ ଯୋଡ଼ି ଓ ମୁଣ୍ଡ ତଳକୁ କରି ରାକ୍ଷସ-ପ୍ରଜାମାନେ ଠିଆ ହୋଇଥିଲେ ।

ସଭାଗୃହର ଦୃଶ୍ୟ ମଧ୍ୟ ଥିଲା ଅତ୍ୟନ୍ତ ମନୋରମ । ଏହାର କାନ୍ଥରେ ସୁନା-ରୁପା ଗୁହଣି କରାଯାଇଥିଲା । ଘରର ଚଟାଣରେ ମଧ୍ୟ ସୁନା-ଗୁହଣି କରାଯାଇଥିଲା । ତାହା ଉପରେ ବିଛାଯାଇଥିବା ଗାଲିଚାରେ ସୁନାର ଜରିକାମ କରାଯାଇଥିଲା । ଛଅ ଶହ ରାକ୍ଷସ ବୀରଙ୍କ ଦ୍ୱାରା ସଭାଗୃହଟି ସୁରକ୍ଷିତ ରହୁଥିଲା । ରାବଣର ସିଂହାସନ ବୈଦୁର୍ଯ୍ୟରେ ତିଆରି ହୋଇଥିଲା ଏବଂ ତାହା ଉପରେ ମୃଗଛାଲ ବିଛା ଯାଇଥିଲା । ସେହି ମୃଗ-ଛାଲ ଥିଲା ଭାରି କଅଁଳିଆ । ସଭାସଦମାନଙ୍କ ଲାଗି ସୁନ୍ଦର ସୁନ୍ଦର ଆସନର ବ୍ୟବସ୍ଥା କରାଯାଇଥିଲା । ତଳେ ବସିବାର ମଧ୍ୟ ସମସ୍ତ ସୁବ୍ୟବସ୍ଥା କରାଯାଇଥିଲା । ସଭାସଦମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନଗୁଡ଼ିକରେ ସେମାନେ ବସିଥିଲେ । ଏଠାରେ ମନେରଖିବାକୁ ହେବ ଯେ ଅଯୋଧ୍ୟାର ସଭାରେ ମଧ୍ୟ ସଭାସଦମାନେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନରେ ହିଁ ବସୁଥିଲେ । ଅନ୍ୟତ୍ର ବସିବାର ସ୍ୱାଧୀନତା ସେମାନଙ୍କର ନଥିଲା । ଏଭଳି ବ୍ୟବସ୍ଥା ତତ୍କାଳୀନ ସଭାସମ୍ପର୍କୀୟ ଆସନ-ଶୃଙ୍ଖଳାର ପରିଚୟ ଦେଇଥାଏ ।

ରାକ୍ଷସସଭାର ଏହା ଥିଲା ଏକ ଯୁଦ୍ଧକାଳୀନ ଅଧିବେଶନ । ଅତଏବ, ଏହା ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସଭାସଦମାନଙ୍କୁ ଦୂତମାନଙ୍କ ମାଧ୍ୟମରେ ସଭାରେ ଯୋଗଦାନ କରିବା ନିମିତ୍ତ ନିମନ୍ତ୍ରଣପତ୍ର ପଠାଯାଇ-ଥିଲା । ସେମାନେ ରଥ, ଅଶ୍ୱ, ହସ୍ତୀ ଆଦି ବିଭିନ୍ନ ବାହନରେ ବସି ସଭାକୁ ଆସିଥିଲେ । କେହି କେହି ପଦବ୍ରଜରେ ମଧ୍ୟ ଆସିଥିଲେ । ପରିଶେଷରେ ବିଭୀଷଣ ଆସି ପହଞ୍ଚିଥିଲେ । ସମସ୍ତେ ଆସି ରାବଣର ଚରଣ ସ୍ପର୍ଶ କରିବା ଉତ୍ତାରୁ ନିଜ ନିଜର ଆସନରେ ବସିଥିଲେ । ସମସ୍ତେ ସଭାର ଅଧ୍ୟକ୍ଷଙ୍କ ଆଡ଼କୁ ମୁହଁ କରି ବସିଥିଲେ ଏବଂ ଅତି ବିନମ୍ର ହୋଇ ନିଜ ନିଜର ବକ୍ତବ୍ୟ ପ୍ରଦାନ କରିଥିଲେ । ସେମାନଙ୍କ ବକ୍ତବ୍ୟ ଦେବାର ପ୍ରଣାଳୀ ସମ୍ପର୍କରେ ରାମାୟଣରେ କୁହାଯାଇଛି :

ନ ଚୁକ୍ରୁଶୁର୍ନାନୃତମାହ କଶ୍ଚିତ୍
ସଭାସଦୋ ନାପି ଜଜଲ୍ପୁରୁଚ୍ଚୈଃ ।
ସଂସିଦ୍ଧାର୍ଥାଃ ସର୍ବ ଏବୋଗ୍ରବୀର୍ଯ୍ୟା
ଭର୍ତ୍ତୁଃ ସର୍ବେ ଦଦୃଶୁଶ୍ଚାନନଂ ତେ ।। (୪୪)

ଅର୍ଥାତ୍ ଯେତେବେଳେ ସେହି ସଭାର କୌଣସି ସଭ୍ୟ ଅସତ୍ୟ କହୁନଥିଲେ । ସେହି ସଭାସଦମାନେ ସମସ୍ତେ ଚତ୍କାର କରୁନଥିଲେ କିମ୍ବା ବଡ଼ ପାଟିରେ କଥା କହୁନଥିଲେ । ସେମାନେ ସମସ୍ତେ ଥିଲେ ସଫଳକାମ ତଥା ଭୟଙ୍କର ଭାବରେ ପରାକ୍ରମୀ । ସେମାନେ ସମସ୍ତେ ନିଜର ପ୍ରଭୁ ରାବଣ ପ୍ରତି ଉନ୍ମୁଖ ହୋଇ ଚାହିଁ ରହିଥିଲେ ।

ରାବଣ ସଭାକାର୍ଯ୍ୟ ଆରମ୍ଭ କରି ସମସ୍ତ ସଭାସଦଙ୍କୁ ସେମାନଙ୍କ ସହାୟତା ଲାଗି, ବିଶେଷ କରି ଦେବାସୁର ଯୁଦ୍ଧରେ ସହାୟତା ଦେଇଥିବା ଲାଗି ଧନ୍ୟବାଦ ଦେଇଥିଲା ଏବଂ ସୀତା-ହରଣର ଯଥାର୍ଥତା ପ୍ରତିପାଦନ କରିଥିଲା । ରାମଙ୍କ ଲଙ୍କା ଆକ୍ରମଣର କିପରି ଭାବରେ ମୁକାବିଲା କରିବାକୁ ହେବ ସେଥିପାଇଁ ସେ ସେମାନଙ୍କ ପରାମର୍ଶ ଚାହିଁଥିଲା । ଏତିକିବେଳେ ରାବଣର ଭାଇ କୁମ୍ଭକର୍ଣ୍ଣ ଯାହା କହିଥିଲା ତାହା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ତା'ର ବକ୍ତବ୍ୟ ଅନୁସାରେ :

କ) ସୀତା ହରଣ ଏକ ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିବାରୁ ତାହା କରିବା ପୂର୍ବରୁ ରାବଣର ସଭାସଦମାନଙ୍କ ସହିତ ପରାମର୍ଶ କରିବାର ଥିଲା;

ଖ) ଏଭଳି ଅମିତପୂର୍ଣ୍ଣ କାର୍ଯ୍ୟ କରିସାରି ଏବେ ସେଥିଲାଗି ସଭାର ସମର୍ଥନ ଲୋଡ଼ିବା ଏବଂ ସେଥିପାଇଁ ସୃଷ୍ଟି ହୋଇଥିବା ପରିସ୍ଥିତିର ମୁକାବିଲା କରିବା ଲାଗି ଏହାର ପରାମର୍ଶ ଲୋଡ଼ିବା ଠିକ୍ ନୁହେଁ; ଏବଂ

ଗ) ସେ ଯାହାହେଉ, ଏହି କାମ ଯେତେବେଳେ ରାଜାଙ୍କ ଦ୍ୱାରା କରାହୋଇ ସାରିଲାଣି, ତାହାକୁ ବର୍ତ୍ତମାନ ବାଧ୍ୟ ହୋଇ ସମର୍ଥନ କରିବାକୁ ହେବ ।

କୁମ୍ଭକର୍ଣ୍ଣ ଭଳି ଆଉ ଜଣେ ରାକ୍ଷସ ସଭାସଦ ମାଲ୍ୟବାନ୍ ମଧ୍ୟ ରାବଣର ନୀତିହୀନ କାର୍ଯ୍ୟକଳାପକୁ ସମାଲୋଚନା କରିଥିଲା ଏବଂ ଏହା ଫଳରେ ରାକ୍ଷସ ସମ୍ପ୍ରଦାୟର ଅତୁଳନୀୟ କ୍ଷତି ହେବ ବୋଲି ତାକୁ ସାବଧାନ କରିଦେଇଥିଲା । ତା'ର ବକ୍ତବ୍ୟ ରାମାୟଣରେ (୬।୩୫।୭-୩୬) ଅତି ରୋଚକ ଭାବରେ ବର୍ଣ୍ଣିତ । ରାବଣ ତା'ର ଉପଦେଶକୁ ଗ୍ରହଣ କରିନଥିଲେ ମଧ୍ୟ ତାହା ତା' ପାଇଁ ଯେତେ ଅପ୍ରୀତିକର ହେଉ ପଛକେ, ତାହାକୁ ଧୈର୍ଯ୍ୟର ସହିତ ଶୁଣିଥିଲା । ଏଥିପ୍ରତି ଲକ୍ଷ୍ୟ କରି ନିଃଶ୍ରେୟସାନନ୍ଦ ଯଥାର୍ଥରେ କୁହନ୍ତି :

Ravana's maternal grandsire, Malyavan, also speaks frankly in the assembly and rebukes

him for his defiance of duty, his addiction to carnal pleasure and his unrighteous ways in general. (୪୪-କ)

ଏଥିରୁ ଏହି ସୂଚନା ମିଳୁଛି ଯେ ରାକ୍ଷସସଂପ୍ରଦାୟରେ ମଧ୍ୟ ରାଜାଙ୍କର ନିରଙ୍କୁଶ କ୍ଷମତା ନଥିଲା । କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ପୂର୍ବରୁ ତାହାକୁ ସଭାଦ୍ୱାରା ଅନୁମୋଦିତ କରାଇନେବାକୁ ପଡ଼ୁଥିଲା । ଯଦି କୌଣସି କାରଣବଶତଃ ରାଜା ସଭାର ଅନୁମତି ପ୍ରତ୍ୟାଶାରେ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଦେଉଥିଲେ, ତେବେ ତାହାକୁ ସେ ପରେ ଆନୁଷ୍ଠାନିକ ଭାବରେ ସଭାର ଅନୁମୋଦନ କରାଇନେଉଥିଲେ । ରାଜାଙ୍କର ପଦମର୍ଯ୍ୟାଦାକୁ ରକ୍ଷା କରିବାକୁ ଯାଇ ସଭା ଏହାର ଅନୁମୋଦନ କଲେ ମଧ୍ୟ ଏହା ଯେ ରାଜାଙ୍କ ଅଧିକାରର ବହିର୍ଭୂତ ଏବଂ ତେଣୁ ଏକ ନିନ୍ଦିତ କର୍ମ, ଏ କଥା କହିବାକୁ ପଶ୍ଚାତ୍‌ପଦ ହେଉନଥିଲା । ଗଣତାନ୍ତ୍ରିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ରାକ୍ଷସସଭାର ରାଜାଙ୍କ ଉପରେ ଥିବା ନିୟନ୍ତ୍ରଣର ଏହା ଏକ ଜ୍ୱଳନ୍ତ ନିଦର୍ଶନ ।

ଏହି ସଭାରେ ବିଭୀଷଣଙ୍କ ମତ କୁମ୍ଭକର୍ଣ୍ଣର ମତଠାରୁ ଥିଲା ଅଧିକତର ଯୁକ୍ତିପୂର୍ଣ୍ଣ ତଥା ହିତକାରୀ । ସେ ରାବଣକୁ ଏଭଳି ପାପକର୍ମର କୁପରିଣତି ବିଷୟରେ ସାବଧାନ କରିଦେବାକୁ ଯାଇ ରାମଙ୍କ ସହିତ ଶାନ୍ତି ସ୍ଥାପନ ଲାଗି ପରାମର୍ଶ ଦେଇଥିଲେ । ସୀତାଙ୍କୁ ତାଙ୍କ ହସ୍ତରେ ପ୍ରତ୍ୟର୍ପଣ କରିଦେବା-ପାଇଁ ମଧ୍ୟ ସେ ପରାମର୍ଶ ଦେଇଥିଲେ । କିନ୍ତୁ ରାବଣ ଏହା ଶୁଣିନଥିଲା । ଅନ୍ୟ ପକ୍ଷରେ ସେ ବିଭୀଷଣଙ୍କୁ ଶତ୍ରୁପକ୍ଷର ସମର୍ଥକ ବୋଲି କହି ତାଙ୍କର କଟୁ ସମାଲୋଚନା କରିଥିଲା । ବିଭୀଷଣଙ୍କ ବକ୍ତବ୍ୟ ପରେ ଇନ୍ଦ୍ରଜିତ୍, ପ୍ରହସ୍ତ ଆଦି ଗର୍ବୋନ୍ମତ୍ତ ସ୍ୱରରେ ରାମଙ୍କ ସହିତ ଯୁଦ୍ଧ କରିବାପାଇଁ ପରାମର୍ଶ ଦେଇଥିଲେ । ରାବଣ ଶେଷକୁ ଏହି ପରାମର୍ଶ ହିଁ ଗ୍ରହଣ କରିଥିଲା । ବିଭୀଷଣ ବାଧ୍ୟ ହୋଇ ରାବଣର ପକ୍ଷ ଛାଡ଼ି ରାମଙ୍କର ଶରଣ ପଶିଥିଲେ ।

ବାନର ସଭାର ବର୍ଣ୍ଣନା ରାମାୟଣର କୌଣସିଠାରେ ଦେଖିବାକୁ ମିଳେ ନାହିଁ । ବାନରମାନେ ରାକ୍ଷସମାନଙ୍କ ପୂର୍ବରୁ ଆର୍ଯ୍ୟ-ଧର୍ମରେ କିଛି ମାତ୍ରାରେ ଦୀକ୍ଷିତ ହୋଇ ସାରିଥିଲେ । ଆର୍ଯ୍ୟ ଓ ରାକ୍ଷସମାନଙ୍କର ଯେତେବେଳେ ସଭା ରହିଥିଲା, ଏଥିରୁ ଅନୁମାନ କରିହେବ ଯେ ବାନରମାନଙ୍କର ମଧ୍ୟ ସଭା ରହିଥିଲା ।

କିନ୍ତୁ ରାମାୟଣରେ ନିର୍ଦ୍ଦିଷ୍ଟ ବର୍ଣ୍ଣନା ଅଭାବରୁ ତାହାର ରୂପରେଖ କିପରି ଥିଲା, ତାହା କହି ହେବନାହିଁ ।

**ତୀର୍ଥ :**

ରାମାୟଣକାଳୀନ ଶାସନାଧିକାରୀଙ୍କୁ କୁହାଯାଉଥିଲା 'ତୀର୍ଥ' । 'ତୀର୍ଥ' ଶବ୍ଦର ପ୍ରକୃତ ଅର୍ଥ ହେଲା 'ଯେ ପାର କରାଇ ଦିଏ' । 'ତୀର୍ଥସ୍ଥାନ', 'ତୀର୍ଥଙ୍କର' ଶବ୍ଦ ଆଦିର ଉଦ୍ଭବ ଏହି ଅର୍ଥକୁ ନେଇ ହୋଇଛି । ଏହା 'ସଂସାର-ଘାଟ'କୁ ପାର କରାଇନେବାର ସାମର୍ଥ୍ୟ ସହିତ ସମ୍ପର୍କିତ । ରାମାୟଣୀୟ ଶାସନାଧିକାରୀଙ୍କୁ 'ତୀର୍ଥ' କହିବାର ତାତ୍ପର୍ଯ୍ୟ ହେଲା, ସେ ଲୋକମାନଙ୍କୁ ସେମାନଙ୍କ ଅସୁବିଧାରୁ ପାରକରାଇ ଦେଉଥିଲେ । ସେ ଥିଲେ ଶାସନର ଅଧିକାରୀ; ଅଥଚ କର୍ମରେ ସେ ସେବକର କାର୍ଯ୍ୟ କରୁଥିଲେ । ସେ ଥିଲେ ଶାସନ ଓ ସେବାର ଏକ ସମନ୍ୱିତ ଗଙ୍ଗା-ଯମୁନାର ଧାରା । ରାମାୟଣକାଳୀନ ଜନମଙ୍ଗଳ ରାଷ୍ଟ୍ରର ଆଭିମୁଖ୍ୟ କିଭଳି ଥିଲା ଶାସନାଧିକାରୀଙ୍କ 'ତୀର୍ଥ' ନାମକରଣରୁ ହିଁ ତାହାର ମୌଳିକ ସୂଚନା ମିଳିଥାଏ । ଦଶରଥଙ୍କ ଶାସନକାଳରେ ଅଯୋଧ୍ୟାର ଅଭିବୃଦ୍ଧି ତଥା ପ୍ରଜାମାନଙ୍କର ସୁଖ-ଶାନ୍ତିର ଯେଉଁ ଆଲେଖ୍ୟ ମିଳେ, ଚିତ୍ରକୂଟଠାରେ ରାମଙ୍କର ଭରତଙ୍କୁ ପ୍ରଶ୍ନ ପଚାରିବା ଛଳରେ ସୁଶାସନର ଯେଉଁ ପରିଚୟ ମିଳେ ଏବଂ ପରିଶେଷରେ ରାମରାଜ୍ୟରେ ସର୍ବାଙ୍ଗୀଣ ଉନ୍ନତିର ଯେଉଁ ରୂପରେଖ ମିଳେ, ତହିଁରୁ ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ଏଥିପାଇଁ କ୍ଷେତ୍ରରେ ନିଯୁକ୍ତ 'ତୀର୍ଥ' ବା ଶାସନାଧିକାରୀମାନଙ୍କର ଅବଦାନ କିଛି କମ୍ ନଥିବ । ରାଜା ଯିନା ସ୍ଥୂଳ ନୀତିର ନିର୍ଦ୍ଧାରଣ କରିବେ; ଏହି ନୀତିର ସଫଳ ରୂପାୟନ ନିର୍ଭର କରେ କ୍ଷେତ୍ରାଧିକାରୀମାନଙ୍କର ଏହି ନୀତିପ୍ରତି ଆସ୍ଥା, ବିଶ୍ୱାସ ତଥା ପ୍ରତିବଦ୍ଧତା ଉପରେ । ରାମାୟଣୀୟ କ୍ଷେତ୍ରା-ଧିକାରୀମାନଙ୍କଠାରେ ଏହା ଯଥେଷ୍ଟ ପରିମାଣରେ ଥିଲା ।

ରାମ ଚିତ୍ରକୂଟଠାରେ ଭରତଙ୍କୁ କୁଶଳ-ପ୍ରଶ୍ନ ପଚାରିବା ଅବସରରେ (୨ । ୧୦୦ । ୩୬) 'ତୀର୍ଥ'ମାନଙ୍କର କଥା ଉତ୍ଥାପନ କରିଛନ୍ତି । ସେ ପଚାରିଛନ୍ତି :

> କଚ୍ଚିଦଷ୍ଟାଦଶାନ୍ୟେଷୁ ସ୍ୱପକ୍ଷେ ଦଶ ପଞ୍ଚ ଚ ।
> ତ୍ରିଭିସ୍ତ୍ରିଭିରବିଜ୍ଞାତୈର୍ବେତ୍ସି ତୀର୍ଥାନି ଚାରକୈଃ ॥

ଅର୍ଥାତ୍ ଶତ୍ରୁପକ୍ଷର ଅଠର ଜଣ ତୀର୍ଥଙ୍କୁ ଏବଂ ନିଜ ପକ୍ଷର ପନ୍ଦର ଜଣ ତୀର୍ଥଙ୍କୁ ତୁମେ ତିନ ତିନ ଜଣ ଅଜ୍ଞାତ ଗୁପ୍ତଚର ପଠାଇ ଯାଞ୍ଚ କରାଇ ନେଉଛ ତ ?

କର୍ମଚାରୀମାନଙ୍କର କାର୍ଯ୍ୟକୁ ଗୁପ୍ତଚରଦ୍ୱାରା ଯାଞ୍ଚ କରାଇ ନେବାର ପଦ୍ଧତି ସେତେବେଳେ ପ୍ରଚଳିତ ଥିଲା । ଏହା ଫଳରେ ସେମାନେ ଦୁର୍ନୀତିଗ୍ରସ୍ତ ହୋଇପାରୁ ନଥିଲେ ଏବଂ ପ୍ରଜାମାନଙ୍କ ପ୍ରତି ଅନ୍ୟାୟ କରୁନଥିଲେ । ଶତ୍ରୁ ପକ୍ଷର ଅଠର ଜଣ 'ତୀର୍ଥ'ଙ୍କୁ ଏବଂ ନିଜ ପକ୍ଷର ପନ୍ଦର ଜଣ 'ତୀର୍ଥ'ଙ୍କୁ ଯାଞ୍ଚ କରାଇ ନେବାର ଆବଶ୍ୟକତା ଅଛି ବୋଲି ଯାହା ଏଠାରେ କୁହାଯାଇଛି, ତାହା ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । ଶତ୍ରୁପକ୍ଷର ଅଠର ଜଣ 'ତୀର୍ଥ' ହେଲେ ମନ୍ତ୍ରୀ, ପୁରୋହିତ, ଯୁବରାଜ, ସେନାପତି, ଦ୍ୱାରପାଳ ବା ଦୌବାରିକ, ଅନ୍ତର୍ବେଶିକ (ଅନ୍ତଃପୁରର ଅଧ୍ୟକ୍ଷ), କାରାଗାରାଧ୍ୟକ୍ଷ, କୋଷାଧ୍ୟକ୍ଷ, କାର୍ଯ୍ୟନିୟୋଜକ (ମୁଖ୍ୟ ସଚିବ), ପ୍ରାଡ୍‌ବିବାକ୍ (ନ୍ୟାୟାଧୀଶ), ସେନାନାୟକ, ନଗରାଧ୍ୟକ୍ଷ, କର୍ମାନ୍ତିକ (ଖଣି ଓ କାରଖାନାସମୂହର ଅଧିକାରୀ), ସଭ୍ୟ (ସଭାସଚିବ), ଧର୍ମାଧ୍ୟକ୍ଷ (ମୁଖ୍ୟ ନ୍ୟାୟାଧୀଶ), ଦଣ୍ଡପାଳକ (ପୁଲିସ କମିସନର ପଦବୀ ସହିତ ତୁଳନୀୟ), ଦୁର୍ଗପାଳ ଓ ରାଷ୍ଟ୍ରାନ୍ତରପାଳ (ସୀମାନ୍ତ ପ୍ରଦେଶର ରାଜ୍ୟପାଳ) । ପ୍ରଥମୋକ୍ତ ତିନିଜଣଙ୍କୁ ଛାଡ଼ି ଦେଇ ଅବଶିଷ୍ଟ ପନ୍ଦର ଜଣ ସ୍ୱପକ୍ଷୀୟ ତୀର୍ଥଙ୍କ କାର୍ଯ୍ୟକଳାପକୁ ଗୁପ୍ତଚରମାନଙ୍କଦ୍ୱାରା ଯାଞ୍ଚ କରାଇନେବାକୁ ପଡ଼ିବ । ସ୍ୱପକ୍ଷୀୟ ମନ୍ତ୍ରୀ, ପୁରୋହିତ ଓ ଯୁବରାଜଙ୍କୁ ଖୁବ୍ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଦିଆଯାଇଥିଲା ଏବଂ ସେମାନେ ରାଜାଙ୍କର ଅତ୍ୟନ୍ତ ବିଶ୍ୱାସୀ ବ୍ୟକ୍ତି ଥିଲେ । ଏଣୁ ସେମାନଙ୍କ ପଛରେ ଗୁପ୍ତଚରମାନଙ୍କୁ ନିଯୁକ୍ତ କରାଯାଉନଥିଲା । ସେଥିପାଇଁ ଶତ୍ରୁପକ୍ଷୀୟ ତୀର୍ଥ ଓ ସ୍ୱପକ୍ଷୀୟ ତୀର୍ଥମାନଙ୍କୁ ଗୁପ୍ତଚରମାନଙ୍କ ଦ୍ୱାରା ଯାଞ୍ଚ କରାଇନେବାଲାଗି ଏଭଳି ଭିନ୍ନ ଭିନ୍ନ ନୀତି ସେତେବେଳେ କାର୍ଯ୍ୟକାରୀ ହେଉଥିଲା ।

ରାଜା, ଅମାତ୍ୟ, ମନ୍ତ୍ରୀ ଓ ସଭା ଆଦି ଥିଲେ ନୀତିନିର୍ଦ୍ଧାରଣ ଅନୁଷ୍ଠାନ । ଶାସନ ସମ୍ପର୍କୀୟ ଦୈନନ୍ଦିନ କାର୍ଯ୍ୟ ସହିତ ଏମାନଙ୍କର ଆଦୌ ସମ୍ପର୍କ ନଥିଲା । ଏହି କାର୍ଯ୍ୟ 'ତୀର୍ଥ'ମାନଙ୍କ ଦ୍ୱାରା ସମାହିତ ହେଉଥିଲା । ଶାନ୍ତିକୁମାର ନାନୂରାମ ବ୍ୟାସ ମଧ୍ୟ ଏହି ମତର ପରିପୋଷଣ କରିଥାନ୍ତି । ତାଙ୍କ ଭାଷାରେ :

> ଦୈନନ୍ଦିନ କାର୍ଯ୍ୟୋଂ କା ବହନ ବିଭାଗୀୟ ଅଧିକାରୀ କରତେ ଥେ, ଜୋ 'ତୀର୍ଥ' କହଲାତେ ଥେ । (୪୫)

'ତୀର୍ଥ'ମାନଙ୍କ ମଧ୍ୟରେ କିପରି ଭାବରେ ବିଭାଗୀକରଣ କରାଯାଇଥିଲା, ସେମାନଙ୍କ ମଧ୍ୟରେ କିପରି ଭାବରେ କର୍ମବଣ୍ଟନ କରାଯାଇଥିଲା, ସେମାନଙ୍କର ସଂଖ୍ୟା କେତେ ଥିଲା, ସେମାନଙ୍କ ବେତନର ପରିମାଣ କେତେ ଥିଲା ଆଦି ବିଷୟରେ ରାମାୟଣ ନୀରବ ।

**ରାଜସ୍ୱ ପ୍ରଶାସନ :**

ରାଜସ୍ୱ ପ୍ରଶାସନ (Revenue Administration) ଯୁଗେ ଯୁଗେ ଶାସନର ଭିତ୍ତିଭୂମି ହୋଇ ରହି ଆସିଛି । ଏହା ବୈଦିକ କାଳରୁ ଗଢ଼ି ଆସିଛି । ହିନ୍ଦୁ-ରାଜତ୍ୱ କାଳରେ ଅନୁରୂପ ସ୍ଥିତି ବଜାୟ ରହିଥିଲା । ମୁସଲମାନ୍ ରାଜତ୍ୱ ତଥା ଇଂରେଜ ରାଜତ୍ୱ ସମୟରେ ମଧ୍ୟ ଏହି ସ୍ଥିତିର କୌଣସି ପରିବର୍ତ୍ତନ ହୋଇନଥିଲା । ଅର୍ଥ ଯାହା ହାତରେ, ଶାସନର ଡୋର ତାହା ହାତରେ, ଏହା ହେଉଛି ଏକ ଚିରଚରିତ ନୀତି । ଏବେ ସ୍ୱାଧୀନ ଭାରତରେ ମଧ୍ୟ ଏହି ସ୍ଥିତି ଅଛି । ଏବେ ଜିଲ୍ଲାର ମୁଖ୍ୟଅଧିକାରୀ କହିଲେ ରାଜସ୍ୱ ପ୍ରଶାସନର ମୁଖ୍ୟ ଜିଲ୍ଲାପାଳଙ୍କୁ ବୁଝାଯାଉଛି । ପୂର୍ବେ ଭୂରାଜସ୍ୱ ରାଜ୍ୟର ପ୍ରଧାନ ରାଜସ୍ୱ ଥିଲା । ତେଣୁ ଭୂରାଜସ୍ୱର ପ୍ରଧାନ ଅଧିକାରୀଙ୍କୁ ଅନ୍ୟ ଅଧିକାରୀମାନଙ୍କ ଉପରେ ପ୍ରାଥମିକତା ଦିଆଯାଉଥିଲା । ଏବେ ଅବଶ୍ୟ ରାଷ୍ଟ୍ରର ଅନ୍ୟାନ୍ୟ ଦିଗରୁ ମିଳୁଥିବା ରାଜସ୍ୱ ତୁଳନାରେ ଭୂରାଜସ୍ୱର ପରିମାଣ ଖୁବ୍ କମ୍ । ତାହା ସତ୍ତ୍ୱେ ରାଜସ୍ୱ ପ୍ରଶାସନ ପୂର୍ବର ମାନ୍ୟତା ପାଇଆସୁଛି । ତାହାର ବଡ଼ କାରଣ ହେଲା ଭୂମି ପରିଚାଳନାର (Land management) ଦାୟିତ୍ୱ ଏପର୍ଯ୍ୟନ୍ତ ରାଜସ୍ୱପ୍ରଶାସନ ହାତରେ ଅଛି ଏବଂ ସକଳ ଅଭିବୃଦ୍ଧିର ମୂଳରେ ଅଛି ଭୂମି । ରାମାୟଣ ଯୁଗରେ ମଧ୍ୟ ରାଜସ୍ୱ ପ୍ରଶାସନ ପ୍ରତି ସମଧିକ ଗୁରୁତ୍ୱ ଦିଆ ଯାଉଥିଲା ।

ରାଷ୍ଟ୍ରର ରାଜସ୍ୱ କିପରି ବୃଦ୍ଧି ପାଇବ ସେଥିପାଇଁ ରାଜା, ମନ୍ତ୍ରିପରିଷଦ ତଥା ଅମାତ୍ୟମଣ୍ଡଳ ସମସ୍ତେ ଦୃଷ୍ଟି ଦେଉଥିଲେ । କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ (୧ । ୭) କହିଛନ୍ତି :

ଅର୍ଥ ଏବ ପ୍ରଧାନଃ ।

ଅର୍ଥାତ୍ ଅର୍ଥ ହେଉଛି ପ୍ରଧାନ । ରାମାୟଣରେ ମଧ୍ୟ ଗୋଟିଏ ସ୍ଥାନରେ (୬ । ୬୧ । ୪୦) ତ୍ରିବର୍ଗ ସାଧନର ଉପାୟ ପ୍ରସଙ୍ଗରେ ବୁଝାଯାଇଛି ଯେ ଅର୍ଥ ହେଉଛି 'ଧର୍ମ' ଓ 'କାମ' ପାଇବାର ମୂଳ ସୋପାନ ଭଳି । ଅର୍ଥ ବିନା ଏହି ଦୁଇ ଲକ୍ଷ୍ୟ ଆଦୌ ସାଧିତ ହୋଇପାରିବ ନାହିଁ । ସେଥିପାଇଁ ରାମାୟଣୀୟ ରାଜାମାନେ ବିଭିନ୍ନ ଉପାୟରେ ସେମାନଙ୍କ ରାଜସ୍ୱ-ବୃଦ୍ଧି ଲାଗି ଉଦ୍ୟମ କରୁଥିଲେ । ରାଜସ୍ୱ-ଆଦାୟ ଖାଲି ଭୂରାଜସ୍ୱ ମଧ୍ୟରେ ସୀମିତ ନଥିଲା । ଏଥି ନିମିତ୍ତ ଆହୁରି ଅନେକ ଆକର-କ୍ଷେତ୍ର ଥିଲା । କେଉଁ କେଉଁ ଆକର କ୍ଷେତ୍ରସମୂହରୁ ରାଜସ୍ୱ-ସଂଗ୍ରହ କରାଯାଉଥିଲା ତାହାର ସବିଶେଷ ଆଲୋଚନା ପ୍ରଥମ ପରିଚ୍ଛେଦରେ

କରାଯାଇଛି । ତେଣୁ ସେଗୁଡ଼ିକର ପୁନରୁଲ୍ଲେଖର ଆବଶ୍ୟକତା ନାହିଁ । ଏ ସମ୍ପର୍କରେ ମନେରଖିବାକୁ ହେବ ଯେ ରାମାୟଣୀୟ ରାଜାଙ୍କ ରାଜସ୍ୱ ପ୍ରଶାସନର ନିମ୍ନଲିଖିତ ଆଭିମୁଖ୍ୟ ଥିଲା :

(କ) ଭୂରାଜସ୍ୱ ଭଳି ରାଜସ୍ୱର ଅନ୍ୟାନ୍ୟ କ୍ଷେତ୍ରଗୁଡ଼ିକୁ ଆବିଷ୍କାର କରିବା ଏବଂ ସେହି କ୍ଷେତ୍ରଗୁଡ଼ିକର ସବୁ ପ୍ରକାର ସଦୁପଯୋଗ କରିବା;

(ଖ) କୃଷକମାନଙ୍କୁ ନବାଧିଲା ଭଳି ସେମାନଙ୍କଠାରୁ କର ଆଦାୟ କରିବା (ରାଜା ଆମଦାନୀର ଏକ-ଷଷ୍ଠାଂଶ କର ହିସାବରେ ପାଉଥିଲେ);

(ଗ) ବ୍ୟବସାୟୀମାନଙ୍କଠାରୁ ଅପେକ୍ଷାକୃତ ଅଧିକ ପରିମାଣରେ କର ଆଦାୟ କରିବା;

(ଘ) ସବୁ କ୍ଷେତ୍ରରେ ଅଯଥା ବ୍ୟୟକୁ ସଙ୍କୁଚିତ କରିବା ;

(ଙ) ରାଜ୍ୟର କୋଷକୁ ଭରପୂର କରି ରଖିବା; ଏବଂ

(ଚ) ପ୍ରଶାସନିକ ବ୍ୟୟକୁ ବାଦ ଦେଇ ଅବଶିଷ୍ଟ ରାଜସ୍ୱକୁ ଜନମଙ୍ଗଳ କାର୍ଯ୍ୟରେ ବିନିଯୋଗ କରିବା ।

ରାମାୟଣରେ ବିଭିନ୍ନ ବ୍ୟକ୍ତିଙ୍କର ବିଭିନ୍ନ ସ୍ଥାନକୁ ଯିବା ସମ୍ପର୍କରେ ଯେଉଁ ବର୍ଣ୍ଣନା ଅଛି ତହିଁରୁ ଜଣାଯାଏ ଯେ ସେ ସମୟରେ ପ୍ରଶାସନ ରାସ୍ତାଘାଟର ରକ୍ଷଣା-ବେକ୍ଷଣ ପ୍ରତି ଉତ୍ତମ ଦୃଷ୍ଟି ଦେଉଥିଲା । ରାମ ଅଯୋଧ୍ୟାରୁ ଶୃଙ୍ଗବେରପୁରକୁ ଯାତ୍ରା କରିଥିଲେ । ଭରତ କେକୟରୁ ଅଯୋଧ୍ୟାକୁ ଯାତ୍ରା କରିଥିଲେ ଏବଂ ଶେଷରେ ଅଯୋଧ୍ୟାରୁ ଚିତ୍ରକୂଟକୁ ଯାତ୍ରା କରିଥିଲେ । ଶେଷୋକ୍ତ ଯାତ୍ରା ପାଇଁ ସେ ନୂଆ ରାସ୍ତାଟିଏ ତିଆରି କରାଇଥିଲେ । ଦଶରଥ ଅଯୋଧ୍ୟାରୁ ମିଥିଳାକୁ ଯାତ୍ରା କରିଥିଲେ । ଶତ୍ରୁଘ୍ନ ତାଙ୍କ ସେନାବାହିନୀ ସହିତ ଅଯୋଧ୍ୟାରୁ ମଥୁରାକୁ ଯାତ୍ରା କରିଥିଲେ । ରଥ, ଗୋରଥ (ଶଗଡ଼ ଗାଡ଼ି), ହସ୍ତୀ, ଅଶ୍ୱ, ଅଶ୍ୱତର ଆଦି ଗମନାଗମନ ତଥା ମାଲ-ପରିବହନର ବିଭିନ୍ନ ସାଧନମାନଙ୍କର ବହୁଳ ଉଲ୍ଲେଖ ରାମାୟଣରେ ଦେଖା ଦେଇଥାଏ । ରାସ୍ତାଘାଟର ଖୁବ୍ ସୁବିଧା-ସୁଯୋଗ ଥିବା ହେତୁ ବାଣିଜ୍ୟ-ବ୍ୟବସାୟ ସୁରୁଖୁରୁରେ ଚାଲୁଥିଲା ଏବଂ ଏତଦ୍ଦ୍ୱାରା ଦେଶର ଅର୍ଥନୈତିକ ସମୃଦ୍ଧି ସମ୍ଭବପର ହୋଇପାରୁଥିଲା । ଶାସନ ମଧ୍ୟ ଅନୁସାରେ ଚାଲୁଥିଲା । ଏହାର ଅର୍ଥ ନୁହେଁ ଯେ ରାଜା ନିଜ ଇଚ୍ଛା ଅନୁସାରେ 'ଧର୍ମ'ର ସୃଷ୍ଟି କରିପାରୁଥିଲେ । ଯାହା ପାରଂପରିକ 'ରାଜଧର୍ମ' ଥିଲା ତାହାକୁ ସେ ଅନୁସରଣ କରୁଥିଲେ ମାତ୍ର । ତେଣୁ ତତ୍କାଳୀନ ପ୍ରଶାସନ ଲୋକମାନଙ୍କର ଅର୍ଥନୈତିକ, ସାଂସ୍କୃତିକ ତଥା ଧାର୍ମିକ ଆଦି ସର୍ବାଙ୍ଗୀନ ଉନ୍ନତି ଲାଗି ସତତ ଉଦ୍ୟମଶୀଳ ଥିଲା ।

**ନ୍ୟାୟ ପ୍ରଶାସନ :**

ସମାଜ ଯେତେ ଉନ୍ନତ ତଥା ସଂସ୍କୃତ ହେଲେ ମଧ୍ୟ ମନୁଷ୍ୟମାନଙ୍କର ସ୍ୱାଭାବିକ ଦୋଷ-ଦୁର୍ବଳତା ହେତୁ ମନୁଷ୍ୟ-ମନୁଷ୍ୟ ମଧ୍ୟରେ ବିବାଦ ରହିବ ହିଁ ରହିବ । ସେହି ବିବାଦର ସମାଧାନ କରିବାପାଇଁ ଏକ ଶକ୍ତିଶାଳୀ କେନ୍ଦ୍ରୀୟ ସଂସ୍ଥା ରହିବା ଆବଶ୍ୟକ, ଯାହାଠାରୁ ନିରପେକ୍ଷ ତଥା ନ୍ୟାୟପୂର୍ଣ୍ଣ ନିଷ୍ପତ୍ତି ଆଶା କରାଯାଇ ପାରିବ । ମନୁଷ୍ୟ ସମାଜରେ ଥିବା ସ୍ୱାଭାବିକ ଲୋଭ, ଅପରାଧ-ପ୍ରବଣତା ତଥା ଅନ୍ୟାନ୍ୟ ଦୁର୍ବଳତା ଦୃଷ୍ଟିରୁ ଦୁର୍ବଳ ଉପରେ ସବଳର ଅତ୍ୟାଚାରର ସମ୍ଭାବନା ରହିବ । ଏଥିରୁ ରକ୍ଷାପାଇବାପାଇଁ ମଧ୍ୟ ଏକ କେନ୍ଦ୍ରୀୟ ଅନୁଷ୍ଠାନ ବା ବ୍ୟକ୍ତିବିଶେଷଙ୍କର ଆବଶ୍ୟକତା ଅଛି ଯେ କି ଅପରାଧୀକୁ ଦଣ୍ଡ ଦେଇପାରିବେ ଏବଂ ଦୁର୍ବଳକୁ ସବଳର ଆକ୍ରମଣ ତଥା ଶୋଷଣରୁ ରକ୍ଷା କରିପାରିବେ । ତାହା ନହେଲେ ସମାଜରେ ଜଙ୍ଗଲ ଆଇନ ବଳବତ୍ତର ହୋଇଉଠିବ ଏବଂ ଏଥିରେ 'ମତ୍ସ୍ୟ-ନ୍ୟାୟ'ର ପରାକାଷ୍ଠା ବଜାୟ ରହିବ । ଏହାର ତାତ୍ପର୍ଯ୍ୟ ହେଲା ବଡ଼ ମାଛଟିଏ ସାନ ମାଛଟିକୁ ଗିଳି ଦେଲାଭଳି ସବଳ ଦୁର୍ବଳକୁ ଗିଳି ଦେବ ଏବଂ ସବଳତର ସବଳକୁ ଗିଳିଦେବ । ସମାଜରେ ଜମା ସୁଖ-ଶାନ୍ତି ରହିବ ନାହିଁ । ଏଥିରୁ ରକ୍ଷା ପାଇବାପାଇଁ ପ୍ରାଚୀନ ସମାଜ-ଚିନ୍ତକମାନେ 'ରାଜା' ପଦବୀର ସୃଷ୍ଟି କରିଥିଲେ । ତେଣୁ ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ହେଲା ସେ ପ୍ରଜାମାନଙ୍କୁ ରକ୍ଷା କରିବେ ଏବଂ ତାହାର ପ୍ରତିବଦଳରେ ପ୍ରଜାମାନେ ତାଙ୍କୁ କିଛି କର ଦେବେ । ରାଜା ଓ ପ୍ରଜାଙ୍କ ମଧ୍ୟରେ ଏହା 'ସାମାଜିକ ସମ୍ମତି' ନାମରେ ଖ୍ୟାତ । ଆମ ଦେଶରେ ଏହି ରାଜପଦ କାହିଁ କେତେ ଯୁଗରୁ ବୈଦିକ କାଳରୁ ଗଢ଼ି ଆସୁଛି । ରାଜା ତାଙ୍କର ଏହି ସଂରକ୍ଷଣ କର୍ତ୍ତବ୍ୟଟିକୁ ସମାହିତ କରିବାପାଇଁ ନ୍ୟାୟପୂର୍ଣ୍ଣ ନୀତି ଅନୁସରଣ କରୁଥିଲେ । ତେଣୁ ତାଙ୍କ ନ୍ୟାୟ ପ୍ରଶାସନର ମୂଳ ଉତ୍ସରୂପେ ଧରାଯିବାକୁ ଲାଗିଲି । କାଳକ୍ରମେ ତାଙ୍କୁ ଏହି କାର୍ଯ୍ୟରେ ସହାୟତା କରିବାପାଇଁ ବିଭିନ୍ନ କର୍ମଚାରୀ କିମ୍ବା ପରାମର୍ଶଦାତା ନିଯୁକ୍ତ ହେଲେ । ରାମାୟଣ-ଯୁଗରେ ମଧ୍ୟ ଅଳ୍ପ-ବହୁତ ଏହି ସ୍ଥିତି ଥିଲା । ସେତେବେଳେ ମଧ୍ୟ ରାଜା ରାଜନୈତିକ ଶାସକ ହେବା ସଙ୍ଗେ ସଙ୍ଗେ ନ୍ୟାୟାଧିପତିଙ୍କ କାର୍ଯ୍ୟ ସମ୍ପାଦନ କରୁଥିଲେ । ଯେଉଁ ନୀତି ନିର୍ଦ୍ଧାରକ ସଭା କଥା ପୂର୍ବରୁ ଆଲୋଚିତ ହୋଇଛି, ସେହି ସଭା ହିଁ ତାଙ୍କୁ ନ୍ୟାୟ-ପ୍ରଶାସନ କାର୍ଯ୍ୟରେ ସହାୟତା କରୁଥିଲା । ଏହି ମତର ପୁଷ୍ଟିସାଧନ କରୁଥିବା ଶର୍ମାଙ୍କର ନିମ୍ନଲିଖିତ ବକ୍ତବ୍ୟ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ :

The sabha (meaning the court of law in the present context) was presided over by the king himself. It also included various other members known as sabhyas. It was their duty to assist the king in the administration of justice. (୪୭)

ରାଜାଙ୍କୁ ନ୍ୟାୟ ଶାସନରେ ପରାମର୍ଶ ଦେବାର ପରମ୍ପରା ବୈଦିକ କାଳରୁ ହିଁ ଗଢ଼ିଆସୁଥିଲା । ବୈଦିକ 'ସଭା' ତାଙ୍କୁ ଏଭଳି ପରାମର୍ଶ ଦେଉଥିଲା । ଏହି ସଭାରେ ଶ୍ରେଷ୍ଠ ଲୋକମାନେ ସଭ୍ୟ ଥିବାରୁ ଏହାକୁ 'ନରିଷ୍ଠା' ବୋଲି ମଧ୍ୟ କୁହାଯାଉଥିଲା । (୪୭-କ)

ନ୍ୟାୟ ଶାସନ ଆଜିକାଲି ଭଳି ଏତେ ଜଟିଳ, ଅର୍ଥସାପେକ୍ଷ ଓ ସମୟସାପେକ୍ଷ ନଥିଲା । ନ୍ୟାୟବିଚାରଣ ପ୍ରଣାଳୀ ଅତି ସରଳ ଥିଲା । ତାହା ମଧ୍ୟ ଥିଲା ତାତ୍କାଳିକ । ଏହା ଫଳରେ ନ୍ୟାୟପ୍ରାର୍ଥୀ ପ୍ରଜାମାନଙ୍କୁ ଦିନ ଦିନ କମ୍ବା ମାସ ମାସ ଧରି ଅପେକ୍ଷା କରିବାକୁ ପଡ଼ୁନଥିଲା । କେତେକ ଜଟିଳ ବିଷୟରେ ରାଜା ସ୍ୱୟଂ ସଭାର ସହାୟତା ନେଇ ନ୍ୟାୟ ବିଚାରଣ କରୁଥିଲେ । ଆଉ କେତେକ ବିଷୟରେ ନ୍ୟାୟାଧୀଶମାନେ ନ୍ୟାୟ ବିଚାରଣ କରୁଥିଲେ । ରାଜା ଥିଲେ ସର୍ବଶେଷ ନ୍ୟାୟାଳୟ; ତାଙ୍କୁ ବଳିକରି ଆଉ କୌଣସି ନ୍ୟାୟାନୁଷ୍ଠାନ ନଥିଲା । ନ୍ୟାୟାଧୀଶମାନେ ଠିକଣା ଭାବରେ ନ୍ୟାୟ ବିଚାରଣ କରୁଛନ୍ତି କି ନାହିଁ, କେଉଁଠି ସେମାନେ ଦୁର୍ନୀତିରେ ଲିପ୍ତ ରହୁଛନ୍ତି କି ନାହିଁ ତାହା ରାଜା ଗୁପ୍ତଚରମାନଙ୍କ ଦ୍ୱାରା ଯାଞ୍ଚ କରାଇ ନେଉଥିଲେ । ରାଜଦଣ୍ଡ ଥିଲା କଠୋର । ଲୋକମାନେ ସାଧାରଣତଃ ଥିଲେ ଧର୍ମନିଷ୍ଠ । ତେଣୁ ସେମାନଙ୍କ ମଧ୍ୟରେ ଅପରାଧପ୍ରବଣତା ଖୁବ୍ କମ୍ ଥିଲା । ରାଜଦଣ୍ଡର ଭୟରେ ପ୍ରଚଳିତ ନୀତି-ନିୟମର ବିରୁଦ୍ଧାଚରଣ କରିବାପାଇଁ କେହି ସାହସ କରୁନଥିଲେ । ସେତେବେଳେ ବିଶ୍ୱାସ ଥିଲା ଯେ ଦୋଷୀ ରାଜଦଣ୍ଡ ପାଇଲେ ସ୍ୱର୍ଗକୁ ଯାଏ ଏବଂ ରାଜା ମଧ୍ୟ ଦୋଷୀକୁ ଦଣ୍ଡ ଦେଇ ସ୍ୱର୍ଗକୁ ଯାଆନ୍ତି । ଏହି କଥା ରାମାୟଣରେ (୪।୧୮।୧୯; ୭।୮୧।୯) ସ୍ପଷ୍ଟ ଭାବରେ ଉଲ୍ଲିଖିତ । ତେଣୁ କୌଣସି ଦୋଷୀ ବିନା ରାଜଦଣ୍ଡରେ ମୁକୁଳି ଯିବାର ପ୍ରଶ୍ନ ହିଁ ନଥିଲା । ଦୋଷୀକୁ ଦଣ୍ଡଦେବା ଯେପରି ରାଜାଙ୍କର ଥିଲା ପରମ କର୍ତ୍ତବ୍ୟ, ଠିକ୍ ଅନୁରୂପ ଭାବରେ ନିର୍ଦ୍ଦୋଷ ଉପରେ ଦଣ୍ଡ ନପାଏ ତାହା ମଧ୍ୟ ଦେଖିବା ଥିଲା ତାଙ୍କର ଆଉ ଏକ ପରମ କର୍ତ୍ତବ୍ୟ । ରାମ ଚିତ୍ରକୂଟଠାରେ ଭରତଙ୍କୁ କୁଶଳ ପ୍ରଶ୍ନ ଜିଜ୍ଞାସା କରିବା ଅବସରରେ କହିଛନ୍ତି :

ଯାନ୍ ମିଥ୍ୟାଭିଶସ୍ତାନାଂ ପତନ୍ତ୍ୟଶ୍ରୂଣି ରାଘବ ।
ତାନ୍ ପୁତ୍ରପଶୂନ୍ ଘ୍ନନ୍ତି ପ୍ରୀତାର୍ଥମନୁଶାସତଃ (୪୭)

ଅର୍ଥାତ୍ ହେ ରଘୁନନ୍ଦନ ଭରତ, ବ୍ୟକ୍ତି ନିରପରାଧ ଥାଇ ତାଙ୍କ ଉପରେ ଯଦି ମିଥ୍ୟା ଦୋଷର ଆରୋପ କରି ତାଙ୍କୁ ଦଣ୍ଡିତ କରାଯାଏ ଏବଂ ସେଥିପାଇଁ ସେମାନଙ୍କ ଆଖିରୁ ଯେଉଁ ଲୁହ ଝରେ, ସେଥିରେ ପକ୍ଷପାତପୂର୍ଣ୍ଣ ଶାସନ କରୁଥିବା ରାଜାଙ୍କର ପୁତ୍ରମାନେ ଓ ପଶୁମାନେ ନଷ୍ଟ ହୋଇ ଯାଇଥାନ୍ତି । ଏହାର ପୂର୍ବବର୍ତ୍ତୀ ଶ୍ଲୋକରେ (୪୮ତମ) ରାମ ଭରତଙ୍କଠାରୁ ଜାଣିବାକୁ ଚାହିଁଛନ୍ତି ତାଙ୍କ ନ୍ୟାୟାଧୀଶମାନେ ତଥା ମନ୍ତ୍ରୀମାନେ ଧନୀ-ଦରିଦ୍ର ମଧ୍ୟରେ ଲାଗିଥିବା ବିବାଦ ଅବସରରେ ଧନଲୋଭରେ ଧନୀର ପକ୍ଷ ନେଇ ନିଷ୍ପତ୍ତି କରୁଛନ୍ତି ଅବା ନାହିଁ । ଖାଲି ସେତକ ନୁହେଁ, ପକ୍ଷପାତ ବିଚାର କରୁଥିବା ନ୍ୟାୟାଧୀଶଙ୍କୁ ମହାପାପୀ ବୋଲି ଧରାଯାଉଥିଲା । ରାମଙ୍କ ବନବାସର ସମ୍ବାଦ ପାଇ ଭରତ କ୍ରୋଧ ଓ ଦୁଃଖରେ ଭରପୂର ହୋଇଉଠିଥିଲେ । ସେହି ମାନସିକ ସ୍ଥିତି ନେଇ ସେ କୌଶଲ୍ୟାଙ୍କୁ ଭେଟିଥିଲେ । ସେତେବେଳେ ସେ କୌଶଲ୍ୟାଙ୍କୁ କହିଥିଲେ, "ଯାହାର ପରାମର୍ଶରେ ରାମଙ୍କୁ ଆଜି ବନକୁ ଯିବାକୁ ପଡ଼ିଲା, ତା' ପ୍ରତି ନିରପେକ୍ଷ ବିଚାର କରୁଥିବା ନ୍ୟାୟାଧୀଶଙ୍କୁ ଲାଗୁଥିବା ପାପ ଲାଗୁ ।" (୪୮) ଅତଏବ, ଧର୍ମକୁ ଦୃଢ଼ ବିଚାର କରିବାର ପ୍ରଶ୍ନ ହିଁ ସେତେବେଳେ ନଥିଲା । ସେଥିପାଇଁ ତ ରାମାୟଣରେ ନ୍ୟାୟାଧୀଶଙ୍କର ଅନ୍ୟ ନାମ ଅଛି 'ଧର୍ମପାଳକ' ବୋଲି । ରାଜାଙ୍କ ଭଳି ନ୍ୟାୟାଧୀଶମାନଙ୍କର ମଧ୍ୟ ଧର୍ମପାଳନ କରିବା ଥିଲା ପରମ କର୍ତ୍ତବ୍ୟ । ସେମାନେ ଯେଉଁ ଆସନରେ ବସି ମକଦ୍ଦମା ବିଚାର କରୁଥିଲେ, ତାହାର ନାମ ଯଥାର୍ଥରେ ଥିଲା 'ଧର୍ମାସନ' । ଏଥିରୁ ଜଣାଯାଉଛି ଯେ ରାମାୟଣୀୟ ନ୍ୟାୟ ଶାସନରେ ନ୍ୟାୟପୂର୍ଣ୍ଣ ତଥା ନିଷ୍ପକ୍ଷ ବିଚାର ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା ।

ସଂକ୍ଷେପରେ କହିବାକୁ ଗଲେ ତିନିଗୋଟି ନୀତି ଉପରେ ନ୍ୟାୟବିଚାର ତଥା ରାଜଦଣ୍ଡ ନିର୍ଭରଶୀଳ ଥିଲା :

କ) ଅପରାଧୀକୁ ଦଣ୍ଡବିଧାନ ଓ ନିରପରାଧକୁ ମୁକ୍ତି;

ଖ) ବିଚାରରେ ନିଷ୍ପକ୍ଷତା; ଏବଂ

ଗ) କେବଳ ଅପରାଧର ଆରୋପରେ ଦଣ୍ଡ ନଦେବା ଏବଂ ସପକ୍ଷ ବିପକ୍ଷରେ ସାକ୍ଷ୍ୟ ନେଇସାରିବା ପରେ ଦଣ୍ଡ ଅଥବା ମୁକ୍ତି ଦେବା ।

ଆମେ ଯାହାକୁ ବର୍ତ୍ତମାନ ଆଇନ (Law) ବୋଲି କହୁଛୁ, ରାମାୟଣ-ଯୁଗରେ ତାହାକୁ କୁହାଯାଉଥିଲା 'ବ୍ୟବହାର'। 'ବ୍ୟବହାର' ବିଷୟରେ ଭଲ ଜ୍ଞାନ ଥିବା ଲୋକମାନଙ୍କୁ କୁହାଯାଉଥିଲା 'ବ୍ୟବହାରଜ୍ଞ'। ଅଯୋଧ୍ୟାର ରାଜସଭାରେ ବ୍ୟବହାରଜ୍ଞ ବ୍ରାହ୍ମଣମାନଙ୍କୁ ମନ୍ତ୍ରୀ ହିସାବରେ ଗ୍ରହଣ କରାଯାଇ-ଥିବା କଥା ରାମାୟଣରେ ବର୍ଣ୍ଣିତ। ସେମାନଙ୍କଠାରେ ମଧ୍ୟ ଧର୍ମ ସମ୍ପର୍କୀୟ ଉତ୍ତମ ଜ୍ଞାନ ଥିଲା। ତେଣୁ ସେମାନଙ୍କୁ ମଧ୍ୟ କୁହାଯାଉଥିଲା 'ଧର୍ମପାରଗ'। ସେମାନଙ୍କ ଅତିରିକ୍ତ ରାଜସଭାର ଅନ୍ୟାନ୍ୟ ସଭ୍ୟମାନେ ବି ଥିଲେ। ସେମାନେ ସମସ୍ତେ ନିଜ ନିଜର ସମ୍ପୃକ୍ତ ବିଷୟରେ ଥିଲେ ବିଶାରଦ। ରାଜା ଏହି ବିଶାରଦ ଜ୍ଞାନର ସଦୁପଯୋଗ କରି ନ୍ୟାୟ ବିତରଣ କରୁଥିଲେ। ବିଶାରଦମାନଙ୍କ ସୁପରାମର୍ଶ ଫଳରେ ରାମଙ୍କର ନୀତିଗର୍ହିତ କିମ୍ବା ଧର୍ମବିରହିତ ନିଷ୍ପତ୍ତି ଦେବାର ଅବକାଶ ହିଁ ନଥିଲା।

ପ୍ରଜାମାନଙ୍କ ପାଇଁ ରାଜାଙ୍କ ନ୍ୟାୟ ଶାସନର ଦ୍ୱାର ସବୁବେଳେ ଥିଲା ଉନ୍ମୁକ୍ତ। ବିଚାରପାଇଁ ଆସୁଥିବା ପ୍ରଜାକୁ 'କାର୍ଯ୍ୟାର୍ଥୀ' ବୋଲି କୁହା-ଯାଉଥିଲା। ରାଜା ଯେଉଁ ଅବସ୍ଥାରେ ଥାଆନ୍ତୁ ନା କାହିଁକି, ଜଣେ ପ୍ରଜା ଯଦି କୌଣସି ଅଭିଯୋଗ ନେଇ ତାଙ୍କ ପାଖକୁ ଆସିଲା, ତେବେ ସେ ତାହା ଶୁଣିବାକୁ ବାଧ୍ୟ ହେଉଥିଲେ ଏବଂ ତାହାର ନିଷ୍ପତ୍ତି ସଙ୍ଗେ ସଙ୍ଗେ କରି ଦେଉଥିଲେ। ପ୍ରଜାମାନଙ୍କୁ ରାଜାଙ୍କ ସୁବିଧା ଅସୁବିଧାପାଇଁ ଅଯଥା ଅପେକ୍ଷା କରିବାକୁ ପଡ଼ୁନଥିଲା। ଏ ସମ୍ପର୍କରେ ଅଯୋଧ୍ୟାର ନ୍ୟାୟ ଶାସନ-ସମ୍ବନ୍ଧୀୟ ଏକ ସୁନ୍ଦର ଦୃଷ୍ଟାନ୍ତ ଅଛି। ସେତେବେଳେ ରାମଙ୍କ ପୂର୍ବଜ ମହାରାଜ ନିମି ଅଯୋଧ୍ୟର ରାଜା ଥିଲେ। ସେ ଶୋଇରହିଥିବା ଅବସ୍ଥାରେ ଥରେ ବଶିଷ୍ଠ କୌଣସି ଅଭିଯୋଗ ଶୁଣାଇବା ଉଦ୍ଦେଶ୍ୟରେ ତାଙ୍କ ପାଖକୁ ଆସିଥିଲେ। ସେ ଶୋଇ ରହିଥିବାରୁ ହଠାତ୍ ତାହା ଶୁଣିପାରି ନଥିଲେ। ସେଥିପାଇଁ ବଶିଷ୍ଠ ରାଗି ଯାଇ ତାଙ୍କୁ କପରି ଅଭିଶାପ ଦେଇଥିଲେ, ତାହା ରାମାୟଣରେ (୭।୫୫।୧୫-୧୭) ବର୍ଣ୍ଣିତ। ଏହିପରି ଆଉ ଗୋଟିଏ ଘଟନା ରାଜା ନୃଗଙ୍କ ରାଜତ୍ୱ କାଳରେ ଘଟିଥିବା କଥା ମଧ୍ୟ ରାମାୟଣରେ (୭।୫୩।୧୭-୧୮) ଉଲ୍ଲିଖିତ। ଦୁଇ ଜଣ ବ୍ରାହ୍ମଣ ପରସ୍ପର ମଧ୍ୟରେ ବିବାଦ କରି ରାଜା ନୃଗଙ୍କ ପାଖକୁ ନ୍ୟାୟ-ବିଚାର ପାଇଁ ଆସିଥିଲେ। କିନ୍ତୁ ରାଜା ସେମାନଙ୍କ ଅଭିଯୋଗ ଶୁଣିବାରେ ବିଳମ୍ବ କରି ଦେଇଥିଲେ। ଏହା ଫଳରେ ତାଙ୍କୁ ବ୍ରହ୍ମାଭିଶାପର ଶରବ୍ୟ ହେବାକୁ ପଡ଼ିଥିଲା। ଏଥିରୁ ଏହି ସୂଚନା ମିଳୁଛି ଯେ ତାତ୍କାଳିକ ନ୍ୟାୟ ଦେବା ଥିଲା ରାମାୟଣୀୟ

ନ୍ୟାୟ-ଶାସନର ଏକ ବିଶିଷ୍ଟ ବିଭବ । ଏଭଳି ଭାବରେ ପ୍ରଜାମାନଙ୍କର ଅଭିଯୋଗ ଶୁଣିବାର ପରମ୍ପରା ଭାରତ ଭୂମିରେ ବହୁ ଯୁଗ ଧରି ତାହାର ନାହାକା ଚେରିଚିକ୍ ବିସ୍ତାରିତ କରି ରଖିଥିଲା । ଖ୍ରୀ: ପୂ: ୩ୟ ଶତାବ୍ଦୀରେ ମୌର୍ଯ୍ୟସମ୍ରାଟ୍ ଅଶୋକ ମଧ୍ୟ ତାହାକୁ ଅନୁସରଣ କରୁଥିଲେ । ସେ ତେଣୁ ତାଙ୍କ ଅନୁଶାସନରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି ଯେ ସେ ଯେତେବେଳେ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ପ୍ରଜାମାନେ ଆସି ସେମାନଙ୍କର ଅଭିଯୋଗ ତାଙ୍କ ଆଗରେ ନିର୍ବାଧରେ ଉପସ୍ଥାପିତ କରିପାରିବେ ।

ରାମାୟଣ-ଯୁଗରେ କେଉଁ କେଉଁ କାର୍ଯ୍ୟ ଅପରାଧ ବୋଲି ଗଣାଯାଉଥିଲା ଏବଂ କେଉଁ କେଉଁ ଅପରାଧ ଲାଗି କି କି ପ୍ରକାର ଦଣ୍ଡର ବ୍ୟବସ୍ଥା ଥିଲା ତାହାର ବିଶଦ ବିବରଣୀ ଆମେ ରାମାୟଣରେ ପାଇନଥାଉଁ । ସଂକ୍ଷିପ୍ତ ଭାବରେ ତନ୍ମଧ୍ୟରେ ଯେଉଁସବୁ ଅପରାଧ ବିଷୟରେ ସୂଚନା ଦିଆଯାଇଛି, ସେଥିରୁ ଆମେ କେତେକ ଗୁରୁତର ଅପରାଧ ବିଷୟରେ ଅବଗତ ହୋଇଥାଉଁ । ରାଜଦ୍ରୋହ, ମିଥ୍ୟା ଅଭିଯୋଗ, ମିଥ୍ୟା ସାକ୍ଷ୍ୟପ୍ରଦାନ, ଅନ୍ୟର ସ୍ତ୍ରୀମାନଙ୍କ ଉପରେ ତଥା କୁମାରୀ କନ୍ୟାମାନଙ୍କ ଉପରେ ବଳାତ୍କାର, ନ୍ୟାସ-ସମ୍ପତ୍ତିର ଅପବ୍ୟବହାର, ଚୋରି, ଡକାୟତି, ବ୍ରହ୍ମହତ୍ୟା, ସୈନିକମାନଙ୍କୁ ନିର୍ଦ୍ଧାରିତ ବେତନ ନଦେବା, ଯୁଦ୍ଧରେ ପଛଘୁଞ୍ଚା ଦେବା (ବୀରମାନଙ୍କ ପାଇଁ) ବାଳକ, ସ୍ତ୍ରୀ, ବୃଦ୍ଧ ତଥା ରାଜାମାନଙ୍କୁ ହତ୍ୟା କରିବା, ଘରେ ନିଆଁ ଲଗାଇବା, କୂଅ ଅଥବା ପୋଖରୀର ପାଣିରେ ବିଷ ଢାଳିବା ଏବଂ ଗୁରୁପତ୍ନୀଙ୍କ ସହିତ ବ୍ୟଭିଚାରରେ ରତ ହେବା ଆଦି ଥିଲା ବିଭିନ୍ନ ଅପରାଧର ଅନ୍ତର୍ଗତ ।

ଏହିସବୁ ଅପରାଧ ଲାଗି ଶାରୀରିକ-ଯାତନା-ଦଣ୍ଡଠାରୁ ଆରମ୍ଭ କରି ପ୍ରାଣଦଣ୍ଡ ପର୍ଯ୍ୟନ୍ତ ଦେବାର ବ୍ୟବସ୍ଥା ଥିଲା । ରାମାୟଣରେ 'ବନ୍ଧନ' (୪ । ୫୫ । ୧୦) ଓ 'ବଦ୍ଧ' (୫ । ୨୮ । ୭) ଭଳି ଶବ୍ଦଗୁଡ଼ିକର ପ୍ରୟୋଗରୁ ଜଣାପଡ଼ୁଛି ଯେ ଅପରାଧୀକୁ ବାନ୍ଧିବାର ଏବଂ କାରାଗୃହ ମଧ୍ୟରେ ଆବଦ୍ଧ କରି ରଖିବାର ବ୍ୟବସ୍ଥା ଥିଲା । ହନୁମାନ୍ ଅଶୋକ-ବନକୁ ନଷ୍ଟ-ଭ୍ରଷ୍ଟ କରିଦେବାରେ ଇନ୍ଦ୍ରଜିତ୍ ଦ୍ୱାରା ବନ୍ଦୀହୋଇ ରାବଣର ସମ୍ମୁଖକୁ ଆନୀତ ହୋଇଥିଲେ । ସୀତାଙ୍କୁ ଖୋଜି ଖୋଜି ବିଫଳମନୋରଥ ହୋଇ ଅଙ୍ଗଦ ହନୁମାନ୍ ସମେତ ଅନ୍ୟ ବାନର ମାନଙ୍କୁ କହିଥିଲେ (୪ । ୫୫ । ୧୦), "ସୁଗ୍ରୀବ ଅତି କ୍ରୂର ଓ ଦଣ୍ଡଧାରୀ । ଯଦି ମୁଁ ଠିକଣା ସମୟ ଭିତରେ ଫେରି ସୀତାଙ୍କ ଖବର ନଦେଉଛି, ତା'ହେଲେ ସେ ମତେ ବାନ୍ଧିକରି କଏଦିଘରେ ରଖିଦେବେ ।" କଏଦିମାନଙ୍କର ଗଳା

କାଟି ସେମାନଙ୍କୁ ମାରି ଦିଆଯାଉଥିବାର ପ୍ରଥା ମଧ୍ୟ ସେତେବେଳେ ପ୍ରଚଳିତ ଥିବାର ନିଦର୍ଶନ ମିଳେ । ରାମାୟଣର ସୁନ୍ଦରକାଣ୍ଡରେ (୨୪। ୪୧) କୁହାଯାଇଛି ଯେ ସୀତାଙ୍କୁ ଜଗି ରହିଥିବା ରାକ୍ଷସୀମାନେ ସୀତାଙ୍କ ଗଳାରୁଦ୍ଧ କରି ତାଙ୍କୁ ମାରିଦେବା କଥା ଚିନ୍ତା କରିଥିଲେ । ଅଶୋକବନରେ ସୀତା ବିଳାପ କରି ରାକ୍ଷସୀମାନଙ୍କୁ କହିଥିଲେ :

ଛିନ୍ନା ଭିନ୍ନା ପ୍ରଭିନ୍ନା ବା ଦୀପ୍ତା ବାଗ୍ନୌ ପ୍ରଦୀପିତା ।
ରାବଣେ ନୋପତିଷ୍ଠେୟଂ କିଂ ପ୍ରଲାପେନ ବଶ୍ଚିରମ୍ । (୪୧)

ଅର୍ଥାତ୍ ଆଗୋ ରାକ୍ଷସୀମାନେ ! ତୁମ୍ଭମାନଙ୍କର ମୋ' ସାଥିରେ ଏତେ କଥାବାର୍ତ୍ତା କରିବାରେ ବା କି ଲାଭ ? ତୁମ୍ଭେମାନେ ମତେ କାଟିଦିଅ, ଅଥବା ଚିରିଦିଅ କିମ୍ବା ଖଣ୍ଡ ଖଣ୍ଡ କରି ଫିଙ୍ଗିଦିଅ, କିମ୍ବା ନିଆଁରେ ପକାଇ ଦିଅ ବା ପୋଡ଼ି ଜାଳି ପାଉଁଶ କରିଦିଅ, ତଥାପି ମୁଁ ରାବଣଠାରେ ମନ ବଳାଇବିନାହିଁ । ସୀତା ଏହି ଯେଉଁ ଦଣ୍ଡସମୂହ ପ୍ରତି ସଙ୍କେତ ଦେଇଥିଲେ, ତାହା ନିଶ୍ଚିତ ଭାବରେ ତତ୍କାଳୀନ ବନ୍ଦି-ଜନଙ୍କ ପ୍ରତି ପ୍ରୟୋଗ କରାଯାଉଥିବା ଦଣ୍ଡର ସୂଚନା ଦେଉଛି । ଖାଲି ଏତିକି ନୁହେଁ, ଅପରାଧୀକୁ ମୃତ୍ୟୁଦଣ୍ଡ ଦେବାର ପ୍ରମାଣ ମଧ୍ୟ ରାମାୟଣରେ ମିଳିଥାଏ । ଚୋର ତସ୍କରମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଥିଲା । ତାହାଠାରୁ ବଳିକରି ଗୁରୁତର ଅପରାଧ, ଯଥା ରାଜଦ୍ରୋହ, ବ୍ରହ୍ମହତ୍ୟା ଆଦି ଲାଗି ଯେ ଏହି ଦଣ୍ଡ ସମଧିକ ଭାବରେ ପ୍ରଯୁକ୍ତ ଥିବ ଏଥିରେ ସନ୍ଦେହ ନାହିଁ । ସୀତା ଲଙ୍କାରେ ବନ୍ଦିନୀ ଅବସ୍ଥାରେ ଥାଇ ବିଳାପ କରି କହିଥିଲେ :

ଦୁଃଖଂ ବତେଦଂ ନନୁ ଦୁଃଖିତାୟା
ମାସୌ ଚିରାୟାଭିଗମିଷ୍ୟତୋ ଦ୍ୱୌ ।
ବଦ୍ଧସ୍ୟ ବଧ୍ୟସ୍ୟ ଯଥା ନିଶାନ୍ତେ
ରାଜୋପରୋଧାଦିବ ତସ୍କରସ୍ୟ ।। (୫୦)

ଅର୍ଥାତ୍ ମୁଁ ବଡ଼ ଦୁଃଖିନୀ । ଦୁଃଖର କଥା ହେଲା ଏହି ଯେ ମୋ' ପାଇଁକି ରାବଣ ଦେଇଥିବା ଦୁଇ ମାସ କଷ୍ଟ ସମୟ ଶୀଘ୍ର ଗୁଳିଯିବ । କାରାଗାରରେ ବନ୍ଦୀ ହୋଇ ରାତିର ଶେଷ ପ୍ରହରରେ ପ୍ରାଣଦଣ୍ଡ ଭୋଗୁଥିବା କଏଦିର ଦଶା ଯାହା ହୁଏ, ମୋର ଦଶା ଠିକ୍ ସେଇଆ ହେବ । ଏଥିରୁ ଜଣା ପଡ଼ୁଛି ଯେ ରାତିର ଶେଷ ପ୍ରହରରେ ଅପରାଧୀମାନଙ୍କୁ ପ୍ରାଣଦଣ୍ଡ ଦିଆଯାଉଥିଲା । ଏବେ ମଧ୍ୟ ଜେଲ୍‌ଖାନା-ମାନଙ୍କରେ ଫାଶି-ହୁକୁମକୁ ପ୍ରାୟ ଏହି ସମୟରେ କାର୍ଯ୍ୟକାରୀ କରାଯାଉଛି ।

**ଗୁପ୍ତଚର ପ୍ରଥା :**

ରାଜା ରାଷ୍ଟ୍ରର ସାର୍ବଭୌମତାକୁ ରକ୍ଷା କରିବାକୁ ଗଲେ ରାଜାଙ୍କୁ ଶତ୍ରୁମାନଙ୍କର ଗତିବିଧି ପ୍ରତି ସଜାଗ ଦୃଷ୍ଟି ରଖିବାକୁ ହେବ । ରାଷ୍ଟ୍ର ମଧ୍ୟରେ ସୁଶାସନର ପ୍ରତିଷ୍ଠା ଲାଗି ରାଷ୍ଟ୍ରର ଅଧିକାରୀ ତଥା କର୍ମଚାରୀମାନଙ୍କର ଗତିବିଧି ଓ କାର୍ଯ୍ୟକଳାପ ପ୍ରତି ମଧ୍ୟ ତାଙ୍କର ସମଧିକ ଦୃଷ୍ଟି ରଖିବାକୁ ହେବ । ଗୁପ୍ତଚରମାନଙ୍କ ମାଧ୍ୟମରେ ଏହା କରିବାର ପ୍ରଥା ବହୁ ପୂର୍ବରୁ, ଏପରିକି ବୈଦିକ ଯୁଗରୁ ବି ଚାଲିଆସିଛି । ରାମାୟଣ ଯୁଗରେ ମଧ୍ୟ ଅନୁରୂପ ସ୍ଥିତି ଥିଲା । ଗୁପ୍ତଚରମାନଙ୍କୁ 'ଚର', 'ଚାର', 'ପ୍ରଣିଧି', 'ଚାରକ' ଅଥବା 'ଚାରଣ' ବୋଲି କୁହାଯାଉଥିଲା । ଅଯୋଧ୍ୟାରେ ବିଧିବଦ୍ଧ ଭାବରେ ଏକ ଗୁପ୍ତଚର ବିଭାଗ କାର୍ଯ୍ୟ କରୁଥିବାର ନିଦର୍ଶନ ଆମେ ରାମାୟଣରେ ପାଇଥାଉଁ । ଦେଶ ଭିତରେ ଓ ଦେଶ ବାହାରେ ଶାସନାଧିକାରୀମାନଙ୍କ (ତୀର୍ଥ) ଗତିବିଧିକୁ ଯାଞ୍ଚ କରିବା ସମ୍ପର୍କରେ ରାମ ଭରତଙ୍କୁ ଯେଉଁ ପ୍ରଶ୍ନ ପଚାରିଥିଲେ ତାହା ପୂର୍ବରୁ ଆଲୋଚିତ । ତାହା ହିଁ ଅଯୋଧ୍ୟାରେ ଗୁପ୍ତଚର ବିଭାଗର ବର୍ତ୍ତମାନତାର ଏକ ବଳିଷ୍ଠ ନିଦର୍ଶନ ।

ଗୁପ୍ତଚର ଦୁଇ ପ୍ରକାର ଥିଲେ, ଯଥା, ବେସାମରିକ ବା ନାଗରିକ ଗୁପ୍ତଚର ଓ ସାମରିକ ବା ସୈନିକ ଗୁପ୍ତଚର । ବେସାମରିକ ଗୁପ୍ତଚରମାନେ ଦେଶ ମଧ୍ୟରେ ବେସାମରିକ ବିଷୟସମ୍ବନ୍ଧ ସମ୍ପର୍କରେ ରାଜାଙ୍କୁ ତଥ୍ୟ ଆଣି ଯୋଗାଉଥିଲେ । ଭଦ୍ର ନାମକ ଜଣେ ଗୁପ୍ତଚର ସୀତାଙ୍କ ଅପବାଦ ବିଷୟରେ ଚର୍ଚ୍ଚା ହେଉଥିବାର ସମ୍ବାଦ ରାଜା ରାମଙ୍କୁ ଆଣି ଦେଇଥିବା କଥା ଉତ୍ତରକାଣ୍ଡରେ ବର୍ଣ୍ଣିତ । ଏ ଥିଲେ ଜଣେ ବେସାମରିକ ଗୁପ୍ତଚର । ହନୁମାନ୍ ସେହିଭଳି ଗୁପ୍ତଚରବୃତ୍ତି କରିବାକୁ ଯାଇ ବ୍ରାହ୍ମଣବେଶରେ ରାମ ଓ ଲକ୍ଷ୍ମଣଙ୍କ ନିକଟରେ ପମ୍ପାତୀରରେ ପହଞ୍ଚିଥିଲେ । ସେ ଦୁହିଁଙ୍କର ମନୋଭାବ ସମ୍ପର୍କରେ ତଥ୍ୟସଂଗ୍ରହ ଲାଗି ସୁଗ୍ରୀବଙ୍କଦ୍ୱାରା ସେ ପ୍ରେରିତ ହୋଇଥିଲେ । ଏହା ମଧ୍ୟ ଆଉ ଏକ ବେସାମରିକ ଗୁପ୍ତଚର ବୃତ୍ତିର ନିଦର୍ଶନ । ସାମରିକ ଗୁପ୍ତଚର ବା ସୈନିକ ଗୁପ୍ତଚରଙ୍କ କର୍ତ୍ତବ୍ୟ ଥିଲା ବଡ଼ ଦାୟିତ୍ୱସଂପନ୍ନ । ସେମାନେ ଶତ୍ରୁରାଜାଙ୍କ ବଳାବଳ ତଥା ଅନ୍ୟାନ୍ୟ ଆବଶ୍ୟକ ବିଷୟରେ ତଥ୍ୟମାନ ସଂଗ୍ରହ କରୁଥିଲେ । ସେମାନଙ୍କୁ ଶତ୍ରୁରାଜ୍ୟରେ ବିଚରଣ କରିବାକୁ ପଡୁଥିବାରୁ ସେମାନଙ୍କ ଜୀବନ ପ୍ରତି ସବୁବେଳେ ନାନା ପ୍ରକାର ଆଶଙ୍କା ରହୁଥିଲା । ରାବଣଦ୍ୱାରା ପ୍ରେରିତ ଶୁକ ଓ ସାରଣ ଗୁପ୍ତଚରଦ୍ୱୟ ରାମଙ୍କ ବଳାବଳ ସଂପର୍କରେ ତଥ୍ୟସଂଗ୍ରହ ଲାଗି ତାଙ୍କ ବାନରସେନାବାହିନୀ ମଧ୍ୟରେ ପ୍ରବେଶ କରିଥିଲେ । ସେମାନେ ଧରାପଡ଼ିଯିବାରୁ କପିର ବାନରମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଥିଲେ ତାହା

ରାମାୟଣରେ ବର୍ଣ୍ଣିତ । ଅବଶ୍ୟ ସେମାନଙ୍କ ପରିଚୟ ପାଇସାରିବା ଉତ୍ତାରୁ ରାମ ସେମାନଙ୍କୁ ପରେ ମୁକ୍ତ ଦେଇଥିଲେ । ରାବଣର ଗୁପ୍ତଚରମାନେ ସମସ୍ତେ ବିଶ୍ୱାସର ପାତ୍ର, ବୀର, ଧୀର ଏବଂ ନିର୍ଭୟ ଥିଲେ ବୋଲି ରାମାୟଣରେ (୬ । ୨୯ । ୧୮) ବର୍ଣ୍ଣିତ । ଏହା ବାସ୍ତବିକ ଥିଲି ସବୁ ଗୁପ୍ତଚରଙ୍କ ପ୍ରତି ପ୍ରଯୁଜ୍ୟ ।

ରାବଣ ତା'ର ଗୁପ୍ତଚରମାନଙ୍କୁ ରାମଙ୍କ ଶିବିରକୁ ପଠାଇବା ବେଳେ କେଉଁ କେଉଁ ତଥ୍ୟ ସଂଗ୍ରହ କରିବାକୁ ହେବ ସେ ବିଷୟରେ କହିଥିଲି । ଏହା ରାମାୟଣରେ (୬ । ୨୯ । ୧୯-୨୧) ଅତି ରୋଚକ ଭାବରେ ଉଲ୍ଲିଖିତ । ତା'ର ମନ୍ତବ୍ୟର ତାତ୍ପର୍ଯ୍ୟ ହେଲା :

(କ) ଗୁପ୍ତଚରମାନଙ୍କୁ ବାନରସେନା ମଧ୍ୟରେ ପ୍ରବେଶ କରି ରାମଙ୍କର କ'ଣ ନିଷ୍ପତ୍ତି ସେ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ହେବ ।

(ଖ) ରାମଙ୍କର ଯେଉଁ ଅନ୍ତରଙ୍ଗ ମନ୍ତ୍ରୀମାନେ ଗୁପ୍ତ ମନ୍ତ୍ରଣାରେ ଭାଗ ନିଅନ୍ତି, ସେମାନଙ୍କର ବିଚାର ଓ ନିଷ୍ପତ୍ତି ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ହେବ ।

(ଗ) ମନ୍ତ୍ରୀମାନଙ୍କ ଅତିରିକ୍ତ ଆଉ ଯେଉଁ ଲୋକମାନଙ୍କର ରାମଙ୍କ ସହିତ ସଦ୍‌ଭାବ ଅଛି, ସେମାନଙ୍କ ବିଚାର ସଂପର୍କରେ ତଥ୍ୟ ସଂଗ୍ରହ କରିବାକୁ ହେବ ।

(ଘ) ସେମାନେ ସମସ୍ତେ କେତେବେଳେ କେମିତି ଶୋଉଛନ୍ତି, କେତେବେଳେ କେମିତି ନିଦରୁ ଉଠୁଛନ୍ତି ସେ ସଂପର୍କରେ ଖବର ଆଣିବାକୁ ହେବ ।

(ଙ) ସେମାନେ ଆଜି କ'ଣ କରିବାକୁ ଯାଉଛନ୍ତି, ତତ୍‌ସଂପର୍କରେ ତଥ୍ୟ ସଂଗ୍ରହ କରିବାକୁ ହେବ ।

(ଚ) ଏହି ସବୁ ତଥ୍ୟ ସଂଗ୍ରହ କରିସାରିବା ପରେ ଫେରି ଆସିବାକୁ ହେବ ।

ଏହି ସବୁ ଆଲୋଚନାରୁ ଗୁପ୍ତଚରମାନଙ୍କର ବିଶେଷତଃ ସାମରିକ ଗୁପ୍ତଚରମାନଙ୍କର କାର୍ଯ୍ୟାବଳୀ କିପରି ଦାୟିତ୍ୱସମ୍ପନ୍ନ ତଥା ବିପଦସଙ୍କୁଳ ଥିଲି, ତାହା ସହଜରେ ଅନୁମେୟ ।

ରାଜାଙ୍କୁ ଦୂରଦର୍ଶୀ ହେବାକୁ ହେଲେ ଗୁପ୍ତଚରସଂସ୍ଥାକୁ ଖୁବ୍ ସକ୍ରିୟ ତଥା ଫଳପ୍ରଦ ରଖିବାର ଯାଥାର୍ଥ୍ୟ ସେତେବେଳେ ଅନୁଭୂତ ହେଉଥିଲା । ଖର-ଦୂଷଣ ଓ ଅନ୍ୟାନ୍ୟ ରାକ୍ଷସମାନେ ରାମଙ୍କ ହାତରେ ଜନସ୍ଥାନରେ ମୃତ୍ୟୁମୁଖରେ

ପଡ଼ିବା ପରେ ସେହି ଖବର ଆଣି ସୂର୍ପଣଖା ରାବଣ ପାଖରେ ପହଞ୍ଚିଥିଲା । ସେହି ଅବସରରେ ସେ ଗୁପ୍ତଚରମାନଙ୍କ ମହତ୍ତ୍ୱ ବିଷୟରେ ରାବଣଙ୍କୁ ଯାହା କହିଥିଲା ତାହା ଏଠାରେ ପ୍ରଣିଧାନଯୋଗ୍ୟ । ତା'ର ଭାଷାରେ :

ଯସ୍ମାତ୍ ପଶ୍ୟନ୍ତି ଦୂରସ୍ଥାନ୍ ସର୍ବାନର୍ଥାନ୍ ନରାଧିପାଃ ।
ଚାରେଣ ତସ୍ମାଦୁଚ୍ୟନ୍ତେ ରାଜାନୋ ଦୀର୍ଘଚକ୍ଷୁଷଃ ॥ (୫୦-କ)

ଅର୍ଥାତ୍ ଗୁପ୍ତଚରମାନଙ୍କ ସହାୟତାରେ ରାଜାମାନେ ଦୂରରୁ ସାରା କାର୍ଯ୍ୟ ଦେଖିପାରନ୍ତି ଓ ଜାଣିପାରନ୍ତି । ସେଥିପାଇଁ ସେମାନଙ୍କୁ ଦୀର୍ଘଦର୍ଶୀ ବା ଦୂରଦର୍ଶୀ ବୋଲି କୁହାଯାଇଥାଏ । ରାବଣ ଯେ ରାମ-ଲକ୍ଷ୍ମଣ-ସୀତାଙ୍କର ଜନସ୍ଥାନରେ ଅବସ୍ଥିତି ସମ୍ପର୍କରେ ସଂବାଦ ଏବଂ ସେମାନଙ୍କ କାର୍ଯ୍ୟକଳାପ ବିଷୟରେ କୌଣସି ସୂଚନା ତା'ର ଗୁପ୍ତଚରମାନଙ୍କ ମାଧ୍ୟମରେ ପାଇପାରିନାହିଁ, ସେଥିପାଇଁ ସୂର୍ପଣଖା ତା'ଙ୍କୁ କଟୁ ସମାଲୋଚନା କରିଥିଲା ।

## ସ୍ୱାୟତ୍ତ ଶାସନ :

ବାଲ୍ମୀକି ରାମାୟଣୀୟ ରାଷ୍ଟ୍ର ସମ୍ପର୍କରେ ଯେଉଁଭଳି ବର୍ଣ୍ଣନା କରିଛନ୍ତି, ତହିଁରୁ ଜଣାଯାଏ ଯେ ସେତେବେଳେ ଏହାକୁ ଦେଶ, ଜନପଦ, ବିଷୟ ଓ ରାଜ୍ୟ, ଏହିପରି ବିଭିନ୍ନ ନାମରେ ନାମିତ କରାଯାଇଥିଲା । ରାଜ୍ୟର ରାଜଧାନୀକୁ କୁହାଯାଉଥିଲା 'ପୁର' ଏବଂ ଅବଶିଷ୍ଟ ଅଂଶକୁ କୁହାଯାଉଥିଲା ରାଷ୍ଟ୍ର, ଜନପଦ କିମ୍ବା ବିଷୟ । ସେହି ଅବଶିଷ୍ଟାଂଶରେ ଯେଉଁ ସହର ଥିଲା, ତାହାକୁ 'ପୁର' କୁହାନଯାଇ କୁହାଯାଉଥିଲା 'ନଗର' । ରାମାୟଣରେ ଆମେ 'ଜନପଦ' ନାମର ବ୍ୟବହାର ବହୁଳ ଭାବରେ ହୋଇଥିବାର ଦେଖିବାକୁ ପାଇଥାଉଁ । 'ପୁର'ର ପ୍ରତିନିଧିମାନଙ୍କୁ କୁହାଯାଉଥିଲା 'ପୌର' ଏବଂ 'ଜନପଦ'ର ପ୍ରତିନିଧିମାନଙ୍କୁ କୁହାଯାଉଥିଲା 'ଜାନପଦ' । 'ପୌର' ଓ ଜାନପଦ' ମିଶିକରି ଗଢ଼ାଯାଉଥିଲା 'ପୌର-ଜାନପଦ' ଯାହା କି ରାମାୟଣୀୟ 'ସଭା'ର ଏକ ବିଶିଷ୍ଟ ଅଙ୍ଗ ଥିଲା । 'ପୌର-ଜାନପଦ'ର କାର୍ଯ୍ୟକାରିତା ସମ୍ପର୍କରେ ସଭାବିଷୟକ ଅନୁଚ୍ଛେଦରେ ପୂର୍ବରୁ ଆଲୋଚନା କରାଯାଇଛି । ରାମାୟଣରେ ଗ୍ରାମର ବିଭିନ୍ନ ନାମ ଦେଖିବାକୁ ମିଳିଥାଏ, ଯଥା, 'ଗ୍ରାମ', ସମ୍ବାହ' ଓ 'ଘୋଷ' । କୃଷିଭିତ୍ତିକ ଗାଁଗୁଡ଼ିକୁ କୁହାଯାଉଥିଲା 'ଗ୍ରାମ' । ସେହିପରି ଗୋମହିଷାଦି ପଶୁଭିତ୍ତିକ ଗ୍ରାମଗୁଡ଼ିକୁ କୁହାଯାଉଥିଲା 'ଘୋଷ' । ବଡ଼ ବଡ଼ ଗାଁରେ ଗ୍ରେଟ ଗ୍ରେଟ ପଲ୍ଲୀ-ଗାଁମାନ ଥିଲା । ତାହାକୁ କୁହାଯାଉଥିଲା 'ସମ୍ବାହ' । ବନ୍ଦରଗୁଡ଼ିକୁ କୁହାଯାଉଥିଲା 'ପତ୍ତନମ୍' ।

ବୈଦିକ କାଳ ଭଳି ରାମାୟଣ-କାଳରେ ବି ଗ୍ରାମକୁ ଶାସନର କ୍ଷୁଦ୍ରତମ ଏକକ ବୋଲି ଗଣାଯାଉଥିଲା ଏବଂ ପ୍ରତି ଗ୍ରାମ ଥିଲା ଅର୍ଥନୈତିକ ଦୃଷ୍ଟିକୋଣରୁ ପ୍ରାୟ ସ୍ୱୟଂସମ୍ପୂର୍ଣ୍ଣ । ଗ୍ରାମର ମୁଖ୍ୟ ବ୍ୟକ୍ତିଙ୍କୁ କୁହାଯାଉଥିଲା 'ଗ୍ରାମ-ମହତ୍ତର' । 'ଘୋଷ'ର ମୁଖ୍ୟଙ୍କୁ କୁହାଯାଉଥିଲା 'ଘୋଷ-ମହତ୍ତର' । ବୈଦିକ କାଳରେ ଅବଶ୍ୟ ଏହାଙ୍କୁ କୁହାଯାଉଥିଲା 'ଗ୍ରାମଣୀ' । ବୁଦ୍ଧଙ୍କ ସମୟରେ (ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀ) ମଧ୍ୟ ଏଭଳି ଗ୍ରାମ-ମୁଖ୍ୟ ଥିଲେ । ବୌଦ୍ଧ ଜାତକ ଗଳ୍ପମାନଙ୍କରେ ଅନେକଥର ଗ୍ରାମ-ମୁଖ୍ୟଙ୍କୁ 'ଗ୍ରାମଭୋଜକ' (ପାଲିରେ ଗାମଭୋଜକ) ବୋଲି କୁହାଯାଇଛି । ରାମାୟଣକାଳରେ ଗ୍ରାମ-ସ୍ତରରେ ଯେଉଁ ସ୍ୱାୟତ୍ତଶାସନ ଥିଲା ତାହା ସ୍ଥୂଳତଃ ବୈଦିକ ଶାସନ-ପ୍ରଣାଳୀକୁ ଅନୁସରଣ କରୁଥିଲା ଏବଂ ଏଥିରେ ଜନମତର ପ୍ରାଥମିକତା ଥିଲା ।

ପୂର୍ବରୁ 'ପୌର-ଜାନପଦ' ସଂସ୍ଥାଟି କପରି ଯଥାକ୍ରମେ 'ପୁର' ଓ 'ଜନପଦ'ର ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିଲା, ସେ ବିଷୟରେ କୁହାଯାଇଛି । ବର୍ତ୍ତମାନ ପ୍ରଶ୍ନ ଉଠୁଛି ଏହା କ'ଣ ଗୋଟିଏ ଥିଲା ନା ଏକାଧିକ ଥିଲା ? ପୁଣି ଏହାର ସଦରମହକୁମା କେଉଁଠି ଥିଲା ? ରାମାୟଣରେ 'ପୌର-ଜାନପଦ' ଶବ୍ଦକୁ ଉଭୟ ଏକବଚନ ଓ ବହୁବଚନରେ ବ୍ୟବହାର କରାଯାଇଛି । କେ. ପି. ଜୟସ୍ୱାଲ୍ ଏହି ବିଷୟକୁ ଅନୁଧ୍ୟାନ କରି ଏହାର ତାତ୍ପର୍ଯ୍ୟ ବୁଝାଇଛନ୍ତି । ତାଙ୍କ ମତରେ 'ପୌର' ଓ 'ଜାନପଦ' ଉଭୟ ସଂସ୍ଥାର ଦୁଇଟି ଲେଖାଏଁ ବିଭାଗ ଥିଲା, ଯଥା, 'ଆଭ୍ୟନ୍ତର' ଓ 'ବାହ୍ୟ' । 'ବାହ୍ୟ-ପୌର' ରାଜଧାନୀରେ ଥିବା ବିଭିନ୍ନ ନିଗମମାନଙ୍କର ପ୍ରତିନିଧିମାନଙ୍କୁ ନେଇ ଗଢ଼ାଯାଇଥିଲା ବେଳେ 'ବାହ୍ୟ-ଜନପଦ' ବିଭିନ୍ନ ଗ୍ରାମ, ଘୋଷ, ନଗର (ରାଜଧାନୀକୁ ଛାଡ଼ି) ଓ ପତ୍ତନର ପ୍ରତିନିଧିମାନଙ୍କୁ ନେଇ ଗଢ଼ାଯାଇଥିଲା । 'ଆଭ୍ୟନ୍ତର-ପୌର' ଓ 'ଆଭ୍ୟନ୍ତର ଜାନପଦ' ପୃଥକ୍ ପୃଥକ୍ ସଂସ୍ଥା ନହୋଇ ଥିଲା ଏକ ମିଳିତ ସଂସ୍ଥା ଯାହାର ନାମ ଥିଲା 'ପୌର-ଜାନପଦ' । ଏଥିରେ 'ବାହ୍ୟ-ଜାନପଦ' ସମୂହର ସଭାପତିମାନେ ତଥା 'ବାହ୍ୟପୌର'ର ବଡ଼ ବଡ଼ ଜ୍ଞାନବୃଦ୍ଧମାନେ ସଭ୍ୟ ଥିଲେ । ଏହାର ସଦର ମହକୁମା ଥିଲା ରାଜଧାନୀରେ ଏବଂ ଏହା ଆବଶ୍ୟକ କ୍ଷେତ୍ରରେ ରାମାୟଣୀୟ 'ସଭା'ର ଅଙ୍ଗୀଭୂତ ହୋଇ ରାଜାଙ୍କୁ ବିଭିନ୍ନ ବିଷୟରେ ପରାମର୍ଶ ଦେଉଥିଲା । (୫୧) ରାମଙ୍କୁ ଯୁବରାଜ ଭାବରେ ବାଛିବାରେ ଦଶରଥ ଏହି ପୌର-ଜାନପଦ'ର ପରାମର୍ଶ ନେଇଥିଲେ । ଭରତଙ୍କ ସାଥିରେ ଚିତ୍ରକୂଟ ଅଞ୍ଚଳକୁ ସେନାବାହିନୀ ସହିତ ଯେଉଁ 'ପୌର-ଜାନପଦ'ଗଣ ଯାଇଥିବାର ବର୍ଣ୍ଣନା ଅଛି ସେମାନେ ହେଉଛନ୍ତି ବାହ୍ୟ-ପୌର, ତଥା 'ବାହ୍ୟ-ଜାନପଦ'ର ସଭ୍ୟଗଣ ।

ବାସ୍ତବକ, ଏଠାରେ 'ପୌର-ଜାନପଦ' ଶବ୍ଦଟି ବହୁବଚନରେ ବ୍ୟବହୃତ ହୋଇଛି ।

ରାମ 'ପୌର-କାର୍ଯ୍ୟ'ରେ ଅନେକ ସମୟରେ ବ୍ୟସ୍ତ ରହୁଥିବାର ବର୍ଣ୍ଣନା ରାମାୟଣରେ ଅଛି । ଏହି 'ପୌର-କାର୍ଯ୍ୟ'ର ଅର୍ଥ ହେଲା ରାଜଧାନୀର ପୌର ସମିତିର କାର୍ଯ୍ୟ । ରାଜା ଏହି ସମିତିର ଅଧ୍ୟକ୍ଷ ରହୁଥିଲେ । ବେଳେ ବେଳେ ଯୁବରାଜ ମଧ୍ୟ ଏହାର ଅଧ୍ୟକ୍ଷ ରହୁଥିଲେ । ରାମ ଉଭୟ ଯୁବରାଜ ହିସାବରେ (ବିଧିବଦ୍ଧ ଭାବରେ ଅଭିଷିକ୍ତ ହେବା ପୂର୍ବରୁ ମଧ୍ୟ) ଓ ରାଜା ହିସାବରେ ଏହାର ଅଧ୍ୟକ୍ଷତା କରିଥିଲେ । ପୌର ସମିତିର କାର୍ଯ୍ୟ ଥିଲା ରାଜଧାନୀକୁ ପରିଷ୍କାର-ପରିଚ୍ଛନ୍ନ ରଖିବା, ରାଜମାର୍ଗର ରକ୍ଷଣାବେକ୍ଷଣ କରିବା, ଜଳ ପ୍ରାପ୍ତିର ଆକାରକ୍ଷେତ୍ରଗୁଡ଼ିକର ରକ୍ଷଣାବେକ୍ଷଣ କରିବା, ରାଜମାର୍ଗରେ ଦୀପର ବ୍ୟବସ୍ଥା କରିବା ଇତ୍ୟାଦି । ଏତଦ୍‌ବ୍ୟତୀତ ସାର୍ବଜନୀନ ଉତ୍ସବାନୁଷ୍ଠାନମାନଙ୍କରେ ରାଜଧାନୀରେ ଆଲୋକ-ସଜ୍ଜା ତଥା ରାଜମାର୍ଗରେ ଜଳସିଞ୍ଚନ କରିବାର ଦାୟିତ୍ୱ ମଧ୍ୟ ତାହାର ଥିଲା । ଏଥିରୁ ଜଣା ପଡ଼ୁଛି ଯେ ଆଜିକାଲିକାର ମ୍ୟୁନିସିପାଲିଟି ଭଳି ସେତେବେଳେ ଏହି ସଂସ୍ଥା କାର୍ଯ୍ୟ କରୁଥିଲା ।

ଏତଦ୍‌ବ୍ୟତୀତ 'ଶ୍ରେଣୀ', 'ନିଗମ' ବା 'ନୈଗମ' ଓ 'ଗଣ' ଆଦି କେତେକ ସ୍ୱାୟତ୍ତଶାସିତ ସଂସ୍ଥା ମଧ୍ୟ ସେତେବେଳେ କାର୍ଯ୍ୟ କରୁଥିଲା । ଏହି ସଂସ୍ଥାଗୁଡ଼ିକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ବ୍ୟକ୍ତିମାନଙ୍କୁ ନେଇ ଗଢ଼ାଯାଇଥିଲା । ଏହି ବ୍ୟକ୍ତିମାନେ ସମସ୍ତେ କୌଣସି ନା କୌଣସି ବାଣିଜ୍ୟ ବ୍ୟବସାୟ ଅଥବା ଶିଳ୍ପ କର୍ମ ସହିତ ସଂପୃକ୍ତ ଥିଲେ । ପ୍ରଥମେ 'ଶ୍ରେଣୀ' କଥା ବିଚାର୍ଯ୍ୟ । ରାମାୟଣର ଅଯୋଧ୍ୟା କାଣ୍ଡରେ ଏହି 'ଶ୍ରେଣୀ' ନାମରେ ବହୁଳ ଉଲ୍ଲେଖ ଦେଖାଯାଏ । (୫୨) ବୌଦ୍ଧ ଜାତକ ଗଳ୍ପସମୂହ, ଅର୍ଥଶାସ୍ତ୍ର, ସ୍ମୃତି, ମହାଭାରତ ତଥା ଧର୍ମସୂତ୍ର ସମୂହରେ ମଧ୍ୟ ଏହି 'ଶ୍ରେଣୀ' ନାମର ଉଲ୍ଲେଖ ମିଳିଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ବ୍ୟବସାୟୀମାନେ ଯେଉଁ ସଂସ୍ଥା ଗଢ଼ିଥାନ୍ତି ତାହାର ନାମ ହେଉଛି 'ଶ୍ରେଣୀ' । ଏଥିରେ ବ୍ୟବସାୟୀ ଓ ଶିଳ୍ପପତି ଉଭୟ ସଂପୃକ୍ତ । ଏହି ଶ୍ରେଣୀ-ମାନଙ୍କର ଜଣେ ଲେଖାଏଁ ମୁଖ୍ୟ ଥିଲେ । ସେମାନଙ୍କୁ କୁହାଯାଉଥିଲା 'ଶ୍ରେଣୀମୁଖ୍ୟ' ଅଥବା 'ଶ୍ରେଣୀ-ମହତ୍ତର' । ରାମଙ୍କ ଯୌବରାଜ୍ୟାଭିଷେକକୁ 'ଶ୍ରେଣୀମୁଖ୍ୟ'ମାନଙ୍କୁ ଡ଼କାଯାଇଥିବାର ବର୍ଣ୍ଣନା ରାମାୟଣରେ ରହିଛି । ପ୍ରାଚୀନ ଇଉରୋପରେ ଥିବା 'Guilds' ସହିତ ଏହି ଶ୍ରେଣୀସମୂହ ତୁଳନୀୟ । ବୁଦ୍ଧଙ୍କ ସମୟରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ମଧ୍ୟ ଏହି ଶ୍ରେଣୀସମୂହ କାର୍ଯ୍ୟ କରୁଥିବାର ପ୍ରମାଣ ଆମେ ବୌଦ୍ଧଜାତକ ଗଳ୍ପସମୂହକୁ ଅନୁଧ୍ୟାନ କରିବା ଫଳରେ ଜାଣି-ପାରିଥାଉଁ ।

'ଶ୍ରେଣୀ' ଭଳି ଆଉ ଏକ ସଂଘ ଥିଲା ଯାହାର ନାମ ଥିଲା 'ନିଗମ' ବା 'ନୈଗମ'। ଏହା ହେଉଛି ବେପାରୀମାନଙ୍କର ଏକ ସଂଘ। ଏହା ଠିକ୍ ଶ୍ରେଣୀ ଭଳି କାର୍ଯ୍ୟ କରୁଥିଲା। ଏଥିରେ ଶ୍ରେଣୀ ମୁଖ୍ୟ'ଙ୍କ ଭଳି ଜଣେ ମୁଖ୍ୟ ଥିଲେ ଯାହାଙ୍କ ନାମ ଥିଲା 'ନିଗମମୁଖ୍ୟ'। ରାମାୟଣରେ ଠାଏ (୭।୪୦।୪୮) ରାମଙ୍କ ରାଜସଭାରେ ନିଗମ ବୃଦ୍ଧମାନେ ଯୋଗ ଦେଇଥିବାର (ତଥା ନିଗମ ବୃଦ୍ଧାଷ୍ଟ) ନିଦର୍ଶନ ଆମେ ପାଇଥାଉଁ। ଏମାନେ କୁଳ ବୃଦ୍ଧମାନଙ୍କ ସହିତ ମିଶି ଉକ୍ତ ରାଜସଭାରେ ଯୋଗ ଦେଇଥିଲେ। ଶ୍ରେଣୀମୁଖ୍ୟମାନଙ୍କ ଭଳି ନିଗମ ମୁଖ୍ୟମାନେ ମଧ୍ୟ ରାମଙ୍କ ଯୌବରାଜ୍ୟାଭିଷେକରେ ଯୋଗ ଦେବାପାଇଁ ନିମନ୍ତ୍ରିତ ହୋଇ ଆସିଥିଲେ।

'ଗଣ' ବୋଲି ଆଉ ଏକ ସଂସ୍ଥା ଥିଲା ଯାହାର ପ୍ରୟୋଗ ଆମେ ରାକ୍ଷସ ଓ ବାନରମାନଙ୍କ କ୍ଷେତ୍ରରେ ଦେଖିବାକୁ ପାଇଥାଉଁ। ଏହି 'ଗଣ'ର ଚଳନ୍ତାଧାରା ଅତି ପ୍ରାଚୀନ ବୋଲି ମନେହୁଏ। ଏପରିକି ଋଗ୍‌ବେଦରେ ମଧ୍ୟ (୧୦।୩୪।୧୨) 'ଗଣ' ନାମର ଉଲ୍ଲେଖ ଅଛି। 'ଗଣ'ର ଅଧିପତିଙ୍କୁ କୁହାଯାଉଥିଲା 'ଗଣପତି'। ଏହି ଅର୍ଥରେ 'ଗଣାନାଂ ତ୍ୱାଂ ଗଣପତିଂ ହବାମହେ' ଆଦି ବୈଦିକ ମନ୍ତ୍ରଟି ଯୁଗ ଯୁଗ ଧରି ଉଚ୍ଚାରିତ ହୋଇଆସୁଛି। ଡ଼: ଆର୍: ଭଣ୍ଡାରକର୍‌ଙ୍କ ମତରେ 'ଗଣ' ହେଉଛି "a corporate body of individuals formed for a definite purpose." (୫୩) ବାନରରାଜ ବାଲି ଓ ସୁଗ୍ରୀବ ଏବଂ ରାକ୍ଷସରାଜ ରାବଣ ଅନେକ ସ୍ଥାନରେ (୪।୧୭।୩; ୬।୧୬।୭୬) 'ଗଣେଶ୍ୱର' ନାମରେ ଉଲ୍ଲିଖିତ। ଆମେ ବୌଦ୍ଧଯୁଗରେ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ଲିଚ୍ଛବି-ମାନଙ୍କ ମଧ୍ୟରେ ଗଣ-ଶାସନ ପ୍ରବର୍ତ୍ତିତ ଥିବାର ଜାଣିଥାଉଁ। ଗଣ-ଶାସନର ପ୍ରକୃତି ହେଲା ଗଣ ମଧ୍ୟରେ ଥିବା କେତେକ ପରିବାର ହିଁ ଶାସନ କ୍ଷମତା ଜାହିର କରିପାରୁଥିଲେ। ପ୍ରତ୍ୟେକ ପରିବାରରୁ ବୟୋଜ୍ୟେଷ୍ଠ ପୁରୁଷଙ୍କୁ କୁଳବୃଦ୍ଧ ଭାବରେ ମନୋନୀତ କରାଯାଉଥିଲା। ଏହିପରି ଭାବରେ ମନୋନୀତ ସମସ୍ତ କୁଳବୃଦ୍ଧ ଏକାଠି ମିଶି ଶାସନ କରୁଥିଲେ। ଏ ପ୍ରକାର ନୀତି ଲିଚ୍ଛବିମାନେ ଅନୁସରଣ କରୁଥିଲେ। ଏତଦ୍‌ବ୍ୟତୀତ ବୁଦ୍ଧକାଳୀନ ଅନ୍ୟାନ୍ୟ ଗଣରାଜ୍ୟ ସମୂହରେ ମଧ୍ୟ ଏହି ନୀତି ଅନୁସୃତ ହେଉଥିଲା। କିନ୍ତୁ ରାମାୟଣ ଯୁଗରେ ଏହି ନୀତି ସମ୍ପୂର୍ଣ୍ଣ ଭାବରେ ଅନୁସୃତ ହେଉଥିବାର ପ୍ରମାଣ ମିଳେ ନାହିଁ। ରାକ୍ଷସମାନଙ୍କର ତଥା ବାନରମାନଙ୍କର ଜଣେ ଜଣେ ରାଜା ଥିଲେ। ସେମାନଙ୍କ କୁଳବୃଦ୍ଧମାନେ ମିଳିତ ଭାବରେ ଶାସନ କରିବାର ପ୍ରମାଣ ଆମକୁ ମିଳେନାହିଁ। ସେମାନଙ୍କର ଶାସନ ତନ୍ତ୍ର କେତେକାଂଶରେ ଲିଚ୍ଛବିମାନଙ୍କ

ଶାସନ ସହିତ ସମାନ ଥିଲା ବୋଲି କୁହାଯାଇପାରେ । ଶର୍ମା ମଧ୍ୟ ଏହି ମତର ପରିପୋଷଣ କରିଥାନ୍ତି । ତାଙ୍କ ଭାଷାରେ :

> All this evidence might indicate that the political organisation of the Vanaras and the Rakshyasas probably corresponded in some measure to the Gana type of the Lichhavi State. (୪୫)

ଆର୍ଯ୍ୟମାନଙ୍କ ମଧ୍ୟରେ ବି 'ଗଣ'ସମ୍ପୂହ ଥିଲେ । 'ଗଣ'ର ମୁଖ୍ୟଙ୍କୁ କୁହାଯାଉଥିଲା 'ଗଣବଲ୍ଲଭ' । ସମ୍ଭବତଃ କୁଳବୃଦ୍ଧମାନଙ୍କ ପ୍ରତି ଏହା ଆରୋପିତ । ରାମଙ୍କ ଯୌବରାଜ୍ୟାଭିଷେକରେ ଯୋଗଦେବାପାଇଁ ଗଣବଲ୍ଲଭମାନେ ନିମନ୍ତ୍ରିତ ହୋଇ ଆସିଥିବାର ବର୍ଣ୍ଣନା ଆମେ ରାମାୟଣରେ ପାଇଥାଉଁ ।

ଏହା ହେଲା ରାମାୟଣୀୟ ରାଷ୍ଟ୍ର-ଚେତନା ତଥା ପ୍ରଶାସନ ପଦ୍ଧତିର ଏକ ସ୍ଥୂଳ ବିବରଣୀ । ଏହା ରାମାୟଣରେ ବିକ୍ଷିପ୍ତ ଭାବରେ ବର୍ଣ୍ଣିତ ହୋଇଥିଲେ ହେଁ ସମସ୍ତ ତଥ୍ୟକୁ ଏକତ୍ରିତ କରି ବିଚାର କଲେ ଆମେ ଜାଣିପାରିବା ଯେ ରାମାୟଣୀୟ ରାଷ୍ଟ୍ର ଥିଲା ଏକ ଜନମଙ୍ଗଳ ରାଷ୍ଟ୍ର ଏବଂ ରାଜା ତାଙ୍କ ସୁସଂହତ ପ୍ରଶାସନ ଦ୍ୱାରା ରାଷ୍ଟ୍ରର ସର୍ବତୋଭାବେ ଅଭିବୃଦ୍ଧି ଅଣାଇବା ଲାଗି ସତତ ବ୍ରତୀ ଥିଲେ । ରାମଙ୍କ ରାଜ୍ୟଶାସନ ଏତେ ସୁନ୍ଦର ଥିଲା ଯେ ସୁଶାସନ କହିଲେ ଆମେ ଆଜି ମଧ୍ୟ 'ରାମରାଜ୍ୟ' ବୋଲି ବୁଝିଥାଉଁ । ଭାରତୀୟ ଜନମାନସରେ ତେଣୁ ରାମରାଜ୍ୟ ଏକ ଆଦର୍ଶ ରାଜ୍ୟ ହୋଇ ଯୁଗ ଯୁଗ ଧରି ରହିଆସିଛି ଏବଂ ଭବିଷ୍ୟତରେ ରହିଆସୁଥିବ ମଧ୍ୟ ।

## ଟିପ୍ପଣୀ


୧ । K. M. Panikkar, The Ideas of Sovereignty and State in Indian Political Thought, Bharatiya Vidya Bhawan (1963), p. 71.

୨ । ଐତରେୟ ବ୍ରାହ୍ମଣ, ୮।୨୬ ।

୩ । A. S. Altekar, State and Government in Ancient India, pp. 30-31.

୪ । R. Sharma, A Socio-Political Study of the Valmiki Ramayana, Motilal Banarasidass, p. 285.

୫ । ରାମାୟଣ, ୨।୧୦୦।୩୭ ।

୬ । ଋଗ୍ବେଦ, ୩।୩୩।୯ ।

୭ । ଅର୍ଥଶାସ୍ତ୍ର, ୫।୧ ।

୮ । ଯାଜ୍ଞବଲ୍କ୍ୟ ସ୍ମୃତି, ୧।୩୫୩ । ଶଂସିତ ପଙ୍କ୍ତିଟି ହେଲା :

ସ୍ୱାମ୍ୟମାତ୍ୟାଜନୋ ଦୁର୍ଗଂ କୋଷୋ ଦଣ୍ଡସ୍ତଥୈବ ଚ ।
ମିତ୍ରାଣ୍ୟେତାଃ ପ୍ରକୃତୟଃ ରାଜ୍ୟଂ ସପ୍ତାଙ୍ଗମୁଚ୍ୟତେ ॥

ଅର୍ଥାତ୍ ସ୍ୱାମୀ (ରାଜା), ଅମାତ୍ୟଗଣ, ଜନସମୁଦାୟ, ଦୁର୍ଗ, କୋଷ, ଦଣ୍ଡ (ସେନା) ଓ ମିତ୍ରଗଣ ହେଉଛନ୍ତି ରାଷ୍ଟ୍ରର ସାତଗୋଟି ଅଙ୍ଗ ।

୯ । ରାମାୟଣ; ୭।୧୮।୪୧-୪୨ ।

୧୦ । P. V. Kane, History of Dharmasastra, Vol. III, p. 18.

୧୧ । Ibid, p. 27.

୧୨ । R. Sharma, op. cit, p. 289.

୧୨-କ । Jawaharlal Nehru, Glimpses of World History (1987 Edn.), Meng-tse quoted, p. 199.

୧୨-ଖ । Ibid, Frederick Barbarossa of quoted.

୧୩ । P. V. Kane, op. cit., p. 218.

୧୪ । ରାମାୟଣ, ୩।୨୧।୭; ୧।୪୮।୯; ୧।୭।୬; ୨।୫।୩୧; ୧।୭।୬ ।

୧୫ । ଋଗ୍ବେଦ, ୭।୬୧।୨୨ ।

୧୬ । ଋଗ୍ବେଦ, ୪।୧୫।୨୪ ।

୧୭ । V. R. R. Dikshitar, War in Ancient India, p. 320.

୧୮ । ରାମାୟଣ, ୫।୫୨।୫ ।

୧୯ । ଋଗ୍ବେଦ, ୨।୧୦୦।୭୬ ।

୨୦ । J. L. Brockington, Righteous Rama—The Evolution of an Epic, p. 124.

୨୦-କ । R. Sharma, op. cit., p. 441.

୨୦-ଖ । J. Duncan M. Derret, "Social and Political Thought and Institutions, A Cultural History of India, p. 132.

୨୧ । K. M. Panikkar, op. cit., p. 15,

୨୨ । ରାମାୟଣ, ୬।୫୪।୫-୬,୮ ।

୨୩ । ତତ୍ରୈବ, ୨।୩୪।୨୬ ।

୨୩-କ । J. L. Brockington, op. cit,, p. 126.

୨୪ । ରାମାୟଣ, ୬।୧୨୬।୫୪,୫୬ ।

୨୫ । ତତ୍ରୈବ, ୨।୨।୧୧ ।

୨୬ । Swami Nibshreyasananda, "The Culture of the Ramayana", The Cultural Heritage of India, Vol. II. p. 34.

୨୭ । ରାମାୟଣ, ୪।୧୮।୪୨ ।

୨୮ । ତତ୍ରୈବ, ୩।୬୫।୯ ।

୨୯ । ଅକ୍ଷୟକୁମାର ବନ୍ଦ୍ୟୋପାଧ୍ୟାୟ, "ରାମାୟଣଙ୍କ ମର୍ମବାଣୀ", କଲ୍ୟାଣର ସଂକ୍ଷିପ୍ତ ବାଲ୍ମୀକିରାମାୟଣାଙ୍କ, ପୃ. ୧୦ ।

୩୦ । ରାମାୟଣ, ୧।୪୨।୧୨; ୧।୪୪।୧୮ ।

୩୧ । ତତ୍ରୈବ, ୨।୧୦୯।୧୧ ।

୩୨ । ତତ୍ରୈବ, ୨।୧୦୯।୧୩ ।

୩୨-କ । ମହାଭାରତ, ୧୨।୧୮୩।୧ ।

୩୩ । ରାମାୟଣ, ୬।୩୭; ୬।୫୩।୪-୬; ୬।୪୨।୨୭; ୬।୪୨।୩୬; ୬।୪୩।୧ ।

୩୪ । R. Sharma, op. cit., p. 309.

୩୫ । ରାମାୟଣ, ୨।୩।୮-୨୦; ୨।୧୪।୩୪-୪୧; ୨।୧୫।୧-୧୨; ୨।୨୬।୯-୧୮; ୬।୧୨୮।୬୮ ।

୩୬ । R. Sharma, op.cit. p. 311.

୩୭ । ରାମାୟଣ, ୨।୧୧୨।୧୬ ।

୩୮ । ତତ୍ରୈବ, ୧।୭।୧୬ ।

୩୮-କ । J. Duncan, M. Derret, op. cit. p, 133.

୩୯ । R. Sharma, op. cit., p, 335.

୪୦ । ରାମାୟଣ, ୬।୧୧।୪ ।

୪୧ । R. Sharma, op. cit., p. 338.

୪୨ । ରାମାୟଣ, ୬।୬।୫ ।

୪୩ । ତତ୍ରୈବ, ୬।୯।୨୨ ।

୪୪ । ତତ୍ରୈବ, ୬।୧୧।୩୦ ।

୪୪-କ । Swami Nibshreyasananda, op. cit., p. 35.

୪୫ । ଶାନ୍ତିକୁମାର ନାନୂରାମ ବ୍ୟାସ, ରାମାୟଣକାଳୀନ ସମାଜ, ପୃ. ୨୭୫ ।

୪୬ । R. Sharma, op. cit., p. 359.

୪୬-କ । ସୁରେନ୍ଦ୍ରନାଥ ଶତପଥୀ, ଭାରତୀୟ ସଂସ୍କୃତି-ବୈଦିକ ପର୍ବ (୪ର୍ଥ ଭାଗ), ପୃ. ୭୮ ।

୪୭ । ରାମାୟଣ, ୨।୧୦୦।୫୯ ।

୪୮ । ତତ୍ରୈବ, ୨।୭୫।୫୮ ।

୪୯ । ତତ୍ରୈବ, ୫।୨୬।୧୦ ।

୫୦ । ତତ୍ରୈବ, ୫।୨୮।୭ ।

୫୦-କ । ତତ୍ରୈବ, ୩।୩୩।୧୦ ।

୫୧ । K. P. Jayaswal, Hindu Polity, p. 247.

୫୨ । ରାମାୟଣ, ୨।୧୨୪।୨୩, ୬।୧୦୮।୧୪ ।

୫୩ । U N. Ghoshal, Studies in Indian History and Culture, D. R. Bhandarkar quoted, p. 360.

୫୪ । R. Sharma, op. cit., p. 377.



## ତୃତୀୟ ପରିଚ୍ଛେଦ

# ସାମରିକତା

ଯୁଦ୍ଧ, ଯୁଦ୍ଧ ଓ ଯୁଦ୍ଧ । ଏହା ତ ଖାଲି ମାନବ-ସମାଜର ନୁହେଁ, ଏହା ସାରା ପ୍ରାଣିଜଗତର ଏକ ଆଦିମ ସଂସ୍କାର । ଆତ୍ମରକ୍ଷା, ମୁକ୍ତି ତଥା ଆତ୍ମବିସ୍ତାର କରିବାପାଇଁ ଏହା ଏକ ସ୍ୱାଭାବିକ ଅଭିପ୍ସା । ଯୁଦ୍ଧ ନଥିଲେ ସ୍ଥିତି ନାହିଁ, କି ଶାନ୍ତି ନାହିଁ, କି ପ୍ରଗତି ନାହିଁ । ଯୁଦ୍ଧ ନଥିଲେ ଜୀବନର ସ୍ଥାଣୁତା ଆସିଯାଏ ଏବଂ ଚଳଚଞ୍ଚଳ ନର୍ଦ୍ଦର ଭଳି ତାହାର ଆଉ ପ୍ରବହମାନତା ରହେନାହିଁ । ପୃଥିବୀର ସଭ୍ୟତାର ଇତିହାସ କହିଲେ ଆମକୁ ଏଥିପାଇଁ ଘଟିଯାଇଥିବା ବିଭିନ୍ନ ଯୁଦ୍ଧର ଇତିହାସକୁ ହିଁ ଅନୁଧ୍ୟାନ କରିବାକୁ ହେବ । ସତେ ଯେମିତି ଯୁଦ୍ଧ ଓ ସଭ୍ୟତା ଦୁଇ ସହୋଦର ଭ୍ରାତା ଭଳି ସର୍ବଦା ହାତ ଧରାଧରି ହୋଇ ଚାଲିଥାନ୍ତି । ସଭ୍ୟତାର ଯୁଦ୍ଧ ସହିତ ଏହି ସମ୍ପର୍କକୁ ବ୍ୟାଖ୍ୟା କରିବାକୁ ଯାଇ ବାଳଶାସ୍ତ୍ରୀ ହରଦାସ ଯଥାର୍ଥରେ କହନ୍ତି :

> Later on the civilization of a people was nourished by and incidentally depended upon wars. A dictum came to be recognised that war and civilization went hand-in-hand. Even modern philosopher like Ruskin enunciated the proposition that in war nation thrived and in peace they decayed. (୧)

ପ୍ରାଚୀନ ବୈଦିକ ଆର୍ଯ୍ୟମାନଙ୍କ ମତ ଥିଲା ସାରା ବିଶ୍ୱକୁ, ସାରା ମାନବ-ସମାଜକୁ ଆର୍ଯ୍ୟାନ୍ୱିତ ବା ସୁସଂସ୍କୃତ କରିନେବା (କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍) । ଏହି ମତକୁ ରୂପାୟନ ଦେବାକୁ ଯାଇ ସେମାନଙ୍କୁ ବହୁ ଯୁଦ୍ଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । 'ଦାଶରାଜ୍ଞ ଯୁଦ୍ଧ' ଏବଂ ଦାସ, ଦସ୍ୟୁ, ପଣି ଆଦି ଆର୍ଯ୍ୟେତର ଗୋଷ୍ଠୀଙ୍କ ସହିତ ହୋଇଥିବା ଅନ୍ୟାନ୍ୟ ଅସଂଖ୍ୟ ଯୁଦ୍ଧ ଏହାର ନିଦର୍ଶନ । ଭାରତୀୟ ସଂସ୍କୃତିର ସଂରକ୍ଷଣ ଲାଗି ଦେବାସୁର-ଯୁଦ୍ଧ, ରାମ-ରାବଣ ଯୁଦ୍ଧ, ମହାଭାରତ ଯୁଦ୍ଧ ଆଦି ଅନେକ ଯୁଦ୍ଧର ଇତିହାସ, ସ୍ୱର୍ଣ୍ଣାକ୍ଷରରେ

ନିହିତ ହୋଇ ରହିଛି । ବାସ୍ତବିକ, ବାଲ୍ମୀକିଙ୍କ ରାମାୟଣ ହେଉଛି ଗୋଟିଏ ଯୁଦ୍ଧ କାବ୍ୟ । ସତ୍ୟର ଅସତ୍ୟ ସହିତ, ଧର୍ମର ଅଧର୍ମ ସହିତ ଯେଉଁ ଚିର-ସଂଘର୍ଷ ଚାଲିଛି, ତାହାର ସଙ୍କେତ ଦେଉଛି ରାମ-ରାବଣ ଯୁଦ୍ଧ । ଏହି ଦୃଷ୍ଟିରୁ ବିଚାର କଲେ ରାମାୟଣକାଳୀନ ସାମରିକତା ବିଷୟ ଅନୁଧ୍ୟାନ କରିବା ନିଶ୍ଚିତ ଭାବରେ କୌତୂହଳପୂର୍ଣ୍ଣ ହେବ ।

## ଆତ୍ମସଂରକ୍ଷଣ ଓ ଆତ୍ମବିସ୍ତାର :

ରାମାୟଣ-କାଳରେ ଭାରତ ବିଭିନ୍ନ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା । ଅବଶ୍ୟ ଏହି ରାଜ୍ୟମାନଙ୍କରେ ସାଂସ୍କୃତିକ ଏକତା ବିଦ୍ୟମାନ ଥିଲା ଏବଂ ସବୁ ରାଜ୍ୟର ଲୋକେ ନିଜକୁ ବୈଦିକ ସଂସ୍କୃତିର ଦାୟାଦ ବୋଲି କହି ଗର୍ବିତ ଅନୁଭବ କରୁଥିଲେ । କିନ୍ତୁ ସେମାନଙ୍କ ରାଜନୈତିକ ତଥା ଅର୍ଥନୈତିକ ଆକାଂକ୍ଷା ସେମାନଙ୍କୁ ପରସ୍ପର ବିରୋଧରେ ଆଣି ଅନେକ ସମୟରେ ଠିଆ କରାଉଥିଲା । ସବଳ ରାଜ୍ୟ ଦୁର୍ବଳ ରାଜ୍ୟମାନଙ୍କୁ ନିଜର ଅକ୍ତିଆରରେ ରଖିବାପାଇଁ ଥିଲା ଉଦ୍ୟମଶୀଳ । ପ୍ରତ୍ୟେକ ବଡ଼ ବଡ଼ ରାଜାଙ୍କର କେହି ନା କେହି ସାମନ୍ତ ରାଜା ଥିଲେ । ବେଳେ ବେଳେ ଦୁର୍ବଳ ରାଜାମାନେ ପରସ୍ପର ସହିତ ସନ୍ଧି-ସୂତ୍ରରେ ଆବଦ୍ଧ ହୋଇ ସବଳ ରାଜାଙ୍କ ଆକ୍ରମଣର ପ୍ରତିରୋଧ କରୁଥିଲେ । ଆଉ ବେଳେ ବେଳେ ସେମାନେ ଜଣେ ସବଳ ରାଜାଙ୍କ ସହିତ ସନ୍ଧିକରି ଅନ୍ୟ ଜଣେ ସବଳ ରାଜାଙ୍କର ଆକ୍ରମଣକୁ ପ୍ରତିହତ କରୁଥିଲେ । ଏ ତ ଗଲା ଆର୍ଯ୍ୟ-ଆର୍ଯ୍ୟଙ୍କ ମଧ୍ୟରେ ହେଉଥିବା ରାଜନୈତିକ ପ୍ରତିଯୋଗିତା କଥା । ଏହା ଛଡ଼ା ଆର୍ଯ୍ୟ-ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ବି ଏଭଳି ପ୍ରତିଯୋଗିତାର ଆବଶ୍ୟକତା ଥିଲା । ଉତ୍ତର ଭାରତରେ ଥିଲା ଆର୍ଯ୍ୟ ସଭ୍ୟତା ଏବଂ ଲଙ୍କା ସମେତ ଦକ୍ଷିଣ ଭାରତରେ ଥିଲା ରାକ୍ଷସ-ସଭ୍ୟତା । ରାକ୍ଷସ ସଭ୍ୟତା ରାବଣର ରାଜତ୍ୱ ସମୟରେ ଆର୍ଯ୍ୟସଭ୍ୟତା ପ୍ରତି ବଡ଼ ବିପଦ ସୃଷ୍ଟି କରିବାକୁ ଲାଗିଲା । ଦକ୍ଷିଣ ଭାରତର 'ଜନସ୍ଥାନ' ଅଞ୍ଚଳଟି ରାବଣର ଅଧିକାରକୁ ଆସିଯାଇଥିଲା । ରାବଣ ଦିଗ୍‌ବିଜୟ ଫଳରେ ଅନେକ ନୂଆ ନୂଆ ରାଜ୍ୟକୁ ଜିଣି ସେହି ରାଜ୍ୟ-ଗୁଡ଼ିକୁ ନିଜ ଅଧୀନକୁ ଆଣି ସାରିଥିଲା । ପୂର୍ବରୁ କିଛି ମାତ୍ରାରେ ଆର୍ଯ୍ୟାନୁଗତ ବାନରମାନଙ୍କ ସହିତ ସେ ମିତ୍ରତା କରିସାରିଥିଲା । ବାନରରାଜ ବାଲୀଙ୍କ ସହିତ ସନ୍ଧିସ୍ଥାପନ ଫଳରେ ଏହା ସମ୍ଭବ ହୋଇପାରିଥିଲା । ସବୁଠାରୁ ବିପଦ-ପୂର୍ଣ୍ଣ ଥିଲା ତା'ର ହୈହୟ ସମ୍ରାଟ୍ ସହସ୍ରାର୍ଜୁନଙ୍କ ସହିତ ସନ୍ଧିସ୍ଥାପନ କରିବା । ଏହା ଫଳରେ ଚକ୍ରବର୍ତ୍ତୀ କୋଶଳ-ସମ୍ରାଟ୍‌ଙ୍କ ସ୍ଥିତି ପ୍ରତି ବିପଦ ଘନାଇ

ଆସିଥିଲା । ଏହି ବିପଦ ଖାଲି କୋଶଳରାଜ୍ୟ ପ୍ରତି ନଥିଲା । ଅନ୍ୟ-ପକ୍ଷରେ ଏହା ଥିଲା ସମଗ୍ର ଆର୍ଯ୍ୟସଂସ୍କୃତି ତଥା ଆର୍ଯ୍ୟସଭ୍ୟତା ପ୍ରତି । ଆର୍ଯ୍ୟମାନେ ଦକ୍ଷିଣ ଭାରତକୁ ଆର୍ଯ୍ୟାନ୍ୱିତ କରିବାକୁ ଚାହିଁଲା ବେଳେ ରାକ୍ଷସମାନେ ଆର୍ଯ୍ୟନିବାସ ଉତ୍ତର-ଭାରତ ପ୍ରତି ସେମାନଙ୍କର ଲୋଲୁପ ଦୃଷ୍ଟି ରଖିଥିଲେ । ତେଣୁ ଏହି ପରସ୍ପର ବିରୋଧୀ ଦୁଇ ଶକ୍ତି ବିଭିନ୍ନ କ୍ଷେତ୍ରରେ ମୁହାଁମୁହିଁ ହୋଇ ଯାଉଥିଲେ । ସେଥିପାଇଁ ଉଭୟ ଶକ୍ତିଙ୍କୁ ଆତ୍ମସଂରକ୍ଷଣ ଲାଗି ଯୁଦ୍ଧରେ ବ୍ୟାପୃତ ରହିବାକୁ ପଡ଼ୁଥିଲା । ଆତ୍ମରକ୍ଷାର ଲାଗି ମଧ୍ୟ ଅନୁରୂପ ଭାବରେ ଯୁଦ୍ଧ ଥିଲା ଅପରିହାର୍ଯ୍ୟ । ଏତଦ୍‌ବ୍ୟତୀତ ସ୍ୱାଧୀନତା ଓ ମୁକ୍ତି ଲାଗି ମଧ୍ୟ ଯୁଦ୍ଧ ଥିଲା ଅପରିହାର୍ଯ୍ୟ । ଜାତିକୁ ମୁକ୍ତ ରହିବାକୁ ହେଲେ, ଦେଶକୁ ମୁକ୍ତ ରଖିବାକୁ ହେଲେ ଯୁଦ୍ଧ ଅନିବାର୍ଯ୍ୟ; ରକ୍ତପାତ ଅନିବାର୍ଯ୍ୟ । ଏହା ଏକ ଚିରନ୍ତନ ନୀତି, ଯାହାର ଯାଥାର୍ଥ୍ୟ ଏବେ ଅଛି, ଭବିଷ୍ୟତରେ ଥିବ ଏବଂ ସେତେବେଳେ ମଧ୍ୟ ଥିଲା । ମୁକ୍ତି ଅତ୍ୟାଚାରୀମାନଙ୍କର ରକ୍ତ ଯେତିକି ଚାହେଁ, ଠିକ୍ ଅନୁରୂପ ପରିମାଣର ରକ୍ତ ଚାହେଁ ଦେଶପ୍ରେମୀମାନଙ୍କର । ଥମାସ୍ ଜେଫରସନଙ୍କ ନିମ୍ନଲିଖିତ ଉକ୍ତିର ଯାଥାର୍ଥ୍ୟ ଅଛି ଏଇଠି :

> The tree of liberty must be refreshed from time to time with the blood of patriots and tyrants. It is its matured manure.

ଏହି ଆବଶ୍ୟକତାର ପରିପୂର୍ତ୍ତି ଉଦ୍ଦେଶ୍ୟରେ ରାମାୟଣକାଳୀନ ସାମରିକତାର ଅଭ୍ୟୁଦୟ ଓ ବିକାଶ ହୋଇଥିଲା ।

### ଧନୁର୍ବିଦ୍ୟାର ପରମ୍ପରା :

ଅତି ପ୍ରାଚୀନ କାଳରୁ ବୈଦିକ କାଳରୁ ଆରମ୍ଭ କରି ହର୍ଷବର୍ଦ୍ଧନଙ୍କ ଶାସନକାଳ ପର୍ଯ୍ୟନ୍ତ ଧନୁ ଓ ଶର ଆର୍ଯ୍ୟମାନଙ୍କର ଏକ ପ୍ରମୁଖ ଯୁଦ୍ଧାସ୍ତ୍ର ହୋଇ-ଆସିଥିଲା । ରାମାୟଣ ଓ ମହାଭାରତକାଳୀନ ଯୁଦ୍ଧରେ ତେଣୁ ଏହି ଧନୁର୍ବାଣ ପ୍ରମୁଖ ଭୂମିକା ଗ୍ରହଣ କରିବା ସ୍ୱାଭାବିକ । ଏହି ପ୍ରାଧାନ୍ୟକୁ ମାନ୍ୟତା ଦେବାକୁ ଯାଇ ବୈଦିକ କାଳରୁ ସମର-ବିଦ୍ୟାକୁ ଗୋଟିଏ 'ବେଦ'ର ଆଖ୍ୟା ଦିଆହୋଇ-ଆସିଛି । ତାହା ହେଉଛି 'ଧନୁର୍ବେଦ' । ଅଥର୍ବବେଦର ପରିଶିଷ୍ଟସ୍ୱରୂପ ଧନୁର୍ବେଦ ବିଦ୍ୟମାନ । ଧନୁର୍ବେଦରେ ଧନୁ ଓ ଶର ସମେତ ଅନ୍ୟାନ୍ୟ ଅସ୍ତ୍ର-ଶସ୍ତ୍ରର ପ୍ରୟୋଗ ବିଷୟରେ ବର୍ଣ୍ଣନା ଥିଲେ ମଧ୍ୟ ଧନୁର୍ବାଣର ପ୍ରାଥମିକତା ଦୃଷ୍ଟିରୁ ଏହାର ନାମକରଣ ହୋଇଛି 'ଧନୁର୍ବେଦ' ଏବଂ ଏଥିଲିଖିତ ସମର-

ବିଦ୍ୟାର ନାମକରଣ ହୋଇଛି 'ଧନୁର୍ବିଦ୍ୟା' । ଆର୍ଯ୍ୟମାନଙ୍କର ଧନୁର୍ବାଣ ଥିଲା ଖୁବ୍ ଟାଣ । ଗୋଟିଏ ଧନୁର ଦୈର୍ଘ୍ୟ ହେଉଛି ଛଅ ଫୁଟ । ତାହାକୁ କାନ୍ଧରେ ପକାଇବାର ବ୍ୟବସ୍ଥା ଥିବାରୁ ବୀରମାନଙ୍କର ଉଚ୍ଚତା ଛଅଫୁଟରୁ ଅଧିକ ଥିବାର ଆଶା କରାଯାଏ । ଏଭଳି ଦୀର୍ଘକାୟ ବଳିଷ୍ଠ ବ୍ୟକ୍ତିମାନଙ୍କର ଦୀର୍ଘ ଧନୁରୁ ନିକ୍ଷେପିତ ଶରସମୂହ ଯେ କିଭଳି ଉତ୍କଟ ତଥା ମାରାତ୍ମକ ହୋଇଥିବ, ତାହା ସହଜରେ ଅନୁମେୟ । ଆଲେକ୍‌ଜାଣ୍ଡରଙ୍କ ଭାରତ-ଆକ୍ରମଣ ସମୟରେ ବି (ଖ୍ରୀ: ପୂ: ୩୨୬ ଏହି ଶରସମୂହର ମାରାତ୍ମକତା କିଛି କମ୍ ନଥିଲା । ଗ୍ରୀକ୍ ଐତିହାସିକ ଆରିଆନ୍ (Arrian) ତାଙ୍କ ପୁସ୍ତକ 'ଇଣ୍ଡିକା'ରେ (Indica) ଏ କଥା ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ :

> There is nothing that can resist an Indian archer's shot; neither breast-plate nor any stronger defence if such there be. (୨)

ଏହି ଧନୁର୍ବିଦ୍ୟାର ବଳିଷ୍ଠ ପରମ୍ପରା ରାମାୟଣ ଯୁଗରେ ମଧ୍ୟ ଥିଲା । ଆର୍ଯ୍ୟମାନଙ୍କୁ ଅନୁକରଣ କରି ରାକ୍ଷସମାନେ ମଧ୍ୟ ଏହି ବିଦ୍ୟାରେ ପାରଦର୍ଶିତା ହାସଲ କରିଥିଲେ । ତାହା ନହୋଇଥିଲେ ସେମାନେ ସମରାଙ୍ଗନରେ ଆର୍ଯ୍ୟ-ମାନଙ୍କର ସମ୍ମୁଖୀନ ହେବାରେ ଆଦୌ ସମର୍ଥ ହୋଇ ପାରିନଥାନ୍ତେ । ରାବଣ, ଇନ୍ଦ୍ରଜିତ, ଖର, ଦୂଷଣ ଆଦି ପ୍ରମୁଖ ରାକ୍ଷସବୀରମାନଙ୍କର ନାମ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ଧନୁର୍ବାଣ ପ୍ରତି ସେତେବେଳେ ଏଭଳି ମାନ୍ୟତା ଦିଆଯାଉଥିଲା ଯେ ସାଧାରଣତଃ ବୀର କହିଲେ ବୁଝାଯାଉଥିଲା ଯେ ଧନୁର୍ବାଣର ପ୍ରୟୋଗରେ କୁଶଳହସ୍ତ । ରାଜା ଜନକ ତାଙ୍କ କନ୍ୟା ସୀତାଙ୍କୁ ବିବାହ ଦେବାଲାଗି ଯେଉଁ ସର୍ତ୍ତ ରଖିଥିଲେ, ତାହା ହେଲା, ଯେଉଁ ବୀର ଶିବ-ଧନୁରେ ଗୁଣ ଚଢ଼ାଇ ପାରିବେ ସେହି ହିଁ ତାଙ୍କର ପାଣିଗ୍ରହଣର ଯୋଗ୍ୟ ପାତ୍ର ହେବେ । ଏହାକୁ ଧରାଯିବ ତାଙ୍କ ବୀର୍ଯ୍ୟର ନିଦର୍ଶନ । ରାମାୟଣରେ ତେଣୁ ଯଥାର୍ଥରେ ଏହାକୁ କୁହାଯାଇଛି ଜନକଙ୍କ 'ବୀର୍ଯ୍ୟ-ଶୁଳ୍କ' ବୋଲି ।

ବୈଦିକ ଆର୍ଯ୍ୟମାନଙ୍କ ବର୍ଣ୍ଣଧର୍ମ ଥିଲା ଏକ ବିଶିଷ୍ଟ ବିଭାବ ଯାହାର ଅନୁବର୍ତ୍ତୀ ହୋଇ ସେମାନେ ସକଳ କର୍ମରେ ପାରଦର୍ଶିତା ହାସଲ କରିବାକୁ ଉଦ୍ୟମ କରୁଥିଲେ । ଯେ ଯେଉଁଥିପାଇଁ ଯୋଗ୍ୟ ସେ ସେହି ବର୍ଣ୍ଣର ଅନୁବର୍ତ୍ତୀ ଥିଲା । ଏହି ଧନୁର୍ବିଦ୍ୟାକୁ ଅନୁସରଣ କରୁଥିବା ଗୋଷ୍ଠୀକୁ କୁହାଗଲା 'ରାଜନ୍ୟ' ବା 'କ୍ଷତ୍ରିୟ' । କାଳକ୍ରମେ ଏହି 'ବର୍ଣ୍ଣ' ବଂଶାନୁଗତ

ହୋଇଗଲା । ବ୍ରାହ୍ମଣର ପୁତ୍ର ହେଲା ବ୍ରାହ୍ମଣ; କ୍ଷତ୍ରିୟର ପୁତ୍ର ହେଲା କ୍ଷତ୍ରିୟ, ଇତ୍ୟାଦି । ରାମାୟଣକାଳ ବେଳକୁ ବଂଶାନୁଗତିକ ବର୍ଣ୍ଣଧର୍ମର ଚେରଟି ଖୁବ୍ ଗଭୀର ହୋଇଯାଇଥିଲା । ସେତେବେଳେ କ୍ଷତ୍ରିୟମାନେ ହିଁ ଧନୁର୍ବିଦ୍ୟାର ଅଧିକାରୀ ହୋଇପାରୁଥିଲେ । ଅବଶ୍ୟ ଗୋଟିଏ ବ୍ୟତିକ୍ରମ ଘଟେ ଭାର୍ଗବ ପରଶୁରାମଙ୍କ କ୍ଷେତ୍ରରେ ଯେ କି କ୍ଷତ୍ରିୟମାନଙ୍କ ପ୍ରତି ପ୍ରତିହିଂସାପରାୟଣ ହୋଇ ଧନୁର୍ବିଦ୍ୟାର ଅଧିକାରୀ ହୋଇଥିଲେ । ତାଙ୍କ ପରଶୁର ଆଘାତ ଥିଲା ଅଲଙ୍ଘନୀୟ । ଏହି ବ୍ୟତିକ୍ରମଟିକୁ ଛାଡ଼ିଦେଲେ ସବୁ କ୍ଷେତ୍ରରେ କ୍ଷତ୍ରିୟ-ମାନେ ହିଁ ଏହି ବିଦ୍ୟାକୁ ଅନୁସରଣ କରୁଥିବାର ପ୍ରମାଣ ଆମେ ରାମାୟଣରେ ପାଇଥାଉଁ । ରାଜପୁତ୍ରମାନଙ୍କୁ ଅନ୍ୟାନ୍ୟ ବିଦ୍ୟା ସହିତ ଧନୁର୍ବିଦ୍ୟା ସଂପର୍କରେ ବିଶେଷ ଭାବରେ ପ୍ରଶିକ୍ଷଣ ଦିଆଯାଉଥିଲା । ଦଶରଥଙ୍କ ଚାରିପୁତ୍ରଙ୍କୁ ଅନ୍ୟାନ୍ୟ ବିଦ୍ୟାସମେତ ଧନୁର୍ବିଦ୍ୟା ସଂପର୍କରେ କିପରି ପ୍ରଶିକ୍ଷଣ ଦିଆଯାଇଥିଲା, ତାହା ରାମାୟଣରେ ଅତି ରୋଚକ ଭାବରେ ବର୍ଣ୍ଣିତ । ବାଲ୍ମୀକି ମଧ୍ୟ ଲବ-କୁଶଙ୍କୁ ତାଙ୍କ ଆଶ୍ରମରେ ଅନ୍ୟାନ୍ୟ ବିଦ୍ୟାସମେତ ସେ ଦୁହିଁଙ୍କ ବର୍ଣ୍ଣାନୁଗତ ଧନୁର୍ବିଦ୍ୟା ସଂପର୍କରେ ଶିକ୍ଷା ପ୍ରଦାନ କରିଥିଲେ । ଧନୁର୍ବିଦ୍ୟାର ପ୍ରଶିକ୍ଷଣ ସଂପର୍କରେ ଏହି ସୁନ୍ଦର ପରମ୍ପରାଟିକୁ ଉଜ୍ଜୀବିତ କରି ରଖିବା ଫଳରେ ସେତେବେଳେ ରାମ ଲକ୍ଷ୍ମଣ ଆଦି ବହୁ ବୀର ଉଦ୍ଭବ ପାଉଥିଲେ । ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ରାମଙ୍କର ଖ୍ୟାତି ଏପରି ଥିଲା ଯେ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ନିଜକୁ ଶସ୍ତ୍ରଧାରୀ-ମାନଙ୍କ ମଧ୍ୟରେ ରାମ (ରାମଃ ଶସ୍ତ୍ରଭୃତାମହମ୍) ବୋଲି ଅଭିହିତ କରିଛନ୍ତି । (୩) ଏହି ବିଦ୍ୟାକୁ କିପରି ଯୁଦ୍ଧରେ ଉପଯୋଗ କରାଯାଉଥିଲା ତାହା ନିମ୍ନଲିଖିତ ଅନୁଚ୍ଛେଦସମୂହରେ ଆଲୋଚନା କରାଯାଉଛି ।

**ଯୁଦ୍ଧର କାରଣ :**

ରାମାୟଣରେ ବିଭିନ୍ନ ଯୁଦ୍ଧର ବର୍ଣ୍ଣନା ଅଛି । ବେଳେ ବେଳେ ଏହି ଯୁଦ୍ଧସମୂହ ଆର୍ଯ୍ୟ-ଆର୍ଯ୍ୟ ମଧ୍ୟରେ ଏବଂ ଆଉ ବେଳେ ବେଳେ ଆର୍ଯ୍ୟ-ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ସଂଘଟିତ ହୋଇଥିଲା । ପ୍ରତିଟି ଯୁଦ୍ଧର ପୃଷ୍ଠଭୂମିରେ କିଛି ନା କିଛି କାରଣ ଥିଲା । ବିନା କାରଣରେ କୌଣସିଠାରେ ରକ୍ତପାତ ହେଉନଥିଲା । ଏହି ସବୁ ଯୁଦ୍ଧର ଅନୁଧ୍ୟାନ ଫଳରେ ଆମେ ଜାଣିପାରିବା ଯେ ପ୍ରାୟ ନଅଗୋଟି କାରଣରୁ ସେତେବେଳେ ଯୁଦ୍ଧବିଗ୍ରହ ସଂଘଟିତ ହେଉଥିଲା । ସେହି କାରଣ-ସମୂହ ନିମ୍ନରେ କ୍ରମାନ୍ୱୟରେ ବର୍ଣ୍ଣନା କରାଯାଉଛି ।

ପ୍ରଥମ କାରଣ ହେଲା ସଂସ୍କୃତିର ବିସ୍ତାର । ପୂର୍ବରୁ କୁହାଯାଇଛି କିପରି ବୈଦିକ ଆର୍ଯ୍ୟମାନେ ସାରା ବିଶ୍ୱକୁ ଆର୍ଯ୍ୟାନ୍ୱିତ ବା ସୁସଂସ୍କୃତ କରିବାପାଇଁ

ଥିଲେ କଠିବଦ୍ଧ । ସେମାନଙ୍କ ସଂସ୍କୃତିକୁ କନ୍ତୁ ଆର୍ଯ୍ୟେତର ଗୋଷ୍ଠୀର ଲୋକେ ସହଜରେ ଗ୍ରହଣ କରୁନଥିଲେ । ସେମାନଙ୍କ (ଆର୍ଯ୍ୟେତରଙ୍କ) ସଂସ୍କୃତି ମଧ୍ୟ କେତେକ କ୍ଷେତ୍ରରେ ଉନ୍ନତତର ଥିଲା । ସେମାନେ ବେଳେ-ବେଳେ ଆର୍ଯ୍ୟ-ସଂସ୍କୃତିକୁ ଗ୍ରାସ କରିଯିବାପାଇଁ ଚେଷ୍ଟା କରୁଥିଲେ । ତେଣୁ ଆର୍ଯ୍ୟମାନଙ୍କୁ ଆବଶ୍ୟକ ସ୍ଥଳରେ ବଳପ୍ରୟୋଗ କରିବାକୁ ପଡ଼ୁଥିଲା । ଏହିପରି ଅନେକ ଯୁଦ୍ଧର ବର୍ଣ୍ଣନା ବେଦରେ ଅଛି । ଏହି ଯୁଦ୍ଧରେ ଇନ୍ଦ୍ର ଆର୍ଯ୍ୟମାନଙ୍କୁ କିପରି ବହୁ ଭାବରେ ସହାୟତା କରିଥିଲେ, ତାହାର ବର୍ଣ୍ଣନା ମଧ୍ୟ ଅଛି । ସେଥିପାଇଁ ତ ବୈଦିକ ଆର୍ଯ୍ୟମାନେ ଇନ୍ଦ୍ରଙ୍କୁ ଡ଼ାକୁଥିଲେ 'ପୁରଭିନ୍ତ' ବା 'ନଗର-ନଷ୍ଟକାରୀ' ବୋଲି । ଆର୍ଯ୍ୟେତର ଗୋଷ୍ଠୀର ନଗର ଏଠାରେ ପୁର ନାମରେ କଥିତ । ଏହି ସାଂସ୍କୃତିକ ସଂଘର୍ଷ ରାମାୟଣ ଯୁଗରେ ମଧ୍ୟ ଅବ୍ୟାହତ ଥିଲା । ମୁନିଋଷିମାନେ ଥିଲେ ଆର୍ଯ୍ୟସଂସ୍କୃତିର କର୍ଣ୍ଣଧାର ଏବଂ ସେମାନଙ୍କ ଆଶ୍ରମମାନ ଥିଲା ଏହାର ପ୍ରାଣକେନ୍ଦ୍ର । ରାକ୍ଷସ ଓ ଅସୁରମାନେ ସେମାନଙ୍କ ଆଶ୍ରମଗୁଡ଼ିକୁ ଧ୍ୱସ୍ତବିଧ୍ୱସ୍ତ କରିଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ୍ୟ ହତ୍ୟା କରୁଥିଲେ । ସେମାନେ ତେଣୁ ସୁବିଧାରେ ଯଜ୍ଞାଦି କର୍ମମାନ କରିପାରୁଥିଲେ । ରାମ ଏହି କାରଣରୁ ବିଶ୍ୱାମିତ୍ରଙ୍କୁ ସହାୟତା କରିବାଲାଗି ତାଡ଼କା ରାକ୍ଷସୀ ତଥା ଅନ୍ୟ ରାକ୍ଷସମାନଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲେ । ଠିକ୍ ଏହି କାରଣରୁ ହିଁ ଦଣ୍ଡକାରଣ୍ୟରେ ଥିବା ରାକ୍ଷସମାନଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ସାରା ଦେଶରେ ସାଂସ୍କୃତିକ ଐକ୍ୟର ସ୍ଥାପନ ଲାଗି ଚକ୍ରବର୍ତ୍ତୀ ରାଜା ଦିଗ୍‌ବିଜୟ କରି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକୁ ନିଜ ଅଧୀନସ୍ଥ କରିଦେଉଥିଲେ । ସି. ସି. ଚକ୍ରବର୍ତ୍ତୀ ମଧ୍ୟ ଅନୁରୂପ ମତ ଦେଇ କହନ୍ତି :

> The aspirant for paramount sovereignty was actuated by a longing to establish a common political organisation for the whole country corresponding to cultural unity which existed from very early times in the whole of India. (୪)

ଅତଏବ ଏହି ସାଂସ୍କୃତିକ କାରଣଟି ଥିଲା ସେତେବେଳର ଯୁଦ୍ଧର ସର୍ବପ୍ରଥମ ତଥା ବିଶିଷ୍ଟ କାରଣ ।

ଦ୍ୱିତୀୟ କାରଣ ହେଲା ଧର୍ମ ପ୍ରତି ଅତ୍ୟାଗ୍ରହ । ଆର୍ଯ୍ୟମାନେ ଧର୍ମ

ପ୍ରତି ଥିଲେ ଅତି ମାତ୍ରାରେ ପ୍ରତିଶ୍ରୁତିବଦ୍ଧ । ଦେଶରେ ଧର୍ମରକ୍ଷା କରିବା ଥିଲା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ । ସେମାନଙ୍କ ପାଇଁ ଆଜିକାଲି ଭଳି ଧର୍ମ ସଂକୀର୍ଣ୍ଣ ନଥିଲା । ଏହା ଥିଲା ଅତି ବ୍ୟାପକ । ଦୃଢ଼ ଭାବରେ ଯାହା ଧରିରଖେ ତାହାକୁ ସେମାନେ ଧର୍ମ ବୋଲି କହୁଥିଲେ । ସେମାନଙ୍କ 'ବର୍ଣ୍ଣବିଭାଗ' ଥିଲା 'ବର୍ଣ୍ଣଧର୍ମ' ନାମରେ ଖ୍ୟାତ; 'ଆଶ୍ରମ-ବିଭାଗ' ଥିଲା 'ଆଶ୍ରମ ଧର୍ମ' ନାମରେ ଖ୍ୟାତ । ଏପରିକି ରାଜାଙ୍କ କର୍ତ୍ତବ୍ୟକୁ କୁହାଯାଉଥିଲା 'ରାଜଧର୍ମ' । ଧର୍ମର ଅର୍ଥ ଏଭଳି ବ୍ୟାପକ ଥିଲା ଯେ ଏହା ଉପରେ କାହାର ହସ୍ତକ୍ଷେପକୁ ସେମାନେ ସହିପାରୁ ନଥିଲେ । ରାବଣ ଯେଉଁସବୁ ଧର୍ମବିରୋଧୀ କାର୍ଯ୍ୟ କରି ଚାଲିଥିଲା, ତାକୁ ସେଥିପାଇଁ ନଷ୍ଟ କରିଦେବା ସେମାନଙ୍କ ପାଇଁ ଥିଲା ଅପରିହାର୍ଯ୍ୟ । ବାଲୀଙ୍କର କର୍ମ ମଧ୍ୟ କିଛି କମ୍ ଦୂଷିତ ନଥିଲା । ସେ ନିଜ ସାନଭାଇଙ୍କ ସ୍ତ୍ରୀ ରୁମାଙ୍କୁ ଆଣି ସ୍ତ୍ରୀ କରି ରଖିଥିଲେ । ଏହି କାରଣରୁ ରାମ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ ।

ତୃତୀୟ କାରଣ ହେଲା ଅପହୃତା ନାରୀର ଉଦ୍ଧାର । ଏହାର ଏକ ବଡ଼ ଉଦାହରଣ ହେଉଛି ରାବଣଦ୍ୱାରା ସୀତାଙ୍କ ଅପହରଣ ଏବଂ ତାଙ୍କୁ ତା' କବଳରୁ ଉଦ୍ଧାର କରିବାପାଇଁ ରାମଙ୍କର ତା' ବିରୁଦ୍ଧରେ ଯୁଦ୍ଧଘୋଷଣା । ପତ୍ନୀଙ୍କୁ ସୁରକ୍ଷା ପ୍ରଦାନ ଥିଲା ଆର୍ଯ୍ୟଧର୍ମରେ ପତିଙ୍କର ଏକ ପରମ କର୍ତ୍ତବ୍ୟ । ସେ ପତ୍ନୀଙ୍କୁ ପାଳନ କରନ୍ତି ଏବଂ ରକ୍ଷା କରନ୍ତି ବୋଲି ତ ତାଙ୍କ ନାମ ପତି ବୋଲି ଖ୍ୟାତ । ସୀତାଙ୍କୁ ରାବଣ ଅଶୋକବନରେ ରାକ୍ଷସୀମାନଙ୍କ ଘେରରେ ବନ୍ଦିନୀ କରି ରଖାଇ ନାନା ପ୍ରକାର ଭୟ ତଥା ପ୍ରଲୋଭନ ଦେଖାଇଥିଲା । ଲଙ୍କାର ପାଟରାଣୀ ହେବାର ଗୌରବ ଯେ କେତେ ଭାଗ୍ୟର କଥା ତାହା ସେ ତାଙ୍କୁ ବୁଝାଇଥିଲା । କିନ୍ତୁ ସୀତାଙ୍କ ମନ ବିନ୍ଦୁଏ ମାତ୍ର ଟଳିନଥିଲା । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ତାଙ୍କ ପତି ରାମ ତାଙ୍କୁ ଦିନେ ନିଶ୍ଚିତ ଭାବରେ ରାବଣର କବଳରୁ ମୁକ୍ତ କରିବେ । ସେ ତେଣୁ ଅତି ଦୃଢ଼ତା ତଥା ଆତ୍ମବିଶ୍ୱାସର ସହିତ ରାବଣକୁ କହିଥିଲେ :

> ଇହ ଶୀଘ୍ରଂ ସୁପର୍ବାଣୋ ଜ୍ୱଳିତାସ୍ୟା ଇବୋରଗାଃ ।
> ଇଷବୋ ନିପତିଷ୍ୟନ୍ତି ରାମଲକ୍ଷ୍ମଣଲକ୍ଷିତାଃ ।। (୫)

ଅର୍ଥାତ୍ ଏଠାରେ ରାମ ଓ ଲକ୍ଷ୍ମଣଙ୍କ ନାମାଙ୍କିତ ଏବଂ ସୁନ୍ଦର ସୁନ୍ଦର ଗଣ୍ଠି ଥିବା ବାଣଗୁଡ଼ିକ ଜଳନ୍ତା ମୁହଁ ଥିବା ସାପମାନଙ୍କ ଭଳି ଶୀଘ୍ର ଆସି ପଡ଼ିବ । ଆଉ ଗୋଟିଏ ନିଦର୍ଶନ ହେଉଛି ବାଲୀଙ୍କର ସୁଗ୍ରୀବ-ପତ୍ନୀ ରୁମାଙ୍କୁ ବଳପୂର୍ବକ ନିଜର

କରି ରଖିବା । ସୁଗ୍ରୀବ ଏକାକୀ ବାଲୀଙ୍କୁ ପରାସ୍ତ କରି ନିଜ ପତ୍ନୀଙ୍କୁ ଉଦ୍ଧାର କରିବାରେ ଅବଶ୍ୟ ସମର୍ଥ ନଥିଲେ । ତେଣୁ ତାଙ୍କୁ ରାମଙ୍କ ସହିତ ବନ୍ଧୁତା ସ୍ଥାପନ କରି ବାଲୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡ଼ିଥିଲା ଏବଂ ଅଲକ୍ଷ୍ୟରେ ରାମଙ୍କ ବାଣ-ପ୍ରୟୋଗ ଫଳରେ ତାଙ୍କର (ବାଲୀଙ୍କର) ମୃତ୍ୟୁ ଘଟିଥିଲା ।

ଚତୁର୍ଥ କାରଣ ହେଲା ପ୍ରତିଶୋଧପରାୟଣତା । କୌଣସି ଗୋଟିଏ ଘଟନାପାଇଁ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ବେଳେ ବେଳେ ଯୁଦ୍ଧ କରିବାକୁ ପଡ଼ୁଥିଲା । ପରଶୁରାମଙ୍କୁ ଏଠାରେ ଏକ ନିଦର୍ଶନ ସ୍ୱରୂପ ନିଆଯାଇପାରେ । ଜଣେ କ୍ଷତ୍ରିୟ ରାଜା ତାଙ୍କ ପିତାଙ୍କୁ ହତ୍ୟା କରିଥିଲେ । ଏହି ହତ୍ୟାର ପ୍ରତିଶୋଧ ନେବାଲାଗି ସେ ଖାଲି ସେହି ରାଜାଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କରି ତାଙ୍କୁ ସବଂଶରେ ମାରି ନଥିଲେ; ସେ ମଧ୍ୟ ଅନେକ ବାର ସାରା ପୃଥିବୀକୁ କ୍ଷତ୍ରିୟହୀନ କରିଦେଇଥିଲେ । ଲକ୍ଷ୍ମଣଙ୍କ ଦ୍ୱାରା ସୂର୍ପଣଖାର ଦଣ୍ଡବିଧାନର ପ୍ରତିଶୋଧ ନେବାପାଇଁ ଖର-ଦୂଷଣ ରାମଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ରାବଣ ଦେବତାମାନଙ୍କୁ ବହୁ ଭାବରେ ଯାତନା ଦେଇଥିଲା ଏବଂ ଦେବକନ୍ୟାମାନଙ୍କୁ ଅପହରଣ କରିଥିଲା । ଏଥିନେଇ ଦେବରାଜ ଇନ୍ଦ୍ରଙ୍କର ତା' ପ୍ରତି ପ୍ରଚ୍ଛନ୍ନ ପ୍ରତିଶୋଧପରାୟଣତା ରହିଥିଲା । ସେ ଏହି ପ୍ରତିଶୋଧ ନେବାର ସୁଯୋଗ ପାଇଲେ ରାମ-ରାବଣ ଯୁଦ୍ଧ ସମୟରେ । ସେ ତେଣୁ ରାମଙ୍କୁ ସହାୟତା ଦେବାକୁ ଯାଇ ନିଜର ସାରଥି ମାତଲିଙ୍କ ସହିତ ନିଜ ରଥଟିକୁ ପଠାଇ ଦେଇଥିଲେ । ଏତଦ୍ୱାରା ଇନ୍ଦ୍ର ପ୍ରତ୍ୟକ୍ଷ ଭାବରେ ଏଥିରେ ଭାଗ ନେଇନଥିଲେ ମଧ୍ୟ ପରୋକ୍ଷ-ଭାବରେ ଭାଗ ନେଇଥିଲେ ।

ପଞ୍ଚମ କାରଣ ହେଲା ମିତ୍ରମାନଙ୍କୁ ସହାୟତା ପ୍ରଦାନ । ରାମ ବାଲୀଙ୍କ ସହିତ ଯୁଦ୍ଧ କରିଥିଲେ ମିତ୍ର ସୁଗ୍ରୀବଙ୍କୁ ସହାୟତା ଦେବା ଉଦ୍ଦେଶ୍ୟରେ । ସୁଗ୍ରୀବ ତାଙ୍କ ବାନରସେନାକୁ ଧରି ରାବଣ ସହିତ ଯୁଦ୍ଧ କରିବାପାଇଁ ଠିଆ ହୋଇଥିଲେ । ମିତ୍ର ରାମଙ୍କୁ ସହାୟତା ଦେବା ଉଦ୍ଦେଶ୍ୟରେ ରାଜା ଦଶରଥ ମଧ୍ୟ ଇନ୍ଦ୍ରଙ୍କୁ ସହାୟତା ଦେବାକୁ ଯାଇ ଶମ୍ବରାସୁର ସହିତ ଯୁଦ୍ଧ କରିଥିଲେ । ଏହା ଦେବାସୁର ଯୁଦ୍ଧ ନାମରେ ଖ୍ୟାତ ଯେଉଁଥିରେ ଦଶରଥ ମରଣାନ୍ତକ ଆଘାତ ପାଇଥିଲେ । ସେ କୈକେୟୀଙ୍କ ସେବାଶୁଶ୍ରୂଷାରେ ଆରୋଗ୍ୟଲାଭ କରିଥିଲେ ଏବଂ ପ୍ରତିଦାନରେ ତାଙ୍କୁ ଦୁଇଟି ବର ଦେବାପାଇଁ ପ୍ରତିଶ୍ରୁତ ହୋଇଥିଲେ ।

ଷଷ୍ଠ କାରଣ ହେଲା ସ୍ତ୍ରୀପ୍ରାପ୍ତି ଲାଗି । ଜନକନନ୍ଦିନୀ ସୀତା ଥିଲେ ଅତି ସୁନ୍ଦରୀ ଏବଂ ଅନେକ ରାଜା ତାଙ୍କର ପାଣିଗ୍ରହଣ କରିବାପାଇଁ ଆଶାୟୀ

ହୋଇ ରହିଥିଲେ । କିନ୍ତୁ ସେମାନଙ୍କର ଆଶା ଫଳବତୀ ହୋଇପାରିନଥିଲା; କାରଣ କନ୍ୟା-ଦାନ ଲାଗି ଜନକ ଯେଉଁ କଠିନ ସର୍ତ୍ତଟି ରଖିଥିଲେ ତାହା ସେମାନେ ପାଳନ କରି ପାରିନଥିଲେ । ଏହି ସର୍ତ୍ତଟି ହେଲା ସୀତାଙ୍କ ପାଣି-ଗ୍ରହଣର ଯୋଗ୍ୟ ପ୍ରାର୍ଥୀଙ୍କୁ ଶିବ-ଧନୁରେ ଗୁଣ ଚଢ଼ାଇବାକୁ ହେବ । ଶେଷକୁ ରାଜାମାନେ ଆଉ କିଛି ଉପାୟ ନଦେଖି ବଳତ୍କାରପୂର୍ବକ ସୀତାଙ୍କୁ ନେଇଯିବା ପାଇଁ ଚାହିଁଥିଲେ । ସେମାନେ ସମସ୍ତେ ମିଳିତ ହୋଇ ମିଥିଳାନଗରୀ ଉପରେ ଚଢ଼ାଉ କରିଥିଲେ । ଜନକ କିନ୍ତୁ ସ୍ୱୀୟ ଶକ୍ତିବଳରେ ଏହି ମିଳିତ ଆକ୍ରମଣକୁ ପଣ୍ଡ କରିଦେଇଥିଲେ । ସ୍ତ୍ରୀ ଲାଗି ଯୁଦ୍ଧ ଲାଗିବାର ଆଉ ଏକ ଉଦାହରଣ ଆମେ ପାଉ ବାଳୀ ଓ ଦୁନ୍ଦୁଭି ଅସୁର ଦୁହିଁଙ୍କଠାରେ । ସେ ଦୁହେଁ ଜଣେ ସ୍ତ୍ରୀଲାଗି ପରସ୍ପର ସହିତ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ଶେଷରେ ବାଳୀଙ୍କ ହାତରେ ଦୁନ୍ଦୁଭିର ପ୍ରାଣ ଗଲା ।

ସପ୍ତମ କାରଣ ହେଲା ଭୂମି ଓ ସୁନାରୂପା ଲାଳସା । ପ୍ରତ୍ୟେକ ରାଜା ନିଜ ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରିବାକୁ ଚାହୁଁଥିଲେ । ରାଜାଙ୍କ ପ୍ରଧାନ ଆୟ ଥିଲା ପ୍ରଜାଙ୍କ ଉତ୍ପନ୍ନ ଫସଲର ଛଅ ଭାଗରୁ ଭାଗେ; କାରଣ ସେ ଥିଲେ 'ଷଡ଼୍‌ଭାଗୀ' । ରାଜ୍ୟର ସୀମା ବଢ଼ିଲେ ଅଧିକ ଫସଲ ଉତ୍ପନ୍ନ ହେବ ଏବଂ ଅଧିକ ରାଜସ୍ୱ ମିଳିବ । ଏତଦ୍‌ବ୍ୟତୀତ ପ୍ରାକୃତିକ ସମ୍ପଦର ପରିମାଣ ବଢ଼ିବା ଫଳରେ ରାଜ୍ୟର ସେହି କ୍ଷେତ୍ରରୁ ଆୟ ମଧ୍ୟ ବଢ଼ିବ । ଯଦି ରାଜ୍ୟ ଧନୀ ଥାଏ ଏବଂ ସେଠାରେ ପ୍ରଚୁର ପରିମାଣରେ ସୁନା-ରୂପା ଥାଏ, ତା'ହେଲେ ବିଜିଗୀଷୁ ରାଜାଙ୍କ ପାଇଁ ତାହା ଖୁବ୍ ଲୋଭ ତଥା ଆକର୍ଷଣର କ୍ଷେତ୍ର ହେବ । ବାସ୍ତବିକ ଅଧିକାଂଶ ଯୁଦ୍ଧ ଏଇଥିପାଇଁ ହିଁ ସଂଘଟିତ ହେଉଥିଲା । ରାମ-ବାଣରେ ଭୂପତିତ ବାଳୀ ଯୁଦ୍ଧର କାରଣ ବିଷୟରେ କହିଛନ୍ତି :

ଭୂମିର୍ହିରଣ୍ୟଂ ରୂପଂ ଚ ବିଗ୍ରହେ କାରଣାନି ଚ । (୬)

ଅର୍ଥାତ୍ ଭୂମି ଓ ସୁନା-ରୂପା ହେଉଛି ଯୁଦ୍ଧର କାରଣ । ବାସ୍ତବିକ, ପୃଥିବୀ ବକ୍ଷରେ ଏପର୍ଯ୍ୟନ୍ତ ସଂଘଟିତ ହୋଇଥିବା ଯୁଦ୍ଧଗୁଡ଼ିକ କାରଣ ସମ୍ପର୍କରେ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ଅଧିକାଂଶ ଯୁଦ୍ଧର କାରଣ ହେଉଛି ଅର୍ଥନୈତିକ ।

ଅଷ୍ଟମ କାରଣ ହେଲା ସାର୍ବଭୌମ କ୍ଷମତାବିସ୍ତାର । ରାବଣର ଦିଗ୍‌ବିଜୟ-ଯାତ୍ରା ଏବଂ ବିଭିନ୍ନ ରାଜାଙ୍କ ସହିତ ତଥା ଦେବତାଙ୍କ ସହିତ ଯୁଦ୍ଧ ଓ ସେମାନଙ୍କ ଉପରେ ବିଜୟ-ପ୍ରାପ୍ତି ଆଦି ଘଟଣାମାନ ଅତି ରୋଚକ ଭାବରେ

ରାମାୟଣରେ (୧୪ଶ ସର୍ଗଠାରୁ ୩୪ଶ ସର୍ଗ ପର୍ଯ୍ୟନ୍ତ) ବର୍ଣ୍ଣିତ । ଏହା ଯୁଦ୍ଧର ଅଷ୍ଟମ କାରଣର ପର୍ଯ୍ୟାୟରେ ଯିବ । ଦିଗ୍‌ବିଜୟ-ଯାତ୍ରାରେ ନିଜର ବୀରତ୍ୱ-ପ୍ରଦର୍ଶନ ଲାଗି ଅପୂର୍ବ ସୁଯୋଗ ମିଳିଥାଏ ଏବଂ ଦିଗ୍‌ବିଜୟୀ ରାଜା ସମାଜରେ ବହୁ ମାନ୍ୟତାର ଅଧିକାରୀ ହୋଇଥାନ୍ତି । ଏହି ଉଦ୍ଦେଶ୍ୟରେ ହିଁ ପ୍ରାଚୀନ ଭାରତରେ ସାର୍ବଭୌମ ରାଜାମାନେ ସେମାନଙ୍କ ଚକ୍ରବର୍ତ୍ତୀପଦର ସାର୍ଥକତା ପ୍ରତିପାଦିତ କରିବାକୁ ଯାଇ ଏଭଳି ଯୁଦ୍ଧମାନ କରୁଥିଲେ । ଦୁନ୍ଦୁଭି ରାକ୍ଷସ ମଧ୍ୟ ରାବଣ ଭଳି ଦିଗ୍‌ବିଜୟ ଯାତ୍ରାରେ ବାହାରିଥିଲା ଏବଂ ବାଲୀଙ୍କଦ୍ୱାରା ନିହତ ନହେବା ପର୍ଯ୍ୟନ୍ତ ତା'ର ଶକ୍ତି ଓ କ୍ଷମତା ଅପ୍ରତିହତ ରହିଥିଲା । ରାମାଶ୍ରୟ ଶର୍ମା ମଧ୍ୟ ଏହି ମତକୁ ସମର୍ଥନ କରିଥାନ୍ତି । ତାଙ୍କ ବକ୍ତବ୍ୟ ଅନୁସାରେ :

> Display of heroism and the spirit of adventure have often led kings and knights to wars in ancient India, sometimes of great magnitude. In the Ramayana the adventures of Dundubhi and the exploits of Ravana are illustrative of this very spirit. The ideal of digvijay also has the same spirit at its root. (୭)

ରାମ ଅବଶ୍ୟ ଅଶ୍ୱମେଧ ଯଜ୍ଞ କରିଥିଲେ ଏବଂ ତାଙ୍କର ଯଜ୍ଞାଶ୍ୱଟି ବିଭିନ୍ନ ରାଜ୍ୟ ମଧ୍ୟ ଦେଇ ଯାଇଥିଲା । କିନ୍ତୁ କୌଣସି ରାଜା ତାହାର ପ୍ରତିରୋଧ କରିନଥିଲେ । ତେଣୁ ରାମଙ୍କ ସୈନ୍ୟମାନଙ୍କୁ ସେଥିପାଇଁ ଯୁଦ୍ଧ କରିବାକୁ ପଡ଼ିନଥିଲା ।

ଦଶମ ଓ ଶେଷ କାରଣଟି ହେଲା ପଡ଼ୋଶୀ କୁଶାସକ ରାଜାମାନଙ୍କୁ ଦଣ୍ଡ ଦେବା ସହିତ ସମ୍ପର୍କିତ । ମଥୁରାର ରାଜା ଲବଣାସୁର ଥିଲା ଭାରି ଅତ୍ୟାଚାରୀ । ସେ ରାଜଧର୍ମକୁ ପାଳୁନଥିଲା ଏବଂ ପ୍ରଜାମାନଙ୍କୁ ପୀଡ଼ା ଦେଉଥିଲା । ମୁନି ଋଷିମାନେ ମଧ୍ୟ ତା'ର ଅତ୍ୟାଚାରରୁ ବାଦ ପଡ଼ିନଥିଲେ । ସେମାନେ ସମସ୍ତେ ଆସି ରାମଙ୍କ ଆଗରେ ଲବଣାସୁର ବିରୁଦ୍ଧରେ ଅଭିଯୋଗ କରିଥିଲେ । ରାମ ଲବଣାସୁରକୁ ଦଣ୍ଡ ଦେବା ଉଦ୍ଦେଶ୍ୟରେ ଶତ୍ରୁଘ୍ନଙ୍କୁ ସେନାବଳ ସହିତ ମଥୁରାକୁ ପଠାଇଥିଲେ । ଶତ୍ରୁଘ୍ନଙ୍କ ହସ୍ତରେ ଲବଣାସୁର ନିହତ ହୋଇଥିଲା ଏବଂ ତା'ର ରାଜ୍ୟ କୋଶଳରାଜ୍ୟ ସହିତ ସାମିଲ ହୋଇଯାଇଥିଲା । ରାମଙ୍କ ଆଦେଶରେ ଶତ୍ରୁଘ୍ନ ସେଠାକାର ଶାସନଭାର ଗ୍ରହଣ କରିଥିଲେ ।

## ଯୁଦ୍ଧର ଶିଷ୍ଟାଗୃର :

ପୂର୍ବରୁ କୁହାଯାଇଛି ଯେ ରାମାୟଣ ମୌଳିକ ଭାବରେ ଏକ ଯୁଦ୍ଧ ମହାକାବ୍ୟ । ଏଥିରେ ଅନେକଗୁଡ଼ିଏ ଯୁଦ୍ଧ ସମ୍ପର୍କରେ ଉଲ୍ଲେଖ ଥିଲେ ହେଁ ମୁଖ୍ୟ ଯୁଦ୍ଧ ହେଉଛି ରାମ-ରାବଣ ଯୁଦ୍ଧ । ଗୋଟିଏ ପକ୍ଷରେ ରାମ ଓ ବାନର ସେନାବାହିନୀ ଏବଂ ଅନ୍ୟ ପକ୍ଷରେ ରାବଣ ଓ ରାକ୍ଷସ ସେନାବାହିନୀ । ଉଭୟ ପକ୍ଷର ଯୁଦ୍ଧ ପଦ୍ଧତି କିନ୍ତୁ ଥିଲା ଭିନ୍ନ ଭିନ୍ନ । ରାମଙ୍କ ପକ୍ଷ 'ଧର୍ମଯୁଦ୍ଧ' ଉପରେ ବିଶ୍ୱାସ ରଖିଥିଲାବେଳେ ରାବଣର ପକ୍ଷ କୂଟ ଯୁଦ୍ଧ ଉପରେ ବିଶ୍ୱାସ ରଖିଥିଲା । 'କ୍ଷାତ୍ରଧର୍ମ' ଅନୁଯାୟୀ ଯୁଦ୍ଧ କରିବାକୁ ହେବ ବୋଲି ରାମାୟଣ (୭ । ୭ । ୩) ଦୃଢ଼ତାର ସହିତ କହିଥାଏ । ଏହି ଧର୍ମରେ ଯୁଦ୍ଧପାଇଁ ଏକ ବିଧିବଦ୍ଧ ଶିଷ୍ଟାଗୃର ପ୍ରଣୀତ ହୋଇଥିଲା । ଯୋଦ୍ଧାମାନେ ଏହାକୁ ମାନି ଚଳିବାକୁ ବାଧ୍ୟ ହେଉଥିଲେ । ଏ ଯୁଦ୍ଧ ଥିଲା ପ୍ରକାଶ୍ୟ ଯୁଦ୍ଧ ଯେଉଁଥିରେ ଯୋଦ୍ଧା ଓ ପ୍ରତିଯୋଦ୍ଧା ପରସ୍ପରକୁ ଜାଣିପାରୁଥିଲେ । ଲୁଚି ଛପି ଲଢ଼ିବାର ଅବକାଶ ଏଥିରେ ନଥିଲା । ଆର୍ଯ୍ୟମାନେ ଏହାକୁ କହୁଥିଲେ 'ଧର୍ମଯୁଦ୍ଧ' ବୋଲି । ଲୁଚି ଛପି କରି ଯୁଦ୍ଧ କରିବା ଥିଲା ରାକ୍ଷସମାନଙ୍କ ନୀତି । ଏହା ଥିଲା ଆର୍ଯ୍ୟମାନଙ୍କ ପାଇଁ ଏକ ନିନ୍ଦନୀୟ ଯୁଦ୍ଧ । ସେମାନେ ଏହାକୁ 'କୂଟଯୁଦ୍ଧ' ବୋଲି କହୁଥିଲେ । ରାକ୍ଷସମାନେ ଯେ 'କୂଟଯୋଦ୍ଧା' ଏସମ୍ପର୍କରେ ବହୁଳ ଉଲ୍ଲେଖ ରାମାୟଣରେ ଦେଖାଯାଏ । ଏଠାରେ ଦଶରଥଙ୍କ କଣ୍ଠରୁ ନିଃସୃତ ହୋଇଥିବା ଗୋଟିଏ ପଙ୍କ୍ତିକୁ ଉଦାହରଣ ସ୍ୱରୂପ ନିଆଯାଇପାରେ । ଋଷି ବିଶ୍ୱାମିତ୍ର ଯେତେବେଳେ ଦଶରଥଙ୍କ ପାଖକୁ ଆସି ରାକ୍ଷସମାନଙ୍କ କବଳରୁ ତାଙ୍କ ଯଜ୍ଞ ରକ୍ଷାର ଦାୟିତ୍ୱ ରାମ ବହନ କରନ୍ତୁ ବୋଲି ଗୃହିଁଲେ, ସେତେବେଳେ ଦଶରଥ ଖୁବ୍ ଡରିଗଲେ । କାରଣ ଏକେ ତ ରାମଙ୍କର ବୟସ କମ୍ ଏବଂ ଦ୍ୱିତୀୟରେ ଯୁଦ୍ଧ କରିବାରେ ରାକ୍ଷସମାନେ ହେଉଛନ୍ତି ମାୟାବୀ; ସେମାନେ କୂଟ ଯୁଦ୍ଧରେ ଧୁରନ୍ଧର । ତାଙ୍କ କଣ୍ଠର ବାଣୀ ହେଲା :

ନ ଗୃସୌ ରକ୍ଷସାଂ ଯୋଗ୍ୟଃ କୂଟଯୁଦ୍ଧା ହି ରାକ୍ଷସାଃ । (୮)

ଅର୍ଥାତ୍ ସେ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାପାଇଁ ଅଯୋଗ୍ୟ । ରାକ୍ଷସ-ମାନେ କପଟଯୁଦ୍ଧ କରିଥାନ୍ତି । ରାବଣ ଓ ତା'ର ପୁତ୍ର ଇନ୍ଦ୍ରଜିତ ଏଭଳି କୂଟଯୁଦ୍ଧ କରିବାରେ ଥିଲେ ଧୁରନ୍ଧର । ଇନ୍ଦ୍ରଜିତ ଶିବଙ୍କୁ ସନ୍ତୁଷ୍ଟ କରି ତାଙ୍କ ପ୍ରସାଦରୁ 'ତାମସୀ-ମାୟା'ର ଅଧିକାରୀ ହୋଇପାରିଥିଲା । ଏହା ଫଳରେ ସେ ଲଙ୍କାଯୁଦ୍ଧରେ ଆକାଶରେ ଲୁଚିରହି ଯୁଦ୍ଧ କରିପାରୁଥିଲା । ସେ ଶତ୍ରୁ ପକ୍ଷକୁ ଭଣ୍ଡିଦେବାକୁ ଯାଇ ମାୟା ସୀତାଙ୍କ ମୁଣ୍ଡ କାଟି ଦେଇଥିଲା । ସେ-

ଦେବତାମାନଙ୍କ ବିରୁଦ୍ଧରେ ଯୁଦ୍ଧ କଲାବେଳେ ମଧ୍ଯ ମାୟାର ପ୍ରୟୋଗ କରିଥିଲେ, ଯାହାଫଳରେ କି ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ହୋଇଯାଇଥିଲା । କଳେ, ବଳେ କୌଶଳେ ଯୁଦ୍ଧରେ ବିଜୟ ହାସଲ କରିବା ଥିଲା ରାକ୍ଷସମାନଙ୍କର ଲକ୍ଷ୍ୟ । ଯୁଦ୍ଧର ଶିଷ୍ଟାଚାର ପ୍ରତି ସେମାନଙ୍କର ଆଦୌ ମାନ୍ୟତା ନଥିଲା । ଅତଏବ, ଆର୍ଯ୍ୟମାନଙ୍କପାଇଁ ଧର୍ମଯୁଦ୍ଧ ହିଁ ଥିଲା ଯୁଦ୍ଧର ଶିଷ୍ଟାଚାର । ଧର୍ମଯୁଦ୍ଧର ପ୍ରଥମ ଶିଷ୍ଟାଚାର ତେଣୁ ଥିଲା ପ୍ରକାଶ୍ୟ ଭାବରେ ବିନା କପଟତା ରଖି ଯୁଦ୍ଧ କରିବା । ବାସ୍ତବିକ ଭାରତୀୟମାନଙ୍କ ପାଇଁ ମଧ୍ୟଯୁଗ ପର୍ଯ୍ୟନ୍ତ ବି ଯୁଦ୍ଧର ଏକ ମୂଳନୀତି ଥିଲା କପଟଯୁଦ୍ଧ ନକରି ଧର୍ମଯୁଦ୍ଧ କରିବା । ଯାହା ଧର୍ମଯୁଦ୍ଧ ନୁହେଁ ତାହା ପଶୁମାନଙ୍କର ଯୁଦ୍ଧ ସହିତ ତୁଳନୀୟ (ଶୌର୍ଯ୍ୟଂ ଶ୍ୱାପଦଚେଷ୍ଟିତମ୍) ବୋଲି କହି କାଳିଦାସ ତାହାର ନିନ୍ଦା କରିଛନ୍ତି । (୯)

ଯୁଦ୍ଧର ଆଉ ଏକ ବିଶିଷ୍ଟ ଶିଷ୍ଟାଚାର ହେଲା ଯୁଦ୍ଧ ସହିତ ସମ୍ପୃକ୍ତ ନଥିବା ବ୍ୟକ୍ତିମାନଙ୍କର କ୍ଷତି ନଘଟାଇବା । ପ୍ରାଚୀନ ଭାରତରେ ଅଗଣିତ ଯୁଦ୍ଧ ଘଟିଯାଇଥିଲା । କିନ୍ତୁ ସେଥିରେ ସାଧାରଣ ଲୋକଙ୍କ ଧନଜୀବନ ପ୍ରତି କିଛି ହିଁ ବିପଦ ନଥିଲା । କୃଷିଜୀବୀ ତା'ର କୃଷିକର୍ମ କରି ଚାଲିଥିଲା; ଶ୍ରମଜୀବୀ ତା'ର ଶ୍ରମରେ ରତ ଥିଲା; ଶିଳ୍ପୀ-କାରିଗରମାନେ ସେମାନଙ୍କ ସ୍ୱ ସ୍ୱ କର୍ମରେ ରତ ଥିଲେ । ରାଜ୍ୟର ଅର୍ଥନୈତିକ କାର୍ଯ୍ୟକଳାପ କିଛି ମାତ୍ରାରେ ବ୍ୟାହତ ହେଉନଥିଲା । ପି. ସି. ଚକ୍ରବର୍ତ୍ତୀ ଏହି ମତର ପରିପୋଷଣ କରି କହନ୍ତି :

> Normally war in ancient India hardly caused any disturbance to the social equilibrium or the economic life of the people at large. Occasions are not rare, when battle was going on with full vigour, the neighbouring cultivators were busy in ploughing, gathering in their crops, prunning the trees or reaping the harvest. (୧୦)

ବଶିଷ୍ଠ ବିଶ୍ୱାମିତ୍ରଙ୍କ ମଧ୍ୟରେ ଲାଗିଥିବା ସଂଘର୍ଷରେ ବିଶ୍ୱାମିତ୍ର ବଶିଷ୍ଠଙ୍କ ସାରା ଆଶ୍ରମକୁ ନଷ୍ଟ କରିଦେଇଥିଲେ । ଏଥିରେ ଆଶ୍ରମବାସୀଙ୍କର ପ୍ରଭୂତ କ୍ଷତି ଘଟିଥିଲା । ନିରସ୍ତ୍ର ଆଶ୍ରମବାସୀମାନଙ୍କ ଉପରେ ହୋଇଥିବା ଏଭଳି ଆକ୍ରମଣକୁ ବଶିଷ୍ଠ ବିବେଚନାରହିତ ବୋଲି କହିଥିଲେ । ଅନ୍ଧମୁନିଙ୍କ ପୁତ୍ରଙ୍କ ଉପରେ ଯେତେବେଳେ ଦଶରଥଙ୍କ ବାଣ ଆସି ବାଜିଲା ସେତେବେଳେ ସେ ( ମୁନିପୁତ୍ର)

ବିସ୍ମିତ ହୋଇଯାଇଥିଲେ । ସେ ମନେ ମନେ ଭାବିବାକୁ ଲାଗିଲେ, "ମୁଁ ତ ନିରୀହ ନିରସ୍ତ୍ର ଫଳାହାରୀ ମନୁଷ୍ୟ ମାତ୍ର । ମୋ' ପ୍ରତି କିଏ ବା କାହିଁକି ବାଣ-ପ୍ରୟୋଗ କଲା ?"

ଆଉ ଏକ ସୈନିକ-ଶିଷ୍ଟାଚାର ହେଲା, ଯଦି ଦୁଇଜଣ ଯୋଦ୍ଧା ପରସ୍ପର ସହିତ ଲଢ଼ୁଛନ୍ତି, ତେବେ ତୃତୀୟ ଜଣେ ଆସି ସେହି ଯୁଦ୍ଧରେ ଯୋଗ ଦେବା ଅନୁଚିତ । ରାବଣ ନୀଳ ସହିତ ଯୁଦ୍ଧ କରି ତାଙ୍କୁ ଖୁବ୍ କ୍ଷତ-ବିକ୍ଷତ ଓ ଅସ୍ତବ୍ୟସ୍ତ କରିଦେଇଥିଲା । ନୀଳ କ୍ରମଶଃ ମ୍ରିୟମାଣ ହୋଇ ଆସୁଥିବାର ହନୁମାନ୍ ଦେଖିଲେ । କିନ୍ତୁ ସୈନିକ-ଶିଷ୍ଟାଚାରକୁ ରକ୍ଷା କରିବାକୁ ଯାଇ ସେ ନୀଳଙ୍କୁ ସହାୟତା ଦେବାପାଇଁ ଆସିପାରିଲେ ନାହିଁ । ସେତେବେଳେ ସେ ରାବଣଙ୍କୁ କହିଥିଲେ :

ଅନ୍ୟେନ ଯୁଧ୍ୟମାନସ୍ୟ ନ ଯୁକ୍ତମଭିଧାବନମ୍ । (୧୧)

ଅର୍ଥାତ୍ (ହେ ରାବଣ !) ତୁମେ ଅନ୍ୟ ସହିତ ଲଢ଼ୁଛ । ତେଣୁ ମୋ' ପକ୍ଷରେ ତୁମକୁ ପିଟ୍ଟ କରିବା ଠିକଣା କଥା ହେବ ନାହିଁ ।

ଯୁଦ୍ଧର ଆଉ ଏକ ଶିଷ୍ଟାଚାର ହେଲା, ଶରଣାଗତ ବ୍ୟକ୍ତିଙ୍କୁ ଶରଣ ଓ ଅଭୟ ଦେବା । ସେ ଶତ୍ରୁପକ୍ଷର ବ୍ୟକ୍ତି ହୋଇଥିଲେ ମଧ୍ୟ ତାଙ୍କୁ ଶରଣ ଦେବାକୁ ହେବ । ସ୍ୱୟଂ ଶତ୍ରୁ ଆସି ଶରଣ ପଶିଲେ ମଧ୍ୟ ସେ ଶରଣର ଯୋଗ୍ୟ । ରାବଣର ଭାଇ ବିଭୀଷଣ ରାମଙ୍କ ଶରଣ ପଶିଲା ବେଳେ ଅଙ୍ଗଦ, ହନୁମାନ୍ ଆଦି ବାନର ବୀରମାନେ ତାଙ୍କୁ ଶରଣ ନଦେବା ପାଇଁ ରାମଙ୍କୁ ବାରମ୍ବାର ପ୍ରବର୍ତ୍ତାଇଥିଲେ । ଶତ୍ରୁପକ୍ଷର ଏପରି ଜଣେ ନିକଟ ସମ୍ପର୍କୀୟ ବ୍ୟକ୍ତିଙ୍କ ଉପରେ ବିଶ୍ୱାସ ଓ ଆସ୍ଥା ସ୍ଥାପନ କରିବା ଉଚିତ ହେବନାହିଁ ବୋଲି ସେମାନେ ଦର୍ଶାଇଥିଲେ । ସୁଗ୍ରୀବ ଓ ଲକ୍ଷ୍ମଣ ଆଉ ଟିକିଏ ଆଗେଇ ଯାଇ କହିଥିଲେ ଯେ ରାବଣ ଜାଣିଶୁଣି ବିଭୀଷଣଙ୍କୁ ଗୁପ୍ତଚର ହିସାବରେ ପଠାଇଛି । କିନ୍ତୁ ଧର୍ମଯୋଦ୍ଧା ଶରଣବତ୍ସଳ ରାମ ତାହା ଶୁଣିନଥିଲେ । ସେ ବିଭୀଷଣଙ୍କୁ ଶରଣ ଦେଇଥିଲେ । ଏ ସମ୍ପର୍କରେ ସେ କହିଥିଲେ :

ମିତ୍ରଭାବେନ ସମ୍ପ୍ରାପ୍ତଂ ନ ତ୍ୟଜେୟଂ କଥଞ୍ଚନ ।<br>
ଦୋଷୋ ଯଦ୍ୟପି ତସ୍ୟ ସ୍ୟାତ୍ ସତାମେତଦଗର୍ହିତମ୍ ।। (୧୨)

ଅର୍ଥାତ୍ ମୋ' ପାଖକୁ ମିତ୍ରଭାବ ନେଇ ଯେ ଆସିଛନ୍ତି, ମୁଁ ତାଙ୍କୁ କ୍ଷମା ଛାଡ଼ିପାରିବି ନାହିଁ । ହୁଏତ ସ୍ୟାଙ୍କ ପାଖରେ କିଛି ଦୋଷ ଥାଇପାରେ । ପରନ୍ତୁ ଦୋଷୀକୁ ଆଶ୍ରୟ ଦେବା ବି ସତ୍‌ପୁରୁଷମାନଙ୍କ ପକ୍ଷରେ ନିନ୍ଦନୀୟ କର୍ମ ନୁହେଁ ।

ସ୍ତ୍ରୀମାନଙ୍କ ମେଳରେ ଥିବା ପୁରୁଷ ଉପରେ ଆକ୍ରମଣ କରିବା ଆଉ ଏକ ଶିଷ୍ଟାଚାରବିରୋଧୀ କାର୍ଯ୍ୟ ଥିଲା । ଦିଗ୍‌ବିଜୟ-ଯାତ୍ରା ଅବସରରେ ରାବଣ ହୈହୟରାଜ ସହସ୍ରାର୍ଜୁନଙ୍କୁ ଯୁଦ୍ଧପାଇଁ ଆହ୍ୱାନ କରିବାକୁ ଚାହିଁଥିଲେ । ସେତେବେଳେ ସହସ୍ରାର୍ଜୁନ ତାଙ୍କ ସ୍ତ୍ରୀମାନଙ୍କ ସହିତ ନର୍ମଦାଜଳରେ କ୍ରୀଡ଼ାରତ ଥିଲେ । ତେଣୁ ତାଙ୍କ ମନ୍ତ୍ରୀମାନେ ରାବଣଙ୍କୁ ଅନ୍ତତଃ ତାଙ୍କର କ୍ରୀଡ଼ା-ପରିସମାପ୍ତି ପର୍ଯ୍ୟନ୍ତ ଅପେକ୍ଷା କରିବାପାଇଁ ଅନୁରୋଧ କରିଥିଲେ । ସେମାନେ ତା'ଙ୍କୁ ଯୁଦ୍ଧର ଶିଷ୍ଟାଚାର ସମ୍ପର୍କରେ ବୁଝାଇବାକୁ ଯାଇ କହିଥିଲେ :

> ଯୁଦ୍ଧସ୍ୟ କାଲୋ ବିଜ୍ଞାତଃ ସାଧୁ ଭୋ ସାଧୁ ରାବଣ ।
> ଯଃ କ୍ଷୀବଂ ସ୍ତ୍ରୀଗତଂ ଯୋଦ୍ଧୁମୁତ୍ସହସେ ନୃପମ୍ ॥ (୧୩)

ଅର୍ଥାତ୍ ବାଃ ରେ ରାବଣ ! ବାଃ ! ତୁମର ଯୁଦ୍ଧର ସମସ୍ତ ବିଷୟରେ ତ ଠିକଣା ଜ୍ଞାନ ଅଛି । ଆମ ରାଜା ଯେତେବେଳେ ମଦମତ୍ତ ହୋଇ ସ୍ତ୍ରୀମାନଙ୍କ ମଧ୍ୟରେ କ୍ରୀଡ଼ାରତ ଅଛନ୍ତି, ଏହି ସମୟରେ ତୁମେ ତାଙ୍କ ସହିତ ଯୁଦ୍ଧ କରିବାପାଇଁ ଉତ୍ସାହ ପ୍ରକଟିତ କରୁଛ । ରାବଣ ଅବଶ୍ୟ ସେମାନଙ୍କ ଉପଦେଶ ଶୁଣିନଥିଲା ଏବଂ ସେମାନଙ୍କୁ ହତ୍ୟା କରି ସହସ୍ରାର୍ଜୁନଙ୍କୁ ଯୁଦ୍ଧପାଇଁ ଆହ୍ୱାନ ଦେଇଥିଲା । ଏହାର ପରିଣତି ସ୍ୱରୂପ ସେ ନିଜେ ପରାଭବ ପାଇଥିଲା ।

ଆଉ ଗୋଟିଏ ଶିଷ୍ଟାଚାର ହେଲା, ଯୋଦ୍ଧାମାନଙ୍କୁ ସମାନ ଭାବରେ ସଜ୍ଜିତ ଥାଇ ପରସ୍ପର ସହିତ ଯୁଦ୍ଧ କରିବା । ଜଣେ ଖଡ଼୍‌ଗଧାରୀଙ୍କୁ ଆଉ ଜଣେ ଖଡ଼୍‌ଗଧାରୀଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ୁଥିଲା; ଜଣେ ରଥୀଙ୍କୁ ଆଉ ଜଣେ ରଥୀଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ୁଥିଲା ଇତ୍ୟାଦି । ରଥାସୀନ ରାବଣ ସହିତ ରଥାସୀନ ରାମଙ୍କର ଯୁଦ୍ଧ ଅସମୀଚୀନ ବୋଧ ହେବାରୁ ଇନ୍ଦ୍ର ତାଙ୍କୁ ନିଜ ରଥ ଓ ସାରଥି ଦେଇଥିବା କଥା ରାମାୟଣରେ ଉଲ୍ଲିଖିତ ।

ପୁଣି ଏକ ଶିଷ୍ଟାଚାର ଥିଲା ନିରସ୍ତ୍ର ଶତ୍ରୁ ଉପରେ ଆଘାତ ନକରିବା ଏବଂ ତା'ଙ୍କୁ ସଶସ୍ତ୍ର ହୋଇ ଆସିବାପାଇଁ ପୁନର୍ବାର ସୁଯୋଗ ଦେବା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୬।୫୯।୧୪୧-୧୦୨) ରାବଣ ଲଢ଼ି ଲଢ଼ି ଖୁବ୍ କ୍ଳାନ୍ତ ହୋଇ ଯାଇଥିଲା । ରାମ ତା'ର ମୁକୁଟ ଓ ଧନୁକୁ କାଟି ଦେଇ-ଥିଲେ । ଏପରି ଅବସ୍ଥାରେ ସେ ରାବଣଙ୍କୁ ଖୁବ୍ ସହଜରେ ମାରିଦେଇ-ପାରିଥାନ୍ତେ । କିନ୍ତୁ ସେ ତାହା କରିନଥିଲେ । ଅନ୍ୟ ପକ୍ଷରେ ସେ ରାବଣକୁ ନୂଆ ରଥ ଓ ନୂଆ ଧନୁ ଧରି ପରେ ଆସି ଯୁଦ୍ଧ କରିବାପାଇଁ ସୁଯୋଗ

ଦେଇଥିଲେ । 'ମୁଁ ଶରଘାତରେ ତୁମର ପ୍ରାଣ ନେଉନାହିଁ' (ନ ତ୍ୱାଂ ଶରୈର୍ମୃ-ଧ୍ୟୁବଶଂ ନୟାମି) ବୋଲି ସଦୟ ଭାବରେ କହି ସେ ତା'କୁ ଛାଡ଼ି ଦେଇଥିଲେ ।

ନିରପେକ୍ଷ ରାଜାଙ୍କୁ ସେତେବେଳେ କୁହାଯାଉଥିଲା 'ଉଦାସୀନ' ବା 'ତଟସ୍ଥ' । ଏଭଳି ଉଦାସୀନ ରାଜାଙ୍କ ବିରୁଦ୍ଧରେ ଅସ୍ତ୍ର ଉଠାଇବା ଥିଲା ସମଗ୍ର ଶିଷ୍ଟାଚାରର ବିରୋଧୀ । ବାଲୀଙ୍କର ରାମଙ୍କ ସହିତ ଶତ୍ରୁତା ନଥିଲା । ରାମଙ୍କ ଦୃଷ୍ଟିରୁ ବିଚାର କରିବାକୁ ହେଲେ ସେ ଥିଲେ ଜଣେ ଉଦାସୀନ ରାଜା । କିନ୍ତୁ ରାମ ତାଙ୍କ ପ୍ରତି ଅଲକ୍ଷ୍ୟରେ ବାଣପ୍ରହାର କରିଥିଲେ । ଏହି ଯୁଦ୍ଧ ପାଇଁ ସେ ବାଲୀଙ୍କୁ ଆଦୌ ପୂର୍ବସୂଚନା ଦେଇନଥିଲେ । ବାଲୀ ତାଙ୍କର ଏହି କର୍ମକୁ ସମର-ଶିଷ୍ଟାଚାରର ବିରୋଧୀ ବୋଲି କହି ସମାଲୋଚନା କରିଥିବା କଥା ରାମାୟଣରେ (୪।୧୭।୧୭,୨୭) ବର୍ଣ୍ଣିତ । ରାମ ଅଥଚ ଲଙ୍କାଗଡ଼ ଉପରେ ଆକ୍ରମଣ କରିବା ପୂର୍ବରୁ ଅଙ୍ଗଦଙ୍କ ହସ୍ତରେ ରାବଣପାଇଁ ଏହାର ପୂର୍ବ-ସୂଚନା ଦେବାକୁ ଭୁଲିନଥିଲେ ।

ଯୁଦ୍ଧର ସମୟ ଥିଲା ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ । ଆର୍ଯ୍ୟମାନେ ରାତ୍ରି-ଯୁଦ୍ଧକୁ ରାକ୍ଷସ-ଯୁଦ୍ଧ ବୋଲି କହି ତାହାର ନିନ୍ଦା କରୁଥିଲେ । କିନ୍ତୁ କୂଟଯୋଧୀ ରାକ୍ଷସମାନେ ଏହି ନିୟମକୁ ମାନୁନଥିଲେ । ଲଙ୍କା ଯୁଦ୍ଧରେ ରାବଣ ଓ ଇନ୍ଦ୍ରଜିତ୍ ରାତ୍ରିରେ ଯୁଦ୍ଧ କରିଥିବାର ବର୍ଣ୍ଣନା ଅଛି । ରାମ ଅବଶ୍ୟ ଏହି ଆକ୍ରମଣକୁ ପ୍ରତିହତ କରିଥିଲେ । କିନ୍ତୁ ତାହା ସେ କରିଥିଲେ କେବଳ ଆତ୍ମରକ୍ଷା ଉଦ୍ଦେଶ୍ୟରେ, ଆକ୍ରମଣ ଉଦ୍ଦେଶ୍ୟରେ କିନ୍ତୁ ନୁହେଁ । ସନ୍ଧ୍ୟା ପରେ ଯୁଦ୍ଧ ଶେଷରେ ସୈନ୍ୟମାନେ ପରସ୍ପରର ଶତ୍ରୁତା ଭୁଲି ମିଳିମିଶି ପାରୁଥିଲେ ଏବଂ ବନ୍ଧୁଭାବରେ ସୁଖ-ଦୁଃଖ ବିଷୟରେ କଥାବାର୍ତ୍ତା କରିପାରୁଥିଲେ ।

ଉପରୋକ୍ତ ସୈନିକ-ଶିଷ୍ଟାଚାର ସମୂହ ସେତେବେଳେ ବହୁ ମାନ୍ୟତା ପାଉଥିଲେ ମଧ୍ୟ ବେଳେ ବେଳେ ଯେ ସେଗୁଡ଼ିକର ଲଂଘନ ହେଉନଥିଲା ତାହା ନୁହେଁ । ଆର୍ଯ୍ୟେତର ରାକ୍ଷସମାନେ ତ ବହୁ କ୍ଷେତ୍ରରେ ଅନେକ ନୀତିକୁ ଉଲ୍ଲଂଘନ କରୁଥିଲେ । ଆର୍ଯ୍ୟମାନେ ମଧ୍ୟ ଶତ୍ରୁର ଦୁର୍ବଳତାର ସୁଯୋଗ ନେବା ନିମିତ୍ତ କେତେକ ସ୍ଥାନରେ ଶିଷ୍ଟାଚାର-ବିରୋଧୀ କର୍ମ କରୁଥିଲେ । ପୂର୍ବସୂଚନା ନଦେଇ ରାମଙ୍କର ବାଲୀଙ୍କ ଉପରେ ଆକ୍ରମଣ କରାଯାଇଥିବା କଥା ତ ଆଗରୁ ଆଲୋଚିତ । ଶତ୍ରୁଘ୍ନ ମଧ୍ୟ ଏହିଭଳି ଏକ ଶିଷ୍ଟାଚାର-ବିରୋଧୀ କର୍ମ କରିଥିଲେ । ମଥୁରାର ଶାସକ ଲବଣାସୁର ଶୂଳହୀନ ଅବସ୍ଥାରେ ଥିଲା ବେଳେ ସେ ତା' ଉପରେ ଆକ୍ରମଣ କରି ତା'କୁ ହତ୍ୟା କରିଥିଲେ । ଏଭଳି ଆକ୍ରମଣ ଅବଶ୍ୟ

ଥିଲା ଅପରିହାର୍ଯ୍ୟ । କାରଣ ଲବଣାସୁର ହସ୍ତରେ ଶୂଳ ଧରିଥିବା ପର୍ଯ୍ୟନ୍ତ ଥିଲା ଅଜେୟ । ଶିବଙ୍କର ଏହି ବର-ପ୍ରଦତ୍ତ ଅଜେୟତାକୁ ପ୍ରତିହତ କରିବାପାଇଁ ବାଧ୍ୟ ହୋଇ ଶତ୍ରୁଘ୍ନଙ୍କୁ ତା' ଉପରେ ଶୂଳହୀନ ଅବସ୍ଥାରେ ହିଁ ଆକ୍ରମଣ କରିବାକୁ ପଡ଼ିଥିଲା । ତାହା ନହୋଇଥିଲେ ଅତ୍ୟାଗୁଣ୍ଡ ଲବଣାସୁର ମରିପାରି ନଥାନ୍ତା । ଧର୍ମକୁ ରକ୍ଷା କରିବାକୁ ଯାଇ ଶତ୍ରୁଘ୍ନଙ୍କୁ ଅଧର୍ମ-ମାର୍ଗ ଆଶ୍ରୟ ନେବାକୁ ପଡ଼ିଥିଲା ।

**ସେନାବାହିନୀ :**

ଯୁଦ୍ଧପାଇଁ ସେନାବାହିନୀ ଥିଲା ଅପରିହାର୍ଯ୍ୟ । ତେଣୁ ଆର୍ଯ୍ୟ, ବାନର, ରାକ୍ଷସ ସମସ୍ତଙ୍କର ପୃଥକ୍ ପୃଥକ୍ ସେନାବାହିନୀ ଥିଲା । କିନ୍ତୁ ସେମାନଙ୍କର ଅବସ୍ଥିତି ଥିଲା ଭିନ୍ନ ଭିନ୍ନ । ଆର୍ଯ୍ୟ ଓ ରାକ୍ଷସମାନଙ୍କର ସେନାବାହିନୀ ସେମାନଙ୍କର ରାଜଧାନୀ ଯଥାକ୍ରମେ ଅଯୋଧ୍ୟା ଓ ଲଙ୍କାରେ ଥିଲେ । ଭରତ ଚିତ୍ରକୂଟକୁ ଯିବା ସମୟରେ ଅଯୋଧ୍ୟାରେ ଥିବା ତାଙ୍କ ସେନାବାହିନୀକୁ ଏକତ୍ରିତ କରିଥିବାର ବର୍ଣ୍ଣନା ରାମାୟଣରେ ଦେଖିବାକୁ ମିଳିଥାଏ । ଯାତ୍ରାର ଉଦ୍ଦେଶ୍ୟ ମଧ୍ୟ ମୁଖ୍ୟ ନାଗରିକମାନଙ୍କୁ ତଥା ସେନାଧିକାରୀମାନଙ୍କୁ ବତାଇ ଦିଆଯାଇଥିବା କଥା ତହିଁରେ (୨ । ୮୨ । ୨୨-୩୨) ବିସ୍ତୃତ ଭାବରେ ବର୍ଣ୍ଣିତ । ଶାନ୍ତି ସମୟରେ ମଧ୍ୟ ସେନାବାହିନୀ ଯାତ୍ରାପାଇଁ ଶୀଘ୍ର ପ୍ରସ୍ତୁତ ହୋଇପାରୁ ଥିବାରୁ ଆମକୁ ସୂଚନା ମିଳୁଛି ଯେ ଅଯୋଧ୍ୟାରେ ଏକ ସ୍ଥାୟୀ ସେନାବାହିନୀ ରହିଥିଲା । ସେହିପରି ଲଙ୍କାରେ ରାମଙ୍କ ଆକ୍ରମଣକୁ ପ୍ରତିହତ କରିବାପାଇଁ ରାବଣ ଅତି ଶୀଘ୍ର ସମର-ସଜ୍ଜା କରିଥିଲେ । ଏହି ସୈନ୍ୟମାନେ ସମସ୍ତେ ଲଙ୍କାରେ ହିଁ ଥିଲେ । ରାମାୟଣର କଥନ ଅନୁସାରେ (୬ । ୩୨ । ୪୩) ସେ ଭେରୀ ବଜାଇ ସୈନ୍ୟ-ମାନଙ୍କୁ ଠୁଳ କରାଇବାପାଇଁ ସେନାଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲା ଏବଂ ଆଉ ମଧ୍ୟ କହିଥିଲା ଯେ ଠୁଳ ହେବାର କାରଣ ସେମାନଙ୍କୁ ଜଣାଇ ଦିଆ ନଯାଉ । ଲଙ୍କାର ପ୍ରତ୍ୟେକ ରାକ୍ଷସ ଥିଲା ଜଣେ ସୈନିକ । ବାନର-ସୈନ୍ୟମାନେ କିନ୍ତୁ ଖାଲି ରାଜଧାନୀରେ ନଥିଲେ । ସେମାନେ ସାରା ରାଜ୍ୟରେ ବିଛୁଡ଼ି ହୋଇ ରହିଥିଲେ । ସୁଗ୍ରୀବଙ୍କ ନିର୍ଦ୍ଦେଶ (୪ । ୯ । ୩୨) କ୍ରମେ ସେମାନେ ଆସି କିଷ୍କିନ୍ଧା-ରାଜଧାନୀରେ ଏକତ୍ରିତ ହୋଇଥିଲେ । ସେମାନେ ଦଳ ଦଳ ହୋଇ ଆସିଥିଲେ ଏବଂ ପ୍ରତ୍ୟେକ ଦଳର ନେତାଙ୍କୁ କୁହାଯାଉଥିଲା 'ଯୂଥପତି' ବା 'ଯୂଥପ' । ବାନରମାନଙ୍କର ପ୍ରଧାନ ପ୍ରଧାନ ଯୂଥପତିଙ୍କର ନାମ ତଥା ବଳବିକ୍ରମ ସମ୍ପର୍କରେ ଆମେ ରାମାୟଣସ୍ଥ ଏକ ସ୍ୱତନ୍ତ୍ର ସର୍ଗରେ (୬ । ୨୬) ଜ୍ଞାନଲାଭ କରିଥାଉଁ । ଏଥିରୁ ଜଣାଯାଏ ଯେ ବାନରମାନଙ୍କର ଏକ ସ୍ଥାୟୀ

ସେନାବାହିନୀ ନଥିଲା । ଯଦିଓ ଗୋଟିଏ ସ୍ଥାୟୀ ସେନାବାହିନୀ ଥିବ, ତାହା ତେବେ ରାଜଧାନୀର ସୁରକ୍ଷାପାଇଁ ଏକ କ୍ଷୁଦ୍ର ଆପ୍ତେସ୍ତ୍ର ସେନାବାହିନୀ ହୋଇଥିବ । ରାଜାଙ୍କ ଆଦେଶ ଅନୁସାରେ ସେମାନେ ସାରା ରାଜ୍ୟରୁ ସଂଗୃହୀତ ହୋଇ ଆସୁଥିଲେ । ବାନର ସେନାବାହିନୀରେ କେବଳ ପଦାତିକମାନେ ଥିଲେ । ସେମାନେ ରଥ ଏବଂ ଅନ୍ୟାନ୍ୟ ପାର୍ଥିବ ତଥା ଦିବ୍ୟାସ୍ତ୍ରାଦିର ବ୍ୟବହାର ଜାଣି-ନଥିଲେ । ସେମାନେ ବାହୁବଳ ଉପରେ ଥିଲେ ଖୁବ୍ ନିର୍ଭରଶୀଳ । ମଲ୍ଲ-ଯୁଦ୍ଧରେ ସେମାନେ ଅନେକଟା ପାରଦର୍ଶିତା ଲାଭ କରିଥିଲେ । ସୁଗ୍ରୀବ ଓ ରାବଣଙ୍କ ମଧ୍ୟରେ ହୋଇଥିବା ମଲ୍ଲଯୁଦ୍ଧରେ ସୁଗ୍ରୀବ କପରି ରାବଣକୁ ପରାଭବ ଦେଇଥିଲେ ତାହା ରାମାୟଣରେ (୬ । ୪୪) ଅତି ରୋଚକ ଭାବରେ ବର୍ଣ୍ଣିତ । ବାନରମାନେ ସାଧାରଣତଃ ବଡ଼ ବଡ଼ ଗଛ ସାହାଯ୍ୟରେ ଓ ପଥର-ଖଣ୍ଡ ସାହାଯ୍ୟରେ ଯୁଦ୍ଧ କରୁଥିଲେ । ରାମାୟଣର କଥନ ଅନୁସାରେ (୬ । ୧୪ । ୩) ସେମାନେ ନିଜ ନିଜର ନଖ ଓ ଦାନ୍ତ ସାହାଯ୍ୟରେ (ନଖଦଂଷ୍ଟ୍ରାୟୁଧାଃ) ଯୁଦ୍ଧ କରୁଥିଲେ । ଲଙ୍କା-ଯୁଦ୍ଧରେ ତଥା ବାଲି ଓ ସୁଗ୍ରୀବଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧରେ ବାନରୀୟ ଯୁଦ୍ଧ-କଳାର ଏବଂବିଧ ଅପୂର୍ବ ପ୍ରୟୋଗର ବହୁଳ ଉଦାହରଣ ଆମେ ଦେଖିବାକୁ ପାଇଥାଉଁ ।

ସୈନିକମାନଙ୍କ ମୁଖ୍ୟଙ୍କୁ 'ବଳାଧ୍ୟକ୍ଷ' ବୋଲି କୁହାଯାଉଥିଲା । ଆର୍ଯ୍ୟ ଓ ରାକ୍ଷସମାନଙ୍କ କ୍ଷେତ୍ରରେ ଏହି 'ବଳାଧ୍ୟକ୍ଷ' ପଦବୀଟି ସମାନ ଭାବରେ ପ୍ରଯୁଜ୍ୟ ଥିଲା । ପୂର୍ବକଥିତ ମତେ ବାନରମାନଙ୍କ କ୍ଷେତ୍ରରେ ଏହି ଅନୁରୂପ ପଦବୀଟିର ନାମ ଥିଲା 'ଯୂଥପତି' ବା 'ଯୂଥପ' । ରାବଣ ତା'ର ବଳାଧ୍ୟକ୍ଷମାନଙ୍କ ପ୍ରତି ନିଜ ନିଜର ସୈନ୍ୟମାନଙ୍କୁ ଏକତ୍ରିତ କରିବାପାଇଁ ଦେଇଥିବା ନିର୍ଦ୍ଦେଶ ରାମାୟଣରେ (୬ । ୩୨ । ୪୨-୪୩) ବର୍ଣ୍ଣିତ । 'ବଳାଧ୍ୟକ୍ଷ' ଅଥବା ଯୂଥପତି ଥିଲେ ଅନେକ । କିନ୍ତୁ ସେନାପତି ଥିଲେ ଜଣେ ସେ କି ଥିଲେ ରାଜାଙ୍କ ମନ୍ତ୍ରି-ପରିଷଦର ସଭ୍ୟ । ନୀଳଙ୍କୁ ବାନର-ସେନାବାହିନୀର ସେନାପତି ଏବଂ ପ୍ରହସ୍ତଙ୍କୁ ରାକ୍ଷସ ସେନାବାହିନୀର ସେନାପତି ବୋଲି କୁହାଯାଇଛି । ଯୁଦ୍ଧକାଣ୍ଡରେ ରାବଣର ନିର୍ଦ୍ଦେଶକୁ ସେନାପତି ପ୍ରହସ୍ତ ବଳାଧ୍ୟକ୍ଷ ବା ସେନାଧ୍ୟକ୍ଷମାନଙ୍କୁ ଜଣାଇ ଦେଇଥିବାର ଦେଖିବାକୁ ମିଳିଥାଏ । ସେନାପତି ଓ ବଳାଧ୍ୟକ୍ଷ ପଦବୀଦ୍ୱୟର ପାରସ୍ପରିକ ସମ୍ପର୍କ କପରି ଥିଲା ତାହା ଉପରେ ଆଲୋକପାତ କରିବାକୁ ଯାଇ ଜେ: ଏଲ୍: ବ୍ରକିଙ୍ଗ୍‌ଟନ୍ ଯଥାର୍ଥରେ କହନ୍ତି :

> The senapati is superior to the baladhyaksha, literally 'superintendent of forces, perhaps

roughly equivalent to the Divisional commander ...thus all the indications are that it is a very senior rank but nonetheless subordinate to the senapati. (୧୪)

ଦୂଷଣଙ୍କୁ ଦଣ୍ଡକାରଣ୍ୟର ସୁରକ୍ଷା ଲାଗି ପଠାଇବା ବେଳେ ରାବଣ ତାଙ୍କୁ ବଳାଧ୍ୟକ୍ଷ ଭାବରେ ନିଯୁକ୍ତ କରିବାର ସୂଚନା ରାମାୟଣରୁ ମିଳିଥାଏ ।

ପ୍ରଜାମାନଙ୍କ ଧନ-ଜୀବନକୁ ସୁରକ୍ଷାପ୍ରଦାନ କରିବା ଥିଲା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ । ସେଥିପାଇଁ ତାଙ୍କୁ ଯେଉଁ କ୍ଷମତା ମିଳିଥିଲା ତାହାକୁ କୁହାଯାଉଥିଲା 'ଦଣ୍ଡ' । ତେଣୁ ରାଜାଙ୍କର ଅନ୍ୟ ନାମ ଥିଲା 'ଦଣ୍ଡଧର' । ବୈଦିକ କାଳରୁ ହିଁ ଏହି 'ଦଣ୍ଡ'ର ମହତ୍ତ୍ୱକୁ ସ୍ୱୀକାର କରା ହୋଇଆସିଛି । ଚାଣକ୍ୟ ତାଙ୍କ ଅର୍ଥଶାସ୍ତ୍ରରେ (୬ । ୧) 'ଦଣ୍ଡ'କୁ ରାଷ୍ଟ୍ରର ସପ୍ତାଙ୍ଗ ମଧ୍ୟରୁ ଅନ୍ୟତମ ବୋଲି କହିଛନ୍ତି । ବାଲ୍ମୀକି ମଧ୍ୟ ସମର୍ଥକ ଭାବରେ 'ଦଣ୍ଡ'ର ମହତ୍ତ୍ୱକୁ 'ଯସ୍ୟ ଦଣ୍ଡଶ୍ଚ କୋଷଶ୍ଚ ଇତ୍ୟାଦି' ବକ୍ତବ୍ୟ ମାଧ୍ୟମରେ (୪ । ୨୨ । ୧୧) ରାଷ୍ଟ୍ରର ଅଙ୍ଗ ହିସାବରେ 'ଦଣ୍ଡ'ର ମହତ୍ତ୍ୱକୁ ସ୍ୱୀକାର କରିଛନ୍ତି । ଏହି 'ଦଣ୍ଡ' କାର୍ଯ୍ୟକୁ ନିର୍ବାହ କରିବାପାଇଁ ରାଜାଙ୍କର ପ୍ରଧାନ ସାଧନ ଥିଲା ସେନାବାହିନୀ । କାରଣ ବଳ-ପ୍ରୟୋଗରେ ହିଁ ଦଣ୍ଡକୁ କାର୍ଯ୍ୟକାରୀ କରିବା ସମ୍ଭବପର । ଶର୍ମାଙ୍କ ଭାଷାରେ :

In ancient India, the army was the only instrument of this danda. (୧୫)

ରାମାୟଣ-କାଳରେ ଏହି ସ୍ଥିତି ଥିଲା ଏବଂ ସେନାବାହିନୀକୁ ଫଳାଭିମୁଖୀ କରିବା ପାଇଁ ଏହାକୁ ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକଟି ବିଭାଗ ପାଇଁ ସ୍ୱତନ୍ତ୍ର ପ୍ରଶିକ୍ଷଣର ବ୍ୟବସ୍ଥା ଥିଲା । ଏହା ଫଳରେ ସେନାବାହିନୀ ବିଶାରଦ ଜ୍ଞାନ-କୌଶଳର ଅଧିକାରୀ ହେବାପାଇଁ ସୁଯୋଗ ପାଇ ପାରୁଥିଲା । ଏହା ଚାରି ଭାଗରେ ବିଭକ୍ତ ଥିଲା । ଏଣୁ ଏହାକୁ ଲୌକିକ ଭାଷାରେ କୁହା ଯାଉଥିଲା 'ଚତୁରଙ୍ଗବଳ' । ଏହି ଅଙ୍ଗଗୁଡ଼ିକ ହେଲା ପଦାତିକବାହିନୀ, ଅଶ୍ୱାରୋହିବାହିନୀ, ଗଜାରୋହି-ବାହିନୀ ଓ ରଥି-ବାହିନୀ । ଆର୍ଯ୍ୟ ଓ ରାକ୍ଷସ ଉଭୟଙ୍କର 'ଚତୁରଙ୍ଗବଳ' ଥିଲାବେଳେ ବାନରମାନଙ୍କର କେବଳ ପଦାତିକ-ବଳ' ଥିଲା । ଏହି ବଳର ନାମ କାହିଁକି 'ଚତୁରଙ୍ଗ' ଦିଆଯାଇଛି ସେ ସମ୍ପର୍କରେ ପଣ୍ଡିତମାନେ କହନ୍ତି ଯେ ଅତି ପ୍ରାଚୀନ କାଳରୁ, ଏପରିକି ବୈଦିକ କାଳରୁ 'ଚତୁରଙ୍ଗ' (ଅପଭ୍ରଂଶରେ ସତରଞ୍ଜ) ନାମକ ଗୋଟିଏ ଖେଳ ପ୍ରସିଦ୍ଧି

ଲାଭ କରିଥିଲା । ଏହାକୁ ଅନୁସରଣ କରି ଯୁଦ୍ଧର କଳା-କୌଶଳର ବିକାଶ ହେବା ସଙ୍ଗେ ସଙ୍ଗେ ସେନାବାହିନୀର ବିଭାଗୀକରଣକୁ 'ଚତୁରଙ୍ଗ' ନାମର ଆଖ୍ୟା ଦିଆଗଲା । ରାମଚନ୍ଦ୍ର ଦୀକ୍ଷିତାର ଏହି ମତର ପୁଷ୍ଟି ସାଧନ କରିବାକୁ ଯାଇ କହନ୍ତି :

> The principles of chess supplied the ideas to the progressive development of the modes and constituents of the army. (୧୭)

ଚେସ୍ ଅର୍ଥ ଏଠାରେ 'ଚତୁରଙ୍ଗ' ଖେଳ ବୁଝିବାକୁ ହେବ, ଯାହାକି ଥିଲା ଏହାର ପୂର୍ବଜ । ଏ ସମ୍ପର୍କରେ ମନେରଖିବାକୁ ହେବ ଯେ 'ଚତୁରଙ୍ଗ' ଖେଳର କଳା-କୌଶଳ ଭାରତରୁ ଆରବ ଦେଇ ସ୍ପେନ୍‌କୁ ଯାଇଥିଲା ଏବଂ ସେଠାରୁ ୟୁରୋପର ଅନ୍ୟ ଦେଶଗୁଡ଼ିକୁ ଯାଇଥିଲା । ୟୁରୋପରୁ ତାହା ପୁଣି 'ଚେସ୍' ନାମରେ ଭାରତକୁ ଆସିଛି । ଚେସ୍ ଖେଳରେ ଜିତିବାପାଇଁ ଯେପରି ବୁଦ୍ଧି ପ୍ରୟୋଗର ଆବଶ୍ୟକ 'ଚତୁରଙ୍ଗବଳ'କୁ ସଜାଇବାରେ ମଧ୍ୟ ସମଧିକ ପରିମାଣରେ ବୁଦ୍ଧି ଆବଶ୍ୟକ । ଯୁଦ୍ଧରେ କେବଳ ବ୍ୟକ୍ତିଗତ ବୀରତ୍ୱ କାମ ଦିଏନାହିଁ; ତାହା ସାଥେ ସାଥେ ଉପଯୁକ୍ତ ସମରସଜ୍ଜାର ଅତୀବ ଆବଶ୍ୟକତା ରହିଅଛି । ଏହାକୁ କୁହାଯାଏ ବ୍ୟୂହ-ରଚନା । ରାମାୟଣଯୁଗଠାରୁ ମହାଭାରତ-ଯୁଗରେ ଏହି ବ୍ୟୂହରଚନାର ଶୈଳୀ ଆହୁରି ଅଧିକତର ପରିପକ୍ୱତା ହାସଲ କରିସାରିଥିଲା ।

ଅଯୋଧ୍ୟାକାଣ୍ଡକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଭରତ ରାମଙ୍କୁ ଫେରାଇ ଆଣିବାପାଇଁ ଚିତ୍ରକୂଟକୁ ଯିବା ଉପଲକ୍ଷ୍ୟେ ଏକ ବିରାଟ ସେନାବାହିନୀକୁ ଠୁଳ କରିଥିଲେ । ସେ ଯେଉଁ ଦିନ ଏହା କରିବାପାଇଁ ନିଷ୍ପତ୍ତି ନେଇଥିଲେ, ତହିଁ ଆର ଦିନ ହିଁ ଶୁଭଯାତ୍ରା ଆରମ୍ଭ କରି ଏହି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିଥିଲେ । ଅଯୋଧ୍ୟାରେ ଏକ ସ୍ଥାୟୀ ସେନାବାହିନୀ ନଥିଲେ ଏହା ସମ୍ଭବ ହୋଇପାରି-ନଥାନ୍ତା । କୋଶଳ ରାଜ୍ୟ ଥିଲା ଖୁବ୍ ସମୃଦ୍ଧିଶାଳୀ । ତେଣୁ ତାହା ବିରାଟ ସେନାବାହିନୀର ସ୍ଥାୟୀ ଭାବରେ ଭରଣ-ପୋଷଣର ଦାୟିତ୍ୱ ନେଇପାରୁଥିଲା । କିନ୍ତୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟମାନଙ୍କ ପକ୍ଷରେ ଏହା ସମ୍ଭବ ହେଉନଥିଲା । ସେମାନେ ଆଦୌ ସ୍ଥାୟୀ ସେନାବାହିନୀ ରଖିନଥିଲେ କିମ୍ବା ଦୈନନ୍ଦିନ ଆଇନ ପ୍ରଶାସନର ଦେଖାରେଖା ଲାଗି କ୍ଷୁଦ୍ର ସେନାବାହିନୀ ରଖୁଥିଲେ । ଯୁଦ୍ଧ ସମୟରେ ବିରାଟ ସେନାବାହିନୀର ଆବଶ୍ୟକତା ଥିବାରୁ ବିଭିନ୍ନ ଆକରକ୍ଷେତ୍ରରୁ ସୈନ୍ୟ-ମାନଙ୍କୁ ସଂଗ୍ରହ କରାଯାଉଥିଲା । ଏହି ଆକର କ୍ଷେତ୍ର ଥିଲା ଛଅଟି ଏବଂ

ସେଗୁଡ଼ିକର ନାମକୁ ଅନୁସରଣ କରି ସେନାବାହିନୀର ନାମକରଣ କରାଯାଇଥିଲା । ସେଥିପାଇଁ ସେନାବାହିନୀକୁ କୁହାଯାଉଥିଲା 'ଷଡ଼ଙ୍ଗ' ବା ଛଅ ଅଙ୍ଗବିଶିଷ୍ଟ । ସାମରିକ କାର୍ଯ୍ୟର ଦୃଷ୍ଟିକୋଣରୁ ଏହା 'ଚତୁରଙ୍ଗ' ହେଲେ ହେଁ ସଂଗ୍ରହର ଆକରକ୍ଷେତ୍ରର ଦୃଷ୍ଟିକୋଣରୁ ଏହା ଥିଲା 'ଷଡ଼ଙ୍ଗ' । ପ୍ରଥମ ଅଙ୍ଗଟି ହେଲା 'ମୌଳବଳ' । ଏହା ଥିଲା ପୁରୁଷାନୁକ୍ରମିକ । ଦ୍ଵିତୀୟ ଅଙ୍ଗଟି ହେଲା 'ଭୃତ୍ୟ-ବଳ' । ଏହି ଦଳର ଅନ୍ତର୍ଭୁକ୍ତ ସୈନ୍ୟମାନଙ୍କୁ ବେତନ ଦିଆ-ଯାଉଥିଲା । ତୃତୀୟ ଅଙ୍ଗଟି ହେଲା 'ଶ୍ରେଣି-ବଳ' । ଏହି ଶ୍ରେଣି-ବଳ କ୍ରମେ ଏପରି ପ୍ରାଧାନ୍ୟ ବିସ୍ତାର କରିବସିଲା ଯେ କେରଳର ବ୍ୟବସାୟୀ ଗୋଷ୍ଠୀ ରାଜାମାନଙ୍କୁ ଧାରାବାହିକ ଭାବରେ ମଧ୍ୟଯୁଗ ପର୍ଯ୍ୟନ୍ତ ବି ସେନା ସାହାଯ୍ୟ ଦେବାକୁ ଲାଗିଥିଲେ । ଏହି ବ୍ୟବସାୟୀ ଗୋଷ୍ଠୀକୁ କୁହାଯାଉଥିଲା 'ମଣିଗ୍ରାମ' । ସିଂହଳରେ ମଧ୍ୟ ଏହି ପ୍ରଥା ପ୍ରଚଳିତ ଥିଲା । ଏହାର ପୃଷ୍ଠପୋଷକତା କରି ଏ. ଏଲ୍. ବାସମ୍ କହନ୍ତି :

> The company known as manigram functioned not only in Southern India but also in Ceylone, where it hired out its mercenaries to the Sinhalese kings. (୧୭-କ)

ବ୍ୟବସାୟୀମାନେ ଏହି ସୈନ୍ୟମାନଙ୍କୁ ରାଜାଙ୍କୁ ଯୋଗାଉଥିଲେ । ସାମନ୍ତ ରାଜା କିମ୍ବା ମିତ୍ରରାଜାମାନେ ଯେଉଁ ସୈନ୍ୟମାନଙ୍କୁ ଯୋଗାଉଥିଲେ ସେମାନଙ୍କୁ କୁହା-ଯାଉଥିଲା 'ସୁହୃଦ୍‌ବଳ' । ଶତ୍ରୁପକ୍ଷରୁ ଧରାଯାଇଥିବା ସୈନ୍ୟମାନଙ୍କୁ କୁହା-ଯାଉଥିଲା 'ଦ୍ଵିଷଦ୍‌ବଳ' । ଆରଣ୍ୟକ ଗୋଷ୍ଠୀମାନଙ୍କଠାରୁ ସଂଗୃହୀତ ସୈନ୍ୟମାନଙ୍କୁ କୁହାଯାଉଥିଲା 'ଆଟବି-ବଳ' । ରାମାୟଣରେ ମଧ୍ୟ ସେନାବାହିନୀର ଏହି ବିଭିନ୍ନ ଅଙ୍ଗ ସମ୍ପର୍କରେ ପରୋକ୍ଷ ଭାବରେ ସୂଚନା ଦିଆଯାଇଛି । ବିଭୀଷଣ ଆସି ରାମଙ୍କର ଶରଣାପନ୍ନ ହୋଇଛନ୍ତି । ସେ ରାମଶତ୍ରୁ ରାବଣର ଭ୍ରାତା ହୋଇଥିବାରୁ ସୁଗ୍ରୀବ ତାଙ୍କ ଉପରେ ଆସ୍ଥାସ୍ଥାପନ ନକରିବାପାଇଁ ରାମଙ୍କୁ ପରାମର୍ଶ ଦେଉଛନ୍ତି । ଜଣେ ରାଜା କେଉଁ କେଉଁ ଆକର-କ୍ଷେତ୍ରରୁ ସେନା-ସଂଗ୍ରହ କରିବା ଉଚିତ ତାହା ସେ ରାମଙ୍କୁ ବର୍ଣ୍ଣାଉଛନ୍ତି । ତାଙ୍କ ବକ୍ତବ୍ୟ ହେଉଛି :

> ମିତ୍ରାଟବିବଲଂ ଚୈବ ମୌଲଭୃତ୍ୟବଲଂ ତଥା ।
> ସର୍ବମେତଦ୍‌ବଲଂ ଗ୍ରାହ୍ୟଂ ବର୍ଜୟିତ୍ଵା ଦ୍ଵିଷଦ୍‌ବଲମ୍ ।। (୧୭)

ଅର୍ଥାତ୍ ମିତ୍ରବଳ, ଅଟବୀବଳ, ମୌଳବଳ ଓ ଭୃତ୍ୟବଳ, ଏ ସମସ୍ତ ରାଜାଙ୍କ ପକ୍ଷରେ ଗ୍ରହଣୀୟ, ଦ୍ୱିଷଦ୍‌ବଳ କିନ୍ତୁ ନୁହେଁ । ବିଭୀଷଣ ଶତ୍ରୁପକ୍ଷର ଲୋକ ହୋଇଥିବାରୁ ସାମରିକ ଦୃଷ୍ଟିକୋଣରୁ ତାଙ୍କୁ ସୈନ୍ୟବାହିନୀରେ ସ୍ଥାନ ଦେବା ଉଚିତ ନୁହେଁ, ଏହା ଥିଲା ସୁଗ୍ରୀବଙ୍କ କହିବାର ତାତ୍ପର୍ଯ୍ୟ । ଏଥିରୁ ଅନୁମିତ ହୁଏ ଯେ ସେତେବେଳେ ଶତ୍ରୁ-ସେନାବାହିନୀରୁ ଧରିଯାଇଥିବା (ବନ୍ଦୀ ଅଥବା ପଳାତକ) ସୈନ୍ୟମାନଙ୍କ ଉପରେ ସେତେଟା ଆସ୍ଥା-ସ୍ଥାପନ କରାଯାଉନଥିଲା । ଏଠାରେ ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର କଥା ଯେ ବାଲ୍ମୀକି 'ଶ୍ରେଣି-ବଳ'ର ନାମୋଲ୍ଲେଖ କରିନାହାନ୍ତି । ଏହାର କାରଣ କ'ଣ ଜଣାପଡ଼ୁନାହିଁ । ହୁଏତ ଶ୍ରେଣିବଳ ଉପରେ ଆସ୍ଥା ରଖିବାକୁ ବାଲ୍ମୀକି ନାପସନ୍ଦ କରୁଥିବେ) କାରଣ ଏହା ରାଜ୍ୟର ସୁରକ୍ଷା ପ୍ରତି ବାଧା ଉପୁଯାଉଥିବ ଏବଂ ଏତଦ୍ୱାରା ରାଜ୍ୟ ଦୁର୍ବଳ ହୋଇ ଯାଉଥିବ । କାରଣ ବ୍ୟବସାୟୀ ସଂଘମାନେ ଏକଜୁଟ ହୋଇଗଲେ ସେମାନଙ୍କ ମିଳିତ ସେନାବାହିନୀ ରାଜାଙ୍କ ନିରାପତ୍ତା ପ୍ରତି ବିପଦ ସୃଷ୍ଟି କରୁଥିବ । ବାସ୍ତବିକ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ (ଅଷ୍ଟମ ଓ ଏକାଦଶ କାଣ୍ଡ) ଏତଦ୍ୱାରା ରାଜ୍ୟ ଦୁର୍ବଳ ହୋଇଯାଏ ବୋଲି ମତ ବ୍ୟକ୍ତ କରିଛନ୍ତି ।

ପୃଥିବୀର ସାମରିକ ଇତିହାସକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ସର୍ବ ପ୍ରଥମେ ପଦାତିକ ବାହିନୀର ସୃଷ୍ଟି ହୋଇଥିଲା ଏବଂ ପରେ ଅନ୍ୟ ବାହିନୀ-ଗୁଡ଼ିକର ସୃଷ୍ଟି ହେଲା । ରାମାୟଣଯୁଗ ବେଳକୁ ଏପରିକି ତାହାର ବହୁ ପୂର୍ବରୁ ବୈଦିକ ଯୁଗରୁ ରଥର ଉଦ୍ଭାବନ ହୋଇସାରିଥିଲା । ରଥରେ ବସି ଯୁଦ୍ଧ କରୁଥିବା ବୀରମାନଙ୍କୁ ସେମାନଙ୍କ ପଦବୀ ଅନୁଯାୟୀ ରଥୀ, ଅତିରଥ, ମହାରଥ ଆଦି ବିଭିନ୍ନ ନାମରେ ନାମିତ କରାଯାଉଥିଲା । ସମରାଙ୍ଗନରେ ସେମାନଙ୍କ ଆବିର୍ଭାବ ହେବା ପରେ କ୍ରମଶଃ ପଦାତିକ ସୈନ୍ୟମାନଙ୍କର ମହତ୍ତ୍ୱ କମିଯିବାକୁ ଲାଗିଲା; କାରଣ ପ୍ରକୃତ ଯୁଦ୍ଧ ରଥୀ, ଅତିରଥ, ମହାରଥ ଆଦିଙ୍କ ମଧ୍ୟରେ ହିଁ ହେଉଥିଲା । ପଦାତିକ ସୈନ୍ୟମାନେ ସେମାନଙ୍କର ପରିପୂରକ ଥିଲେ ମାତ୍ର । ତେଣୁ ରାମାୟଣକାଳୀନ ଯୁଦ୍ଧସମୂହରେ ପଦାତିକମାନେ ବିଶେଷ ଅଂଶ ଗ୍ରହଣ କରିଥିବାର ସୂଚନା ଆମେ ପାଇନଥାଉଁ । କେବଳ ଯାହା ବାନର ଓ ରାକ୍ଷସମାନେ ପରସ୍ପର ପ୍ରତି ଆକ୍ରମଣ-ପ୍ରତ୍ୟାକ୍ରମଣ କରିଥିବାର କେତେକ ନିଦର୍ଶନ ଆମେ ପାଇଥାଉଁ । ବ୍ରକିଙ୍ଗ୍‌ଟନ୍‌ ମଧ୍ୟ ଏହି ମତର ସମର୍ଥକ । ତାଙ୍କ ଭାଷାରେ :

In the actual accounts of battles the common soldiery is almost completely ignored, apart from

a few references to the Vanaras and Raksasas assailing each other indiscriminately. (୯୮)

ସେତେବେଳେ ପଦାତିକ-ବାହିନୀକୁ ଯେ ସମ୍ପୂର୍ଣ୍ଣରୂପେ ଅବହେଳା କରା-ଯାଉଥିଲା ତାହା ଭାବିବା ଠିକ୍ ହେବନାହିଁ । ସେମାନଙ୍କର ସଂଖ୍ୟା ଖୁବ୍ ଅଧିକ ଥିଲା ଏବଂ ଏହି ସଂଖ୍ୟାଧିକ୍ୟ ହିଁ ସେମାନଙ୍କ ଆବଶ୍ୟକତାର ଯାଥାର୍ଥ୍ୟ ପ୍ରତିପାଦିତ କରିଥାଏ । ଯେ କୌଣସି ଅଭିଯାନରେ କିମ୍ବା ବିଜିତ ରାଜ୍ୟକୁ ନିଜ ନିୟନ୍ତ୍ରଣରେ ରଖିବାରେ ସେମାନଙ୍କ ସହାୟତା ଥିଲା ଅପରିହାର୍ଯ୍ୟ । ତାହା-ଛଡ଼ା ରଥୀମାନଙ୍କର ରଥ ଭାଙ୍ଗିଗଲେ ଅଥବା ରଥାଶ୍ୱମାନଙ୍କର ମୃତ୍ୟୁ ହେତୁ ରଥ ଅଚଳ ହୋଇଗଲେ କିମ୍ବା ସାରଥୀ ମରିଗଲେ ସେମାନେ (ରଥୀମାନେ) ତଳେ ଠିଆହୋଇ ଯୁଦ୍ଧ କରୁଥିଲେ । ସେମାନେ ବି ସେତେବେଳେ ହୋଇ ଯାଉଥିଲେ ପଦାତିକ ବାହିନୀର ଅଂଶବିଶେଷ । ରାମ ତ ଲଙ୍କା ଯୁଦ୍ଧରେ ପ୍ରାୟ ଜଣେ ପଦାତିକ ସୈନିକଙ୍କ ଭଳି ଯୁଦ୍ଧ କରିଥିଲେ । କେବଳ ଯାହା ଯୁଦ୍ଧର ଶେଷ ପର୍ଯ୍ୟାୟରେ ତାଙ୍କୁ ଇନ୍ଦ୍ରଙ୍କ ରଥ ଓ ସାରଥିଙ୍କ ସହାୟତା ମିଳିପାରିଥିଲା ।

ସାଧାରଣତଃ ରଥୀମାନେ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ସହିତ ଯୁଦ୍ଧ କଲାବେଳେ ପଦାତିକ ସୈନ୍ୟମାନଙ୍କୁ ଆହତ କରୁନଥିଲେ କିମ୍ବା ମାରୁନଥିଲେ । ଏଥିର ଆବଶ୍ୟକତା ବି ନଥିଲା । କାରଣ ସେମାନଙ୍କ ନେତା ରଥୀଙ୍କର ଯୁଦ୍ଧରେ ପତନ ହେବା ପରେ ପରେ ସେମାନେ ଛତ୍ରଭଙ୍ଗ ଦେଉଥିଲେ । ଯେଉଁମାନେ ଛତ୍ରଭଙ୍ଗ ଦେଉନଥିଲେ କେବଳ ସେହିମାନେ ହିଁ ଆକ୍ରମଣର ଶରବ୍ୟ ହେଉଥିଲେ । ଇ. ଡବ୍ଲ୍ୟୁ ହପ୍‌କିନ୍‌ସଙ୍କର (E. W, Hopkins) ନିମ୍ନ-ଲିଖିତ ମନ୍ତବ୍ୟ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ :

He (the knight) never makes a pre-meditated attack upon the foot-soldiers alone, but when their chief is killed, of whom they are, like the horses an appendage they ought to disperse; and if do not, they are shot as nuisances, not as antagonists. (୯୯)

ଇନ୍ଦ୍ରଜିତ୍ ମାୟାଯୁଦ୍ଧରେ ଆକାଶରେ ଛପିରହି ରାମ-ଲକ୍ଷ୍ମଣଙ୍କ ଉପରେ ଶର ଉପରେ ଶର ବୃଷ୍ଟି କରି ଚାଲିଛି ଏବଂ ଶେଷରେ ଦୁହିଁଙ୍କୁ ଅଚେତ କରାଇ ନାଗପାଶର ବନ୍ଧନରେ ବାନ୍ଧି ପକାଇଛି ଦୁଇ ବୀରଙ୍କ ପତନ ପରେ ପଦାତିକ

ବାନର ସୈନ୍ୟମାନେ କିଭଳି ଛତ୍ରଭଙ୍ଗ ଦେଇ ପଳାଉଛନ୍ତି ତାହାର ବର୍ଣ୍ଣନା ଅତି ରୋଚକ ଭାବରେ ବାଲ୍ମୀକି କରିଛନ୍ତି । ସେ ଅଙ୍ଗଦଙ୍କ କଣ୍ଠରେ ସୁଗ୍ରୀବଙ୍କୁ କୁହାଇଛନ୍ତି :

> ବିଷଣ୍ଣବଦନା ହ୍ୟେତେ ତ୍ୟକ୍ତପ୍ରହରଣାଃ ଦଶଃ ।
> ପଳାୟନ୍ତେଽତ୍ର ହରୟସ୍ତ୍ରାସାଦୁତ୍ଫୁଲ୍ଲଲୋଚନାଃ ।। (୨୦)

ଅର୍ଥାତ୍ ଏହି ବାନରମାନେ ଉଦାସ ମୁହଁରେ ନିଜ ନିଜର ଅସ୍ତ୍ର-ଶସ୍ତ୍ରକୁ ଫିଙ୍ଗିଦେଇ ସବୁ ଦିଗକୁ ଛୁଟୁଛନ୍ତି ଏବଂ ଭୟର କାରଣରୁ ଆଖି ମେଲି କରି ରହୁଁଛନ୍ତି । ରାକ୍ଷସ-ବାନର ଉଭୟ କ୍ଷେତ୍ରରେ ବୀରଙ୍କ ପତନରେ ପଦାତିକ-ମାନଙ୍କର ଦଶା ଠିକ୍ ଏହା ହିଁ ଥିଲା ।

ପଦାତିକ ସୈନ୍ୟମାନେ ସାଧାରଣତଃ ଧନୁର୍ବାଣଦ୍ୱାରା ସଜ୍ଜିତ ହେଉଥିଲେ । ଭରତଙ୍କ ସାଥିରେ ଯେଉଁ ପଦାତିକ ସୈନ୍ୟଗଣ ଚିତ୍ରକୂଟ ଅଭିମୁଖରେ ଯାତ୍ରା କରିଥିଲେ ସେମାନଙ୍କୁ ଧନୁର୍ଦ୍ଧାରୀ (ଧନ୍ୱିନଃ) ବୋଲି ରାମାୟଣରେ (୩।୮୩।୪) ଚିତ୍ରିତ କରାଯାଇଛି । ରାମାୟଣର ଆଉ ଗୋଟିଏ ସ୍ଥାନରେ (୩।୩୦।୨୦) ସେମାନଙ୍କୁ ଧନୁର୍ବାଣ ଛଡ଼ା ଖଣ୍ଡା ଓ ଢ଼ାଲ ଧରିଥିବାର ମଧ୍ୟ ଚିତ୍ରିତ କରାଯାଇଛି । ଲଙ୍କାଯୁଦ୍ଧରେ ପଦାତିକ ସୈନ୍ୟମାନେ 'ଗଦା' ଓ 'ପରିଘ' ଧରିଥିବାର ବର୍ଣ୍ଣନା ମଧ୍ୟ (୬।୭୩।୨) ଆମେ ଦେଖିବାକୁ ପାଇଥାଉଁ । ସେମାନେ ରଥୀମାନଙ୍କ ଭଳି ବର୍ମାଚ୍ଛାଦିତ ହୋଇଥିବାର ବର୍ଣ୍ଣନା ମଧ୍ୟ ରାମାୟଣରେ ରହିଅଛି । ସେମାନେ ଯୁଦ୍ଧରେ ବିଶେଷ ସକ୍ରିୟ ଅଂଶ ଗ୍ରହଣ କରୁନଥିଲେ ମଧ୍ୟ ସେମାନଙ୍କୁ ଆତ୍ମରକ୍ଷା ଲାଗି ବର୍ମ, ଶିରସ୍ତ୍ରାଣ ଆଦି ନ୍ୟୂନତମ ଅବଶ୍ୟକ ସାମଗ୍ରୀସମୂହର ଉପଯୋଗ କରିବାକୁ ପଡ଼ୁଥିଲା । ବର୍ମ ଓ ଶିରସ୍ତ୍ରାଣ ଅତିରିକ୍ତ ଆତ୍ମରକ୍ଷା ଲାଗି ଉପଯୋଗ କରାଯାଉଥିବା ଅନ୍ୟାନ୍ୟ ସାମଗ୍ରୀସମୂହ ହେଲା ତନୁତ୍ରାଣ, ମର୍ମତ୍ରାଣ, ଅଙ୍ଗୁଳିତ୍ରାଣ, ଓ ଅଭେଦ୍ୟ କବଚ । ତାହାକୁ କୁହାଯାଉଥିଲା ଆର୍ଷଭ କବଚ; କାରଣ ଏହା ଷଣ୍ଢର ଚମଡ଼ାରେ ତିଆରି ହେଉଥିଲା । 'ଅଙ୍ଗୁଳିତ୍ରାଣ' ଗୋଧିର ଚମଡ଼ାରେ ତିଆରି ହେଉଥିଲା । ଆବଶ୍ୟକତା ଅନୁଯାୟୀ ଏହି କବଚସମୂହ ଥିଲା ଧାତୁ-ନିର୍ମିତ ଅଥବା ଚର୍ମନିର୍ମିତ । ସେମାନେ ବେଳେ ବେଳେ ଆତ୍ମରକ୍ଷା ଲାଗି ଦେହରେ ବିଭିନ୍ନ ପ୍ରକାର ତୈଳ ଅଥବା ଚୂର୍ଣ୍ଣର ଉପଯୋଗ କରୁଥିବାର ବର୍ଣ୍ଣନା ମଧ୍ୟ ରାମାୟଣରେ (୬।୫୨।୧୦୨) ଦେଖିବାକୁ ମିଳିଥାଏ । ଏହା ହେଲା ଆର୍ଯ୍ୟ ତଥା ରାକ୍ଷସ ପଦାତିକ ସୈନ୍ୟମାନଙ୍କର ଏକ ସାଧାରଣ ଚିତ୍ର । ବାନର ପଦାତିକ ସୈନ୍ୟମାନେ କିନ୍ତୁ ଥିଲେ ଅସ୍ତ୍ରହୀନ । ସେମାନେ ବିଭିନ୍ନ

ବଡ଼ ଗଛମାନ ଅଥବା ପଥରଖଣ୍ଡମାନ ଅସ୍ତ୍ରରୂପେ ବ୍ୟବହାର କରୁଥିଲେ । ବିଶେଷ ଭାବରେ ନଖ ଓ ଦାନ୍ତ ଥିଲା ସେମାନଙ୍କର ଅସ୍ତ୍ର । ମଲ୍ଲ-ଯୁଦ୍ଧରେ ମଧ୍ୟ ସେମାନେ ଥିଲେ ଖୁବ୍ ପ୍ରବୀଣ । କେତେକ ରାକ୍ଷସସୈନ୍ୟ ମଧ୍ୟ ବାନରମାନଙ୍କ ଭଳି ବଡ଼ ଗଛମାନ ଓ ପଥର ଖଣ୍ଡମାନ ଯୁଦ୍ଧରେ ଉପଯୋଗ କରୁଥିବାର ନିଦର୍ଶନ ରାମାୟଣରେ ମିଳିଥାଏ । ଦୂଷଣ ରାକ୍ଷସର ସୈନ୍ୟମାନେ ଶାଳଗଛ, ତାଳଗଛ ଓ ପଥରଖଣ୍ଡ ଧରି ଯୁଦ୍ଧକୁ ବାହାରିଥିଲେ ବୋଲି (ରାକ୍ଷସାଃ ଶାଲତାଲଶିଳାୟୁଧାଃ) ଉକ୍ତ ଗ୍ରନ୍ଥ (୩।୩୧।୨) କହିଥାଏ ।

ଅଶ୍ୱାରୋହବାହିନୀ ରାମାୟଣକାଳୀନ ସେନାବାହିନୀର ଆଉ ଏକ ବିଶିଷ୍ଟ ଅଙ୍ଗ ହୋଇରହିଥିଲା । ବୈଦିକ କାଳରୁ ଆର୍ଯ୍ୟମାନେ ଅଶ୍ୱର ଉପଯୋଗ ସହିତ ପରିଚିତ ଥିଲେ । ଏହି ଅଶ୍ୱ ହିଁ ସେମାନଙ୍କୁ ଆର୍ଯ୍ୟେତର ଗୋଷ୍ଠୀମାନଙ୍କ ଉପରେ ବିଜୟ ଆନୟନ କରାଇବାରେ ଯଥେଷ୍ଟ ସହାୟକ ହୋଇଥିଲା । ଭରତ ଚିତ୍ରକୂଟକୁ ସେନାବାହିନୀ ଧରି ରାମଙ୍କ ନିକଟକୁ ଯାଉଥିବାର ଗୋଟିଏ ବର୍ଣ୍ଣନା ହେଲା :

ଶତଂ ସହସ୍ରାଣ୍ୟଶ୍ୱାନାଂ ସମାରୂଢ଼ାନ ରାଘବମ୍ ।
ଅନ୍ୱୟୁର୍ଭରତଂ ଯାନ୍ତଂ ରାଜପୁତ୍ରଂ ଯଶସ୍ୱିନମ୍ ॥ (୨୧)

ଅର୍ଥାତ୍ ଯଶସ୍ୱୀ ରାଜପୁତ୍ର ରଘୁନନ୍ଦନ ଭରତଙ୍କ ଯାତ୍ରା ସମୟରେ ଏକଲକ୍ଷ ଅଶ୍ୱାରୋହୀ ସୈନ୍ୟ ତାଙ୍କୁ ଅନୁସରଣ କରିଥିଲେ । ପ୍ରକୃତ ଅଶ୍ୱାରୋହୀଙ୍କ ସଂଖ୍ୟା କେତେ ଥିଲା ତାହା ଏଠାରେ ବିଚାର୍ଯ୍ୟ ନୁହେଁ । କାରଣ ରାମାୟଣ ଏକ କାବ୍ୟ; ତେଣୁ ଏଥିରେ କେତେକ କାବ୍ୟିକ ଅତିରଞ୍ଜନ ତଥା ଅନୁରଞ୍ଜନ ରହିବା ସ୍ୱାଭାବିକ । କିନ୍ତୁ ଏଥିରୁ ଗୋଟିଏ ନିଶ୍ଚିତ ସୂଚନା ମିଳୁଛି ଯେ ଭରତଙ୍କ ସେନାବାହିନୀରେ ଅନେକ ଅଶ୍ୱାରୋହୀ ସୈନ୍ୟ ଥିଲେ ଏବଂ ସେମାନେ ଥିଲେ ଅଶ୍ୱଚାଳିତ ରଥାସୀନ ବୀରମାନଙ୍କଠାରୁ ପୃଥକ୍ । କାରଣ ଉକ୍ତ ସର୍ଗର ଠିକ୍ ପୂର୍ବବର୍ତ୍ତୀ ଶ୍ଳୋକରେ ଷାଠିଏ ହଜାର ରଥ ସେହି ସେନାବାହିନୀରେ ସାମିଲ ହୋଇଥିବାର ବର୍ଣ୍ଣନା ରହିଛି । ସମ୍ଭବତଃ ଅଶ୍ୱାରୋହୀ ସୈନ୍ୟମାନଙ୍କର ରଥୀମାନଙ୍କ ଭଳି ସେତେଟା ମହତ୍ତ୍ୱ ନଥିଲା । ସେମାନେ ରଥୀମାନଙ୍କୁ ଅନୁସରଣ କରୁଥିଲେ । ରାମାୟଣରେ ଠାଏ (୬।୪।୬୪) ରାକ୍ଷସ ନରାନ୍ତକର ଯୁଦ୍ଧ ସମ୍ପର୍କରେ କୁହାଯାଇଛି ଯେ ସେ ଘୋଡ଼ା ପିଠିରେ ବସି ହାତରେ ପ୍ରାସ (ବର୍ଚ୍ଛା) ଧରି ଯୁଦ୍ଧ କରୁଥିଲା । ବାହ୍ଲୀକ ଓ କାମ୍ବୋଜ ଦେଶ ଜାତିଆ ଘୋଡ଼ା ପାଇଁ ପ୍ରସିଦ୍ଧ ଥିବାର ବର୍ଣ୍ଣନା

ରାମାୟଣରେ ମିଳିଥାଏ । ଘୋଡ଼ାମାନଙ୍କୁ ସୁସଜ୍ଜିତ କରାଯାଉଥିଲା ଏବଂ ସେମାନଙ୍କ ସୁରକ୍ଷା ନିମିତ୍ତ ସେମାନଙ୍କ ଶରୀରକୁ ଘୋଡ଼ାଇ ରଖିବାଲାଗି ସେମାନଙ୍କୁ କବଚ ପିନ୍ଧାଇ ଦିଆଯାଉଥିଲା । ସେତେବେଳେ ଧନୁର୍ବାଣ ମୁଖ୍ୟ ଅସ୍ତ୍ର ହୋଇଥିଲେ ହେଁ ଅଶ୍ୱାରୋହୀ ଧନୁର୍ବାଣ ଧରି ଯୁଦ୍ଧ କରୁଥିବାର ନିଦର୍ଶନ ରାମାୟଣରେ ପ୍ରାପ୍ତ ମିଳେନାହିଁ ।

ଅଶ୍ୱମାନଙ୍କ ଭଳି ହସ୍ତୀମାନଙ୍କର ଉପଯୋଗ ମଧ୍ୟ ସେତେବେଳେ କରାଯାଉଥିଲା । ଏହାର ଉପଯୋଗ କରାଯାଉଥିଲା ଗଜାରୋହୀ ସୈନ୍ୟ ମାନଙ୍କ ଦ୍ୱାରା । ଭରତଙ୍କ ଚତୁରଙ୍ଗାଭିମୁଖୀ ସେନାବାହିନୀରେ ନବେ ହଜାର ହାତୀ (ନବନାଗସହସ୍ରାଣି କଳ୍ପିତାନି ଯଥାବିଧି) ସାମିଲ ହୋଇଥିବାର ବର୍ଣ୍ଣନା ଆମେ ରାମାୟଣରେ (୨।୮୩।୩) ଦେଖିବାକୁ ପାଇଥାଉଁ । ଏହି ଗଜବାହିନୀକୁ ଗଜାରୋହୀ ସୈନ୍ୟମାନେ ଉପଯୋଗ କରୁଥିଲେ । ବୈଦିକ ସାମରିକ ଇତିହାସ ଅନୁଧ୍ୟାନ କଲେ ଆମେ ଜାଣିଥାଉଁ ଯେ ଆର୍ଯ୍ୟମାନେ ଯୁଦ୍ଧରେ- ଅଶ୍ୱର ବ୍ୟବହାର ପ୍ରଥମେ କରିଥିଲେ ଏବଂ ହସ୍ତୀର ବ୍ୟବହାର ପରେ କଲେ । ସେମାନେ 'ସପ୍ତସିନ୍ଧୁ' ଅଞ୍ଚଳରୁ ପୂର୍ବାଭିମୁଖରେ ଆସିସାରିବା ପରେ ଯାଇ ହସ୍ତୀକୁ ଯୁଦ୍ଧରେ ବ୍ୟବହାର କରିଥିଲେ । ଯଜୁର୍ବେଦ ଓ ଅଥର୍ବ ବେଦର ସୃଷ୍ଟି ବେଳକୁ ଏହାର ଉପଯୋଗ ସେମାନଙ୍କୁ ଜଣାଥିଲା । ଯଜୁର୍ବେଦରେ ଥିବା 'ହସ୍ତିପ' (ହସ୍ତୀର ପାଳକ) ଶବ୍ଦଟି ଏହା ସୂଚକ । (୨୯-କ) ରାମାୟଣକାଳରେ ସେମାନେ ଯେ କେବଳ ପୂର୍ବଭାରତରେ ଆଧିପତ୍ୟ ବିସ୍ତାର କରିସାରିଥିଲେ ତାହା ନୁହେଁ, ସେମାନେ ମଧ୍ୟ ଦକ୍ଷିଣ-ଭାରତରେ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ବିସ୍ତାର ପାଇଁ ଚେଷ୍ଟିତ ଥିଲେ । ଅତଏବ, ରାମାୟଣକାଳ ବେଳକୁ ହସ୍ତୀର ଯୁଦ୍ଧରେ ଉପଯୋଗ ସଂପର୍କୀୟ ଜ୍ଞାନ ସେମାନଙ୍କୁ ସଂପୂର୍ଣ୍ଣ ଭାବରେ ଜଣା ଥିଲା । ଭରତଙ୍କ ସେନାବାହିନୀରେ ଏତେ ସଂଖ୍ୟକ ଗଜାରୋହୀ ସୈନ୍ୟଙ୍କ ଅବସ୍ଥିତି ଏହାର ଯଥେଷ୍ଟ ପରିଚାୟକ ।

ଗଜାରୋହଣ କରିବା ଏବଂ ଗଜମାନଙ୍କୁ ପ୍ରଶିକ୍ଷଣ ଦେବା ସମ୍ପର୍କରେ ବସ୍ତୁତଃ ଶିକ୍ଷା ରାଜପୁତ୍ରମାନଙ୍କୁ ଦିଆଯାଉଥିଲା । ଭରତ ମାତୁଳାଳୟରେ ଯେଉଁ ଶିକ୍ଷା ପାଇଥିଲେ, ଗଜବିଦ୍ୟା ଥିଲା ତନ୍ମଧ୍ୟରେ ଅନ୍ୟତମ । ରାମ ମଧ୍ୟ ଭରତଙ୍କୁ ଚିତ୍ରକୂଟଠାରେ ସେ ଉପଯୁକ୍ତ ସଂଖ୍ୟକ ହସ୍ତୀ ତାଙ୍କ ସେନା ବାହିନୀରେ ରଖୁଛନ୍ତି କି ନାହିଁ ବୋଲି ପ୍ରଶ୍ନ ପଚାରିଛନ୍ତି ଏବଂ ଆଉ ମଧ୍ୟ କହିଛନ୍ତି ଯେ ରାଜାଙ୍କର ଏକ ବଡ଼ କର୍ତ୍ତବ୍ୟ ହେଲା ସେ ସକାଳେ ଓ ସନ୍ଧ୍ୟାରେ ହସ୍ତୀମାନଙ୍କୁ ଉପଯୁକ୍ତ ଖାଦ୍ୟ ଦିଆଯାଉଛି କି ନାହିଁ ତାହା ଯାଞ୍ଚ କରିବେ ।

ଲଙ୍କାଯୁଦ୍ଧରେ ତ୍ରିଶିରା, ଅକମ୍ପନ ଓ ମହୋଦର ଆଦି ରାକ୍ଷସମାନେ ହାତୀ ଉପରେ ଚଢ଼ି ଯୁଦ୍ଧ କରୁଥିବାର ବର୍ଣ୍ଣନା ଦେଖିବାକୁ ମିଳେ । ପୁନଶ୍ଚ ଏହାର କଥନ ଅନୁଯାୟୀ (୬ । ୩୭ । ୧୩) ହାତୀ ଉପରେ ବସିଥିବା ଯୋଦ୍ଧାମାନେ ସାଧାରଣତଃ 'ତୋମର' ଓ 'ଶୂଳ' ଦ୍ୱାରା ଯୁଦ୍ଧ କରୁଥାନ୍ତି । ହାତୀମାନଙ୍କୁ ମଧ୍ୟ ଆତ୍ମରକ୍ଷା ଲାଗି କବଚ ପିନ୍ଧାଇ ଦିଆଯାଉଥିଲା ।

ତତ୍ପରେ ସେନାବାହିନୀର ଚତୁର୍ଥ ଅଙ୍ଗ ରଥୀମାନଙ୍କ କଥା ବର୍ଣ୍ଣ୍ୟ । ରଥୀମାନଙ୍କର ମହତ୍ତ୍ୱ ବୈଦିକ ଯୁଗରୁ ହିଁ ଆରମ୍ଭ ହୋଇଥିଲା ଏବଂ ରାମାୟଣ-ମହାଭାରତ ଯୁଗରେ ଏହା ଶତଗୁଣ ବଢ଼ିଯାଇଥିଲା । ସେଥିପାଇଁ ଏହି ଯୁଗକୁ ବାସ୍ତବିକ ରଥର ଯୁଗ ବୋଲି କୁହାଯାଇଥାଏ । ଚକ୍ରବର୍ତ୍ତୀ ଏହି ମର୍ମରେ ତେଣୁ କହିଥାନ୍ତି :

> This period is the veritable chariot age of Indian history. (୨୨)

ଯୁଦ୍ଧରେ ବ୍ୟବହୃତ ହେଉଥିବା ରଥର ନାମ ଥିଲା 'ସାଂଗ୍ରାମିକ ରଥ' । ଏହାର ଏପରି ନାମକରଣର ତାତ୍ପର୍ଯ୍ୟ ହେଉଛି ଏହାକୁ ଅନ୍ୟାନ୍ୟ ରଥଠାରୁ ପୃଥକ୍ କରି ରଖିବା; କାରଣ ସେତେବେଳେ ରଥ ଯାତ୍ରି-ପରିବହନ ଓ ମାଲ ପରିବହନ କ୍ଷେତ୍ରରେ ମଧ୍ୟ ବ୍ୟବହୃତ ହେଉଥିଲା । ପୁଣି ଆଜିକାଲି ଭଳି 'ଗୋରଥ'ର (ଶଗଡ଼) ବ୍ୟବହାର ମଧ୍ୟ ସେତେବେଳେ ଥିଲା ବହୁମୁଖୀ । ଏହା 'ସାଂଗ୍ରାମିକ ରଥ'ର ଗଠନ କୌଶଳ ଠାରୁ ଥିଲା ଭିନ୍ନ । ଏଥିରେ ଯୋଦ୍ଧା ଓ ସାରଥିଙ୍କ ବସିବା ଲାଗି ତଥା ଅସ୍ତ୍ରଶସ୍ତ୍ର ରଖିବା ଲାଗି ସ୍ୱତନ୍ତ୍ର ଜାଗାମାନ ଥିଲା । ସଂଯୁକ୍ତ ଅଶ୍ୱମାନଙ୍କୁ ସ୍ୱତନ୍ତ୍ର ଭାବରେ ତାଲିମ ଦିଆଯାଉଥିଲା ।

ଅଶ୍ୱ ଭଳି ରଥ ମଧ୍ୟ ବୈଦିକ ଆର୍ଯ୍ୟମାନଙ୍କୁ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ଆର୍ଯ୍ୟେତର ଗୋଷ୍ଠୀମାନଙ୍କ ଉପରେ ବିଜୟହାସଲ କରିବା କ୍ଷେତ୍ରରେ ଯଥେଷ୍ଟ ସହାୟକ ହୋଇଥିଲା । ଏହା ଯୁଦ୍ଧକ୍ଷେତ୍ରରେ ଅଧିକତର ଗତିଶୀଳତା ଆଣିଦେବା ଫଳରେ ଆକ୍ରମଣ ଓ ପ୍ରତ୍ୟାକ୍ରମଣ ସହଜ-ସୁଲଭ ହୋଇଉଠିଥିଲା । ଏହା ଥିଲା କାଷ୍ଠରେ ନିର୍ମିତ । ପ୍ରଥମେ ଅବଶ୍ୟ ଚକଗୁଡ଼ିକ ନିଦା କାଠରେ ତିଆରି ହେଉଥିଲା, ଠିକ୍ ଯେମିତି ରଥଯାତ୍ରାବେଳେ ଠାକୁରଙ୍କ ରଥଚକଗୁଡ଼ିକ ଏବେ ତିଆରି ହେଉଛି । କିନ୍ତୁ ଏହାକୁ ଅପେକ୍ଷାକୃତ ଅଧିକ ହାଲୁକା କରିବା ଉଦ୍ଦେଶ୍ୟରେ ଏଥିରେ 'ଅର' (spokes) ଲାଗିବା ଆରମ୍ଭ ହେଲା । ଏହା ଅବଶ୍ୟ ସେହି ବୈଦିକକାଳ ମଧ୍ୟରେ ହିଁ ସମ୍ଭବ ହୋଇପାରିଥିଲା । ତେଣୁ

ସ୍ମାଯ୍ୟଣଯୁଗ ବେଳକୁ ଯେଉଁ ରଥଚକଗୁଡ଼ିକ ବ୍ୟବହୃତ ହେଉଥିଲା ସବୁ ଥିଲା ଅରଯୁକ୍ତ । ମଧ୍ୟ ଓ ଶେଷ ବୈଦିକଯୁଗରେ ବ୍ୟବହୃତ ରଥ ଓ ସ୍ମାଯ୍ୟଣ-ଯୁଗରେ ବ୍ୟବହୃତ ରଥ ମଧ୍ୟରେ ପ୍ରାୟ କିଛି ପ୍ରଭେଦ ନଥିଲା । ଅତଏବ, ବୈଦିକ ରଥ ସମ୍ପର୍କରେ କପରି ବର୍ଣ୍ଣନା ବେଦରେ ଦେଖିବାକୁ ମିଳେ ତଦ୍ ସମ୍ପର୍କରେ କିଛିଟା ଆଲୋକପାତ କରିବା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ । ଶର୍ମା ବୈଦିକ ରଥର ଗଠନ ପ୍ରଣାଳୀ ସମ୍ପର୍କରେ ସୂଚନା ଦେବାକୁ ଯାଇ କହନ୍ତି :

> In the Vedic period the chariot was usually a small-sized two-wheeled vehicle. It was drawn by two horses, occasionally by three or even four.. (୨୩)

ବେଳେ ବେଳେ ରଥକୁ ପାଞ୍ଚଟି ଘୋଡ଼ା ଟାଣୁଥିବାର ବର୍ଣ୍ଣନା ମଧ୍ୟ ବେଦରେ ଦେଖାଯାଏ । ତୈତ୍ତିରୀୟ ସଂହିତା (୧।୮।୭।୨) ଅନୁଯାୟୀ ରଥକୁ ପାଞ୍ଚଟି ଘୋଡ଼ା ଟାଣନ୍ତି (ରଥଃ ପଞ୍ଚବାହୀ) । ଏଭଳି ଧନହୀନ ଲୋକେ ଥିଲେ ଯେଉଁମାନେ କି ଦୁଇଟି ଲେଖାଏଁ ଘୋଡ଼ା ରଖିପାରୁ ନଥିଲେ । ସେମାନେ ଗୋଟିଏ ଘୋଡ଼ାଦ୍ୱାରା ଟଣା ହେଉଥିବା ରଥ ବ୍ୟବହାର କରୁଥିଲେ । ଋଗ୍-ବେଦରେ (୧୦।୧୦୧।୧୧) ଏଭଳି 'ଏକବାହୀ' ରଥର ବ୍ୟବହାର ସମ୍ପର୍କରେ ସୂଚନା ମିଳିଥାଏ । ପାଞ୍ଚରୁ ଅଧିକ ଘୋଡ଼ା ଟାଣୁଥିବା ରଥ ଥିଲା କି ନାହିଁ ତାହା ଅବଶ୍ୟ ବିତର୍କିତ ! ସବିତାଦେବଙ୍କୁ ସାତଗୋଟି ଘୋଡ଼ା ଟାଣୁଥିବା ରଥରେ ବସିଥିବାର ବର୍ଣ୍ଣନା ବେଦରେ ଦେଖିବାକୁ ମିଳିଥାଏ । ଏହାକୁ ପୂରାପୂରି କବି-କଳ୍ପନା ବୋଲି କହି ହେବନାହିଁ । ସମ୍ଭବତଃ ଏଭଳି ଏକ ରଥକୁ ଦେଖି ଆର୍ଯ୍ୟମାନେ ସବିତାଦେବଙ୍କଠାରେ 'ସପ୍ତବାହୀ' ରଥର ଉପଯୋଗକୁ ଆରୋପ କରିଥିବେ । ସେ ଯାହାହେଉ, ସେତେବେଳେ ଏକ ବା ଏକାଧିକ ଅଶ୍ୱଚାଳିତ ରଥର ବ୍ୟବହାର ଯେ ଚାଲିଥିଲା ଏଥିରେ ସନ୍ଦେହ ନାହିଁ ।

ରଥର ମଧ୍ୟଭାଗକୁ 'ଗର୍ତ୍ତ' ବୋଲି କୁହାଯାଉଥିଲା, ଯେଉଁଠିକି ଯୋଦ୍ଧାଙ୍କୁ ଠିଆ ହେବାକୁ ପଡ଼ୁଥିଲା । ସେ ପଡ଼ି ନଯିବାପାଇଁ କାଷ୍ଠର ପ୍ରତିବନ୍ଧ ରଖାଯାଇଥିଲା । ତାଙ୍କପାଇଁ ଗୋଟିଏ ଆସନ ଥିଲା ଯାହାର ନାମ ଥିଲା 'ବନ୍ଧୁର' । ତାହା ଏପରି ଭାବରେ ନିର୍ମିତ ହୋଇଥିଲା ଯେ ତାହା

ଉପରେ ବସି କରି ଯୁଦ୍ଧ କରିବା ସମ୍ଭବପର ହୋଇ ପାରୁଥିଲା । ରଥର ଡାହାଣ ପଟେ ସାରଥୀ ବସୁଥିଲେ ଏବଂ ବାଁ ପଟେ ଯୋଦ୍ଧା ବସୁଥିଲେ । ଯୋଦ୍ଧା ସବ୍ୟାସନ ଗ୍ରହଣ କରୁଥିବାରୁ ଅଥର୍ବବେଦରେ (୮ । ୮ । ୧୩) ତାଙ୍କୁ 'ସବ୍ୟେଷ୍ଠା' ବୋଲି କୁହାଯାଉଥିବାର ନିଦର୍ଶନ ମିଳିଥାଏ । ରଥର ଦୁଇ ଚକ ମଝିରେ ଯେଉଁ କାଷ୍ଠ ଖଣ୍ଡିକ ରହିଥିଲା ତାହାକୁ କୁହାଯାଉଥିଲା 'ଅକ୍ଷ' ବା ଅଖ । 'ଅକ୍ଷ'ର ମଝିରୁ ଗୋଟିଏ କାଷ୍ଠଦଣ୍ଡ ଆଗକୁ ଲମ୍ବି 'ଯୁଗ' ବା ଯୁଆଳି ସହିତ ସଂଯୁକ୍ତ ହୋଇଥିଲା । ତାହାର ନାମ ଥିଲା 'ଈଷ' । ଏହି ଯୁଆଳିଟି ଦୁଇ ପଟେ ଦୁଇଘୋଡ଼ାଙ୍କ କାନ୍ଧରେ ବନ୍ଧା ଯାଇଥିଲା । ଯୁଆଳିର ଯେଉଁ ଛିଦ୍ର ସହିତ ଈଷଦଣ୍ଡଟି ସଂଯୁକ୍ତ ହୋଇଥିଲା, ତାହାର ନାମ ଥିଲା 'ଖ' । ଘୋଡ଼ାର ଲଗାମ ଥିଲା ଗୋରୁ ଚମଡ଼ାରେ ତିଆରି; ତାହାକୁ କୁହାଯାଉଥିଲା 'ରଶନା' । ଏହି 'ରଶନା' ଘୋଡ଼ାର ପାଟିରେ ଥିବା 'ଶିପ୍ରା' ସହିତ ସଂଯୁକ୍ତ ହୋଇଥିଲା । ଏହାକୁ ଟାଣିବାଦ୍ୱାରା ଏବଂ ଢ଼ିଲା କରିବାଦ୍ୱାରା ଘୋଡାର ଗତିକୁ ନିୟନ୍ତ୍ରିତ କରାଯାଇପାରୁଥିଲା । ଚାବୁକଦ୍ୱାରା ସାରଥି ଘୋଡ଼ାମାନଙ୍କୁ ଚାଳିତ କରୁଥିଲା । ଏହାର ନାମ ଥିଲା 'କଶା' । ରଥକୁ ସାଧାରଣତଃ ଘୋଡ଼ାମାନେ ଟାଣୁଥିଲେ । କେତେକ କ୍ଷେତ୍ରରେ ଗଧ ଓ ଖଚର ମଧ୍ୟ ରଥକୁ ଟାଣୁଥିବାର ପ୍ରମାଣ ଆମେ ପାଇଥାଉଁ । (୨୪) ରଥକୁ 'ତ୍ରିବନ୍ଧୁର' ବା 'ତିନି ଆସନ ବିଶିଷ୍ଟ' ବୋଲି ବୈଦିକ ସାହିତ୍ୟରେ କୁହାଯାଇଛି । ଗୋଟିଏ ଆସନ ଥିଲା ଯୋଦ୍ଧାଙ୍କ ଲାଗି ଉଦ୍ଦିଷ୍ଟ ଏବଂ ଆଉ ଗୋଟିଏ ଆସନ ଥିଲା ସାରଥିଙ୍କ ପାଇଁ ଉଦ୍ଦିଷ୍ଟ । ସମ୍ଭବତଃ ତୃତୀୟ ଆସନଟି ଥିଲା ଅସ୍ତ୍ରଶସ୍ତ୍ର ପାଇଁ ଉଦ୍ଦିଷ୍ଟ । ବୈଦିକ ରଥର ଆହୁରି ଅନେକ ଭାଗ ବିଷୟରେ ଉଲ୍ଲେଖ ରହିଅଛି । ସେଗୁଡ଼ିକ ହେଲା 'ଅଙ୍କ', 'ନ୍ୟଙ୍କ', 'ଉଦ୍ଧି', 'ପକ୍ଷସ୍', 'ପାତଲ୍ୟ', 'ଭୂରିଜ୍' 'ରଥୋପସ୍ଥ', 'ରଥବାହନ' ଇତ୍ୟାଦି । ସେଗୁଡ଼ିକର ତାତ୍ପର୍ଯ୍ୟ କ'ଣ ତାହା ବୁଝାପଡ଼ୁ ନାହିଁ । ସେ ଯାହା ହେଉ, ସେହି ସମସ୍ତକୁ ବିଚାର କଲେ ଏଥିରେ ଯେ ଅତି ଉନ୍ନତ କାରିଗରୀ କୌଶଳର ବିନିଯୋଗ କରାଯାଉଥିଲା ଏ କଥା ନିଃସନ୍ଦେହରୂପେ କୁହା-ଯାଇପାରେ । କେତେକ ପଣ୍ଡିତଙ୍କ ମତ ହେଉଛି, ପ୍ରାଚୀନ ବୈଦିକ 'ପଞ୍ଚଜନ' (ପାଞ୍ଚ ଗୋଷ୍ଠୀ) ମଧ୍ୟରୁ 'ଅନୁ' ଗୋଷ୍ଠୀର ଆର୍ଯ୍ୟମାନଙ୍କୁ ଉତ୍ତମ ରଥ-ନିର୍ମାଣର କୌଶଳ ଜଣା ଥିଲା । ସେମାନଙ୍କଠାରୁ ଏହି ଜ୍ଞାନ-କୌଶଳ କ୍ରମେ ଅନ୍ୟ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ତଥା ପ୍ରସାରିତ ହୋଇଥିଲା । କାଳକ୍ରମେ ରଥ ତିଆରି କରିବାର ଜ୍ଞାନ-କୌଶଳ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର କାରିଗରଙ୍କ ମଧ୍ୟରେ ସୀମିତ ହୋଇରହିଲା । ଅଥର୍ବବେଦର (୩ । ୫ । ୬) କଥନ ଅନୁଯାୟୀ ସେମାନଙ୍କର ନାମ ହେଉଛି 'ରଥକାର' ।

ଏସ୍ତ ତ ହେଲା ବୈଦିକ ରଥର ପରିଚୟ । ରାମାୟଣରେ ମଧ୍ୟ ବିଭିନ୍ନ ଭାବରେ ରଥର ବିଭିନ୍ନ ଭାଗ ବିଷୟରେ ଉଲ୍ଲେଖ ଅଛି । ସେହି ବିବରଣୀ-ସମୂହକୁ ଏକତ୍ରିତ କଲେ ରାମାୟଣୀୟ ରଥର ନିମ୍ନଲିଖିତ ବିଭିନ୍ନ ଭାଗ ଥିବାର ଜଣାଯାଏ ।

କ) ଅକ୍ଷ—ରଥର ଅଖ ଯାହା ଦୁଇ ପଟର ଚକକୁ ଯୋଡ଼ିଥାଏ ।

ଖ) ଅନୁକର୍ଷ—ରଥତଳେ ଏହି ବଳକା କାଠଟି ବନ୍ଧା ଯାଇଥାଏ ଯାହା କି ଆବଶ୍ୟକ ହେଲେ ରଥର ମରାମତିରେ ବ୍ୟବହୃତ ହୋଇଥାଏ । ଏବେ ମଧ୍ୟ ରଥ ଯାତ୍ରାରେ ଠାକୁରମାନଙ୍କ ରଥରେ ଏଭଳି ଅଧିକ କାଠମାନ ବନ୍ଧା ଯାଉଛି ।

ଗ) ଉପସ୍ଥ—ଏହା ସାରଥିପାଇଁ ଉଦ୍ଦିଷ୍ଟ ଥିବା ଆସନ । ରାମାୟଣରେ (୩ । ୩୨ । ୯) ଜଣିରର ସାରଥି ରଥୋପସ୍ଥରୁ ତଳେ ପଡ଼ି-ଯାଇଥିବାର ବର୍ଣ୍ଣନା ଅଛି ।

ଘ) କୂବର—ଯୁଆଳିର ଦୁଇ ପଟେ ଲାଗିଥିବା ଦୁଇଟି କାଷ୍ଠଦଣ୍ଡ । ଏହାର ସାହାଯ୍ୟରେ ଘୋଡ଼ାର ବେକକୁ ଯୁଆଳିରେ ଦୃଢ଼ ଭାବରେ ବନ୍ଧା ଯାଇଥାଏ ।

ଙ) ଚକ୍ର—ଚକ ଯାହା କି କାଠରେ ତିଆରି ହୋଇଥାଏ । ରଥରେ ଦୁଇ କିମ୍ବା ତତୋଽଧିକ ଚକ ଥାଏ । ଗୋଟିଏ ରଥରେ ଆଠଟି ଚକ ଲାଗିଥିବା କଥା ରାମାୟଣରେ ଠାଏ (୭ । ୪୪ । ୨୮) ବର୍ଣ୍ଣିତ ।

ଚ) ତ୍ରିବେଣୁ—ଏହା ରଥର ସମ୍ମୁଖରେ ଥିବା ଏକ ସ୍ତମ୍ଭରୂପୀ କାଷ୍ଠ ଯାହା କି ଯୁଆଳିକୁ ଦୃଢ଼ ଭାବରେ ଧରି ରଖିବାରେ ସାହାଯ୍ୟ କରିଥାଏ ।

ଛ) ନୀଡ଼—ଏହା ହେଉଛି ରଥୀଙ୍କ ସମ୍ମୁଖରେ ଥିବା ନୀଡ଼ ସଦୃଶ ଏକ ସ୍ଥାନ । ଆତ୍ମରକ୍ଷା ପାଇଁ ରଥୀ ଏହାର ଉପଯୋଗ କରିଥାନ୍ତି ।

ଜ) ନେମି—ଚକରେ ଗୋଲକାର ଯେଉଁ କାଠଟି ବୁଲିଥାଏ ତାହା ହେଉଛି ନେମି ଯାହାର ଇଂରାଜୀ ପ୍ରତିରୂପ ହେଉଛି rim ।

ଝ) ବନ୍ଧୁର—ଏହା ରଥୀଙ୍କ ପାଇଁ ଉଦ୍ଦିଷ୍ଟ । ଏହା ଥିଲା ଗୋଟିଏ କାଠ-ପଟାର ଆସନ ।

ଞ) ବରୂଥ—ଏହା ହେଉଛି ରଥରେ ଦିଆଯାଇଥିବା ଏକ କାଠର ସୁରକ୍ଷା ବାଡ଼ । ଏହା ଯୁଦ୍ଧ ବେଳେ ରଥୀଙ୍କୁ ରଥରୁ ପଡ଼ି ନଯିବାପାଇଁ ସାହାଯ୍ୟ କରିଥାଏ ।

ରାବଣ ମାରୀଚ ପାଖକୁ ତା'ଙ୍କୁ ମାୟାମୃଗ ସାଜିବାପାଇଁ ପରାମର୍ଶ ଦେବା ଉଦ୍ଦେଶ୍ୟରେ ରଥ ଚଢ଼ି ଯାଇଥିଲା । ତା'ର ରଥର ଯେଉଁଭଳି ବର୍ଣ୍ଣନା ଦିଆଯାଇଛି (୯ । ୩୫ । ୬-୧୦) ତହିଁରୁ ତତ୍କାଳୀନ ରାଜକୀୟ ରଥ ବିଷୟରେ କିଛିଟା ଧାରଣା କରିହୁଏ । ସେହି ରଥଟି ଇଚ୍ଛାନୁସାର ଯାଇପାରୁଥିଲା ଏବଂ ଥିଲା ସୁବର୍ଣ୍ଣମୟ । ତାହା ଥିଲା ବିଭିନ୍ନ ରତ୍ନରେ ବିଭୂଷିତ । ତହିଁରେ ସୁନାର ଝାଲେରୀମାନ ଝୁଲୁଥିଲା । ତାହାକୁ ଗଧମାନେ ଟାଣୁଥିଲେ । ସେହି ଗଧମାନଙ୍କର ମୁହଁଟିମାନ ଥିଲା ପିଶାଚ-ମୁହଁ ଭଳି । ସେହି ରଥର ଘର୍ଘର-ନାଦ ମେଘଗର୍ଜନ ଭଳି ଶୁଭୁଥିଲା । ରାବଣର ଦୁଇ ପାର୍ଶ୍ୱରେ ଶ୍ୱେତ ରଙ୍ଗର ଚାମର ପଡ଼ୁଥିଲା । ଇଚ୍ଛାନୁସାରେ ଯାଇପାରୁଥିବା ସେହି ରଥଟି ଉପରେ ବସିବାଦ୍ୱାରା ରାବଣ ବିଦ୍ୟୁନ୍ମଣ୍ଡଳ ଘେରରେ ଥାଇ ବକପଙ୍କ୍ତିଦ୍ୱାରା ଶୋଭିତ ମେଘଖଣ୍ଡ ଭଳି ସୁନ୍ଦର ଦିଶୁଥିଲା । ଏ ତ ଗଲା ରାବଣର ରାଜକୀୟ ରଥ କଥା । ଯୋଦ୍ଧା-ମାନଙ୍କର ଅନ୍ୟ ରଥଗୁଡ଼ିକ ମଧ୍ୟ ଅଳ୍ପ-ବହୁତ ଏହିଭଳି ସୁନ୍ଦର ଥିଲା ଏବଂ ସେଗୁଡ଼ିକୁ ସାଧାରଣତଃ ଘୋଡ଼ାମାନେ ଟାଣୁଥିଲେ । ଯୁଦ୍ଧକ୍ଷେତ୍ରରେ ରାବଣର ରଥର ଯେଉଁ ବର୍ଣ୍ଣନା ଅଛି, (୬ । ୫୬ । ୨୪-୨୫), ତହିଁରୁ ଜଣାଯାଏ ଯେ ଏଥିରେ ବହୁଶଟି ତୂଣୀର, ବହୁସଂଖ୍ୟକ ବଡ଼ ବଡ଼ ଧନୁ ଓ ଗଦା ଏବଂ ଦୁଇପଟ ଖଣ୍ଡା ଥିଲା । ଖଣ୍ଡାଦ୍ୱୟ ରାବଣର ପାର୍ଶ୍ୱରେ ରଖାଯାଇଥିଲା । ସେହିପରି ଅକ୍ଷକୁମାରର ରଥରେ ଶକ୍ତି ଓ ତୋମର ଯଥାସ୍ଥାନରେ ଯଥାକ୍ରମରେ (ଯଥାକ୍ରମା-ବେଷ୍ଟିତଶକ୍ତିତୋମରୌ) ରଖାଯାଇଥିଲା । (୨୪-କ) ଯୋଦ୍ଧାମାନଙ୍କ ରଥସଜ୍ଜା ସମ୍ପର୍କରେ ଶର୍ମା ଯେଉଁ ଅନୁରୂପ ମତ ବ୍ୟକ୍ତ କରିଛନ୍ତି ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> The knight's war-car was lavishly decorated. It was richly laid in gold and precious stones; had gold-bells emitting out sweet jingle and carried a rich umbrella of one hundred gold ribs and a gold pole. Raised to its top, the chariot also had a pennon which was perhaps the ensign of the knight. (୨୫)

ରାଜାଙ୍କ ରଥରେ ଯେଉଁ ପତାକା ଉଡ଼ୁଥିଲା ତାହା ଥିଲା ତାଙ୍କ ରାଜ୍ୟର ଜାତୀୟ ପତାକା । ଉଦାହରଣ ସ୍ୱରୂପ, ଦଶରଥ ଓ ଭରତଙ୍କ ରଥରେ କୋବିଦାର ଚିହ୍ନିତ (ମନ୍ଦାର ଫୁଲ) ପତାକା ଉଡ଼ୁଥିଲା । ଏତଦ୍‌ବ୍ୟତୀତ ବୀରମାନଙ୍କର

ମଧ୍ଯ ସ୍ୱତନ୍ତ୍ର ପତାକା ଥିଲା, ଯାହାର ଉପଯୋଗ ସେମାନେ ନିଜ ନିଜର ରଥରେ କରୁଥିଲେ ।

ଯୁଦ୍ଧକ୍ଷେତ୍ରରେ ସାରଥିଙ୍କ ମହତ୍ତ୍ୱ ରଥୀଙ୍କ ମହତ୍ତ୍ୱଠାରୁ କିଛି କମ୍ ନଥିଲା । ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରତିଦ୍ୱନ୍ଦ୍ୱୀ ବୀର ଅପର ପକ୍ଷର ସାରଥିଙ୍କୁ ମାରିଦେବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ । କାରଣ ତାହା କରିବାଦ୍ୱାରା ଅପର ପକ୍ଷର ରଥଟି ଅଚଳ ହୋଇଯିବ ଏବଂ ଶତ୍ରୁ ଉପରେ ବିଜୟ ହାସଲ କରିବା ସହଜସାଧ୍ୟ ହୋଇଉଠିବ । ତେଣୁ ଯୋଦ୍ଧାଙ୍କୁ ଆତ୍ମରକ୍ଷା ପ୍ରସଙ୍ଗରେ ନିଜକୁ ତଥା ସାରଥିଙ୍କୁ ରକ୍ଷା କରିବାକୁ ପଡୁଥିଲା । ସାରଥି ମଧ୍ଯ ଥିଲେ ସମରକଳା-କୌଶଳରେ ଜଣେ ପ୍ରବୀଣ ବ୍ୟକ୍ତି । ନିଜ ପକ୍ଷର ଆକ୍ରମଣକୁ ଅଧିକତର ଫଳପ୍ରଦ କରିବା ସଙ୍ଗେ ସଙ୍ଗେ କିପରି ଭାବରେ ଶତ୍ରୁପକ୍ଷର ଆକ୍ରମଣକୁ ସଫଳ ଭାବରେ ପ୍ରତିହତ କରିହେବ, ସେହି କଥାକୁ ଆଖି ଆଗରେ ରଖି ସେ ରଥ-ସଞ୍ଚାଳନ କରୁଥିଲେ । ଆବଶ୍ୟକ ବେଳେ ଯୋଦ୍ଧାମାନଙ୍କ ସୁରକ୍ଷା ଲାଗି ସେ ରଥକୁ ପଛକୁ ଫେରାଇ ଆଣୁଥିଲେ । ରାବଣ ଯୁଦ୍ଧ କରି କରି କ୍ଳାନ୍ତ ହୋଇ-ଯିବାରୁ ତା'ର ସାରଥି ରଥଟିକୁ ଫେରାଇ ଆଣିଥିଲେ । ତାହା ଦେଖି ରାବଣ ତାଙ୍କ ଉପରେ ଖୁବ୍ ରାଗି ଉଠିଥିଲେ ଏବଂ ସେ ଏତଦ୍ୱାରା ଶତ୍ରୁପକ୍ଷକୁ ସାହାଯ୍ୟ କରୁଛନ୍ତି ବୋଲି ତାଙ୍କ ଉପରେ ଦୋଷାରୋପ କରିଥିଲେ । ସେ କିନ୍ତୁ ସବୁ କଥା ରାବଣଙ୍କୁ ବୁଝାଇ କହିବାରେ ଯାଇ ରାବଣ ଶାନ୍ତ ହୋଇଥିଲା । (୨୭)

ରାମାୟଣରେ ରଥଯୁଦ୍ଧକୁ ଅତି ମାନ୍ୟତା ଦିଆହୋଇଛି । ଯେ କୌଣସି ଯୁଦ୍ଧରେ ରଥଯୁଦ୍ଧ ହିଁ ବିଜୟ ଅଥବା ପରାଜୟର ନିଷ୍ପତ୍ତି କରୁଥିଲା । ଏହାର ପ୍ରାଧାନ୍ୟ ବିଷୟରେ ବ୍ରକିଙ୍ଗ୍‌ଟନ୍ ଯଥାର୍ଥରେ କହନ୍ତି :

> The type of combat most frequently depicted is that of warriors riding on chariots. Most duals are in fact instances of combat between two warriors mounted on chariots and there is even a specific, though rare, term for a chariot-duel (dvairatha) used only in the context of Rama's last combat with Ravana. (୨୭-କ)

ଏଥିରୁ ରଥ ଓ ରଥୀଙ୍କ ରାମାୟଣଯୁଗରେ କେତିକି ପ୍ରାଥମିକତା ଥିଲା, ତାହା ସହଜରେ ଅନୁମେୟ ।

ସେତେବେଳେ ନୌବାହିନୀ ମଧ୍ୟ ସେନାବାହିନୀର ଅନ୍ତର୍ଗତ ଥିଲା । ରାକ୍ଷସମାନେ ଥିଲେ ନୌଚାଳନାରେ ଖୁବ୍ ପଟୁ । ଭାରତ ମହାସାଗର, ବଙ୍ଗୋପସାଗର ଓ ଆରବସାଗର ଅଞ୍ଚଳରେ ସେମାନେ ଏହି ନୌବାହିନୀ ବଳରେ ନିଜର ଆଧିପତ୍ୟକୁ ବଜାୟ ରଖିଥିଲେ । ନୌବାହିନୀ କ୍ଷେତ୍ରରେ ପ୍ରତି-ଯୋଗିତା ନେଇ ସମ୍ଭବତଃ ରାବଣ ଓ ଆର୍ଯ୍ୟରାଜା ସହସ୍ରାର୍ଜ୍ଜୁନଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା । ଏହି ରାଜାଙ୍କର ପ୍ରକୃତରେ ସହସ୍ର ବାହୁ ନଥିଲା । ତାଙ୍କର ଯେଉଁ ବଡ଼ ବଡ଼ ନୌକା ଥିଲା, ସେଗୁଡ଼ିକ ଥିଲା ସହସ୍ର ଆହୁଲବିଶିଷ୍ଟ । ସାଙ୍କେତିକ ଭାଷାରେ ସେଗୁଡ଼ିକୁ ବାହୁ ବୋଲି ଧରି ତାଙ୍କୁ ସହସ୍ରାର୍ଜ୍ଜୁନ ବୋଲି ନାମ ଦିଆଯାଇଥିଲା । ଏହି ଯୁଦ୍ଧରେ ରାବଣର ପରାଜୟ ଘଟିଥିଲା ଏବଂ ଏହାର ଫଳରେ ରାବଣ ସହିତ ସହସ୍ରାର୍ଜ୍ଜୁନଙ୍କର ସନ୍ଧି ସ୍ଥାପିତ ହୋଇଥିଲା । ଏହି ସନ୍ଧିକୁ ଅନ୍ୟାନ୍ୟ ଆର୍ଯ୍ୟ ରାଜାମାନେ ବଡ଼ ସନ୍ଦେହପୂର୍ଣ୍ଣ ଚକ୍ଷୁରେ ଦେଖିବାକୁ ଲାଗିଥିଲେ ।

ନୌବାହିନୀର ଆଉ ଏକ ନିଦର୍ଶନ ମିଳେ ଶବରରାଜ ଗୁହଙ୍କଠାରେ । ତାଙ୍କର ପାଞ୍ଚଶହ ନୌକା ଥିଲା ଏବଂ ସେଗୁଡ଼ିକରେ ସଶସ୍ତ୍ର ସୈନ୍ୟ ଥିଲେ । ଭରତଙ୍କ ଚିତ୍ରକୂଟକୁ ଆଗମନ ଅବସରରେ ତାଙ୍କ ବିରାଟ ସେନାବାହିନୀକୁ ଦେଖି ଗୁହକ ମନରେ ସନ୍ଦେହ ଜାତ ହୋଇଥିଲା ଯେ ଭରତ ହୁଏତ ରାମଙ୍କୁ ଆକ୍ରମଣ କରିବା ଉଦ୍ଦେଶ୍ୟରେ ଆସୁଛନ୍ତି । ସେ ରାମଙ୍କ ବନ୍ଧୁ ହିସାବରେ ଏହି ସମ୍ଭାବ୍ୟ ଆକ୍ରମଣକୁ ପ୍ରତିହତ କରିବାକୁ ଚାହିଁଥିଲେ । ସେ ତେଣୁ ତାଙ୍କର ପାଞ୍ଚଶହ ନୌକାରେ ସଜ୍ଜିତ ଥିବା ନୌବାହିନୀକୁ ଆଦେଶ ଦେଇ କହିଥିଲେ ଯେ କୌଣସି ମତେ ଭରତଙ୍କୁ ଗଙ୍ଗାର ଅପର ପଟେ ଅଟକାଇ ରଖିବାକୁ ହେବ ଏବଂ ତାଙ୍କୁ ଗଙ୍ଗାକୁ ପାରି ହେବାର ସୁଯୋଗ ଦେବାକୁ ହେବନାହିଁ । ତାଙ୍କର ଏଭଳି ଆଶଙ୍କା ଅବଶ୍ୟ ଭିତ୍ତିହୀନ ବୋଲି ଜଣାପଡ଼ିବାରୁ ସେ ପରେ ଭରତଙ୍କୁ ସସୈନ୍ୟ ଅଭ୍ୟର୍ଥନା କରିଥିଲେ ।

**ସାମରିକ ଅଭିଯାନ :**

ଆମେ ସୈନ୍ୟବାହିନୀର ମୁଖ୍ୟତଃ ତିନିଗୋଟି ଅଭିଯାନ ସମ୍ପର୍କରେ ବର୍ଣ୍ଣନା ରାମାୟଣରେ ଦେଖିବାକୁ ପାଇଥାଉଁ । ପ୍ରଥମଟି ହେଲା ଭରତଙ୍କର ଅଯୋଧ୍ୟାରୁ ଚିତ୍ରକୂଟକୁ ଯାତ୍ରା । ଦ୍ୱିତୀୟଟି ହେଲା ରାମଙ୍କର କିଷ୍କିନ୍ଧାରୁ ଲଙ୍କାକୁ ଯାତ୍ରା ଏବଂ ତୃତୀୟଟି ହେଲା ଲକ୍ଷ୍ମଣଙ୍କର ଅଯୋଧ୍ୟାରୁ ଲବଣାସୁରର ରାଜଧାନୀ ମଧୁପୁରୀକୁ ଯାତ୍ରା । ପ୍ରଥମ ଯାତ୍ରାକୁ ସାମରିକ ଅଭିଯାନ ବୋଲି ଧରାଯାଇ ପାରିବ ନାହିଁ; କାରଣ ତାହା ଥିଲା ଭରତଙ୍କର ରାମଙ୍କ ନିକଟକୁ ଏକ

ଶୁଭେଚ୍ଛାମୂଳକ ଯାତ୍ରା । ତାହା ସତ୍ତ୍ୱେ ଏଥିରୁ ସୈନ୍ୟବାହିନୀର ଅଭିଯାନ ସମ୍ପର୍କୀୟ ଅନେକ ତଥ୍ୟ ଜାଣିହୁଏ । ଦ୍ୱିତୀୟ ଓ ତୃତୀୟ ଯାତ୍ରା ଥିଲା ସମ୍ପୂର୍ଣ୍ଣ ଭାବରେ ସାମରିକ ଅଭିଯାନ ।

ବାଲ୍ମୀକଙ୍କ ମତରେ ବର୍ଷା ଋତୁ ପରେ ହେମନ୍ତ ଓ ବସନ୍ତ ଋତୁ ହେଉଛି ସାମରିକ ଅଭିଯାନପାଇଁ ପ୍ରକୃଷ୍ଟ ସମୟ । ରାମଙ୍କ ଲଙ୍କା ପ୍ରତି ହୋଇଥିବା ଅଭିଯାନ ବସନ୍ତ ଋତୁରେ ସଂଘଟିତ ହୋଇଥିଲା । ବାସ୍ତବିକ ଏହି ପରଂପରା ବୈଦିକ କାଳରୁ ହିଁ ଭାରତରେ ଚାଲିଆସୁଛି । ବୈଦିକ 'ଦାଶରାଜ୍ଞ-ଯୁଦ୍ଧ' ଶିଶିର ଋତୁରେ ହୋଇଥିଲା । ମହାଭାରତ ଯୁଦ୍ଧର ସମୟ ମଧ୍ୟ ଠିକ୍ ସେହିପରି ମାର୍ଗଶିର ମାସ । ଭାରତର ଯେତେ ବଡ଼ ବଡ଼ ଯୁଦ୍ଧ ଅତୀତରେ ଘଟି-ଆସିଛି କିମ୍ବା ଏବେ ବି ଘଟୁଛି, ତାହାର ସମୟ ହେଉଛି ଅକ୍ଟୋବର ମାସରୁ ଡ଼ିସେମ୍ବର ମାସ ମଧ୍ୟରେ । ପି. ସେନ୍ ଶର୍ମାଙ୍କର ମଧ୍ୟ ଏହା ହିଁ ମତ । ତାଙ୍କ ଭାଷାରେ :

> The war of Kurukshetra started on the newmoon day of Agrahayana (November—December). It is also noteworthy that all the wars fought in this subcontinent recently were also held by about the same season, i. e, October to December. In the middle ages the Muslim conquerors also invaded India from the West during the five months' time from October to February. (୨୭)

ନିମ୍ନଲିଖିତ କାରଣରୁ ହେମନ୍ତରୁ ବସନ୍ତ ଋତୁ ମଧ୍ୟରେ ଯୁଦ୍ଧ କରିବା ସୁବିଧାଜନକ :

କ) ସେତେବେଳକୁ ଫସଲ ଅମଳ ସରିଯାଇଥାଏ ।

ଖ) ସୈନ୍ୟବଳ ସଂଗ୍ରହ ଲାଗି ଏହା ଥାଏ ଉତ୍କୃଷ୍ଟ ସମୟ ।

ଗ) ପାଣି ଶୁଖିଲା ଥାଏ ।

ଘ) ବର୍ଷା ହେବାର ସମ୍ଭାବନା ଖୁବ୍ କମ୍ ଥାଏ ।

ଙ) ଉଭୟ ସ୍ଥଳପଥରେ ଓ ଜଳପଥରେ ଯାତ୍ରା କରିବା ସୁବିଧାଜନକ ହୋଇଥାଏ ।

ଚ) କୌଣସି ସଂକ୍ରାମକ ରୋଗ ବ୍ୟାପିବାର ସମ୍ଭାବନା ନଥାଏ ।

ରାମାୟଣୀୟ ଯୁଦ୍ଧଯାତ୍ରା ଯେ କେବଳ ଋତୁ ଉପରେ ନିର୍ଭରଶୀଳ ଥିଲା ତାହା ନୁହେଁ; ତାହା ଗ୍ରହ-ନକ୍ଷତ୍ରର ସ୍ଥିତି ଉପରେ ମଧ୍ୟ ନିର୍ଭର କରୁଥିଲା। ଶୁଭଲଗ୍ନ ଦେଖି ଯାତ୍ରାରମ୍ଭ କରାଯାଉଥିଲା । ଉଦାହରଣସ୍ୱରୂପ ଲଙ୍କା-ଯାତ୍ରା ଦିବସରେ ଚନ୍ଦ୍ରଙ୍କର ସ୍ଥିତି ଥିଲା ଉତ୍ତରା ଫାଲ୍‌ଗୁନୀ ନକ୍ଷତ୍ରରେ ଏବଂ ତହିଁ ଆରଦିନ ତାଙ୍କର ହସ୍ତା ନକ୍ଷତ୍ରକୁ ଯିବାର କଥା । ଉତ୍ତରା ଫାଲଗୁନୀ ନକ୍ଷତ୍ରରେ ଚନ୍ଦ୍ର ଥିଲା-ବେଳେ ଯେଉଁ ଯାତ୍ରା କରାଯାଏ, ତାହା ବିଜୟ ଆଣି ଦେଇଥାଏ । ତେଣୁ ରାମଙ୍କ ପରାମର୍ଶରେ ସେହିଦିନ ହିଁ ଲଙ୍କା-ଅଭିଯାନ ଆରମ୍ଭ ହୋଇଥିଲା ।

କିନ୍ତୁ ସେହି ରାମ ଲବଣାସୁରର ରାଜଧାନୀକୁ ଯାତ୍ରା କରିବା ପାଇଁ ଶତ୍ରୁଘ୍ନଙ୍କୁ ପୃଥକ୍ ପରାମର୍ଶ ଦେଇଥିଲେ । ସେ ବର୍ଷା ଋତୁରେ ଅଭିଯାନ କରିବାପାଇଁ ପରାମର୍ଶ ଦେଇଥିଲେ ଯାହାକି ଥିଲା ସୈନ୍ୟଚାଳନାର ନୀତିବିରୋଧୀ। ଏହା ମୂଳରେ ସାମରିକ କୂଟନୀତି ନିହିତ ଥିଲା । ଲବଣାସୁର ଶିବପ୍ରଦତ୍ତ ଶୂଳବଳରେ ଥିଲା ବଳୀୟାନ୍ ତଥା ଅଜେୟ । ସେ ଥିଲା ଖୁବ୍ ଅତ୍ୟାଚାରୀ ଏବଂ ଆର୍ଯ୍ୟ-ସଂସ୍କୃତି ଲାଗି ଏକ କଣ୍ଟକସଦୃଶ । ତାକୁ କୌଣସି ମତେ ମାରିବା ଥିଲା ରାମଙ୍କ ଉଦ୍ଦେଶ୍ୟ । ବର୍ଷାଋତୁ ଆକ୍ରମଣର ସମୟ ହୋଇ ନଥିବାରୁ ସେତେବେଳେ ସେ ଯୁଦ୍ଧପାଇଁ ଅପ୍ରସ୍ତୁତ ଥିବ ଏବଂ ସେହି ଦୁର୍ବଳତାର ସୁଯୋଗ ନେଇ ତାକୁ ପରାସ୍ତ ତଥା ହତ୍ୟା କରିବାକୁ ହେବ । ଏହି ଲକ୍ଷ୍ୟସାଧନ ନିମିତ୍ତ ରାମ ବର୍ଷାଭିଯାନ ଲାଗି ଏଭଳି ପରାମର୍ଶ ଦେଇଥିଲେ ଏବଂ ଶତ୍ରୁଘ୍ନ ତାହାକୁ କାର୍ଯ୍ୟରେ ପରିଣତ କରି ଲକ୍ଷ୍ୟସାଧନରେ ସଫଳକାମ ହୋଇପାରିଥିଲେ । ଶର୍ମା ମଧ୍ୟ ଏହି ମତର ପରିପୋଷଣ କରନ୍ତି ଯେଉଁଠି ସେ କହନ୍ତି :

> The operation against Lavana was a clandestine move and naturally the movement of the army was done in a surreptitious manner. (୨୭-କ)

ଏଥିରୁ ଜଣାପଡ଼ୁଛି ଯେ ସୈନ୍ୟ-ଚାଳନା ଲାଗି ନିର୍ଦ୍ଦିଷ୍ଟ ପାରଂପରିକ ଋତୁ ଧାର୍ଯ୍ୟ କରାଯାଇଥିଲେ ହେଁ ସାମରିକ ଲକ୍ଷ୍ୟସାଧନ ଲାଗି ବେଳେ ବେଳେ ଅସମୟରେ ମଧ୍ୟ ଅତର୍କିତ ଆକ୍ରମଣ ଉଦ୍ଦେଶ୍ୟରେ ସାମରିକ ଅଭିଯାନମାନ ରଚିତ ହେଉଥିଲା ।

ଅନ୍ଧ ଭାବରେ ଅଭିଯାନ ରଚନା କଲେ ତାହାର କିଛି ସୁଫଳ ମିଳେନାହିଁ । ବରଂ ଏଥିରେ ବିପର୍ଯ୍ୟୟର ଆଶଙ୍କା ଥାଏ । ତେଣୁ ଅଭିଯାନ ପୂର୍ବରୁ ଶତ୍ରୁର ବଳାବଳ, ତା'ର ସ୍ଥିତି, ଚଳଚଳନ, ସୁରକ୍ଷା ବ୍ୟବସ୍ଥା, ରସ୍ତାଘାଟ ଇତ୍ୟାଦି

ସମ୍ପର୍କରେ ପୂର୍ବରୁ ବିଶଦ ବିବରଣୀ ସଂଗ୍ରହ କରିବାକୁ ପଡ଼ିଥାଏ । ସାଧାରଣତଃ ଗୁପ୍ତଚରମାନଙ୍କଦ୍ୱାରା ଏହି ସଂବାଦ ସଂଗ୍ରହ କରିବାକୁ ପଡ଼ିଥାଏ । ସାମରିକ ଭାଷାରେ ତାହାକୁ କୁହାଯାଏ 'Appreciation Report' ଯାହାକି ଏବେ ମଧ୍ୟ ଅନୁସୃତ ହେଉଛି । ରାମାୟଣ ଯୁଗରେ ମଧ୍ୟ ଏହି ନୀତି ଅନୁସୃତ ହେଉଥିଲା । ରାମଙ୍କ ବଳାବଳ ତଥା ଅନ୍ୟାନ୍ୟ ତଥ୍ୟ ସମ୍ପର୍କରେ ସଂବାଦ-ସଂଗ୍ରହ ଉଦ୍ଦେଶ୍ୟରେ ରାବଣ ତା'ର ଗୁପ୍ତଚର ଶୁକ ଓ ସାରଣଙ୍କୁ ପଠାଇଥିଲା । ହନୁମାନ୍ ମଧ୍ୟ ରାମଙ୍କ ଗୁପ୍ତଚର ହିସାବରେ ଲଙ୍କାର ବଳାବଳ ସମ୍ପର୍କୀୟ ସମସ୍ତ ତଥ୍ୟ ତାଙ୍କୁ ପ୍ରଦାନ କରିଥିଲେ ଯାହାକି ରାମାୟଣରେ (୬ । ୩) ଅତି ରୋଚକ ଭାବରେ ବର୍ଣ୍ଣିତ । ଏହିସବୁ ତଥ୍ୟ ଦେଇସାରିବା ଉତ୍ତାରୁ ସେ ରାମଙ୍କୁ ଶୀଘ୍ର ଠିକଣା ସମୟରେ ଲଙ୍କା ପ୍ରତି ଅଭିଯାନ ରଚନା କରିବାପାଇଁ ପରାମର୍ଶ ଦେଇଥିଲେ । ଏହି ପ୍ରସଙ୍ଗରେ ସେ କହିଥିଲେ :

> ଏବମାଜ୍ଞାପୟ କ୍ଷିପ୍ରଂ ବଲାନାଂ ସର୍ବସଂଗ୍ରହମ୍ ।
> ମୁହୂର୍ତ୍ତେନ ତୁ ଯୁକ୍ତେନ ପ୍ରସ୍ଥାନମଭିରୋଚୟ । (୨୮)

ଅର୍ଥାତ୍ ଆପଣ ଏହା ବୁଝି ଶୀଘ୍ର ହିଁ ସମସ୍ତ ସୈନ୍ୟଙ୍କୁ ଆବଶ୍ୟକ ସାମଗ୍ରୀମାନ ସଂଗ୍ରହ କରି ଏକଜୁଟ ହେବାପାଇଁ ଆଦେଶ ଦିଅନ୍ତୁ ଏବଂ ଠିକଣା ମୁହୂର୍ତ୍ତରେ ଯାତ୍ରାରମ୍ଭ କରିବାପାଇଁ ଇଚ୍ଛା କରନ୍ତୁ । ଏଥିରୁ ଅନୁମିତ ହୁଏ ଯେ ଅଭିଯାନ ଲାଗି ଆବଶ୍ୟକ ଥିବା ସମସ୍ତ ସାମଗ୍ରୀର ସଂଗ୍ରହ ହୋଇସାରିବା ପରେ ଯାଇ ଅଭିଯାନ ଆରମ୍ଭ ହେଉଥିଲା ଏବଂ ତାହା ଠିକଣା ମୁହୂର୍ତ୍ତରେ ହିଁ କରାଯାଉଥିଲା । ପୁନଶ୍ଚ ଲବଣାସୁରର ଅତ୍ୟାଚାର ବିଷୟ ଉଲ୍ଲେଖ କରି ଋଷି-ବ୍ରାହ୍ମଣମାନେ ଯେତେବେଳେ ରାମଙ୍କ ଆଗରେ ଗୁହାରି କରିଥିଲେ ଏବଂ ସେମାନଙ୍କୁ ସୁରକ୍ଷା-ପ୍ରଦାନ ଲାଗି ଅନୁରୋଧ କରିଥିଲେ, ରାମ ସେଥିରେ ରାଜି ହୋଇଥିଲେ । କିନ୍ତୁ ହଠାତ୍ ଯୁଦ୍ଧଯାତ୍ରା କରିବାକୁ ସେ ପସନ୍ଦ କରିନଥିଲେ । ସେ ଲବଣାସୁରର ବଳାବଳ, ଗତିଚଳନ ଇତ୍ୟାଦି ବିଷୟରେ ସମସ୍ତ ତଥ୍ୟ ସେମାନଙ୍କଠାରୁ ସଂଗ୍ରହ କରିସାରିବାପରେ ଯାଇ ତା' ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବାର ନିଷ୍ପତ୍ତି ନେଇଥିଲେ ।

ଯୁଦ୍ଧଯାତ୍ରା କଲାବେଳେ ଶତ୍ରୁପକ୍ଷରୁ କିମ୍ବା ଶତ୍ରୁର ମିତ୍ରଶକ୍ତିପକ୍ଷରୁ ଅତର୍କିତ ଆକ୍ରମଣର ଆଶଙ୍କା ଥିଲା । ଯାତ୍ରାପଥ ଦୀର୍ଘ ହୋଇଥିଲେ ବହୁତ ଦିନ ଧରି ରାଜଧାନୀରୁ ଅନୁପସ୍ଥିତ ରହିବାକୁ ପଡ଼ୁଥିଲା । ସେଥିପାଇଁ ରାଜଧାନୀର ସୁରକ୍ଷା ଲାଗି ଉପଯୁକ୍ତ ବ୍ୟବସ୍ଥାମାନ କରିଯିବାକୁ ପଡ଼ୁଥିଲା । ଏହି ଉପଲକ୍ଷ୍ୟେ

ରାଜଧାନୀରେ ଉପଯୁକ୍ତ ସଂଖ୍ୟକ ସୈନ୍ୟଙ୍କୁ ମୁତୟନ କରିବାକୁ ପଡ଼ୁଥିଲା । ବାଲ-ବୃଦ୍ଧମାନଙ୍କୁ ଆଦୌ ଅଭିଯାନରେ ସାମିଲ ହେବାକୁ ପଡ଼ୁନଥିଲା । ରାମ ତେଣୁ ବାଲ-ବୃଦ୍ଧମାନଙ୍କୁ କିଷ୍କିନ୍ଧାରେ ଛାଡ଼ିଯିବାପାଇଁ ପରାମର୍ଶ ଦେଇ କହିଥିଲେ :

ଯତ୍ତୁ ଫଲ୍‌ଗୁବଲଂ କିଞ୍ଚିତ୍ ତଦତ୍ରୈବୋପପଦ୍ୟତାମ୍ ।
ଏତଦ୍ଧି କୃତ୍ୟଂ ଘୋରଂ ନୋ ବିକ୍ରମେଣ ପ୍ରଯୁଜ୍ୟତାମ୍ ।। (୨୧)

ଅର୍ଥାତ୍ ଯେଉଁ ସେନାମାନଙ୍କ ମଧ୍ୟରେ ବାଲ-ବୃଦ୍ଧ ଥିବା ହେତୁ ଦୁର୍ବଳତା ରହିଛି, ସେମାନେ ଏଠାରେ (କିଷ୍କିନ୍ଧାରେ) ରହିଯାଆନ୍ତୁ । କାରଣ ଆମର ଏହି ଯୁଦ୍ଧକର୍ମଟି ବଡ଼ ଭୟଙ୍କର । ତେଣୁ ସେଥିପାଇଁ ବଲବିକ୍ରମସଂପନ୍ନ ସେନାମାନଙ୍କୁ ହିଁ ଯାତ୍ରା କରିବାକୁ ହେବ ।

ଯେଉଁ ମାର୍ଗ ଦେଇ ସେନାବାହିନୀ ଯାତ୍ରା କରୁଥିଲା, ତାହା ଯେପରି ସୁଗମ ହେବ ସେଥିପ୍ରତି ସମ୍ୟକ ଦୃଷ୍ଟି ଦିଆଯାଉଥିଲା । ତାହାଛଡ଼ା ଶତ୍ରୁର ସମ୍ଭାବ୍ୟ ଅତର୍କିତ ଆକ୍ରମଣ ପ୍ରତି ମଧ୍ୟ ଯଥେଷ୍ଟ ସାବଧାନ ରହିବାକୁ ପଡ଼ୁଥିଲା । ଲଙ୍କାଭିଯାନ ଅବସରରେ ରାମ ବାନରବାହିନୀର ସେନାପତି ନୀଲଙ୍କୁ ଏ ସମ୍ପର୍କରେ ଯେଉଁ ଆଦେଶ ଦେଇଛନ୍ତି, (୬ । ୪ । ୧୦-୧୨) ତାହା ଏଠାରେ ପ୍ରଣିଧାନ-ଯୋଗ୍ୟ । ତାଙ୍କ ବକ୍ତବ୍ୟର ସାରମର୍ମ ହେଲା :

କ) ଏଭଳି ମାର୍ଗରେ ସେନାବାହିନୀକୁ ଶୀଘ୍ର ଗତିରେ ଚଲାଇନେବାକୁ ହେବ ଯେଉଁଠି ପ୍ରଚୁର ପରିମାଣରେ ଫଳ-ମୂଳ ମିଳୁଥିବ, ଛାୟାଯୁକ୍ତ ସଘନ ବନ ଥିବ ଏବଂ ଶୀତଳ ଜଳ ଓ ମଧୁର ପ୍ରାଚୁର୍ଯ୍ୟ ଥିବ ।

ଖ) ରାକ୍ଷସମାନେ ଫଳ-ମୂଳ, ଜଳ ଓ ମଧୁକୁ ଦୂଷିତ ତଥା ବିଷାକ୍ତ କରିଦେଇଥିବେ; ତେଣୁ ସେଥିପ୍ରତି ସାବଧାନ ହେବାକୁ ପଡ଼ିବ ।

ଗ) ଖାଲି ଜାଗା କିମ୍ବା ଗହନ ବନ ଅଞ୍ଚଳରେ ଶତ୍ରୁସୈନ୍ୟ ଛପି କରି ରହିଥାଇ ପାରନ୍ତି; ତେଣୁ ସେହି ଜାଗାଗୁଡ଼ିକୁ ଭଲ ଭାବରେ ଯାଞ୍ଚ କରିନେବାକୁ ପଡ଼ିବ ।

ଅଭିଯାନ ସମୟରେ କିପରି ଯଥୋପଯୋଗୀ ସତର୍କତା ତଥା ସାବଧାନତା ଅବଲମ୍ବନ କରାଯାଉଥିଲା, ତାହାର ନିଦର୍ଶନ ଏଥିରୁ ମିଳିଥାଏ ।

ପୂର୍ବରୁ କୁହାଯାଇଛି ଯେ ଭରତଙ୍କ ଚିତ୍ରକୂଟକୁ ସେନାବାହିନୀ ଧରି ଯାତ୍ରା କରିବାର କିଛି ସାମରିକ ଲକ୍ଷ୍ୟ ନଥିଲା ଏବଂ ଏହା ଥିଲା ସଂପୂର୍ଣ୍ଣ ଭାବରେ

ଶୁଭେଚ୍ଛାମୂଳକ । କିନ୍ତୁ ରାମାୟଣୀୟ ସାମରିକତା ସମ୍ପର୍କରେ ବିସ୍ତୃତ-ଆଲୋଚନା କଲାବେଳେ ଏହାର ମହତ୍ତ୍ୱ ଅପରିହାର୍ଯ୍ୟ; କାରଣ ଏହି ସେନାବାହିନୀ ସହିତ ଯେଉଁମାନେ ନିଜକୁ ସାମିଲ କରିଥିଲେ, ସେହିମାନେ ହିଁ ସାଧାରଣତଃ ଯୁଦ୍ଧଯାତ୍ରା ସମୟରେ ସେନାବାହିନୀ ସାଥିରେ ଚାଲୁଥିଲେ । ସେମାନେ ଯେଉଁ ଯେଉଁ କାର୍ଯ୍ୟମାନ କରିବା ଉଦ୍ଦେଶ୍ୟରେ ସେନାବାହିନୀ ସହିତ ସାମିଲ ହୋଇଥିଲେ, ଯୁଦ୍ଧଯାତ୍ରା ସମୟରେ ପ୍ରାୟ ସେହି ସେହି କାର୍ଯ୍ୟମାନ ହିଁ କରିବାକୁ ପଡ଼ୁଥିଲା । ମୁଖ୍ୟ ସେନାବାହିନୀର ଯାତ୍ରା ପୂର୍ବରୁ ଆଗୁଆ ଦଳ ହିସାବରେ ରାସ୍ତା ସଫା କରିବାପାଇଁ ଏବଂ ଆବଶ୍ୟକ ସ୍ଥଳେ ନୂତନ ଅସ୍ଥାୟୀ ରାସ୍ତା ବା ପୋଲ ତିଆରି କରିବାପାଇଁ ଶ୍ରମଜୀବୀମାନେ ଯାଇଥିଲେ । ଏତଦ୍‌ବ୍ୟତୀତ ବଢ଼େଇ, କମାର ଠାରୁ ଆରମ୍ଭ କରି ଆହୁରି ଅନେକ କୁଶଳୀ କାରିଗର ମଧ୍ୟ ଯାଇଥିଲେ । ଶର୍ମା ସେମାନଙ୍କ ତାଲିକା ଦର୍ଶାଇବାକୁ ଯାଇ କହନ୍ତି :

> Valmiki supplies a long list of pioneers which includes levellers, wood-cutters, road-makers, diggers, engineers, surveyors and supervisors who preceded Bharata and his retinue. (୩୦)

ବାଟରେ ଅନେକ ସ୍ଥାନରେ ସେନାବାହିନୀକୁ ଶିବିର ପକାଇବାକୁ ପଡ଼ୁଥିଲା । ସେମାନଙ୍କ ରହିବା ଲାଗି ଅସ୍ଥାୟୀ ବାସସ୍ଥାନମାନ ନିର୍ମିତ ହୋଇଥିଲା । ରାମାୟଣର ବର୍ଣ୍ଣନା ଅନୁଯାୟୀ (୨ । ୮୯ । ୧୫) ଗୋଟିଏ ଶିବିରରୁ ଆଉ ଗୋଟିଏ ଶିବିରକୁ ଅଗ୍ରସର ହେଲାବେଳେ ପୂର୍ବ ଶିବିରର ବାସସ୍ଥାନଗୁଡ଼ିକୁ ଜାଳି ନଷ୍ଟ କରିଦିଆ-ଯାଉଥିଲା । ଏହାର ଏକମାତ୍ର ଲକ୍ଷ୍ୟ ଥିଲା ଶତ୍ରୁପକ୍ଷ ଯେପରି ଏଗୁଡ଼ିକୁ ଉପଯୋଗ କରିବାର ସୁଯୋଗ ପାଇନପାରିବ । ବ୍ରକିଙ୍ଗ୍‌ଟନ ମଧ୍ୟ ଏହି ମତର ପରିପୋଷକ । ତାଙ୍କ ଭାଷାରେ :

> Also there is a suggestion in the account of Bharata's expedition that the encampments were regularly burnt on being vacated, presumably to prevent their use by the enemy. (୩୦-କ)

ଯାତ୍ରା ସମୟରେ ସୈନ୍ୟମାନଙ୍କର ଯାବତୀୟ ସୁବିଧା-ସୁଯୋଗ ପ୍ରତି ସମ୍ୟକ୍ ଦୃଷ୍ଟି ଦିଆଯାଉଥିଲା । ଏପରିକି ସେମାନଙ୍କ ମନୋରଞ୍ଜନର ମଧ୍ୟ ସୁବ୍ୟବସ୍ଥା କରାଯାଉଥିଲା । ରାମ ଶତ୍ରୁଘ୍ନଙ୍କୁ ଲବଣାସୁରର ରାଜଧାନୀ ପ୍ରତି ଯାତ୍ରା

କରିବା ଅବସରରେ ଅନ୍ୟାନ୍ୟ ଆବଶ୍ୟକ ଲୋକମାନଙ୍କ ଛଡ଼ା ନର୍ତ୍ତକୀମାନଙ୍କୁ ମଧ୍ୟ ସଙ୍ଗରେ ନେଇଯିବା ନିମିତ୍ତ ନିର୍ଦ୍ଦେଶ ଦେଇଥିଲେ । ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀମାନ ଯେପରି ସୈନ୍ୟମାନଙ୍କୁ ସୁଲଭ ହୋଇପାରିବ, ସେଥିପାଇଁ ଦୋକାନୀମାନଙ୍କୁ ମଧ୍ୟ ସାଥିରେ ନେଇଯିବାପାଇଁ ସେ ପରାମର୍ଶ ଦେଇଥିଲେ ।

ତତ୍କାଳୀନ ସାମରିକ ଅଭିଯାନର ବିସ୍ତୃତ ବର୍ଣ୍ଣନା ରାମଙ୍କ ଲଙ୍କା-ଅଭିଯାନର ବିବରଣୀରୁ ମିଳିଥାଏ । ରାମଙ୍କ ବାନର ସୈନ୍ୟମାନେ ଯେ କେବଳ ମେଳି ବାନ୍ଧି ବିଶୃଙ୍ଖଳ ଭାବରେ ଚାଲୁଥିଲେ ତାହା ନୁହେଁ । ସେମାନଙ୍କ ଯାତ୍ରା ଥିଲା ଶାସ୍ତ୍ରନିର୍ଦ୍ଦିଷ୍ଟ ଏକ ବିଧିବଦ୍ଧ ସେନା-ଶୃଙ୍ଖଳାର ଅନୁବର୍ତ୍ତୀ । ସେନାର ଅଗ୍ରଭାଗକୁ କୁହାଯାଉଥିଲା 'ମୂର୍ଦ୍ଧନ୍', ବାମ ଓ ଦକ୍ଷିଣ ଭାଗକୁ 'ପାର୍ଶ୍ୱ', ଏବଂ ମଧ୍ୟଭାଗକୁ 'କୁକ୍ଷି' ଅଥବା 'ଉରସ୍' । ବାନରସେନାର ଦକ୍ଷିଣ ପାର୍ଶ୍ୱର ନେତୃତ୍ୱ ନେଇଥିଲେ ଗଜ, ଗବୟ ଓ ଗବାକ୍ଷ । ବାମ ପାର୍ଶ୍ୱର ନେତୃତ୍ୱ ନେଇଥିଲେ ବାନରବୀର ଗନ୍ଧମାଦନ । ରାମ, ଲକ୍ଷ୍ମଣ ଓ ସୁଗ୍ରୀବ ସେନାବାହିନୀର ମଧ୍ୟଭାଗର ସୁରକ୍ଷା-ଦାୟିତ୍ୱ ବହନ କରିଥିଲେ । ସେନାବାହିନୀର ପୃଷ୍ଠଭାଗର ସୁରକ୍ଷା ଭାର ନ୍ୟସ୍ତ ଥିଲା ଜାମ୍ବବାନଙ୍କ ଉପରେ । ସେ କିପରି ସୈନ୍ୟମାନଙ୍କୁ ସର୍ବଦା କର୍ମରତ ରହିବାପାଇଁ ନାନା ପ୍ରକାର ପ୍ରୋତ୍ସାହନ ବାଣୀ ଶୁଣାଉଥିଲେ, ତାହା ରାମାୟଣରେ (୬ । ୪ । ୧୫-୧୬) ଅତି ରୋଚକ ଭାବରେ ବର୍ଣ୍ଣିତ । ଏହି ସେନାବାହିନୀ କିଷ୍କିନ୍ଧାରୁ ବାହାରି ସିଧାସଳଖ ଲଙ୍କାର ଅପର ପାର୍ଶ୍ୱରେ ସମୁଦ୍ରତଟରେ ଯାଇ ଶିବିର ପକାଇଥିଲା । ବାଟରେ କୌଣସି ସ୍ଥାନରେ ଶିବିର ପକାଇବାର ଉଲ୍ଲେଖ ରାମାୟଣରେ ନାହିଁ । ଅନ୍ୟ ପକ୍ଷରେ ଏହି ସେନାବାହିନୀ ଅଦମ୍ୟ ଉତ୍ସାହରେ ଅବିଶ୍ରାନ୍ତ ଗତିରେ ଦିନରାତି ଯାତ୍ରା କରିଥିବାର ବର୍ଣ୍ଣନା ତହିଁରେ ଅଛି । ଏଥିରୁ ବାନର ସେନାବାହିନୀର ଉତ୍ସାହପ୍ରବଣତା ତଥା କର୍ତ୍ତବ୍ୟ ପ୍ରତି ପ୍ରତିବଦ୍ଧତାର ସମ୍ୟକ୍ ସୂଚନା ମିଳିଥାଏ ।

ନଳ-ସେତୁର ନିର୍ମାଣ ସରିବା ସଙ୍ଗେ ସଙ୍ଗେ ହିଁ ରାମ କାଳବିଳମ୍ବ ନକରି ତାଙ୍କ ସେନାବାହିନୀକୁ ଉକ୍ତ ସେତୁକୁ ପାର କରାଇଥିଲେ । ଏହି ସେନାବାହିନୀ ସେତୁଦ୍ୱାରା ସମୁଦ୍ରକୁ ଅତିକ୍ରମ କରି ସମୁଦ୍ରର ଅପର ପାର୍ଶ୍ୱରେ ଲଙ୍କାଭୂମିରେ ଯାଇ ଶିବିର ସ୍ଥାପନ କରିଥିଲେ । ଏହି ପ୍ରସଙ୍ଗରେ ରାମାୟଣରେ କୁହାଯାଇଛି :

ବାନରାଣାଂ ହି ସା ତୀର୍ଣ୍ଣା ବାହିନୀ ନଳସେତୁନା ।
ତୀରେ ନିବିବେଶେ ରାଜ୍ଞା ବହୁମୂଳଫଲୋଦକେ ।। (୩୧)

ଅର୍ଥାତ୍ ବାନରମାନଙ୍କର ସାରା ସେନାବାହିନୀ ନଳଙ୍କ ଦ୍ୱାରା ନିର୍ମିତ ସେତୁ ସାହାଯ୍ୟରେ ସମୁଦ୍ରର ଆରପାରିରେ ଯାଇ ପହଞ୍ଚିଲି । ରାଜା ସୁଗ୍ରୀବ ଫଳ, ମୂଳ ଓ ଜଳର ଆଧିକ୍ୟ ଥିବା ସ୍ଥାନ ଦେଖି ସେଠାରେ ଶିବିର-ସ୍ଥାପନ କଲେ ।

ବାନର ସେନାବାହିନୀ ସେତୁ ପାରିହେବା ସମୟରେ ରାମ ଏହାର ସୁରକ୍ଷା ପାଇଁ ଯଥେଷ୍ଟ ପଦକ୍ଷେପ ଗ୍ରହଣ କରିଥିଲେ । କାରଣ ଶତ୍ରୁ ଏହାକୁ ନଷ୍ଟ କରିଦେବାର ଆଶଙ୍କା ଥିଲି । ଅବଶ୍ୟ ରାବଣ ଏଥିପ୍ରତି ଆଦୌ ଦୃଷ୍ଟି ଦେଇନଥିଲି । ସେ ନିଜର ବଳାଭିମାନରେ ଏଭଳି ଫୁଲି ଉଠିଥିଲି ଯେ ରାମଙ୍କୁ ଖାଲି ମନୁଷ୍ୟ ଏବଂ ତାଙ୍କ ସେନାବାହିନୀକୁ ଖାଲି ବାନର ବୋଲି ଭାବି ସେମାନଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରିଥିଲି । ବାସ୍ତବିକ ଏହା ଥିଲି ତା'ର ଏକ ମସ୍ତବଡ଼ ଭୁଲ ଯାହାର ଦାରୁଣ ପରିଣତି ତା'କୁ ପରେ ଭୋଗିବାକୁ ହିଁ ପଡ଼ିଲି । ରାମଙ୍କ ଆଦେଶରେ ବିଭୀଷଣ ଯାଇ ସେତୁର ଲଙ୍କା-ପଟରେ ତାଙ୍କ ଚାରିଜଣ ମନ୍ତ୍ରୀଙ୍କ ସହିତ ଏହାର ସୁରକ୍ଷା ଭାର ବହନ କରିଥିଲେ । ସେ ଲଙ୍କା ଭୂମି ସହିତ ସୁପରିଚିତ ଥିବାରୁ ରାମ ତାଙ୍କ ଉପରେ ହିଁ ଏହି ସେତୁର ସୁରକ୍ଷା ଭାର ଅର୍ପଣ କରିଥିଲେ । ଏହି କଥା ରାମାୟଣରେ (୬ । ୨୨ । ୮୦) ରୋଚକ ଭାବରେ ବର୍ଣ୍ଣିତ । ଏହି ସେତୁଟି ଲଙ୍କା ଅଭିଯାନ ତଥା ଲଙ୍କା-ଯୁଦ୍ଧରେ ଯେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲି, ଏ କଥା ରାମ ଭଲ ଭାବରେ ବୁଝିପାରିଥିଲେ । ଆବଶ୍ୟକ ହେଲେ ସାମରିକ କୌଶଳ ଦୃଷ୍ଟିରୁ ପଛକୁ ଫେରି ଆସିବା ଲାଗି ଏହି ସେତୁଟି ଥିଲି ଏକାନ୍ତ ସହାୟକ । ସେଥିପାଇଁ କୁମ୍ଭକର୍ଣ୍ଣର ଆକ୍ରମଣରେ ବାନର ସୈନ୍ୟମାନେ ଅତି ମାତ୍ରାରେ ବ୍ୟତିବ୍ୟସ୍ତ ହୋଇଉଠିଥିଲି ବେଳେ ରାମ ଯଥାର୍ଥରେ ସେନାପତି ନୀଳଙ୍କୁ ଏହି ସେତୁଟିର ସୁରକ୍ଷା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାପାଇଁ ଦୃଢ଼ ନିର୍ଦ୍ଦେଶ ଦେଇଥିଲେ ।

**ପ୍ରତିରକ୍ଷା :**

ଅତୀତର ଭାରତୀୟ ସାମରିକ ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଅତି ପ୍ରାଚୀନ କାଳରୁ, ଏପରିକି ଋଗ୍‌ବେଦର କାଳରୁ ପ୍ରତିରକ୍ଷା-ବ୍ୟବସ୍ଥା ଏକ ଗୁରୁତ୍ୱପୂର୍ଣ୍ଣ ଆସନ ଗ୍ରହଣ କରିଥିଲି । ଆକ୍ରମଣଠାରୁ ପ୍ରତିରକ୍ଷା ଥିଲି ଅଧିକତର ଗୁରୁତ୍ୱପୂର୍ଣ୍ଣ; କାରଣ ପ୍ରତିରକ୍ଷାଦ୍ୱାରା ନିଜର ସ୍ଥିତିକୁ ବଜାୟ ରଖି ହେଉଥିଲି । ବାସ୍ତବିକ ରାଷ୍ଟ୍ରର ସାର୍ବଭୌମତାକୁ ରକ୍ଷା କରିବାକୁ ହେଲେ ପ୍ରତିରକ୍ଷାର ସୁବ୍ୟବସ୍ଥା ଯେ ନିତାନ୍ତ ଅପରିହାର୍ଯ୍ୟ, ଏକଥା ଯୁଗ ଯୁଗ ଧରି ସାରା ପୃଥିବୀରେ ସମସ୍ତ ଦେଶରେ ସ୍ୱୀକୃତ । ବୈଦିକ କାଳରେ ରାଷ୍ଟ୍ରର ରାଜଧାନୀକୁ

କୁହାଯାଉଥିଲା 'ପୁର' । ତାହା ମୂଳତଃ ଥିଲା ଗୋଟିଏ ଦୁର୍ଗ । ରାମାୟଣ-ଯୁଗରେ ମଧ୍ୟ ରାଜଧାନୀକୁ 'ପୁର' ବୋଲି କୁହାଯାଉଥିଲା, ଯଥା, ଅଯୋଧ୍ୟାପୁର, ଲଙ୍କାପୁର, କିଷ୍କିନ୍ଧାପୁର ଇତ୍ୟାଦି । ବାସ୍ତବିକ ମନିଅର ଉଇଲିଅମ୍ସ୍ ତାଙ୍କ ସଂସ୍କୃତ-ଇଂରାଜୀ ଅଭିଧାନରେ 'ପୁର'ର ଏହି ପ୍ରକାର ଅର୍ଥ କରି କହନ୍ତି, ଏହା ହେଉଛି :

A place containing large buildings surrounded by a ditch and extending not less than one kos in length. (୩୨)

ଋଗ୍‌ବେଦର ବର୍ଣ୍ଣନା ଅନୁଯାୟୀ (୫ । ୪୮ । ୧୦; ୬ । ୧୪ । ୩୫) ବୈଦିକ 'ପୁର'ଗୁଡ଼ିକ କେତେବେଳେ ପଥରରେ ତିଆରି ହେଉଥିଲା ତ ଆଉ କେତେ-ବେଳେ ଇଟାରେ (ପୋଡ଼ା ଇଟା ନୁହେଁ) ତିଆରି ହେଉଥିଲା । ଅସୁରମାନଙ୍କର 'ପୁର' ଥିଲା ଆର୍ଯ୍ୟମାନଙ୍କ 'ପୁର'ଠାରୁ ଦୃଢ଼ତର । ତାହା 'ଅୟଃ' ବା ଲୁହାରେ ତିଆରି ହୋଇଥିବାର ବର୍ଣ୍ଣନା ଋଗ୍‌ବେଦରେ (୨ । ୨୦ । ୮) ମିଳିଥାଏ । ତେଣୁ ସେହି ଆସୁର ଦୁର୍ଗଗୁଡ଼ିକୁ ଭେଦି କରିବା ଆର୍ଯ୍ୟମାନଙ୍କ ପକ୍ଷେ କଷ୍ଟକର ଥିଲା । ଇନ୍ଦ୍ରଙ୍କ ସହାୟତାରେ ସେମାନେ ତାହା କରିବାରେ ସମର୍ଥ ହୋଇ ପାରିଥିଲେ । ସେଥିପାଇଁ ତ ସେମାନେ ଇନ୍ଦ୍ରଙ୍କୁ ପ୍ରଶଂସା କରିବାକୁ ଯାଇ ଡାକୁଥିଲେ 'ପୁରଭିତ୍' (ପୁରଭେଦକାରୀ) ବୋଲି । ରାମାୟଣ କାଳରେ ମଧ୍ୟ ଏହିଭଳି ସ୍ଥିତି ଥିଲା ଏବଂ ରାଜ୍ୟର ରାଜଧାନୀକୁ ଏକ ଦୁର୍ଭେଦ୍ୟ ଦୁର୍ଗ ଭାବରେ ନିର୍ମାଣ କରାଯାଉଥିଲା ।

କୋଶଳର ରାଜଧାନୀର ନାମ ଅଯୋଧ୍ୟା ଦିଆହୋଇଥିବା ମୂଳରେ ରାଜଧାନୀର ଦୁର୍ଭେଦ୍ୟତା ତଥା ଅପରାଜେୟତାର ଭାବନା ବିଦ୍ୟମାନ । ପ୍ରାଚୀନ ଭାରତୀୟ ଚିନ୍ତାଧାରାରେ ଦୁର୍ଗର ରାଷ୍ଟ୍ର ସହିତ ସମ୍ପର୍କ ଏତେ ଘନିଷ୍ଠ ବୋଲି କଳ୍ପିତ ଯେ ଅର୍ଥଶାସ୍ତ୍ରରେ (୬ । ୧) ତଥା ଯାଜ୍ଞବଲ୍‌କ୍ୟ ସ୍ମୃତିରେ (୧ । ୩୫୩) ଏହାକୁ ରାଷ୍ଟ୍ରର ଏକ ଅଙ୍ଗ ବୋଲି ମାନ୍ୟତା ଦିଆଯାଇଛି । ରାମାୟଣରେ (୪ । ୨୨ । ୧୧) ମଧ୍ୟ ରାଷ୍ଟ୍ରର ଅଙ୍ଗ ସମୂହରେ ଦୁର୍ଗକୁ (ପୁରମ୍) ଅନ୍ତର୍ଭୁକ୍ତ କରିବାର ଯେଉଁ ବର୍ଣ୍ଣନା ଅଛି, ତାହା ତତ୍କାଳୀନ ପ୍ରତିରକ୍ଷା-ସଚେତନତାର ଯଥେଷ୍ଟ ସୂଚନା ଦେଇଥାଏ । ଏଭଳି ଅଭେଦ୍ୟ ଦୁର୍ଗ ନିର୍ମାଣର ପରଂପରା ପ୍ରାଚୀନ ଭାରତରେ ବହୁ ବର୍ଷ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ପ୍ରତ୍ନତାତ୍ତ୍ୱିକ

ଭୂଖୋଦନ ଫଳରେ ବିମ୍ବିସାରଙ୍କ ରାଜଧାନୀ ରାଜଗୃହର (ଖ୍ରୀ: ପୂ. ୬ଷ୍ଠ ଶତାବ୍ଦୀ), ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜଧାନୀ ପାଟଳୀପୁତ୍ରର (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଏବଂ ଖାରବେଳଙ୍କ ରାଜଧାନୀ ଶିଶୁପାଳଗଡ଼ର (ଖ୍ରୀ: ପୂ: ୨ୟ ଶତାବ୍ଦୀ) ଯେଉଁ ଧ୍ୱଂଶାବଶେଷମାନ ମିଳୁଛି ତହିଁରୁ ସେହି ଦୁର୍ଗଗୁଡ଼ିକ କିପରି ଭାବରେ ସୁରକ୍ଷାର ନୀତିଗୁଡ଼ିକୁ ଅନୁସରଣ କରି ନିର୍ମିତ ହୋଇଥିଲା, ତାହାର ଯଥେଷ୍ଟ ପରିଚୟ ମିଳିଥାଏ । ସେଥିପାଇଁ ପ୍ରାଚୀନ ଭାରତର ଦୁର୍ଗ ନିର୍ମାଣର ପରମ୍ପରା ଉପରେ ମନ୍ତବ୍ୟ ଦେବାକୁ ଯାଇ ଏ. ଏଲ୍. ବାସମ୍ ଯଥାର୍ଥରେ କହନ୍ତି :

> Fortification was an important branch of military science. (୩୭)

ମେଗାସ୍ଥିନିସ୍ ତାଙ୍କ ବିବରଣୀରେ ପାଟଳୀପୁତ୍ର ଦୁର୍ଗର ସୁରକ୍ଷା ସମ୍ପର୍କରେ ବର୍ଣ୍ଣନା କରିବାକୁ ଯାଇ ଅନ୍ୟାନ୍ୟ ଜିନିଷ ମଧ୍ୟରେ ସେଠାରେ ୫୭୦ଟି ପରିଦର୍ଶନ ଗମ୍ବୁଜ ଓ ୬୪ଟି ଫାଟକ ଥିବାର ଯେଉଁ ଉଲ୍ଲେଖ କରିଛନ୍ତି ତାହା ପ୍ରାଚୀନ ଭାରତୀୟଙ୍କ ସୁରକ୍ଷା ସଚେତନତାର ଆଉ ଏକ ନିଦର୍ଶନ । ଏହି ଦୁର୍ଗ ନିର୍ମାଣର ପରମ୍ପରା ଭାରତରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ମଧ୍ୟ ବଳବତ୍ତର ଥିଲା ।

ବାଲ୍ମିକି ସେତେବେଳେ ଚାରି ପ୍ରକାର ଦୁର୍ଗ ଥିବା କଥା ଉଲ୍ଲେଖ କରିଛନ୍ତି । ଦୁର୍ଗଗୁଡ଼ିକର ବିଭାଗୀକରଣରୁ ଜଣାଯାଏ ଯେ ବିଭିନ୍ନ ପ୍ରକାର ସୁରକ୍ଷା ଦୃଷ୍ଟିରୁ ସେଗୁଡ଼ିକୁ ନିର୍ମାଣ କରାଯାଇଥିଲା । ସେଗୁଡ଼ିକ ହେଲା 'ନାଦେୟ-ଦୁର୍ଗ', 'ପାର୍ବତ-ଦୁର୍ଗ', 'ଖାନିତ-ଦୁର୍ଗ', ଓ 'ଅମ୍ବୁ-ଦୁର୍ଗ' । ନଦୀ ମଧ୍ୟରେ ଥିବା ଦ୍ୱୀପାଞ୍ଚଳରେ ଯେଉଁ ଦୁର୍ଗ ଥିଲା, ତାହାକୁ କୁହାଯାଉଥିଲା 'ନାଦେୟ-ଦୁର୍ଗ' । ଏହା ଥିଲା ଚତୁର୍ଦ୍ଦିଗରେ ଜଳଦ୍ୱାରା ବେଷ୍ଟିତ । ଏହି ଜଳର ଆବେଷ୍ଟନୀ ପ୍ରାକୃତିକ ପ୍ରତିରକ୍ଷାର କାର୍ଯ୍ୟ କରୁଥିଲା । ଦ୍ୱିତୀୟରେ ପର୍ବତ ଆଉ ଉପତ୍ୟକା ଅଞ୍ଚଳରେ ଗଢ଼ି ଉଠିଥିବା ଦୁର୍ଗର ନାମ ଥିଲା 'ପାର୍ବତ-ଦୁର୍ଗ' । ପର୍ବତ-ଗୁଡ଼ିକର ଆବେଷ୍ଟନୀ ଏକ ଦୃଢ଼ ପ୍ରାକୃତିକ ପ୍ରତିରକ୍ଷା-ପ୍ରାଚୀରର କାର୍ଯ୍ୟ କରୁଥିଲା । ଯେଉଁ ଦୁର୍ଗର ଚାରିପଟେ କୃତ୍ରିମ ଜଳଖାଇ ଖୋଳାଯାଇ ଏକ ଜଳାଧାରର ସୁରକ୍ଷା-ବଳୟ ସୃଷ୍ଟି କରାଯାଇଥିଲା, ତାହାକୁ କୁହାଯାଉଥିଲା 'ଖାନିତ-ଦୁର୍ଗ' । ଚାରିପଟେ ସମୁଦ୍ର ଜଳ ଥାଇ ଯେଉଁ ଦୁର୍ଗଟି ନିର୍ମିତ ହେଉଥିଲା, ତାହାର ନାମ ଥିଲା 'ଅମ୍ବୁ-ଦୁର୍ଗ' । ସମୁଦ୍ର-ଜଳର ଆବେଷ୍ଟନୀ ଏଠାରେ ପ୍ରାକୃତିକ ପ୍ରତିରକ୍ଷା ପ୍ରଦାନ କରୁଥିଲା । ଏଠାରେ ଉଲ୍ଲେଖଯୋଗ୍ୟ

ଯେ ଲଙ୍କାରେ ଏହି ଚାରି ପ୍ରକାର ଦୁର୍ଗର ସମନ୍ୱିତ ଉପଯୋଗ କରାଯାଇଥିଲା । ହନୁମାନ୍ ଲଙ୍କାର ସୁରକ୍ଷା ସଂପର୍କରେ ରାମଙ୍କୁ ଦର୍ଶାଇବାକୁ ଯାଇ କହୁଛନ୍ତି :

ନାଦେୟଂ ପାର୍ବତେୟଞ୍ଚ ଖାନନଞ୍ଚାମ୍ବୁ ବର୍ତ୍ତତେ । (୩୪)

ଅର୍ଥାତ୍ ସେଠାରେ 'ନାଦେୟ-ଦୁର୍ଗ', 'ପାର୍ବତ-ଦୁର୍ଗ', 'ଖାନନ-ଦୁର୍ଗ', 'ଅମ୍ବୁ-ଦୁର୍ଗ' ଆଦି ଦୁର୍ଗମାନ ରହିଅଛି ।

ଲଙ୍କା-ଦୁର୍ଗର ସୁରକ୍ଷା ସଂପର୍କରେ ହନୁମାନ୍ ରାମଙ୍କୁ ଯାହା ନିବେଦନ କରିଛନ୍ତି, ତାହା ଅତି ରୋଚକ ତଥା ବିସ୍ତୃତ ଭାବରେ ରାମାୟଣରେ (୬ । ୩ । ୧୦ ୨୮) ବର୍ଣ୍ଣିତ । ସଂକ୍ଷେପରେ ଏହି ସୁରକ୍ଷା ବ୍ୟବସ୍ଥାଗୁଡ଼ିକ ହେଲା :

କ) ତାହା ବହୁ ସଂଖ୍ୟକ ରାକ୍ଷସ, ମଉଆଲା ହାତୀ ଓ ରଥରେ ଭରପୂର ।

ଖ) ତାହାର ଚାରୋଟି ବଡ଼ ବଡ଼ ଫାଟକ ଅଛି ଏବଂ ସେଗୁଡ଼ିକ ଦୃଢ଼ ଅର୍ଗଳ ଦ୍ୱାରା ଯୁକ୍ତ ।

ଗ) ସେହି ଦ୍ୱାର ଉପରେ ଯନ୍ତ୍ରମାନ ରଖାଯାଇଛି ଯେଉଁଥିରୁ ଆକ୍ରମଣକାରୀ-ମାନଙ୍କ ଉପରେ ପଥର ଓ ଶର-ବର୍ଷା କରାଯାଇଥାଏ ।

ଘ) ସେହି ଦ୍ୱାର ଉପରେ ପୁଣି ଅସଂଖ୍ୟ ଲୌହର 'ଶତଘ୍ନି' ଅସ୍ତ୍ର ରଖାଯାଇଛି ।

ଙ) ସେହି ଦୁର୍ଗର ଚାରି ପଟେ ସୁନାରେ ତିଆରି ଅନେକ ପାଚେରି ଘେରିକରି ରହିଛି । ସେହି ପାଚେରିଗୁଡ଼ିକରେ ନାନା ପ୍ରକାର ରତ୍ନ ଖଞ୍ଜାଯାଇଛି ।

ଚ) ପାଚେରି ଚାରିପଟେ ଅନେକଗୁଡ଼ିଏ ଜଳଖାଇ ଖୋଳା ଯାଇଛି ଏବଂ ତାହା ମଧ୍ୟରେ କୁମ୍ଭୀର, ମଗର, ଭୟଙ୍କର ଜଳଚର ପ୍ରାଣୀମାନେ ଅଛନ୍ତି ।

ଛ) ଜଳଖାଇ ଉପରେ ଚାରି ଫାଟକ ନିକଟରେ ଗୋଟିଏ ଲେଖାଏଁ କାଠ ପୋଲ ରହିଛି । ଏହି ପୋଲଗୁଡ଼ିକ ଯନ୍ତ୍ରଦ୍ୱାରା ଚାଳିତ ।

ଜ) ଶତ୍ରୁମାନେ ପୋଲଗୁଡ଼ିକୁ ସ୍ପର୍ଶ କରିବା ମାତ୍ରେ ସେମାନଙ୍କୁ ଯନ୍ତ୍ରଦ୍ୱାରା ତଳକୁ ଖାଇ ଭିତରକୁ ଫିଙ୍ଗି ଦିଆଯାଇଥାଏ ଏବଂ ପୋଲଗୁଡ଼ିକର ସୁରକ୍ଷା କରାଯାଇଥାଏ ।

ଝ) ସେହି ପୋଲଗୁଡ଼ିକ ମଧ୍ୟରୁ ଗୋଟିଏ ପୋଲ ହେଉଛି ଆକାରରେ ଅତି ବଡ଼ ।

ଓ) ସେହି ଦୁର୍ଗ ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଗମ । ତାହା ଉପରେ ଆକ୍ରମଣ କରିବାର କୌଣସି ଉପାୟ ନାହିଁ ।

ଟ) ତାହା ବହୁଦୂର ପର୍ଯ୍ୟନ୍ତ ଲମ୍ବିଯାଇ ସମୁଦ୍ରର ଦକ୍ଷିଣତଟରେ ନିର୍ମିତ ହୋଇଛି । କୌଣସି ନାବଦ୍ୱାରା ସେଠାରେ ପହଞ୍ଚି ହେବ ନାହିଁ ।

ଠ) ତାହା ପର୍ବତ-ଶିଖରରେ ନିର୍ମିତ ଏବଂ ଅଗଣିତ ଅଶ୍ୱ ଓ ହସ୍ତୀଦ୍ୱାରା ଭରପୂର ଥାଇ ଦୁର୍ଗମ ହୋଇଉଠିଛି ।

ଡ) ଅୟୁତ ସଂଖ୍ୟକ ରାକ୍ଷସ-ବୀର ଖଡ୍‌ଗ, ଶୂଳ ଆଦି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ପୂର୍ବ ଦ୍ୱାରକୁ ଜଗିରହିଅଛନ୍ତି ।

ଢ) ନିୟୁତ ସଂଖ୍ୟକ ରାକ୍ଷସବୀର ଚତୁରଙ୍ଗ ସେନାବାହିନୀ ସହିତ ଦକ୍ଷିଣଦ୍ୱାରକୁ ଜଗିରହିଛନ୍ତି ।

ଣ) ଖଡ୍‌ଗ ଧରି ପଶ୍ଚିମ ଦ୍ୱାରକୁ ଦଶ ଲକ୍ଷ ରାକ୍ଷସବୀର ଜଗି ରହିଛନ୍ତି ।

ତ) ଉତ୍ତର ଦ୍ୱାରକୁ ଦଶ କୋଟି ରାକ୍ଷସ-ବୀର ଅସ୍ତ୍ର-ଶସ୍ତ୍ରଦ୍ୱାରା ସଜ୍ଜିତ ହୋଇ ଜଗିରହିଛନ୍ତି ।

ଥ) ଦୁର୍ଗର ମଧ୍ୟ ଭାଗରେ ଏକ କୋଟି ରାକ୍ଷସ ସୈନ୍ୟ ଛାଉଣି ପକାଇ ରହିଛନ୍ତି ।

ଉପରୋକ୍ତ ବର୍ଣ୍ଣନାରେ ଅନେକଟା କାବ୍ୟିକ ଅତିରଞ୍ଜନ ଓ ଅନୁରଞ୍ଜନ ହୋଇଥିବା ସ୍ୱାଭାବିକ । ବାସ୍ତବିକ, ତାହା ହିଁ ହୋଇଛି । ଫାଟକ ପାଖରେ ଲକ୍ଷ ଲକ୍ଷ ସଂଖ୍ୟାରେ ସୈନ୍ୟମାନେ ଠିଆ ହୋଇ ଫାଟକକୁ ରକ୍ଷା କରୁଥିବେ ବା କପରି ? ପୁଣି ଦୁର୍ଗ ପ୍ରାଚୀରପଟେ ବୁଲୁଥିବା ପାଚେରି ଓ ଜଳଖାଇର ସଂଖ୍ୟା ଅଗଣିତ ହୋଇଥିବ ବା କପରି ? ସେଗୁଡ଼ିକ ତ କୃତ୍ରିମ ଉପାୟରେ ନିର୍ମିତ ହୋଇଥିବ । ତେଣୁ ସେଗୁଡ଼ିକର ନିର୍ଦ୍ଦିଷ୍ଟ ସଂଖ୍ୟା ନିଶ୍ଚୟ ଥିବ । ଦୁର୍ଗର ପ୍ରାଚୀରପଟେ କେତେ ସଂଖ୍ୟକ ପାଚେରି ଓ ଜଳଖାଇ ରହିବାର କଥା ତାହାର ନିର୍ଣ୍ଣୟ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ କରିଯାଇଛନ୍ତି । ଏହା ଉପରେ ମନ୍ତବ୍ୟ ଦେବାକୁ ଯାଇ ବାସମ୍ କହନ୍ତି :

The ideal durga, or fortified city as described in the Arthasastra, was circled by three very wide moats, within which was an earth work c vered with spring shrubs, and surmounted by a wall

thirtysix feet high, with numerous square towers and roofed balconies for archers. (୩୫)

ଅର୍ଥଶାସ୍ତ୍ରର ରଚନା ବେଳକୁ (ଖ୍ରୀ. ପୂ: ୪ର୍ଥ ଶତାବ୍ଦୀ) ଉତ୍ତମ ଦୁର୍ଗର ତିନି ଗୋଟି ପାଚେରି ଓ ତିନି ଗୋଟି ଜଳଖାଇ ତିଆରି କରାଯିବାର ବ୍ୟବସ୍ଥା ଥିଲା । ତେଣୁ ଲଙ୍କାଦୁର୍ଗରେ ସେହି ସଂଖ୍ୟକ କିମ୍ବା ତାହାର ପାଖାପାଖି ସଂଖ୍ୟକ ପାଚେରି ଓ ଜଳଖାଇ ଥିବ ବୋଲି ଅନୁମାନ କରିବା ଯଥାର୍ଥ ହେବ । ରାମାୟଣୀୟ ଭାଷାରେ ଏଗୁଡ଼ିକ ଅସଂଖ୍ୟ ଥିବାର ବର୍ଣ୍ଣନା କଦାପି ବିଶ୍ୱାସଯୋଗ୍ୟ ନୁହେଁ; କିନ୍ତୁ କାବ୍ୟିକ ଅନୁରଞ୍ଜନ ହିସାବରେ ଏହା କ୍ଷମଣୀୟ । ଦୁର୍ଗର ସୁରକ୍ଷାଲାଗି ନିୟୋଜିତ ରାକ୍ଷସ-ବୀରମାନଙ୍କର ସଂଖ୍ୟାକୁ ମଧ୍ୟ ସେହି ଯୁକ୍ତିର ତରାଜୁରେ ତଉଲି ନେବାକୁ ହେବ ।

କିଷ୍କିନ୍ଧାର ରାଜଧାନୀକୁ ରାମାୟଣରେ 'ଗୁହା' ବୋଲି ନାମିତ କରାଯାଇଛି । ଗୁହାର ଆକ୍ଷରିକ ଅର୍ଥ ହେଲା ଗୁମ୍ଫା । କିନ୍ତୁ ଏହାକୁ ପାହାଡ଼ ବା ପର୍ବତର ଗୁମ୍ଫା ବୋଲି ବୁଝିବା ଠିକ୍ ହେବ ନାହିଁ । ଲକ୍ଷ୍ମଣ ସୁଗ୍ରୀବଙ୍କୁ ସୀତାଙ୍କ ଅନୁସନ୍ଧାନ ଲାଗି ଚେତାଇ ଦେବା ଉଦ୍ଦେଶ୍ୟରେ ପ୍ରସ୍ରବଣ ପର୍ବତରୁ କିଷ୍କିନ୍ଧା ରାଜପ୍ରାସାଦକୁ ଯାଇଥିଲେ । ସେଠାରେ ସେ ସୁଗ୍ରୀବଙ୍କୁ ନାନାପ୍ରକାର ବିଳାସ-ବ୍ୟସନରେ ରତ ଥିବାର ଦେଖିଥିଲେ । ଏହି ଅବସରରେ କିଷ୍କିନ୍ଧା ରାଜପ୍ରାସାଦର ଯେଉଁ ବର୍ଣ୍ଣନା ଦେଖିବାକୁ ମିଳେ, ତାହା ଅନୁଧ୍ୟାନ କଲେ ଆମେ ଦେଖିବା ଯେ ସାମାନ୍ୟ ପର୍ବତଗୁହାରେ ଏଭଳି ରାଜପ୍ରାସାଦ ତଥା ସାରା ରାଜଧାନୀର ଅବସ୍ଥିତି ଅସମ୍ଭବ । ଅତଏବ ଏହା ଥିଲା ଏକ ପାର୍ବତ୍ୟ ଦୁର୍ଗ ଯାହାକି ବାହାରର ଲୋକମାନଙ୍କୁ ଗୁହା ଭଳି ଦିଶୁଥିଲା । ଏହାର ଦୁର୍ଭେଦ୍ୟତାକୁ ଲକ୍ଷ୍ୟ କରି ଲୋକେ ବିଶେଷ କରି ଶତ୍ରୁ-ପକ୍ଷର ଲୋକେ ଏହାକୁ ଗୁହା ବୋଲି କହୁଥିଲେ । ଅବଶ୍ୟ ବାନରମାନଙ୍କର ପ୍ରତିରକ୍ଷା ବ୍ୟବସ୍ଥା ଅଯୋଧ୍ୟା ତଥା ଲଙ୍କାର ପ୍ରତିରକ୍ଷା ବ୍ୟବସ୍ଥା ଭଳି ସେତେଟା ଉନ୍ନତ ନଥିଲା । କିନ୍ତୁ ସେମାନଙ୍କୁ ପ୍ରତିରକ୍ଷାର ମୌଳିକ ନୀତିସମୂହ ଭଲ ଭାବରେ ଜଣାଥିଲା ଏବଂ ସେମାନେ ଏହାର ଆବଶ୍ୟକତା ଯଥେଷ୍ଟ ଉପଲବ୍ଧି କରିପାରିଥିଲେ ।

ଆଉ ଏକ ପ୍ରକାର ଦୁର୍ଗ-ବ୍ୟବସ୍ଥା ଥିଲା ଯାହାକୁ କୁହାଯାଉଥିଲା 'ବିଲ-ଦୁର୍ଗ' । ବାସ୍ତବିକ ଏହି 'ବିଲଦୁର୍ଗ' ବିଷୟରେ କିଛିଟା ଆଲୋକପାତ ନକଲେ ରାମାୟଣୀୟ 'ଦୁର୍ଗ-ବ୍ୟବସ୍ଥା'ର ଆଲୋଚନା ଅସଂପୂର୍ଣ୍ଣ ରହିଯିବ । 'ବିଲ'ର ଆକ୍ଷରିକ ଅର୍ଥ ହେଲା ଗାତ । ଏହି ଦୁର୍ଗଟି ବାହାରକୁ ଗାତଭଳି ଦିଶୁଥିଲା । ଏହାର ତାତ୍ପର୍ଯ୍ୟ ହେଲା ଏହା ଭୂଗର୍ଭରେ ନିର୍ମିତ ହୋଇଥିଲା । ଏହାର

ନିର୍ମାଣ-କୌଶଳ ଅସୁରମାନଙ୍କୁ ଜଣାଥିଲା । ଆର୍ଯ୍ୟମାନେ ଅଥବା ବାନରମାନେ କିମ୍ବା ରାକ୍ଷସମାନେ ଏହାର ନିର୍ମାଣ-କୌଶଳ ଜାଣିନଥିଲେ । କିଷ୍କିନ୍ଧ୍ୟା କାଣ୍ଡରେ ଏଭଳି 'ବିଳ-ଦୁର୍ଗ'ର ଉଲ୍ଲେଖ ଦେଖାଯାଏ । ମାୟାବୀ ଅସୁରକୁ ଅନୁସରଣ କରିବାକୁ ଯାଇ ବାଳୀ ମାୟାବୀର ବିଳ-ଦୁର୍ଗ ମଧ୍ୟରେ ପ୍ରବେଶ କରିଥିଲେ । ତାହା ଭିତରେ ସେ ଏକ ବର୍ଷ ଧରି ରହି ମାୟାବୀ ସହିତ ଯୁଦ୍ଧ କରିଥିଲେ । ଶେଷରେ ସେ ମାୟାବୀକୁ ମାରି ଦୁର୍ଗ ମଧ୍ୟରୁ ବାହାରକୁ ଆସିଥିଲେ । ଆଜିକାଲି ଭୂମିତଳେ ରେଳଯାତ୍ରା କରିପାରୁଛୁ ଏବଂ ବୃହତ୍ ପ୍ରାସାଦ, ଉଦ୍ୟାନ ଆଦି ନିର୍ମିତ ହୋଇପାରୁଛି । ତେଣୁ ରାମାୟଣକାଳୀନ 'ବିଳଦୁର୍ଗ'କୁ ଏକ ଅସମ୍ଭବ କବି-କଳ୍ପନା କହି ଉଡ଼ାଇଦେବା ଠିକ୍ ହେବନାହିଁ ।

ଉପରୋକ୍ତ ଆଲୋଚନାରୁ ଆମେ ଜାଣିପାରିବା ଯେ ରାମାୟଣକାଳୀନ ପ୍ରତିରକ୍ଷା ବ୍ୟବସ୍ଥା ଏକ ଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥିଲା ଏବଂ ରାଜ୍ୟର ରାଜଧାନୀକୁ ଯଥାସମ୍ଭବ ଏକ ଅଭେଦ୍ୟ ଦୁର୍ଗରେ ପରିଣତ କରିବା ପାଇଁ ରାଜାମାନେ ସମସ୍ତେ ନିରନ୍ତର ଚେଷ୍ଟିତ ଥିଲେ ।

**ଅବରୋଧ :**

ପ୍ରତିରକ୍ଷାର ଏଭଳି ନିଖୁଣ ବ୍ୟବସ୍ଥା ଥାଇ ମଧ୍ୟ ଶତ୍ରୁପକ୍ଷ ଦୁର୍ଗର ଅଭେଦ୍ୟତାକୁ ଭଙ୍ଗ କରିବାପାଇଁ ସତତ ଉଦ୍ୟମ କରୁଥିଲା । ଆକ୍ରମଣ କରିବା ପୂର୍ବରୁ ଦୁର୍ଗକୁ ଅବରୋଧ କରାଯାଉଥିଲା । ସେତେବେଳେ ତ ବାରୁଦର ଉଦ୍ଭାବନ ହୋଇନଥିଲା । ତେଣୁ ତୋପ ସାହାଯ୍ୟରେ ଦୁର୍ଗର ଫାଟକ ଅଥବା କାନ୍ଥକୁ ସହଜରେ ଉଡ଼ାଇ ଦେବାର ସମ୍ଭାବନା ନଥିଲା । ବାହାରୁ ଖାଦ୍ୟ, ପାନୀୟ ତଥା ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀମାନ ଯେପରି ଦୁର୍ଗ ମଧ୍ୟକୁ ଆସି ନପାରିବ, ସେଥିପ୍ରତି ଶତ୍ରୁପକ୍ଷ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲା । ସେହି ଲକ୍ଷ୍ୟସାଧନ ନିମିତ୍ତ ସେହି ସେହି ସାମଗ୍ରୀମାନଙ୍କର ଆସିବା ପଥକୁ ରୁଦ୍ଧ କରି ଦିଆଯାଉଥିଲା । ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀର ଯୋଗାଣ ବନ୍ଦ ହୋଇଗଲେ ଦୁର୍ଗବାସୀମାନେ ବାଧ୍ୟହୋଇ ଦୁର୍ଗର ଫାଟକକୁ ଖୋଲି ଦେଉଥିଲେ । ଦୁର୍ଗବାସୀମାନଙ୍କୁ ଦୁର୍ବଳ କରିଦେବା ପରେ ସେମାନଙ୍କ ଉପରେ ଆକ୍ରମଣ କରି ସହଜରେ ବିଜୟ ହାସଲ କରିବା ସେତେବେଳେ ଥିଲା ଏକ ବହୁପ୍ରଚଳିତ ସାମରିକ କୌଶଳ । ସୀତାଙ୍କୁ ସ୍ତ୍ରୀରୂପରେ ନପାଇ ବ୍ୟର୍ଥମନୋରଥ ରାଜାମାନେ ସମସ୍ତେ ମିଳିତ ହୋଇ କିପରି ଜନକଙ୍କ ରାଜଧାନୀ ମିଥିଳାକୁ ଏକ ବର୍ଷ ଧରି ଅବରୋଧ କରି ରଖିଥିଲେ ତାହା ରାମାୟଣରେ ରୋଚକ ଭାବରେ ବର୍ଣ୍ଣିତ । ଏହା ଫଳରେ ଜନକଙ୍କ ଅବସ୍ଥା ଖୁବ୍ ଦୟନୀୟ ହୋଇ ଉଠିଥିଲା । କିନ୍ତୁ ପରିଶେଷରେ ସେ

ସେହି ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରି ନିଜ ରାଜଧାନୀକୁ ଅବରୋଧରୁ ମୁକ୍ତ କରି ପାରିଥିଲେ ।

ରାମ ଲଙ୍କା ଉପରେ ଆକ୍ରମଣ କରିବା ପୂର୍ବରୁ ତାହାକୁ ପୂର୍ଣ୍ଣ ଭାବରେ ଅବରୋଧ କରି ରଖିଥିଲେ । ଏହି ଅବରୋଧ ଏତେ ସୁଦୂରବିସ୍ତାରୀ ଥିଲା ଯେ ରାବଣ ପର୍ବତ, ବନ,କାନନ ଯେଉଁ ଆଡ଼େ ଚାହିଁଲା (ଦଦର୍ଶ ବୃତାଂ ଲଙ୍କାଂ ସଶୈଳବନକାନନାଂ) ସେ ଆଡ଼େ ବାନର-ସୈନ୍ୟମାନେ ଛାଇ ହୋଇ ଯାଇ-ଥିବାର ଦେଖିଲା । ସେନାପତି ନୀଳଙ୍କ ଦ୍ୱାରା ପରିଚାଳିତ ଏହି ଅବରୋଧ ଥିଲା ଖୁବ୍ ଫଳପ୍ରଦ । ବାହାରୁ କୌଣସି ଜିନିଷ ଲଙ୍କା-ଦୁର୍ଗ ମଧ୍ୟକୁ ଆସିବାକୁ ଦିଆଯାଉନଥିଲା । ଏଭଳି ଅବସ୍ଥାରେ ରାବଣ ଖୁବ୍ ଡ଼ରିଯାଇ କୁମ୍ଭକର୍ଣ୍ଣଙ୍କୁ ଅସମୟରେ ନିଦ୍ରାରୁ ଉଠାଇଥିଲା ଏବଂ ତା' ଆଗରେ ଅତି ଦୟନୀୟ ଭାବରେ କହିଥିଲା :

ସର୍ବକ୍ଷପିତକୋଷଂ ଚ ସ ତ୍ୱମଭ୍ୟୁପପଦ୍ୟ ମାମ୍ ।
ତ୍ରାୟସ୍ୱେମାଂ ପୁରୀଂ ଲଙ୍କାଂ ବାଲବୃଦ୍ଧାବଶେଷିତାମ୍ ।। (୩୬)

ଅର୍ଥାତ୍ ଆମର ସାରା ଖଜଣା-ଖାନା ଖାଲି । ଏଣୁ ମୋ' ଉପରେ ଅନୁଗ୍ରହ କରି ସେଇ ତୁମେ ଏବେ ଏହି ଲଙ୍କାପୁରୀକୁ ରକ୍ଷା କର । ଏବେ ଏଠି ଖାଲି ପିଲାମାନେ ଓ ବୁଢ଼ାମାନେ ଅବଶିଷ୍ଟ ରହିଯାଇଛନ୍ତି । ରାବଣର ଲଙ୍କା ଥିଲା ଧନରତ୍ନ ତଥା ସକଳ ପ୍ରକାର ସାମଗ୍ରୀରେ ଭରପୂର । ସେଥିପାଇଁ ଏହାକୁ କୁହାଯାଉଥିଲା ସ୍ୱର୍ଣ୍ଣ-ଲଙ୍କା । ଏତେ କମ୍ ସମୟ ମଧ୍ୟରେ ତାହା ଯେ ଏଭଳି ସମ୍ବଳହୀନ ହୋଇଉଠିଲା, ତହିଁରୁ ସୂଚନା ମିଳୁଛି ଯେ ସେନାପତି ନୀଳଙ୍କ ଦ୍ୱାରା ପରିଚାଳିତ ଅବରୋଧ ଥିଲା ଏକାନ୍ତ ଭାବରେ ଫଳପ୍ରଦ । ଏହା ଆର୍ଯ୍ୟ-ବାନର ମିଳିତ ରଣକୌଶଳର ଚରମ ଉତ୍କର୍ଷର ନିଦର୍ଶନ ।

ଅବରୁଦ୍ଧ ଶତ୍ରୁସୈନ୍ୟମାନେ ଦୀର୍ଘ ଅବରୋଧ ଫଳରେ ଦୁର୍ବଳ ହୋଇ ପଡିବା ପରେ ଆକ୍ରମଣକାରୀ ସୈନ୍ୟମାନଙ୍କୁ ହାତୀମାନଙ୍କଦ୍ୱାରା ଦୁର୍ଗର ଫାଟକକୁ ଭଙ୍ଗାଇ ଭିତରେ ପଶିବାକୁ ହେଉଥିଲା । ରାମ ମଧ୍ୟ ଲଙ୍କାର ଅବରୋଧ କ୍ଷେତ୍ରରେ ଲଙ୍କା-ଗଡକୁ ଧ୍ୱଂସବିଧ୍ୱସ୍ତ କରିବାର ଏହି କୌଶଳଟି ଅବଲମ୍ବନ କରିଥିଲେ । କିନ୍ତୁ ବାନର ସେନାବାହିନୀ ହାତୀରେ ହାତୀ ନଥିଲେ । ବାନର-ମାନେ ସ୍ୱହସ୍ତରେ ଦୁର୍ଗର ଫାଟକ, ଗମ୍ବୁଜ ଆଦିକୁ ଭାଙ୍ଗି ଦେଇଥିଲେ ଏବଂ ଦୁର୍ଗର ଧ୍ୱଂସାବଶେଷଦ୍ୱାରା ଗଡ଼ଖାଇକୁ ପୋତି ଦେଇଥିଲେ । ସେମାନେ ଦୁର୍ଗର ପାଚେରିରେ ଚଢ଼ି ଆକ୍ରମଣ କରିବାକୁ ଉଦ୍ୟତ ହେବାରେ ରାକ୍ଷସମାନେ ସେମାନଙ୍କୁ

ବିଭିନ୍ନ ଅସ୍ତ୍ରଶସ୍ତ୍ର ଦ୍ୱାରା ଆକ୍ରମଣ କରିଥିଲେ । ସେମାନେ ରାକ୍ଷସମାନଙ୍କୁ ଟାଣି ଆଣି ମୁଥ ଉପରେ ମୁଥ ମାରି ସେମାନଙ୍କ ପ୍ରାଣ ନେଇଥିଲେ । ଦୁର୍ଗର ଅବରୋଧକୁ ଅଧିକତର ଫଳପ୍ରଦ କରିବାପାଇଁ ରାମ ବାନର ସେନାବାହିନୀକୁ ଚାରି ଭାଗରେ ବିଭକ୍ତ କରି ଦେଇଥିଲେ ଏବଂ ସେମାନଙ୍କୁ ଗୋଟିଏ ଗୋଟିଏ ଦୁର୍ଗ ଦ୍ୱାରର ଦାୟିତ୍ୱ ଦେଇଥିଲେ । ପ୍ରତ୍ୟେକଟି ଭାଗ ଜଣେ ଲେଖାଏଁ ସୁଯୋଗ୍ୟ ବଳାଧକ୍ଷଙ୍କ ଅଧୀନରେ ରହିଥିଲା । ରାବଣ ତା'ର ସେନାବାହିନୀ ଧରି ଦକ୍ଷିଣ-ଦ୍ୱାରରେ ଉପସ୍ଥିତ ଥିଲା । ତେଣୁ ରାମ ସ୍ୱୟଂ ଦକ୍ଷିଣ-ଦ୍ୱାରସ୍ଥ ବାନରସେନାବାହିନୀର ନେତୃତ୍ୱ ନେଇଥିଲେ ।

ଯଦିଓ ଦୁର୍ଗ-ଅବରୋଧ ଥିଲା ଆକ୍ରମଣର ପୂର୍ବାଭାସ, ତଥାପି ତତ୍କାଳୀନ ପରଂପରା ଅନୁଯାୟୀ ଏହି ଅବସରରେ ମଧ୍ୟ ଅବରୋଧକାରୀ ରାଜା ଶତ୍ରୁରାଜାଙ୍କୁ ଶାନ୍ତି-ସ୍ଥାପନର ଶେଷ ସୁଯୋଗ ଦେଉଥିଲେ । ଏହାର ଉଦ୍ଦେଶ୍ୟ ଥିଲା ଯେତେ ଦୂର ସମ୍ଭବ ଯୁଦ୍ଧଜନିତ ରକ୍ତପାତକୁ ଏଡ଼େଇଦେବା । ସେହି ନୀତିକୁ ଅନୁସରଣ କରି ରାମ ରାବଣ ପାଖକୁ ଅଙ୍ଗଦଙ୍କୁ ଦୂତ ହିସାବରେ ପଠାଇଥିଲେ ଏବଂ ସୀତାଙ୍କୁ ପ୍ରତ୍ୟର୍ପଣ କରିବାଲାଗି ଅନୁରୋଧ ଜଣାଇଥିଲେ । ରାବଣ କିନ୍ତୁ ତାହାକୁ ଅଗ୍ରାହ୍ୟ କରିଦେଇଥିଲା । ତେଣୁ ଅନନ୍ୟୋପାୟ ହୋଇ ରାମଙ୍କୁ ଲଙ୍କାଦୁର୍ଗ ଉପରେ ଆକ୍ରମଣ କରିବାକୁ ପଡ଼ିଥିଲା । ବାନର ସେନାବାହିନୀ ଲଙ୍କାର ଫାଟକ ଭାଙ୍ଗି ଦୁର୍ଗ ମଧ୍ୟରେ ପ୍ରବେଶ କରିଥିଲେ ଏବଂ ଜଳଖାଇଗୁଡ଼ିକୁ ମାଟି, ବାଲି, ପଥର ଆଦିଦ୍ୱାରା ପୋତି ଅକାମୀ କରି ଦେଇଥିଲେ ।

ଲଙ୍କାର ଅବରୋଧକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ କୌଣସି ସମୟରେ ହେଲେ ରାକ୍ଷସସେନା ଏହି ଅବରୋଧ ପୂର୍ବରୁ ଏହାକୁ ପ୍ରତିହତ କରିବାର ଉଦ୍ୟମ କରିନଥିଲେ । କେବଳ ଯାହା ଅବରୋଧ ସମ୍ପୂର୍ଣ୍ଣ ହେବା ପରିରୁ ଯାଇ ସେମାନେ ଆକ୍ରମଣକାରୀ ବାନରସେନାମାନଙ୍କ ଉପରେ ପ୍ରତ୍ୟାକ୍ରମଣ କରିଥିଲେ । ଏହା ସେମାନଙ୍କ ସାମରିକ ନେତୃତ୍ୱ ନେଉଥିବା ରାବଣର ଦୂରଦୃଷ୍ଟିର ଅଭାବର ଫଳଶ୍ରୁତି । ତା'ର ନିଜ ଶକ୍ତି ନେଇ ଥିବା ଅଯଥା ଗର୍ବ ଓ ଅଭିମାନ ଏହାର କାରଣ ହୋଇଥିଲା । ରାମଙ୍କୁ ସମୁଦ୍ର ଉପରେ ସେତୁ ବାନ୍ଧିବାର ସୁଯୋଗ ଦେବା, ସେତୁ ପାରିହୋଇ ସୁବେଲ ପର୍ବତ ଉପରେ ଛାଉଣି ପକାଇବାର ସୁଯୋଗ ଦେବା ଏବଂ ବିନା ବାଧାରେ ଲଙ୍କାକୁ ଅବରୋଧ କରିବାର ସୁଯୋଗ ଦେବା ରାବଣର ସାମରିକ ଅପରିଣାମଦର୍ଶିତାର ଗୋଟିଏ ଗୋଟିଏ ନିଦର୍ଶନ । ତା'ର ନିଜର ବଳ ଉପରେ ଏଭଳି ଅଭିମାନ ଥିଲା ଯେ ସେ ରାକ୍ଷସ ସେନାପତିମାନଙ୍କୁ ଏକାଠି ବାନର ସେନାବାହିନୀ ସହିତ

ଯୁଦ୍ଧ କରିବାକୁ ପଠାଇନଥିଲି । କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ୍ ଆଦି ରାକ୍ଷସ ବୀରମାନେ ପୃଥକ୍ ପୃଥକ୍ ଭାବରେ ବାନରସେନାବାହିନୀ ସହିତ ଏକାକୀ ଲଢ଼ି-ଥିଲେ । ରାବଣ ମଧ୍ୟ ଏକାକୀ ସମରାଙ୍ଗନରେ ଅବତୀର୍ଣ୍ଣ ହୋଇଥିଲା । ଏହି ସବୁ କାରଣରୁ ରାବଣ ପକ୍ଷରେ ଅଧିକ ସାମରିକ ବଳ ଥିଲେ ହେଁ, ତାକୁ ରାମଙ୍କ ସୁସଙ୍ଗଠିତ ବାନରବାହିନୀ ହସ୍ତରେ ପରାଭବ ମାନିବାକୁ ପଡ଼ିଥିଲା । ରାବଣ ଯଦି ସୁସଂଗଠିତ ତଥା ସମ୍ମିଳିତ ଆକ୍ରମଣ ବାନର-ବାହିନୀ ଉପରେ କରିଥାନ୍ତା, ତା'ହେଲେ ଯୁଦ୍ଧର ଗତିପଥ ହୁଏତ ପରିବର୍ତ୍ତିତ ହୋଇ ଯାଇଥାନ୍ତା !

**ସମରାଙ୍ଗନରେ ସେନାବାହିନୀ :**

ଯୁଦ୍ଧପାଇଁ ଯାତ୍ରା କପରି ଶୁଭଲଗ୍ନ ଦେଖି କରାଯାଉଥିଲା ସେ କଥା ପୂର୍ବରୁ କୁହାଯାଇଛି । ସେହିପରି ଶୁଭବେଳା ଦେଖି ଆକ୍ରମଣ ମଧ୍ୟ କରା-ଯାଉଥିଲା । ନିଜପାଇଁ ଯାହା ଶୁଭ, ଶତ୍ରୁପାଇଁ ବା ଶତ୍ରୁରାଜ୍ୟ ପାଇଁ ତାହା ଥିଲା ଅଶୁଭ । ଲଙ୍କାଯୁଦ୍ଧରେ ରାମ ଥିଲେ ଆକ୍ରମଣକାରୀ । ତେଣୁ ସେ ରାବଣ ପାଇଁ ଅଶୁଭ ଲକ୍ଷଣମାନ ଦେଖାନଯିବା ପର୍ଯ୍ୟନ୍ତ ଆକ୍ରମଣ କରିନଥିଲେ । ତାହା ଦେଖାଯିବା ମାତ୍ରେ ସେ ଆକ୍ରମଣ ଆରମ୍ଭ କରିଦେଇଥିଲେ । ଏଭଳି ମୁହୂର୍ତ୍ତ ଆସିଗଲା ବୋଲି ସେ ଲକ୍ଷ୍ମଣଙ୍କୁ ଦର୍ଶାଇ ଦେବାକୁ ଯାଇ (୬ । ୨୩ । ୪-୧୧) କହୁଛନ୍ତି ଯେ ଏବେ ଉତ୍ପାତ ସମୟ ଆସିଗଲା, କାରଣ :

କ) ଧୂଳିରେ ଭରପୂର ଥାଇ ପବନ ବହୁଛି;

ଖ) ଧରଣୀ କାହିଁ ଉଠୁଛି;

ଗ) ପର୍ବତ-ଶିଖର ଥରି ଉଠୁଛି;

ଘ) ଗଛଗୁଡ଼ିକ ଉପୁଡ଼ି ପଡ଼ୁଛି;

ଙ) ଘନଘୋର କଳାମେଘ ଘୋଟି ଆସୁଛି;

ଚ) ମେଘର ଗର୍ଜନ ସହିତ ବୃଷ୍ଟି ହେଉଛି ଏବଂ ବୃଷ୍ଟି-ଜଳରେ ବୁନ୍ଦା ବୁନ୍ଦା ରକ୍ତ ପଡ଼ୁଛି,

ଛ) ସନ୍ଧ୍ୟା ଭୟଙ୍କର ଭାବରେ ରକ୍ତଚନ୍ଦନ ଭଳି ଲାଲ ଦିଶୁଛି;

ଜ) ପ୍ରଜ୍ଵଳିତ ସୂର୍ଯ୍ୟଙ୍କଠାରୁ ଅଗ୍ନିର ହଳକ ବିଚ୍ଛୁରିତ ହେଉଛି;

ଝ) ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ପଶୁ-ପକ୍ଷୀମାନେ ଆର୍ତ୍ତ ଚିତ୍କାର କରୁଛନ୍ତି;

ଞ) ରାତ୍ରିରେ ଚନ୍ଦ୍ର ପୂର୍ଣ୍ଣ ଭାବରେ ପ୍ରକାଶିତ ହେଉନାହାନ୍ତି ଏବଂ ନିଜ ସ୍ୱଭାବର ବିପରୀତ ଉତ୍ତାପ-ଦାନ କରୁଛନ୍ତି;

ଟ) ଚନ୍ଦ୍ର, ଲାଲ ଓ କୃଷ୍ଣ କିରଣରେ ପରିବ୍ୟାପ୍ତ ଥାଇ ଉଦିତ ହେଉଛନ୍ତି;

ଠ) ନିର୍ମଳ ସୂର୍ଯ୍ୟମଣ୍ଡଳରେ ନୀଳ ରଙ୍ଗର ଚିହ୍ନମାନ ଦେଖାଯାଉଛି ଏବଂ ସୂର୍ଯ୍ୟଙ୍କ ଚାରିପଟେ ଅଶୁଭ ତଥା ରୁକ୍ଷ ଲାଲ ରଙ୍ଗର ବଳୟଟିଏ ଦେଖାଯାଉଛି;

ଡ) ତାରାମାନେ ଧୂଳିଧୂସରିତ ଭଳି ନିଷ୍ପ୍ରଭ ଦିଶୁଛନ୍ତି;

ଢ) କୁଆମାନେ, ଚିଲମାନେ ଓ ଶାଗୁଣାମାନେ ତଳେ ଖସି ପଡୁଛନ୍ତି; ଏବଂ

ଣ) ବିଲୁଆମାନେ ଭାରି ବିକଟାଳ ରଡ଼ି ଛାଡୁଛନ୍ତି;

ଏହି ଲକ୍ଷଣଗୁଡ଼ିକ ମଧ୍ୟରୁ କେତେକ ବାସ୍ତବ ହେଲେ ଆଉ କେତେକ ହୁଏତ କବିଙ୍କ କଳ୍ପନା ହୋଇପାରେ । କିନ୍ତୁ ଉତ୍ପାତସମୟ ଆସିଲେ ତାହାର ଯେ କିଛିଟା ପୂର୍ବାଭାସ ଲକ୍ଷଣ ଆକାରରେ ପ୍ରକାଶ ପାଇପାରେ ଏ କଥା ନିରାଟ ସତ୍ୟ । କେତେକ ଜୀବଜନ୍ତୁ ଅଛନ୍ତି ଯେଉଁମାନେ କି ଏ କଥା ପୂର୍ବରୁ ଜାଣିପାରନ୍ତି । ଜ୍ଞାନୀ ବ୍ୟକ୍ତିମାନେ ମଧ୍ୟ ଏକଥା ପୂର୍ବରୁ ଜାଣି ପାରନ୍ତି । ଯେ ଯାହା ହେଉ, ଏଥିରୁ ଜଣାପଡୁଛି ଯେ ସେତେବେଳେ ଆକ୍ରମଣ କରିବା ପୂର୍ବରୁ କାଳ-ମୁହୂର୍ତ୍ତର ଲକ୍ଷଣମାନ ଦେଖି କରାଯାଉଥିଲା ।

ସମରାଙ୍ଗନରେ ସେନାବାହିନୀର ଅବସ୍ଥାନକୁ ନିର୍ଦ୍ଦିଷ୍ଟ ସାମରିକ ଶାସ୍ତ୍ରସମ୍ମତ ପଦ୍ଧତିରେ କରାଯାଉଥିଲା । ଏହାକୁ କୁହାଯାଉଥିଲା ବ୍ୟୂହ-ରଚନା ଯାହାର ଆଧୁନିକ ସାମରିକ ଇଂରାଜୀ ପ୍ରତିଶବ୍ଦ ହେବ 'battle formation' । ମହାଭାରତ ସମୟକୁ ଏହି ବ୍ୟୂହ ରଚନାର ପଦ୍ଧତି ଅତି ଉନ୍ନତ ସ୍ତରକୁ ଆସି ଯାଇଥିଲା । ତତ୍ପୂର୍ବବର୍ତ୍ତୀ ରାମାୟଣ-ଯୁଗରେ ମଧ୍ୟ ଏହାର କିଛିଟା ବିକାଶ ଘଟିଥିଲା । ବ୍ୟୂହ-ରଚନାର ମୁଖ୍ୟ ଉଦ୍ଦେଶ୍ୟ ହେଲା :

କ) ଯୁଦ୍ଧ ସମୟରେ ସର୍ବାଧିକ ପରିମାଣରେ ଶୃଙ୍ଖଳାରକ୍ଷା କରିବା;

ଖ) ଅପେକ୍ଷାକୃତ କମ୍ ଶକ୍ତିର ପ୍ରୟୋଗ କରି ଶତ୍ରୁପକ୍ଷର ଅଧିକ କ୍ଷତି ଘଟାଇବା;

ଗ) ବିଭିନ୍ନ ଯୋଦ୍ଧାମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷାକରି ଆକ୍ରମଣକୁ ଯଥା-ସମ୍ଭବ ତୀବ୍ର କରିବା;

ଘ) ଶତ୍ରୁପକ୍ଷର ପ୍ରତ୍ୟାକ୍ରମଣକୁ ଖର୍ବ କରି ସଫଳ ଭାବରେ ଆତ୍ମରକ୍ଷା କରିବା; ଏବଂ

ଙ) ଯୁଦ୍ଧର ଏକ କୌଶଳସ୍ୱରୂପ ଆବଶ୍ୟକ ସ୍ଥଳେ କିଛିଟା ପଛଘୁଞ୍ଚା ଦେଇ ସୁଯୋଗ ଦେଖି ପୁନର୍ବାର ପ୍ରଚଣ୍ଡ ଆକ୍ରମଣ କରିବା ।

ରାମାୟଣରେ ବାଲ୍ମୀକି ଶ୍ୟେନ, ସୂଚୀ, ବଜ୍ର, ଶକଟ, ମକର, ଦଣ୍ଡ, ପଦ୍ମ, ଗରୁଡ଼ ଆଦି ବ୍ୟୂହର ନାମୋଲ୍ଲେଖ କରିଛନ୍ତି । ଏହି ନାମଗୁଡ଼ିକରୁ ବ୍ୟୂହ-ଗୁଡ଼ିକର ଆକାର ତଥା କାର୍ଯ୍ୟକାରିତା ର ଗୁଣ ସମ୍ପର୍କରେ ସମ୍ୟକ୍ ସୂଚନା ମିଳିଛି । ଉଦାହରଣସ୍ୱରୂପ ଡ଼େଣା ମେଲାଇ ବାଜ-ପକ୍ଷୀ ଉଡ଼ୁଥିଲେ ଯେପରି ଦିଶେ 'ଶ୍ୟେନ-ବ୍ୟୂହ'ର ଆକାର ଥିଲା ଠିକ୍ ସେହିପରି । ବାଜପକ୍ଷୀ ହଠାତ୍ ଶିକାରକୁ ତେରଛା ଭାବରେ ଝାମ୍ପି ନେଇଗଲା ଭଳି ଏହି ବ୍ୟୂହରେ ସଜ୍ଜିତ ସୈନ୍ୟମାନେ ଅତର୍କିତ ଭାବରେ ଶତ୍ରୁସୈନ୍ୟମାନଙ୍କ ଉପରେ ତେରଚ୍ଛା ଭାବରେ ଆକ୍ରମଣ କରିଥାନ୍ତି । ଏହା ପ୍ରାୟ ଆଧୁନିକ ଗରିଲା ଆକ୍ରମଣ ସହିତ ତୁଳନୀୟ । 'ମକର ବ୍ୟୂହର' କାର୍ଯ୍ୟକାରିତା ସେହିପରି ମକର ବା ମଗରର ଆକାର ଓ ସ୍ୱଭାବ ସହିତ ତୁଳନୀୟ । ମଗରର ଲାଞ୍ଜ ଖୁବ୍ ଶକ୍ତ ଓ ତୀକ୍ଷ୍ଣ କଣ୍ଟକିତ । ସେ ତାହାଦ୍ୱାରା ଶିକାରକୁ ଆକ୍ରମଣ କରି ରକ୍ତାକ୍ତ କରିଦିଏ ଏବଂ ଶିକାର ତଳେ ପଡ଼ିଗଲେ ତା'କୁ କାମୁଡ଼ି ଧରେ । ସେହିପରି ମକର ବ୍ୟୂହର ସଜ୍ଜିତ ସୈନ୍ୟମାନେ ପୁଚ୍ଛ ଓ ସମ୍ମୁଖ, ଏହି ଦୁଇ ଦିଗରୁ ଶତ୍ରୁସୈନ୍ୟମାନଙ୍କ ଉପରେ ଆକ୍ରମଣ କରିଥାନ୍ତି । ଅନ୍ୟାନ୍ୟ ବ୍ୟୂହଗୁଡ଼ିକର ଠିକ୍ ଅନୁରୂପ ଭାବରେ ଯଥାର୍ଥତା ରହିଛି ।

କେତେବେଳେ କେଉଁ ବ୍ୟୂହ ରଚନା କରିବାକୁ ହେବ, ତାହା ନିଜର ସେନାବଳ ଏବଂ ଶତ୍ରୁର ସେନାବଳ ତଥା ସେନାସଜ୍ଜା ଉପରେ ନିର୍ଭର କରେ । ଶତ୍ରୁ ଯଦି ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ସେନାସଜ୍ଜା କରିଛି, ତା'ହେଲେ ତା'ର ଆକ୍ରମଣକୁ ପ୍ରତିହତ କରିବା ସଙ୍ଗେ ସଙ୍ଗେ ତା' ଉପରେ କିପରି ଫଳପ୍ରଦ ଭାବରେ ଆକ୍ରମଣ କରିବାକୁ ହେବ ସେଥିପାଇଁ ଶାସ୍ତ୍ରନିର୍ଦ୍ଦିଷ୍ଟ ବିଧିରେ ପ୍ରତିବ୍ୟୂହଟିଏ ରଚନା କରିବାକୁ ହେବ । ତାହା ଛଡ଼ା ପ୍ରାକୃତିକ ପରିବେଶ ମଧ୍ୟ ବ୍ୟୂହ-ରଚନାକୁ କିଛିଟା ନିୟନ୍ତ୍ରିତ କରିଥାଏ । ଏହିସବୁ ବିଷୟକୁ ଦୃଷ୍ଟିରେ ରଖି ରାମାୟଣ-ଯୁଗରେ ବ୍ୟୂହସମୂହ ରଚିତ ହେଉଥିବାର ଜଣାପଡ଼େ । ଗରୁଡ଼-ବ୍ୟୂହ ରାମଙ୍କର ଅତି ପ୍ରିୟ ଥିବାର ଜଣାପଡ଼େ । ଲଙ୍କା ଯୁଦ୍ଧର ଅବ୍ୟବହିତ ପୂର୍ବରୁ ସେ ତାଙ୍କର ସେନାବାହିନୀକୁ ଗରୁଡ଼-ବ୍ୟୂହରେ ସଜ୍ଜିତ କରି ରଖିଥିଲେ । ସୈନ୍ୟମାନଙ୍କୁ ଶାସ୍ତ୍ରନିର୍ଦ୍ଦିଷ୍ଟ ପଦ୍ଧତିରେ ସଜା ଯାଉଥିବାର ସୂଚକ ଅନେକ ପଙ୍କ୍ତି ଆମେ ରାମାୟଣରେ ଦେଖିବାକୁ ପାଇଥାଉଁ । ଉଦାହରଣ ସ୍ୱରୂପ ରାମ ଲକ୍ଷ୍ମଣଙ୍କୁ ଉତ୍ସାହପୂର୍ଣ୍ଣ ବଚନ ଶୁଣାଇ ସାରିବା ପରେ କିପରି ଭାବରେ ନିଜ ସେନାବାହିନୀକୁ ଶାସ୍ତ୍ରସମ୍ମତ ନୀତିରେ ଭାଗ-ଭାଗ କରି ସଜାଇଥିଲେ ତାହାର ସୂଚନା ନିମ୍ନଲିଖିତ ପଙ୍କ୍ତିରୁ ମିଳିଥାଏ :

ଇତି ଦାଶରଥି ରାମୋ ଲକ୍ଷ୍ମଣଂ ସମଭାଷତ ।
ବଳଂ ଚ ତତ ବିଭଜତ୍ଛାସ୍ତ୍ରଦୃଷ୍ଟେନ କର୍ମଣା ।। (୩୭)

ଅର୍ଥାତ୍ ଦଶରଥନନ୍ଦନ ରାମ ଲକ୍ଷ୍ମଣଙ୍କୁ ଏହା କହିଲେ ଏବଂ ଶାସ୍ତ୍ରୀୟ ନିୟମ ଅନୁସାରେ ସୈନ୍ୟମାନଙ୍କୁ ଭାଗ-ଭାଗ କରି ସଜାଇଲେ । ଯୁଦ୍ଧ ଚାଲିଥିଲା ବେଳେ ମଝିରେ କିଛି ବିପର୍ଯ୍ୟୟ ଘଟିଲେ ସେନାବାହିନୀ ମଧ୍ୟରେ ବିଶୃଙ୍ଖଳା ପଶିଯିବା ସ୍ୱାଭାବିକ । କେତେକ ସୈନ୍ୟ ଛତ୍ରଭଙ୍ଗ ଦେଇ ଚାଲିଯିବା ମଧ୍ୟ ସ୍ୱାଭାବିକ । ବାସ୍ତବିକ, ଏଭଳି ଘଟଣା ଘଟିଥିଲା କୁମ୍ଭକର୍ଣ୍ଣର ଆକ୍ରମଣ ସମୟରେ । ସେତେବେଳେ ବାନର ସେନାବାହିନୀ ଭୟଭୀତ ହୋଇ ଛତ୍ରଭଙ୍ଗ ଦେଉଥିବା ସମୟରେ କପିରାଜ ଅଙ୍ଗଦଙ୍କ ଉତ୍ସାହପୂର୍ଣ୍ଣ ବାଣୀ ଶୁଣି ପୁନର୍ବାର ଯୁଦ୍ଧପାଇଁ ସଜ୍ଜିତ ହୋଇଥିଲେ ତାହା ରାମାୟଣରେ ଅତି ରୋଚକ ଭାବରେ ବର୍ଣ୍ଣିତ । ତାଙ୍କର ନିମ୍ନୋକ୍ତ ଉତ୍ସାହ-ବାଣୀ ଏ ସମ୍ପର୍କରେ ଉଲ୍ଲେଖନୀୟ :

ପଲାୟନେନ ଚୋଦ୍ଧିଷ୍ଟାଃ ପ୍ରାଣାନ୍ ରକ୍ଷାମହେ ବୟମ୍ ।
ଏକେନ ବହବୋ ଭଗ୍ନା ଯଶୋ ନାଶଂ ଗମିଷ୍ୟତି ।। (୩୮)

ଅର୍ଥାତ୍ ଆମ୍ଭେମାନେ ସମସ୍ତେ ପ୍ରଖ୍ୟାତ ବୀର । ତାହା ହୋଇ ମଧ୍ୟ ଆମ୍ଭେମାନେ ଯଦି ପଳାଇଯାଇ ପ୍ରାଣ ବଞ୍ଚାଇବା ଏବଂ ଅଧିକ ସଂଖ୍ୟାରେ ଥାଇ ମଧ୍ୟ ଜଣେ ଯୋଦ୍ଧାର ସମ୍ମୁଖୀନ ହୋଇନପାରିବା, ତା'ହେଲେ ଆମ୍ଭମାନଙ୍କ ଯଶ ମାଟିରେ ମିଶିଯିବ । ଖାଲି ସେତିକି ନୁହେଁ, ସେ ପୁଣିଠାଏ (୬ । ୬୬ । ୨୬) ସ୍ପଷ୍ଟ ଭାବରେ କହିଲେ ଯେ ଏ ପର୍ଯ୍ୟନ୍ତ କୁମ୍ଭକର୍ଣ୍ଣ ରାମଙ୍କୁ ସାମନା କରିନାହିଁ ଏବଂ ତାହା କଲେ ସେ ଆଉ ଜୀବନ ଧରି ଫେରି ପାରିବନାହିଁ । ନୈତିକ ବଳ ହରାଇ ଉଠୁଥିବା ବାନରସେନାପାଇଁ ଏହା ନିଶ୍ଚିତ ଭାବରେ ଥିଲା ଏକ ଅନନ୍ୟ ଉତ୍ସାହବାଣୀ ।

ଜଣେ ଯୋଦ୍ଧା ଲଢ଼ି ଲଢ଼ି କ୍ଳାନ୍ତ ହୋଇଗଲେ ଅଥବା ବିଶେଷ ଭାବରେ କ୍ଷତ-ବିକ୍ଷତ ହୋଇ ଅସ୍ଥାୟୀ ଭାବରେ ଲଢ଼ିବାପାଇଁ ଅଯୋଗ୍ୟ ହୋଇଉଠିଲେ, ତାଙ୍କ ସ୍ଥାନ ପୂରଣପାଇଁ ଆଉ ଜଣେ ଯୋଦ୍ଧା ଆସିବାର ପରଂପରା ସେତେବେଳେ ପ୍ରତିଷ୍ଠିତ ଥିଲା । ଶର୍ମା ଏହି ମତର ସମର୍ଥନ କରି କହନ୍ତି :

During the operations there was also arrangement for providing relief on a front likely to give way either because of the leader being wounded or exhausted due to protracted fighting or a sudden arrival of the reinforcement of the enemy, (୩୯)

ଉଦାହରଣସ୍ୱରୂପ ହନୁମାନ୍ ଇନ୍ଦ୍ରଜିତ୍ ସହିତ ଯୁଦ୍ଧ କରୁଥିବା ବେଳେ ଖୁବ୍ କ୍ଳାନ୍ତ ଅବସନ୍ନ ହୋଇ ଉଠିଥିଲେ । ରାମ ଏକଥା ଲକ୍ଷ୍ୟ କରି ତାଙ୍କ ସ୍ଥାନ ପୂରଣ କରିବା ନିମିତ୍ତ ଜାମ୍ବବାନ୍‌ଙ୍କୁ ସେଠାକୁ ପଠାଇଥିଲେ । ଲକ୍ଷ୍ମଣ ମଧ୍ୟ ଯୁଦ୍ଧ କରି ଆହତ ହୋଇଯିବାରୁ ବିଭୀଷଣ ତାଙ୍କ ସ୍ଥାନ ପୂରଣ କରିଥିଲେ । ଏହିପରି ଆହୁରି ଅନେକ ଉଦାହରଣ ରାମାୟଣରେ ଦେଖିବାକୁ ମିଳିଥାଏ ।

ସେତେବେଳେ ଆହତ ସୈନ୍ୟମାନଙ୍କର ଚିକିତ୍ସା ନିମିତ୍ତ ସମସ୍ତ ପ୍ରକାର ସୁବ୍ୟବସ୍ଥା କରାଯାଉଥିଲା । ସେନାବାହିନୀ ସାଥିରେ ହିଁ ବୈଦ୍ୟମାନଙ୍କର ଗୋଟିଏ ଦଳ ଯାତ୍ରା କରୁଥିଲା । ଭରତ ଚିତ୍ରକୂଟକୁ ତାଙ୍କ ସେନାବାହିନୀ ଧରି ଯାତ୍ରା କରୁଥିବା ବେଳେ ତାଙ୍କ ସାଥିରେ ସାଧାରଣ ବୈଦ୍ୟମାନେ ତଥା ବିଷବୈଦ୍ୟମାନେ ମିଳିତ ହୋଇଥିବା କଥା ରାମାୟଣରେ ବର୍ଣ୍ଣିତ । ବିଷ-ବୈଦ୍ୟମାନେ ଥିଲେ ବିଷ-ଶାସ୍ତ୍ରରେ ଧୁରନ୍ଧର । ସମସ୍ତ ପ୍ରକାର ବିଷକୁ ଶମନ କରିବାର ଉପାୟ ସେମାନଙ୍କୁ ଜଣାଥିଲା । ଲଙ୍କା-ଯୁଦ୍ଧର ଅବସରରେ କେତେକ ଚେରମୂଳ ଔଷଧ ପ୍ରୟୋଗ କରାଯାଇଥିବାର ଦୃଷ୍ଟାନ୍ତ ରହିଅଛି । ଲକ୍ଷ୍ମଣଙ୍କ ଶକ୍ତିଭେଦ ଓ ତଜ୍ଜନିତ ନିଶ୍ଚେତନତା, ହନୁମାନ୍‌ଙ୍କର ଗନ୍ଧମାର୍ଦ୍ଦନ ପର୍ବତ ସହିତ ମୃତସଞ୍ଜୀବନୀ ଆନୟନ, ସୁଷେଣଙ୍କର ଏହି ଔଷଧକୁ ଲକ୍ଷ୍ମଣଙ୍କ ଉପରେ ପ୍ରୟୋଗ ଏବଂ ପରିଶେଷରେ ଲକ୍ଷ୍ମଣଙ୍କ ସଞ୍ଜୀବିତ ଆଦି ବିଷୟ ଭାରତର ଘରେ ଘରେ ଏକ ଅତି ପରିଚିତ କାହାଣୀ । ବାଲ୍ମୀକି ବିଶଲ୍ୟକରଣୀ, ସନ୍ଧାନକରଣୀ ବା ସନ୍ଧାନୀ, ମୃତସଞ୍ଜୀବନୀ ଓ ସୁବର୍ଣ୍ଣକରଣୀ ଆଦି ଚେରମୂଳ ଔଷଧର ନାମୋଲ୍ଲେଖ କରିଛନ୍ତି । ଏହିସବୁ ଔଷଧର ନିର୍ଯ୍ୟାସକୁ ନାସାରନ୍ଧ୍ର ମଧ୍ୟଦେଇ ପ୍ରୟୋଗ କଲେ ତାହା ଫଳ ଦେଖାଇଥାଏ ।

**ବୀରବାଦ୍ୟ :**

ଏହାପରେ ବୀର-ବାଦ୍ୟ କଥା ବିଚାର୍ଯ୍ୟ । ବୈଦିକ କାଳରୁ ହିଁ ଏହି ବୀର-ବାଦ୍ୟର ପ୍ରଚଳନ ଥିଲା । ବୀରମାନଙ୍କୁ ପ୍ରୋତ୍ସାହନ ତଥା ଅନୁପ୍ରେରଣା ଦେବାଲାଗି ଏବଂ ସେମାନଙ୍କ ନୈତିକ ବଳ ବଢ଼ାଇବା ଲାଗି ଯୁଗେ ଯୁଗେ ବୀର-ବାଦ୍ୟର ଆବଶ୍ୟକତା ଅନୁଭୂତ ହୋଇଆସିଛି । ଏବେ ମଧ୍ୟ ସୈନିକମାନେ ଡ୍ରମ, ବିଗୁଲ୍ ଓ ଅନ୍ୟାନ୍ୟ ବାଦ୍ୟ ସହିତ ସମତାଳ ରଖି ଯେତେବେଳେ ଯାତ୍ରା କରି ଯାଉଛନ୍ତି ସେତେବେଳେ ସେମାନଙ୍କର ଗୁଡ଼ିତଳ ଉତ୍ସାହ ଓ ଉଦ୍ଦୀପନାରେ ଫୁଲି ଉଠୁଛି । ଦର୍ଶକମାନେ ମଧ୍ୟ ସମଧିକ ଉଦ୍ଦୀପିତ ହୋଇଉଠୁଛନ୍ତି । ବୈଦିକ କାଳରେ 'ଦୁନ୍ଦୁଭି' ଓ 'ତୂର୍ଣ୍ଣ' ଥିଲା ପ୍ରମୁଖ ବୀରବାଦ୍ୟ । ଦୁନ୍ଦୁଭି ଦୁଇ ପ୍ରକାର

ଥିଲି, ଯଥା, ରଣ-ଦୁନ୍ଦୁଭି ଓ ଭୂମି-ଦୁନ୍ଦୁଭି । ରଣଦୁନ୍ଦୁଭି ଥିଲା ଚଳମାନ ଏବଂ ଏହାକୁ କେବଳ ଯୁଦ୍ଧରେ ବଜା ଯାଉଥିଲା । ଭୂମି ଦୁନ୍ଦୁଭି ଭୂମିରେ ସ୍ଥିର ଥିଲା । ଏହା ଲୋକମାନଙ୍କୁ ବିପଦ ସମୟରେ ଜଗାଇ ଦେବାପାଇଁ ବ୍ୟବହୃତ ହେଉଥିଲା । ରାମାୟଣ-ଯୁଗରେ ମଧ୍ୟ ଯୁଦ୍ଧବାଦ୍ୟର ସମଧିକ ପ୍ରଚଳନ ଥିଲା । ସେନାବାହିନୀ ଯାତ୍ରା କଲାବେଳେ ଏବଂ ସଜ୍ଜିତ ହେବାବେଳେ ଏହି ବୀରବାଦ୍ୟସମୂହ ବାଜୁଥିଲା । ଆର୍ଯ୍ୟ, ବାନର, ତଥା ରାକ୍ଷସ ସମସ୍ତଙ୍କର ସେନାବାହିନୀ ବୀର-ବାଦ୍ୟର ଉପଯୋଗ କରୁଥିଲେ । ରାମାୟଣ-ଯୁଗରେ 'ଦୁନ୍ଦୁଭି' ଓ 'ଭେରୀ' ଉଭୟର ଉପଯୋଗର ବର୍ଣ୍ଣନା ଦେଖିବାକୁ ମିଳେ । ଉଭୟ ହେଉଛି ଆଧୁନିକ ଡ୍ରମ୍ ଶ୍ରେଣୀୟ । ରାମଙ୍କର ସମୁଦ୍ର ପାରି ହୋଇ ସୁବଳ ପର୍ବତରେ ଶିବିର ସ୍ଥାପନର ସମ୍ବାଦ ପାଇ ରାବଣ ତାଙ୍କ ଆକ୍ରମଣକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ନିଜର ସେନା-ସଜ୍ଜା କରିବାକୁ ଲାଗି ପଡ଼ିଥିଲା । ଏହି ସୁଖବରଟି ସରମା ରାକ୍ଷସୀ ଆସି ସୀତାଙ୍କୁ ଶୁଣାଇଥିଲା ଏବଂ ତଦ୍ଦ୍ୱାରା ସୀତାଙ୍କ ନୈତିକ ବଳକୁ ବଢ଼ାଇବାର ଉଦ୍ୟମ କରିଥିଲା । ସେ କହିଥିଲା :

ସନାହଜନନୀ ହ୍ୟେଷା ଭୈରବା ଭୀରୁ ଭେରିକା ।
ଭେରୀନାଦଂ ଚ ଗମ୍ଭୀରଂ ଶୃଣୁ ତୋୟଦନିଃସ୍ୱନମ୍ ।। (୪୦)

ଅର୍ଥାତ୍ ଆଗୋ ଭୀରୁ । ଏହି ଭୟାନକ ଭେରୀ-ନାଦ ଯୁଦ୍ଧପାଇଁ ପ୍ରସ୍ତୁତିର ସୂଚନା ଦେଉଛି । ମେଘର ଗର୍ଜନ ଭଳି ଗମ୍ଭୀର ଭେରୀନାଦ ତୁମେ ମଧ୍ୟ ଶୁଣିନିଅ । ଦଣ୍ଡଦ୍ୱାରା ଆଘାତ କରାଯାଇ ଏହି ଭେରୀକୁ (ଦଣ୍ଡନିର୍ଘାତବାଦିନ୍ୟାଃ ଶ୍ରୁତ୍ୱା ଭେର୍ଯ୍ୟା ମହାସ୍ୱନମ୍) ବଜାଯାଉଥିବାର ନିଦର୍ଶନ ରାମାୟଣରେ ମିଳିଥାଏ । ଏଠାରେ ମନେ ରଖିବାକୁ ହେବ ଯେ ବୈଦିକ 'ଦୁନ୍ଦୁଭି'କୁ ହସ୍ତ ଅଥବା ବଳଦର ଲାଞ୍ଜରେ ପିଟାଯାଇ ବଜାଯାଉଥିଲା । ରାମାୟଣୀୟ ଦୁନ୍ଦୁଭି କିଭଳି ବଜାଯାଉଥିଲା ତାହାର ଉଲ୍ଲେଖ ଅବଶ୍ୟ ରାମାୟଣରେ ନାହିଁ । ଅନ୍ୟ କୌଣସି ପ୍ରମାଣ ନମିଳିବା ପର୍ଯ୍ୟନ୍ତ ବୈଦିକ ରୀତିରେ ଏହାକୁ ବଜାଯାଉଥିଲା ବୋଲି ଆମକୁ ଧରିନେବାକୁ ହେବ । ଏତଦ୍‌ବ୍ୟତୀତ ଶଙ୍ଖ, ପଟହ, ବେଣୁ, ମୃଦଙ୍ଗ ଓ ପଣବ ଆଦି ବାଦ୍ୟ ମଧ୍ୟ ବୀର-ବାଦ୍ୟ ଭାବରେ ବ୍ୟବହୃତ ହେଉଥିବାର ସୂଚନା ବାଲ୍ମୀକି ଦେଇଛନ୍ତି ।

**ଯୁଦ୍ଧାସ୍ତ୍ର :**

ଯୁଦ୍ଧାସ୍ତ୍ର ବିଷୟରେ ଆଲୋଚନା ପ୍ରସଙ୍ଗରେ ଏଥିରୁ ରକ୍ଷାପାଇବା ପାଇଁ ଯୋଦ୍ଧାମାନେ ବ୍ୟବହାର କରୁଥିବା ବିଭିନ୍ନ ଆତ୍ମରକ୍ଷାର ସାଧନ ସମ୍ପର୍କରେ

କହିଛନ୍ତି ଆଲୋକପାତ କରିବା ଆବଶ୍ୟକ । ରାମାୟଣରେ ଆତ୍ମରକ୍ଷାର ସାଧନ ଭାବରେ 'କବଚ'ର ନାମୋଲ୍ଲେଖ ବହୁଳ ଭାବରେ ଦେଖାଯାଇଥାଏ । ସାଧାରଣ ଭାବରେ ଆମେ 'କବଚ'କୁ ବକ୍ଷୋଦେଶର ସୁରକ୍ଷାର ଏକ ସାଧନ ବୋଲି ଭାବିଥାଉଁ । କିନ୍ତୁ ରାମାୟଣୀୟ 'କବଚ' କେବଳ ସେତିକି ନୁହେଁ । ତାହା ହେଉଛି ସମ୍ପୂର୍ଣ୍ଣ ଶରୀରକୁ ରକ୍ଷା କରିବାର ସାଧନ । କାରଣ ବକ୍ଷୋଦେଶକୁ ରକ୍ଷା କରିବାର ସାଧନକୁ ପୃଥକ୍ ଭାବରେ ଭାବରେ 'ଉରସ୍ଛଦ' ବୋଲି କୁହାଯାଇଛି । ଉଭୟ ଯୋଦ୍ଧାମାନେ ଓ ଅଶ୍ୱମାନେ ଏହି 'ଉରସ୍ଛଦ'ର ଉପଯୋଗ କରୁଥିଲେ । କବଚର ଆଉ ଗୋଟିଏ ନାମ ଥିଲା 'କଞ୍ଚୁକ' । ବର୍ମ ଥିଲା ଏକ ପ୍ରକାର ଧାତବ ଜାଲ । ଏହାର ଆଧୁନିକ ନାମ ସାଞ୍ଜୁ ଯାହାକି ଭାରତୀୟ ଯୋଦ୍ଧାମାନେ ମଧ୍ୟଯୁଗ ପର୍ଯ୍ୟନ୍ତ ବି ବ୍ୟବହାର କରୁଥିଲେ । ଏହା ଜାଲବଦ୍ଧ ଥିବାରୁ ଏହାକୁ 'ଜାଲିକା' ବୋଲି ମଧ୍ୟ କୁହାଯାଉଥିଲା ।

କବଚ ପରେ ଆଉ ଏକ ବହୁଳ ଭାବରେ ଉଲ୍ଲିଖିତ ଆତ୍ମରକ୍ଷାର ସାଧନ ହେଉଛି 'ଫଳକ' । ଏହାର ଆଧୁନିକ ନାମ ହେଉଛି ଢାଲ । ଏହାକୁ ମଧ୍ୟ ବେଳେ ବେଳେ 'ଚର୍ମ' ବୋଲି କୁହାଯାଇଛି । କାରଣ ଏହା ଥିଲା ଗୋ-ଚର୍ମରେ ନିର୍ମିତ । ବେଳେ ବେଳେ ଏହା ବ୍ୟାଘ୍ର ଚର୍ମରେ ମଧ୍ୟ ନିର୍ମିତ ହେଉଥିଲା । ଖଡ୍ଗର ଆକ୍ରମଣରୁ ଆତ୍ମରକ୍ଷା କରିବା ଉଦ୍ଦେଶ୍ୟରେ ଏହା ବ୍ୟବହୃତ ହେଉଥିଲା । ଯୋଦ୍ଧା ଧନୁଶର ଧରି ଯୁଦ୍ଧ କରୁଥିବା ସମୟରେ ଏହାକୁ ଦେହରେ ଧାରଣ କରୁ ନଥିଲେ । ଅନ୍ୟ ପକ୍ଷରେ ସେତେବେଳେ ସେ କବଚକୁ ଧାରଣ କରୁଥିଲେ । କେବଳ ଖଡ୍ଗ-ଯୁଦ୍ଧ ସମୟରେ ହିଁ ଏହା ଉପଯୋଗ କରାଯାଉଥିଲା । ବ୍ରକିଙ୍ଗ୍ଟନ୍ ମଧ୍ୟ ଏହି ମତର ସମର୍ଥକ । ତାଙ୍କ ଭାଷାରେ :

> The shield is also regularly linked with the sword in a way that suggest that it was not worn when the warrior was using his bow but was picked up with the sword for use at close quarters.(୪୧)

ମୁଣ୍ଡକୁ ରକ୍ଷା କରିବାପାଇଁ ବ୍ୟବହୃତ ହେଉଥିବା ସାଧନର ନାମ ଥିଲା 'ଶିରସ୍ତ୍ର' ବା 'ଶିରସ୍ତ୍ରାଣ' । ଅଙ୍ଗୁଳି-ରକ୍ଷାର କବଚକୁ କୁହାଯାଉଥିଲା 'ଅଙ୍ଗୁଳିତ୍ର' ବା 'ଅଙ୍ଗୁଳିତ୍ରାଣ' । ବାହୁର କବଚକୁ କୁହାଯାଉଥିଲା 'ଗୋଧା'; କାରଣ ଏହା ଗୋଧି-ଚମଡ଼ାରେ ତିଆରି ହେଉଥିଲା । ସାଧାରଣ ଭାବରେ ଶରୀରକୁ ରକ୍ଷା କରିବାର ସାଧନର ନାମ ଥିଲା 'ତନୁତ୍ର' ବା 'ତନୁତ୍ରାଣ' । ସେହିପରି ବକ୍ଷୋ-ଦେଶର କବଚକୁ ମଧ୍ୟ ବେଳେ ବେଳେ କୁହାଯାଉଥିଲା 'ମର୍ମତ୍ର' ବା

'ମର୍ମତ୍ରାଣ' । ଧାତବ 'କବଚ' ଓ ବର୍ମ' ସେତେବେଳେ ଲୁହା କିମ୍ବା ବ୍ରୋଞ୍ଜରେ ତିଆରି ହେଉଥିଲା । ଲଙ୍କା-ଯୁଦ୍ଧରେ ଆବଶ୍ୟ ଠାଏ ଲକ୍ଷ୍ମଣ ସୁନାର କବଚ ଓ ବର୍ମ ପିନ୍ଧିଥିବାର ଉଲ୍ଲେଖ ଅଛି । ସୁନା ହେଉଛି ଅପେକ୍ଷାକୃତ ନମନୀୟ ଧାତୁ । ଏଣୁ ତାହା କବଚ ଓ ବର୍ମ ଉଭୟପାଇଁ ଅନୁପଯୋଗୀ । ଅତଏବ, ଲକ୍ଷ୍ମଣ ସୁନାରେ ତିଆରି କବଚ ଓ ବର୍ମ ବ୍ୟବହାର କରିଥିବେ ବୋଲି ବିଶ୍ୱାସ ହେଉନାହିଁ । ସମ୍ଭବତଃ ତାହା ଉପରେ ସୁନା-ପାଣି ପିଆଇ ଦିଆଯାଇଥିବ, ଯାହା ଫଳରେ ତାହା ସୁନା ଭଳି ଚକ୍ ଚକ୍ କରୁଥିବ । ସେ ଯାହାହେଉ, ଆତ୍ମରକ୍ଷା ଲାଗି ରାମାୟଣୀୟ ଯୋଦ୍ଧାମାନେ ଯେ ବିଭିନ୍ନ ପ୍ରକାର ସାଧନର ଉପଯୋଗ କରୁଥିଲେ, ଏଥିରେ ସନ୍ଦେହ ନାହିଁ ।

ବର୍ତ୍ତମାନ ଯୁଦ୍ଧାସ୍ତ୍ର କଥା ବିଚାର୍ଯ୍ୟ । ବୈଦିକ ଯୁଗରୁ ହିଁ ଭାରତରେ ଯୁଦ୍ଧାସ୍ତ୍ରର ଉପଯୋଗ ହୋଇଆସିଛି । ଶୁକ୍ଳ ଯଜୁର୍ବେଦର 'ଶତରୁଦ୍ରୀୟ ସୂକ୍ତ'ରେ (୧୬ । ୨୩) ରୁଦ୍ର ସହସ୍ର ସହସ୍ର ଅସ୍ତ୍ର ବ୍ୟବହାର କରିଥିବାର ବର୍ଣ୍ଣନା ଅଛି । ରୁଦ୍ର ହେଉଛନ୍ତି ଅସ୍ତ୍ରର ଦେବତା । ଏହାର ତାତ୍ପର୍ଯ୍ୟ ହେଲା ବୈଦିକ ଆର୍ଯ୍ୟମାନେ ନାନାପ୍ରକାର ଅସ୍ତ୍ରର ପ୍ରୟୋଗ ସମ୍ପର୍କରେ ଅବହିତ ଥିଲେ । ଲେଖକ ବୈଦିକ ଯୁଦ୍ଧାସ୍ତ୍ର ସମ୍ପର୍କରେ ବିଶଦ ଭାବରେ ଅନ୍ୟ ଏକ ପୁସ୍ତକରେ ଆଲୋଚନା କରିଛନ୍ତି । (୪୨) ରାମାୟଣ-ଯୁଗ ବେଳକୁ ଯୁଦ୍ଧାସ୍ତ୍ରର ସମଧିକ ବିକାଶ ସଂଘଟିତ ହୋଇ ସାରିଥିଲା । ଆର୍ଯ୍ୟ ଓ ରାକ୍ଷସ ଉଭୟ ଗୋଷ୍ଠୀର ଯୋଦ୍ଧାମାନେ ଯୁଦ୍ଧାସ୍ତ୍ରର ଉପଯୋଗ କରୁଥିଲେ । କିନ୍ତୁ ଅଧିକାଂଶ ରାକ୍ଷସ ନିଜର ନଖ ଓ ଦାନ୍ତକୁ ଅସ୍ତ୍ରରୂପେ ବ୍ୟବହାର କରୁଥିଲେ । ଏତଦ୍ ବ୍ୟତୀତ ସେମାନେ ମଲ୍ଲଯୁଦ୍ଧ ମଧ୍ୟ କରୁଥିଲେ । ସ୍ଥୂଳତ ସେମାନେ ସ୍ୱୀୟ ଶାରୀରିକ ବଳ ଉପରେ ଥିଲେ ଅଧିକତର ନିର୍ଭରଶୀଳ । ଏହି ବଳକୁ ଆଶ୍ରୟ କରି ସେମାନେ ବଡ଼ ବଡ଼ ଗଛଗୁଡ଼ିକୁ ଉପାଡ଼ି ଆଣି ସେଗୁଡ଼ିକ ଦ୍ୱାରା ଶତ୍ରୁମାନଙ୍କୁ ଆକ୍ରମଣ କରୁଥିଲେ । ସେମାନେ ବଡ଼ ବଡ଼ ଶିଳାଖଣ୍ଡମାନ ମଧ୍ୟ ଏଥିଲାଗି ଉପଯୋଗ କରୁଥିଲେ । କେବଳ ରାବଣ, ଇନ୍ଦ୍ରଜିତ, ଖର, ଦୂଷଣ, ମହାପାର୍ଶ୍ୱ ଆଦି ପ୍ରମୁଖ ରାକ୍ଷସବୀରମାନେ ଯୁଦ୍ଧାସ୍ତ୍ରର ଉପଯୋଗ କରୁଥିଲେ । ସେମାନେ ମଧ୍ୟ ଆର୍ଯ୍ୟମାନଙ୍କ ଭଳି ଧନୁର୍ବିଦ୍ୟାରେ ଥିଲେ ଉତ୍ତମ ଭାବରେ ପ୍ରଶିକ୍ଷିତ । ତାହା ସତ୍ତ୍ୱେ ସେମାନେ ସେମାନଙ୍କ ସ୍ୱାଭାବିକ ଅସ୍ତ୍ର, ଯଥା ବୃକ୍ଷ ଓ ଶିଳା-ଖଣ୍ଡର ଉପଯୋଗକୁ ବି ଭୁଲି ନଥିଲେ । ଉଦାହରଣସ୍ୱରୂପ ରାବଣ ରାମଙ୍କ ସହିତ ଅନ୍ତିମ ଯୁଦ୍ଧ କଲାବେଳେ ବୃକ୍ଷ ଓ ଶିଳାଖଣ୍ଡର ଉପଯୋଗ କରିଥିଲା । ବାନରମାନେ ଯୁଦ୍ଧାସ୍ତ୍ରର ଉପଯୋଗ ଆଦୌ ଜାଣିନଥିଲେ । ନଖ ଓ ଦାନ୍ତ

ସେମାନଙ୍କର ଥିଲା ପ୍ରଧାନ ଅସ୍ତ୍ର । ରାମାୟଣରେ ତେଣୁ ସେମାନଙ୍କୁ କୁହା-ଯାଇଛି 'ନଖଦଂଷ୍ଟ୍ରାୟୁଧାଃ' । ଏତଦ୍‌ବ୍ୟତୀତ ବୃକ୍ଷ ଓ ଶିଳାଖଣ୍ଡକୁ ମଧ୍ୟ ସେମାନେ ଅସ୍ତ୍ରରୂପେ ଉପଯୋଗ କରୁଥିଲେ । ରାକ୍ଷସମାନଙ୍କ ଭଳି ସେମାନେ ମଧ୍ୟ ଥିଲେ ମହାବଳର ଅଧିକାରୀ ଏବଂ ତାହା ଉପରେ ଅତି ମାତ୍ରାରେ ନିର୍ଭରଶୀଳ । ଆଉ ମଧ୍ୟ ରାକ୍ଷସମାନଙ୍କ ଭଳି ସେମାନେ ଥିଲେ ମଲ୍ଲଯୁଦ୍ଧରେ ପ୍ରବୀଣ । ରାବଣ ଓ ସୁଗ୍ରୀବଙ୍କ ମଧ୍ୟରେ ଯେଉଁ ପ୍ରବାଦାତ୍ମକ ମଲ୍ଲଯୁଦ୍ଧ ସଂଘଟିତ ହୋଇଥିଲା, ତାହା ଅବିସ୍ମରଣୀୟ । ତତ୍‌ସମ୍ପର୍କରେ ପୃଥକ୍ ଏକ ଉପଶୀର୍ଷକରେ ସବିଶେଷ ଆଲୋଚନା କରାଯିବ ।

ବୈଦିକକାଳ ଭଳି ରାମାୟଣକାଳରେ ମଧ୍ୟ ଦୁଇ ପ୍ରକାର ଅସ୍ତ୍ର ଥିଲା । ଗୋଟିକୁ କୁହାଯାଉଥିଲା 'ଶସ୍ତ୍ର' ଏବଂ ଅପରଟିକୁ କୁହାଯାଉଥିଲା ଅସ୍ତ୍ର । କେବଳ ଶାରୀରିକ ଶକ୍ତିକୁ ଆଶ୍ରୟ କରି ଯାହାକୁ ପ୍ରୟୋଗ କରାଯାଉଥିଲା, ତାହାର ନାମ ଥିଲା 'ଶସ୍ତ୍ର' । ସାଧାରଣ ବାଣ, ଖଣ୍ଡା, ବର୍ଚ୍ଛା, ଶକ୍ତି ଆଦି ଏହାର ଅନ୍ତର୍ଗତ । ମନ୍ତ୍ରପୂତ ଭାବରେ ଯାହାକୁ ପ୍ରୟୋଗ କରାଯାଉଥିଲା, ତାହାର ନାମ ଥିଲା 'ଅସ୍ତ୍ର' । ଆଗ୍ନେୟାସ୍ତ୍ର, ବାୟବ୍ୟାସ୍ତ୍ର, ବରୁଣାସ୍ତ୍ର, ବ୍ରହ୍ମାସ୍ତ୍ର ଆଦି ଏହାର ଅନ୍ତର୍ଗତ । କୌଟିଲ୍ୟଙ୍କ ବେଳକୁ (ଖ୍ରୀ.ପୂ: ୪ର୍ଥ ଶତାବ୍ଦୀ) ମଧ୍ୟ 'ଅସ୍ତ୍ର'ର ପ୍ରଚଳନ ଥିଲା । କିନ୍ତୁ ମନ୍ତ୍ରପୂତବିଧି ସେତେବେଳକୁ ଲୋପ ପାଇଯାଇଥିଲା । କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ଯନ୍ତ୍ରଦ୍ୱାରା ନିକ୍ଷିପ୍ତ ଶସ୍ତ୍ରର ନାମକୁ 'ଅସ୍ତ୍ର' ବୋଲି ରଖିଛନ୍ତି । ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି ମନ୍ତ୍ରପୂତବିଧିର ତାତ୍ପର୍ଯ୍ୟ କ'ଣ ? ଏହା ଫଳରେ ଅସ୍ତ୍ର କିପରି ଦିବ୍ୟାସ୍ତ୍ରର କ୍ଷମତା ପାଏ ? ଏହା କାହିଁକି ଅଳ୍ପ କେତେ ଜଣ ମାତ୍ର ବୀରଙ୍କୁ ଜଣା ଥିଲା ? ଏହା ପୁଣି କାହିଁକି ଲୋପ ପାଇଗଲା ? ଏହିସବୁ ପ୍ରଶ୍ନର ଉତ୍ତର ଦେବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ।

ଆଧୁନିକ ବୈଜ୍ଞାନିକ ଯୁଗରେ ନାନା ପ୍ରକାର କ୍ଷେପଣାସ୍ତ୍ର, ପାରମାଣବିକ ଅସ୍ତ୍ର ଆଦି ମାରାତ୍ମକ ଅସ୍ତ୍ରମାନ ବାହାରିଲାଣି । ସେଗୁଡ଼ିକର ଗତିକୁ ଦୂରରୁ ଇଲେକ୍‌ଟ୍ରନିକ୍ ପଦ୍ଧତିକୁ ଅନୁସରଣ କରି ନିୟନ୍ତ୍ରଣ କରାଯାଇପାରୁଛି । ଏହି ଦୂର-ନିୟନ୍ତ୍ରଣ (remote control) ପଦ୍ଧତିକୁ ଅନୁସରଣ କରି ଗୋଟିଏ କ୍ଷେପଣାସ୍ତ୍ର ଆଉ ଗୋଟିଏ କ୍ଷେପଣାସ୍ତ୍ରକୁ ଆକାଶମାର୍ଗରେ କାଟିଦେଇ ପାରୁଛି । ଯାହା ଜଣା ଯାଉଛି ଆଉ କିଛି ବର୍ଷ ଗଲେ ଏହି 'ଅସ୍ତ୍ର' କଟାକଟି କାର୍ଯ୍ୟ ମହାକାଶରେ ମଧ୍ୟ ଚାଲିବ । ଏହିପରି ଭାବରେ ପ୍ରତ୍ୟେକଟି ଅସ୍ତ୍ରର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଚାଳନ କୌଶଳ ଅଛି, ଯାହାକି ନିର୍ଦ୍ଦିଷ୍ଟ କେତେକ ବ୍ୟକ୍ତିଙ୍କ ମଧ୍ୟରେ ଗୁପ୍ତ ରଖା ଯାଇଛି । ରାମାୟଣୀୟ ମନ୍ତ୍ରପୂତ ଅସ୍ତ୍ରର ପ୍ରୟୋଗ ଥିଲା ଠିକ୍ ସେହିପରି । ଅସ୍ତ୍ରଟିର

ଗୁଳନ-କୌଶଳ ହେଉଛି ତାହାର ମନ୍ତ୍ର । ଏହି ମନ୍ତ୍ରଦ୍ୱାରା ତାହା ଦିବ୍ୟାସ୍ତ୍ରର ସ୍ୱରୂପକୁ ପାଇଥାଏ । ଅର୍ଥାତ୍ ତାହା ଅସୀମ ମାରାତ୍ମକ ଶକ୍ତିର ଉତ୍ସ ହୋଇ-ଉଠିଥାଏ । ଆଣବିକ ବୋମା, ଉଦ୍‌ଜାନ ବୋମା ଆଦି ଆକାରରେ କ୍ଷୁଦ୍ର ହେଲେ ହେଁ ଉପଯୁକ୍ତ ପଦ୍ଧତିରେ ଗୁଳିତ ହେଲେ (ରାମାୟଣୀୟ ଭାଷାରେ ମନ୍ତ୍ରପୂତ ହେଲେ) ଅସୀମ ଶକ୍ତି ସୃଷ୍ଟି କରିଥାନ୍ତି । ଏହି ଦିବ୍ୟାସ୍ତ୍ରଗୁଡ଼ିକୁ ସାଧାରଣତଃ ଅତି ଜରୁରୀ ପରିସ୍ଥିତିରେ ହିଁ ପ୍ରୟୋଗ କରାଯାଉଥିଲା । ଅନ୍ୟଥା ସର୍ବଦା ପାରଂପରିକ ଅସ୍ତ୍ରସମୂହରେ ଯୁଦ୍ଧ ଚାଲୁଥିଲା । ବ୍ରହ୍ମାସ୍ତ୍ର ଥିଲା ସବୁଠାରୁ ବଡ଼ ମାରାତ୍ମକ ଏକ ଦିବ୍ୟାସ୍ତ୍ର ଯାହାକୁ କି ରାମ ରାବଣ ଉପରେ ସବା ଶେଷରେ ଯାଇ ପ୍ରୟୋଗ କରିଥିଲେ । ଋଷି ବିଶ୍ୱାମିତ୍ରଙ୍କୁ ଅନେକ ଦିବ୍ୟାସ୍ତ୍ର ସମ୍ପର୍କରେ ଜଣାଥିଲା । ସେ ବହୁ ତପସ୍ୟା ଫଳରେ ବା ବହୁ କଷ୍ଟ କରି ସେହି ଜ୍ଞାନକୁ ଅର୍ଜନ କରିଥିଲେ । ରାମଙ୍କୁ ଯୋଗ୍ୟବ୍ୟକ୍ତି ଦେଖି ସେ ସେହି ଜ୍ଞାନକୁ ତାଙ୍କୁ ଦେଇଥିଲେ । ଏହିପରି ଭାବରେ ଦିବ୍ୟାସ୍ତ୍ରର ଜ୍ଞାନ ଖୁବ୍ କମ୍ ଲୋକଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଥିଲା । ସାଧାରଣ ଭାବରେ ସବୁ ଶିଷ୍ୟଙ୍କୁ ଏହି ଜ୍ଞାନ ବିତରଣ ନକରିବାର କାରଣ ହେଲା, ଅଯୋଗ୍ୟ ବ୍ୟକ୍ତିର ହାତରେ ପଡ଼ିଲେ ଏହାର ଦୁରୁପଯୋଗ ହେବାର ଆଶଙ୍କା ଥିଲା । କେତେକ ରାକ୍ଷସ ଦିବ୍ୟାସ୍ତ୍ର ବଳରେ ବଳୀୟାନ୍ ହୋଇ ଅତ୍ୟନ୍ତ ଅତ୍ୟାଚାରୀ ହୋଇଉଠିଥିବାର ଭୂରି ଭୂରି ପ୍ରମାଣ ରାମାୟଣରେ ମିଳିଥାଏ । ଏହି ଦିବ୍ୟାସ୍ତ୍ର-ଜ୍ଞାନ ଆମ ଦେଶରୁ ଲୋପ ପାଇଯିବାର କାରଣ ହେଲା ଏହା ଉପରେ ଅଧିକରୁ ଅଧିକ ଗବେଷଣା ନହେବା ଏବଂ ଯୋଦ୍ଧାମାନଙ୍କର କ୍ରମେ ପାରଂପରିକ ଅସ୍ତ୍ର-ଶସ୍ତ୍ର ଉପରେ ବେଶି ନିର୍ଭରଶୀଳ ହୋଇ ପଡ଼ିବା । ସେ ଯାହାହେଉ, ରାମାୟଣୀୟ ଯୁଦ୍ଧରେ ଯେ ଏହି ଉଭୟ ପ୍ରକାର ଅସ୍ତ୍ରଶସ୍ତ୍ରର ଉପଯୋଗ କରାଯାଉଥିଲା, ତାହାର ଭୂରି ଭୂରି ପ୍ରମାଣ ରାମାୟଣରୁ ମିଳିଥାଏ । ସେଗୁଡ଼ିକ ବିଭିନ୍ନ ନାମରେ ନାମିତ । ନିମ୍ନଲିଖିତ ପାରଂପରିକ ଅସ୍ତ୍ରଗୁଡ଼ିକର ନାମ ରାମାୟଣରେ ସଂକ୍ଷିପ୍ତ ଭାବରେ ଦେଖିବାକୁ ମିଳିଥାଏ :

| | | |
|---|---|---|
| ୧. ଅର୍ଦ୍ଧନାଳୀକ | ୭. ଚକ୍ର | ୧୩. ଲାଙ୍ଗଲ |
| ୨. ଅଶନି | ୮. ଚନ୍ଦ୍ର | ୧୪. ବଜ୍ର |
| ୩. ଅସି | ୯. ତୋମର | ୧୫. ବସ୍ତି-ଦନ୍ତ |
| ୪. ଇଷୁ | ୧୦. ତ୍ରିଶୂଳ | ୧୬. ବହିର୍ଶିଖ |
| ୫. ଇଷୁଧି | ୧୧. ଦଣ୍ଡ | ୧୭. ବୈତସ୍ତକ |
| ୬. କର୍ଣ୍ଣୀ | ୧୨. ନାଳୀକ | ୧୮. ଶକ୍ତି |

| | | |
|---|---|---|
| ୧୯. କୁଠାର | ୨୭. ନାରାଚ | ୩୬. ଶତଘ୍ନୀ |
| ୨୦. କୃନ୍ତ | ୨୮. ପଟ୍ଟିଶ | ୩୭. ଶର |
| ୨୧. କୂଟ-ମୁଦ୍‌ଗର | ୨୯. ପରଶୁ | ୩୮. ଶିତଦଂଷ୍ଟ୍ର |
| ୨୨. କୂଟ-ଯନ୍ତ୍ର | ୩୦. ପରିଘ | ୩୯. ଶିଳୀମୁଖ |
| ୨୩. କ୍ଷୁରପ୍ର | ୩୧. ପ୍ରାଶ | ୪୦. ଶୂଳ |
| ୨୪. କ୍ଷେପଣୀ | ୩୨. ବାଣ | ୪୧. ଶାୟକ |
| ୨୫. ଖଡ୍‌ଗ | ୩୩. ଭିନ୍ଦିପାଳ | |
| ୨୬. ଗଦା | ୩୪. ଭୂଷଣ୍ଡି | |
| | ୩୫. ମୂଷଳ | |

ଠିକ୍ ସେହିପରି ନିମ୍ନଲିଖିତ ଦିବ୍ୟାସ୍ତ୍ରଗୁଡ଼ିକର ନାମ ମଧ୍ୟ ତନ୍ତ୍ରରେ ଦେଖିବାକୁ ମିଳିଥାଏ :

| | |
|---|---|
| ୧ । ଅମୋଘ-ଶକ୍ତି | ୨୦ । ନାରାୟଣାସ୍ତ୍ର |
| ୨ । ଅଶ୍ମ-କମ୍ପନ | ୨୧ । ପବନାସ୍ତ୍ର |
| ୩ । ଅଶ୍ମ-ନିକୃନ୍ତନ | ୨୨ । ପାଶ |
| ୪ । ଅଶ୍ମ-ବିଦାରଣ | ୨୩ । ପୈତାମହାସ୍ତ୍ର |
| ୫ । ଆଗ୍ନେୟାସ୍ତ୍ର | ୨୪ । ପୈନାକାସ୍ତ୍ର |
| ୬ । ଆର୍ଦ୍ରାଶନି | ୨୫ । ପୈଶାଚାସ୍ତ୍ର |
| ୭ । ଇନ୍ଦ୍ରାଶନି | ୨୬ । ବ୍ରହ୍ମଶିର |
| ୮ । ଇନ୍ଦ୍ର-ବଜ୍ର | ୨୭ । ବ୍ରହ୍ମାସ୍ତ୍ର |
| ୯ । ଉନ୍ମାଦନ | ୨୮ । ମଦନାସ୍ତ୍ର |
| ୧୦ । ଐଷିକ | ୨୯ । ଦାନବାସ୍ତ୍ର |
| ୧୧ । କମ୍ପନ | ୩୦ । ମୂର୍ଚ୍ଛନାସ୍ତ୍ର |
| ୧୨ । କାଳ-ଦଣ୍ଡ | ୩୧ । ରାକ୍ଷସାସ୍ତ୍ର |
| ୧୩ । କାଳ-ପାଶ | ୩୨ । ଲୋହିତାମୁଖୀ |
| ୧୪ । କାଳାସ୍ତ୍ର | ୩୩ । ବଜ୍ର |
| ୧୫ । କଙ୍କିଣୀ | ୩୪ । ବରୁଣ-ପାଶ |
| ୧୬ । କୌମୋଦକୀ | ୩୫ । ବାୟବ୍ୟାସ୍ତ୍ର |
| ୧୭ । କୌବେରାସ୍ତ୍ର | ୩୬ । ବିଜୟ-ଶକ୍ତି |
| ୧୮ । କ୍ରୌଞ୍ଚାସ୍ତ୍ର | ୩୭ । ବିଷ୍ଣୁ-ଚକ୍ର |
| ୧୯ । ଗନ୍ଧର୍ବାସ୍ତ୍ର | ୩୮ । ବୈଦ୍ୟାଧରାସ୍ତ୍ର |

୩୯ । ତ୍ୱାଷ୍ଟ୍ର
୪୦ । ମାନବାସ୍ତ୍ର
୪୧ । ଦୈତ୍ୟାସ୍ତ୍ର
୪୨ । ଧର୍ମ-ପାଶ
୪୩ । ଧର୍ମାସ୍ତ୍ର
୪୪ । ଧର୍ଷଣ
୪୫ । ଶଙ୍କରାସ୍ତ୍ର
୪୬ । ଶୈବ-ଶୂଳ
୪୭ । ଶୋଷଣ
୪୮ । ସୋମାସ୍ତ୍ର
୪୯ । ହୟଶିର

ବର୍ତ୍ତମାନ ରାମାୟଣରେ ବର୍ଣ୍ଣିତ କେତେକ ପ୍ରମୁଖ ଯୁଦ୍ଧାସ୍ତ୍ରର ସ୍ୱରୂପ ସମ୍ପର୍କରେ କିଛିଟା ଆଲୋକପାତ କରିବା ଆବଶ୍ୟକ । ଧନୁର୍ବାଣର ଉଲ୍ଲେଖ ହୋଇଛି ସର୍ବାଧିକ । ଏଥିପ୍ରତି ଲକ୍ଷ୍ୟକରି ବ୍ରକିଙ୍ଗ୍‌ଟନ୍ ଯଥାର୍ଥରେ କହନ୍ତି :

Arrows on their own comprise almost a third of all mentions of weapons and with bows and quivers make up more than half the total. (୪୩)

ବାଣ, ଇଷୁ, ନାରାଚ, ଶର, ଐଶୀକ, ନାଳୀକ, ଶିଳୀମୁଖ ଆଦି ବିଭିନ୍ନ ନାମରେ ଏହା ନାମିତ । ଶ୍ରେଷ୍ଠ ଶ୍ରେଷ୍ଠ ଶରଗୁଡ଼ିକୁ କୁହାଯାଉଥିଲା 'ଅର୍ଦ୍ଧନାରାଚ' ବା 'ଅର୍ଦ୍ଧନାଳୀକ' । ବାଣ ଗଣ୍ଠି ଥିବା ସରୁ ବାଉଁଶ-କଣିରେ ତିଆରି ହେଉଥିଲା ଏବଂ ଏହାର ଅଗ୍ରଭାଗ ଥିଲା ଲୁହାରେ ତିଆରି । ସେଥିପାଇଁ ଶର-ନିର୍ମାଣକାରୀଙ୍କୁ ରାମାୟଣରେ 'କାଣ୍ଡକାର' ବୋଲି କୁହାଯାଇଛି । ବେଳେ ବେଳେ ସମ୍ପୂର୍ଣ୍ଣ ଲୁହାର ଶର ମଧ୍ୟ ବ୍ୟବହୃତ ହେଉଥିଲା । ଏହା ଗଭୀର କ୍ଷତ ସୃଷ୍ଟି କରି-ପାରୁଥିଲା । ସମ୍ଭବତଃ ଏହାର ନାମ ଥିଲା 'ନାରାଚ' । ଶରଗୁଡ଼ିକର ଅଗ୍ର-ଭାଗର ଆକୃତିକୁ ନେଇ ସେଗୁଡ଼ିକର ଭିନ୍ନ ଭିନ୍ନ ନାମକରଣ କରାଯାଇଥିଲା । ଅଗ୍ର-ଭାଗଟି ଚନ୍ଦ୍ରାକାର ଥିଲେ ତାହାକୁ କୁହାଯାଉଥିଲା 'ଚନ୍ଦ୍ର' ଏବଂ ଅର୍ଦ୍ଧଚନ୍ଦ୍ରାକାର ଥିଲେ ତାହାକୁ କୁହାଯାଉଥିଲା 'ଅର୍ଦ୍ଧଚନ୍ଦ୍ର' ଇତ୍ୟାଦି । ପଥରରେ ଘଷି ଘଷି ଅତି ମୁନିଆ କରାଯାଇଥିବା ଶରକୁ କୁହାଯାଉଥିଲା 'ଶିଳୀମୁଖ' । ଶରର ମୂଳରେ ଟୋପି ଆକାରରେ ଗୋଟିଏ ଧାତବ ପଦାର୍ଥ ଲାଗୁଥିଲା । ଅନେକ ସମୟରେ ଏହା ସୁନାରେ ତିଆରି ହେଉଥିଲା । ଏତଦ୍‌ବ୍ୟତୀତ ଶରରେ ବଗ-ପର ଲଗା ଯାଉଥିଲା । ଏହାକୁ କୁହାଯାଉଥିଲା 'କଙ୍କପତ୍ର' । ବେଳେ ବେଳେ କୌଣସି ପର ଶରରେ ଲାଗୁ ନଥିଲା । ସେ ପ୍ରକାର ଶରର ନାମ ଥିଲା 'ବହିଶିଖ' ବା ଶିଖାହୀନ ଶର । ରାମାୟଣରେ ଠାଏ (୩ । ୩ । ୧୨) ଶରରେ ମୟୂର-ପର ଲାଗିଥିବା କଥାର ଏବଂ ଆଉ ଠାଏ (୬ । ୮୭ । ୨୬) ଶାଗୁଣା-ପର

ଲାଗି ଥିବା କଥାର ମଧ୍ୟ ଉଲ୍ଲେଖ ଅଛି । ଅତଏବ, ରାମାୟଣୀୟ ଶର କେତେବେଳେ ଥିଲା ପରଯୁକ୍ତ ତ ଆଉ କେତେବେଳେ ଥିଲା ପରସ୍ଥାନ ।

ପ୍ରମୁଖ ବୀରମାନେ ସେମାନଙ୍କ ଶରସମୂହରେ ନିଜର ନାମାଙ୍କିତ କରାଉଥିଲେ । ସୀତା ରାବଣଙ୍କୁ ବନ୍ଦିନୀ ଅବସ୍ଥାରେ ଥିବା ବେଳେ ସାବଧାନୀ ବାଣୀ ଶୁଣାଇବାକୁ ଯାଇ କହିଥିଲେ ଯେ (୫ । ୨୧ । ୨୫) ଦିନ ଆସିବ ଯେତେବେଳେ ରାମ ଓ ଲକ୍ଷ୍ମଣଙ୍କ ନାମାଙ୍କିତ ବାଣମାନ ଜ୍ୱାଳାମୟୀ ସର୍ପ ସମାନ ଆସି ଲଙ୍କାଗଡ଼ ଉପରେ ପଡ଼ିବ । ଏହା ଶର ଉପରେ ବୀରମାନଙ୍କ ନାମାଙ୍କନ କରାଯାଉଥିବାର ସ୍ପଷ୍ଟ ସୂଚନା ଦେଇଥାଏ ।

ଧନୁ ଥିଲା ଶର ସହିତ ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ ଏବଂ ଧନୁର୍ଦ୍ଧର କହିଲେ ଧନୁ ଓ ଶର ଉଭୟକୁ ଧାରଣ କରିବା ବ୍ୟକ୍ତିଙ୍କୁ ବୁଝାଉଥିଲା । ଧନୁକୁ ଚାପ, ଶରାସନ, ବାଣାସନ, କାର୍ମୁକ ଆଦି ନାମରେ ନାମିତ କରାଯାଉଥିଲା । କୌଟିଲ୍ୟ ଅର୍ଥଶାସ୍ତ୍ରରେ (୨।୧୮।୮)କହିଛନ୍ତି ଯେ ଧନୁ ଯେଉଁ ଯେଉଁ ସାମଗ୍ରୀଦ୍ୱାରା ନିର୍ମିତ ହେଉଥିଲା, ତାଲ ଥିଲା ତନ୍ମଧ୍ୟରେ ଏକତମ । ତାଲର ଅନ୍ୟ ନାମ ହେଉଛି 'କୃମକ' । ସମ୍ଭବତଃ ଏହି 'କୃମକ' କାଷ୍ଠରେ ତିଆରି ଧନୁକୁ କୁହାଯାଉଥିଲା କାର୍ମୁକ । ମେଣ୍ଢାର ଶିଙ୍ଗରେ ମଧ୍ୟ ଧନୁ ତିଆରି ହେଉଥିଲା । କେତେଗୁଡ଼ିଏ ଶିଙ୍ଗକୁ ଯୋଡ଼ି ଏହାକୁ ତିଆରି କରାଯାଉଥିଲା । ଧନୁର ବ୍ୟବହାର ନଥିଲେ ଏହି ଶିଙ୍ଗଗୁଡ଼ିକୁ କାଢ଼ି ଦିଆଯାଉଥିଲା । ବୌଦ୍ଧ ଜାତକ ଗଳ୍ପସମୂହରେ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ମେଣ୍ଢା ଶିଙ୍ଗରେ ତିଆରି ଏହିଭଳି ଧନୁର ବହୁଳ ଉଲ୍ଲେଖ ଦେଖାଯାଏ । କିନ୍ତୁ ରାମାୟଣୀୟ ଧନୁ ଶିଙ୍ଗରେ ତିଆରି ହେଉଥିବାର ନିଦର୍ଶନ ମିଳେନାହିଁ । ଏହା କାଠ କିମ୍ବା ବାଉଁଶରେ ତିଆରି ହେଉଥିଲା । ରାମାୟଣୀୟ ଧନୁ ଥିଲା ବୈଦିକ ଧନୁ ପରି ଖୁବ୍ ଦୀର୍ଘ । ଏହାର ଦୈର୍ଘ୍ୟ ଥିଲା ଛଅଫୁଟ । ଏହାକୁ ସିଧା ଭାବରେ ଭୂମିରେ ଠିଆ କରାଇ ଏବଂ ଗୁଣକୁ କାନ ପର୍ଯ୍ୟନ୍ତ ଟାଣି ଶର ନିକ୍ଷେପ କରାଯାଉଥିଲା । ରଥ ଉପରେ ମଧ୍ୟ ଏହିପରି ଢଙ୍ଗରେ ଶର ନିକ୍ଷେପ କରାଯାଉଥିଲା । ବେଳେ ବେଳେ ହାତରେ ଧନୁକୁ ଟେକି ଧରି ମଧ୍ୟ ଶର ନିକ୍ଷେପ କରାଯାଉଥିଲା । କିଭଳି ଢଙ୍ଗରେ ଧନୁକୁ ଧରିବାକୁ ହେବ ତାହା ସମ୍ପୃକ୍ତ ବୀରଙ୍କ ଶୌର୍ଯ୍ୟ-ବୀର୍ଯ୍ୟ ଉପରେ ଥିଲା ନିର୍ଭରଶୀଳ । ଆଲେକ୍‌ଜାଣ୍ଡର୍‌ଙ୍କ ଭାରତ ଆକ୍ରମଣ ସମୟରେ ମଧ୍ୟ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଆର୍ଯ୍ୟ ସୈନିକମାନେ ଏହିଭଳି ଢଙ୍ଗରେ ଧନୁକୁ ଭୂମିରେ ଠିଆ କରାଇ ଶର ନିକ୍ଷେପ କରୁଥିଲେ । ଏହା ହିଁ ଥିଲା ପୁରୁଙ୍କ ପରାଜୟର ଗୋଟିଏ ବଡ଼ କାରଣ । ସେ ଦିନ ବଡ଼ ଅସରାଏ ବର୍ଷା ହୋଇ ଯାଇଥାଏ । ମାଟି ଓଦା ଥିବାରୁ

ପୁରୁଙ୍କ ସୈନ୍ୟମାନେ ସେମାନଙ୍କ ଧନୁଗୁଡ଼ିକୁ ଦୃଢ଼ ଭାବରେ ଭୂମି ଉପରେ ରଖି-ପାରୁନଥିଲେ । ତେଣୁ ସେମାନଙ୍କ ଶର ନିକ୍ଷେପର ଗତି ମନ୍ଥର ଓ ଶକ୍ତି ଦୁର୍ବଳ ହୋଇ ଉଠିଥିଲା । ଏହା ଫଳରେ ଗ୍ରୀକ୍ ସୈନ୍ୟମାନଙ୍କ ହସ୍ତରେ ସେମାନଙ୍କର ପରାଜୟ ଘଟିଥିଲା । ରାମାୟଣ ଯୁଗରେ ଯେଉଁମାନେ ଧନଶାଳୀ ଥାଉଥିଲେ, ସେମାନେ ସ୍ୱୀୟ ଧନୁ ଉପରେ ସୁନା ଛାଉଣି କରାଉଥିଲେ, ରାବଣ ଓ ଇନ୍ଦ୍ରଜିତ୍‌ର ଧନୁ ଥିଲା ସୁବର୍ଣ୍ଣମଣ୍ଡିତ । ଏହା ଛଡ଼ା ଅତି ବୃହଦାକାର ଧନୁ ମଧ୍ୟ ଥିଲା ଯାହାକୁ କି ସାଧାରଣ ଲୋକ ପକ୍ଷେ ଟେକିବା ବି ଥିଲା କଷ୍ଟକର । ଜନକଙ୍କ ଶିବ-ଧନୁକୁ ଏକ ନିଦର୍ଶନସ୍ୱରୂପ ନିଆଯାଇପାରେ ।

ତଲଓ୍ୱାର ଥିଲା ତିନି ପ୍ରକାର, ଯଥା 'ଅସି', 'ଖଡ଼୍ଗ' ଓ 'ଋଷ୍ଟି' । 'ଅସି' ଥିଲା ଆକାରରେ ଦୀର୍ଘ ଏବଂ 'ଖଡ଼୍ଗ' ଥିଲା ଆକାରରେ କ୍ଷୁଦ୍ର । ଦୁଇ ପଟେ ଧାର ଥିବା ଖଡ଼୍ଗକୁ କୁହାଯାଉଥିଲା 'ଋଷ୍ଟି' । ଏହି ତିନି ପ୍ରକାର ତଲଓ୍ୱାର ଥିଲା ଲୌହନିର୍ମିତ । ରାମାୟଣର କଥନ ଅନୁସାରେ (୬ । ୬୯ ।୨୦) ରାକ୍ଷସ ଅତିକାୟଙ୍କର ଖଡ଼୍ଗଟି ଥିଲା ଦଶ ହାତ ଲମ୍ବା ଏବଂ ଏହାର ମୁଠାଟି ଥିଲା ଚାରି ହାତ ଲମ୍ବା । ଏହି ମୁଠାଟିରେ ସୁନା-ଛାଉଣି କରାଯାଇଥିଲା, ଖଡ଼୍ଗକୁ କୋଷ ମଧ୍ୟରେ ରଖା ଯାଇ ଅଣ୍ଟାରେ ବନ୍ଧା ଯାଉଥିଲା ଏବଂ ଆବଶ୍ୟକ ବେଳେ ଏହାକୁ କୋଷରୁ ବାହାର କରି ବ୍ୟବହାର କରାଯାଉଥିଲା ।

ଶୂଳ ଥିଲା ଆଉ ଏକ ପ୍ରଧାନ ଅସ୍ତ୍ର । ଏହା ଥିଲା ଏକମୁଖୀ ଅଥବା ତ୍ରିମୁଖୀ । ତ୍ରିମୁଖୀ ଶୂଳକୁ ତ୍ରିଶୂଳ ବୋଲି ମଧ୍ୟ କୁହାଯାଉଥିଲା । ତ୍ରିଶୂଳ ଶିବଙ୍କର ଅସ୍ତ୍ର ହିସାବରେ ଗଣ୍ୟ ହେଉଥିଲେ ହେଁ ଏହା ଥିଲା ଏକ ସାଧାରଣ ଯୁଦ୍ଧାସ୍ତ୍ର । ଏହାର ମୁଖଟି ଥିଲା ଲୌହନିର୍ମିତ । ତେଣୁ ରାମାୟଣରେ (୩ । ୪୬ । ୩୯) ଏହାକୁ 'ଆୟସ' ବୋଲି କୁହାଯାଇଛି । ରାକ୍ଷସ ମକରାକ୍ଷ ରାମଙ୍କ ଉପରକୁ ଏକ ଶୂଳ ନିକ୍ଷେପ କରିଥିଲା ଏବଂ ରାମ ତିନୋଟି ବାଣ ମାରି ତାହାକୁ କାଟି ଦେଇଥିଲେ । ସମ୍ଭବତଃ ଏହି ଶୂଳ ଥିଲା ତ୍ରିମୁଖୀ, ତେଣୁ ଏହାକୁ କାଟିବାପାଇଁ ରାମଙ୍କୁ ତିନୋଟି ବାଣ ମାରିବାକୁ ପଡ଼ିଥିଲା । ତ୍ରିଶୂଳର ଆଉ ଏକ ନାମ ଥିଲା 'ତ୍ରିକଣ୍ଟକ' । ଯେଉଁ ଏକମୁଖୀ ଶୂଳଟି ଥିଲା ତାହାର ଆଧୁନିକ ନାମ ହେଉଛି ବର୍ଛା ।

ଶକ୍ତି ଥିଲା ଆଉ ଏକ ପ୍ରଧାନ ଅସ୍ତ୍ର ଯାହାକୁ ରଥୀମାନେ ବିଶେଷ ଭାବରେ ଉପଯୋଗ କରୁଥିଲେ । ଏହା ଥିଲା ବର୍ଛାଜାତୀୟ ଏକ ଅସ୍ତ୍ର ଯାହା କି ଥିଲା ସାଧାରଣ ବର୍ଛାଠାରୁ ଆକାରରେ ଅତି ବଡ଼ । ଏହାର ଅଗ୍ରଭାଗଟି ଓଜନିଆ

ଲୁହାରେ ତିଆରି ହୋଇଥିଲା ଏବଂ ଥିଲା ଖୁବ୍ ତୀକ୍ଷ୍ଣ । ଏହାର ଆଘାତ ଥିଲା ଅତି ଦାରୁଣ । ସେଥିପାଇଁ ଏହାକୁ 'ଶକ୍ତି' ବୋଲି ନାମିତ କରାଯାଇ-ଥିଲା । ଲକ୍ଷ୍ମଣଙ୍କ ପରି ମହାବୀର ମଧ୍ୟ ରାବଣର ଶକ୍ତିର ଆଘାତରେ ଭୂମି ଉପରେ ଅଚେତ ହୋଇ ଢଳିପଡ଼ିଥିଲେ । ଏଥିରେ ଆଠଟି ଘଣ୍ଟି ଲାଗିଥିଲା । ଏହା ଆସିଲା ବେଳେ ଘଣ୍ଟିଗୁଡ଼ିକ ମରଣସୂଚକ ଶବ୍ଦ କରି ଗର୍ଜିଉଠୁଥିଲେ । ଶତ୍ରୁ-ପକ୍ଷରେ ଭୟ ସୃଷ୍ଟି କରାଇବା ଲାଗି ଏଥିରେ ଏପରି ଘଣ୍ଟି ଲଗାଯିବାର ବ୍ୟବସ୍ଥା କରାଯାଇଥିଲା । ରାବଣର ଶକ୍ତିଟି ଏହିଭଳି ଅଷ୍ଟଘଣ୍ଟାଯୁକ୍ତ ଥିବା କଥା ରାମାୟଣରେ (୬ । ୧୦୦ । ୩୦) ବର୍ଣ୍ଣିତ । ଏହା ଥିଲା ଅମୋଘ ଏବଂ ବିଦ୍ୟୁତ୍ ଗତିରେ ଆସିଲାବେଳେ ଏହା ଏକ ଜ୍ୟୋତିର ରେଖା ଆଙ୍କି ଦେଇ ଆସୁଥିଲା । ଏହା ଥିଲା ବିଷଧର ସର୍ପ ଭଳି (ଆଶୀବିଷୋପମା) ଅତି ଭୟଙ୍କର । ରାବଣର ଏହି ଶକ୍ତିଟି ଲକ୍ଷ୍ମଣଙ୍କ ଉପରେ ପଡ଼ିବାର ଦୃଶ୍ୟ ବାଲ୍ମୀକି ନିମ୍ନମତେ ବର୍ଣ୍ଣନା କରିଛନ୍ତି :

ନ୍ୟପତତ୍ ସା ମହାବେଗା ଲକ୍ଷ୍ମଣସ୍ୟ ମହୋରସି ।
ଜିହ୍ୱେବୋରଗରାଜସ୍ୟ ଦୀପ୍ୟମାନା ମହାଦ୍ୟୁତିଃ ॥
ତତୋ ରାବଣବେଗେନ ସୁଦୂରମବଗାଢ଼ୟା ।
ଶକ୍ତ୍ୟା ବିଭିନ୍ନହୃଦୟଃ ପପାତ ଭୁବି ଲକ୍ଷ୍ମଣଃ ॥ (୪୪)

ଅର୍ଥାତ୍ ସେହି ଶକ୍ତି ଥିଲା ନାଗରାଜ ବାସୁକିଙ୍କ ଜିହ୍ୱା ଭଳି ଦେଦୀପ୍ୟମାନ, ମହାତେଜସ୍ୱୀ ଓ ମହାବେଗବାନ୍ । ତାହା ଲକ୍ଷ୍ମଣଙ୍କ ବିଶାଳ ବକ୍ଷୋଦେଶ ଉପରେ ପଡ଼ିବାରେ ରାବଣର ବେଗ ହେତୁ ଖୁବ୍ ଗଭୀର ଭାବରେ ତାଙ୍କ ଭିତରେ ପଶି-ଗଲା । ସେହି ଶକ୍ତିଦ୍ୱାରା ହୃଦୟ ବିଦୀର୍ଣ୍ଣ ହୋଇଯିବା କାରଣରୁ ଲକ୍ଷ୍ମଣ ଭୂମି ଉପରେ ଢଳିପଡ଼ିଲେ ।

ଛପାଇ ରଖାଯାଉଥିବା କଟାରିକୁ କୁହାଯାଉଥିଲା 'କୂଟ' । ଏହା ଶତ୍ରୁକୁ ଅତର୍କିତ ଭାବରେ ଆକ୍ରମଣ କରିବାପାଇଁ ଏବଂ ଆତ୍ମରକ୍ଷାପାଇଁ ଥିଲା ବିଶେଷ ଭାବରେ ସହାୟକ । ଲୌହର ଦଣ୍ଡକୁ କୁହାଯାଉଥିଲା ବଜ୍ର । ଏହା ଖୁବ୍ ଓଜନିଆ ଥିଲା ଏବଂ ଏହାକୁ ଶକ୍ତିଶାଳୀ ବୀରପୁରୁଷମାନେ ହିଁ ବ୍ୟବହାର କରି-ପାରୁଥିଲେ । ଏହା ଇନ୍ଦ୍ରଙ୍କର ପ୍ରିୟ ଅସ୍ତ୍ର ଥିଲେ ହେଁ ସାଧାରଣ ଯୋଦ୍ଧାମାନେ ଏହାକୁ ବ୍ୟବହାର କରୁଥିବାର ପ୍ରମାଣ ରାମାୟଣରେ ମିଳିଥାଏ । ଏହାର ଆଘାତ ଥିଲା ମରଣାନ୍ତକ । ସେହିପରି ଲୁହାର ମୁଗୁରକୁ କୁହାଯାଉଥିଲା 'ମୁଦ୍ଗର' । ଏହା ମଧ୍ୟ ବଜ୍ର ଭଳି ଓଜନଦାର ଲୁହାରେ ତିଆରି ହୋଇଥିଲା

ଏବଂ ଶତ୍ରୁ ଆଘାତ ଦେବାପାଇଁ ଉଦ୍ଦିଷ୍ଟ ଥିଲା । 'ପରଶୁ' ବୋଲି ଆଉ ଏକ ତୀକ୍ଷ୍ଣ ଅସ୍ତ୍ର ଥିଲା ଯାହା କି ଆଧୁନିକ ଫାର୍ଶା ସହିତ ତୁଳନୀୟ । ଜାମଦଗ୍ନ୍ୟ ପରଶୁରାମଙ୍କର ଏହା ଥିଲା ଏକ ଅମୋଘ ଅସ୍ତ୍ର । ଏହାର ସାହାଯ୍ୟରେ ସେ ଅନେକ ବାର ପୃଥିବୀକୁ କ୍ଷତ୍ରିୟଶୂନ୍ୟ କରି ଦେଇଥିଲେ । ଏହାର ଅନ୍ୟ ନାମ ଥିଲା 'ପରଶ୍ୱଧ' । 'କୁଠାର' (କୁରାଢ଼ି) ମଧ୍ୟ ଏହି ଶ୍ରେଣୀୟ ଆଉ ଏକ ଅସ୍ତ୍ର ଥିଲ । ଏହା ଶତ୍ରୁକୁ ଆଘାତ ଦେବାପାଇଁ ଉଦ୍ଦିଷ୍ଟ ଥିବା ସଙ୍ଗେ ସଙ୍ଗେ ଗଛପତ୍ର କାଟି ଅଭିଯାତ୍ରୀ ସେନାବାହିନୀର ପଥ ପରିଷ୍କାର କରିବା ଲାଗି ମଧ୍ୟ ଉଦ୍ଦିଷ୍ଟ ଥିଲା । 'ଚକ୍ର' ଥିଲା ଚକ୍ରାକାରର ଏକ ଆୟୁଧ । ଏହାର ଅରଗୁଡ଼ିକ ଥିଲା ତୀକ୍ଷ୍ଣ ଏବଂ ପରିଧିରେ ତୀକ୍ଷ୍ଣ କଣ୍ଟା ଲଗା ଯାଇଥିଲା । ଏହା ଶତ୍ରୁ ଶରୀରକୁ ଭେଦ କରିବାଲାଗି ଏବଂ ଭିନ୍ନ ଅଂଶଟିକୁ କାଟି ପକାଇବାଲାଗି ଉଦ୍ଦିଷ୍ଟ ଥିଲା । ଏହା ବିଷ୍ଣୁଙ୍କର ଅସ୍ତ୍ର ଥିଲେ ହେଁ ସାଧାରଣ ଯୋଦ୍ଧାମାନେ ଯୁଦ୍ଧ କ୍ଷେତ୍ରରେ ଏହାର ଉପଯୋଗ କରୁଥିଲେ । ଗଦା ମଧ୍ୟ ଥିଲା ଆଉ ଏକ ପ୍ରଧାନ ଅସ୍ତ୍ର । ଏହା ଖୁବ୍ ଓଜନିଆ ଲୁହାରେ ତିଆରି ହୋଇଥିଲା । ଏହାର ଅଗ୍ର-ଭାଗ ଥିଲା ଗୋଲାକାର ତଥା କଣ୍ଟକିତ । ଏହାର ଆଘାତ ମରଣାନ୍ତକ ଶରୀର କ୍ଷତ ସୃଷ୍ଟି କରିବାରେ ଥିଲା ସମର୍ଥ ।

ଆଉ ଏକ ପ୍ରମୁଖ ଅସ୍ତ୍ର ଥିଲା 'ଶତଘ୍ନୀ' ଯାହା ଥିଲା ଅତି ମାରାତ୍ମକ । ଏହି ଅସ୍ତ୍ରର ଏକାବେଳକେ ଶହେ ଲୋକଙ୍କୁ ମାରି ଦେବାର କ୍ଷମତା ଥିଲା । ତେଣୁ ଏହାର ଏଭଳି ନାମକରଣ ହୋଇଥିଲା । ଏହି ଅସ୍ତ୍ରର ସ୍ୱରୂପ କଭଳି ଥିଲା ତତ୍ସମ୍ପର୍କରେ ନାନା ପ୍ରକାର ମତ ଦେଖାଯାଏ । ସେହି ମତଗୁଡ଼ିକୁ ଏକତ୍ରିତ କରି ଶାନ୍ତିକୁମାର ନାନୁରାମ ବ୍ୟାସ ଜନ୍ମମତେ ଲେଖିଛନ୍ତି :

> ଇସକେ ଆକାର-ପ୍ରକାର କେ ବିଷୟ ମେଂ ମତ-ଭେଦ ହୈ । ଉସକେ ସ୍ଥେ ଅନେକ ଅର୍ଥ ଲଗାସ୍ତେ ଜାତେ ହୈଂ—(୧) ଲୁହର ଓର ସେ ଅସଂଖ୍ୟ ତେଜ ଲୋହେ କେ ଛୁରେଂ ସେ ବନା ହୁଆ ଦଣ୍ଡ; (୨) ଦୁର୍ଗୋ ପ୍ରାଚୀର ପର ରଖା ହୁଆ ଏକ ବିଶାଲ ସ୍ତମ୍ଭ, ଜିସକେ ଧରାତଲ ପର ଅସଂଖ୍ୟ ତୀକ୍ଷ୍ଣ ନୋକେଂ ହୋଂ; (୩) ସୈକଡ଼ୋଂ ପତ୍ଥର ଏକ ବାର ମେଂ ଫେଂକନେ କା ଯନ୍ତ୍ର, ଜିସେ ଆଧୁନିକ ତୋପ କା ପୂର୍ବରୂପ କହା ଜା ସକତା ହୈ, । (୪୫)

ବାନରସେନାବାହିନୀ ଯେତେବେଳେ ଲଙ୍କାଗଡ଼କୁ ଘେରିଆଡ଼ୁ ଘେରିଗଲେ, ସେତେବେଳେ ରାବଣ ତାହାର ସୁରକ୍ଷା-ବ୍ୟବସ୍ଥାକୁ ଆହୁରି ଦୃଢ଼ତର କରିବାରେ

ଲାଗିପଡ଼ିଲା । ସେ ଦୁର୍ଗର ଫାଟକ ଉପରେ 'ଶତଘ୍ନୀ' ଅସ୍ତ୍ର ଖଞ୍ଜିଲା । ଏହାକୁ 'ଯନ୍ତ୍ର' ବୋଲି ବର୍ଣ୍ଣନା କରାଯାଇଛି । ଏଥିରୁ ଅନୁମିତ ହୁଏ ଯେ ଏହା ଥିଲା ଏକ ପ୍ରକାର ଯନ୍ତ୍ର ଯେଉଁଥିରୁ ଏକ ସମୟରେ ଅନେକଗୁଡ଼ିଏ ପଥର ବୃଷ୍ଟି କରାଇ ବହୁ ସଂଖ୍ୟକ ସୈନ୍ୟଙ୍କୁ ମାରି ଶୁଆଇ ଦିଆଯାଇ ପାରୁଥିଲା । 'ଶତଘ୍ନୀ' ଅସ୍ତ୍ରର ଭୟରେ ଶତ୍ରୁ-ସୈନ୍ୟମାନେ ଦୁର୍ଗର ଫାଟକ ନିକଟକୁ ଅଗ୍ରସର ହିଁ ହୋଇ ପାରୁନଥିଲେ । ତେଣୁ ସେମାନଙ୍କ ପକ୍ଷରେ ଫାଟକକୁ ଭାଙ୍ଗି ଭିତରକୁ ଧସାଇ ପଶିବା ଅସମ୍ଭବ ହୋଇ ଉଠିଥିଲା । ଅତଏବ ବ୍ୟାସଙ୍କ ଲିଖିତ ତୃତୀୟୋକ୍ତ ଅର୍ଥଟି ଅଧିକତର ଯୁକ୍ତିଯୁକ୍ତ ଭଳି ମନେହୁଏ । ସେ ଯାହା ହେଉ, 'ଶତଘ୍ନୀ' ଅସ୍ତ୍ରର ଯେ ଏକାଧିକ ଲୋକଙ୍କୁ ଏକାଥରକେ ମାରିଦେବାର କ୍ଷମତା ଥିଲା, ଏଥିରେ ସନ୍ଦେହ ନାହିଁ ।

ଏତଦ୍‌ବ୍ୟତୀତ ଆଉ କେତେକ ଯୁଦ୍ଧାସ୍ତ୍ର ମଧ୍ୟ ଥିଲା । ସେଗୁଡ଼ିକର ନାମ ହେଉଛି 'ପ୍ରାଶ', 'ପଟ୍ଟିଶ', 'ତୋମର', 'ମୂଷଳ' ଓ 'କ୍ଷେପଣୀ' ଇତ୍ୟାଦି ।

**ମଲ୍ଲଯୁଦ୍ଧ :**

ସେହି ସମୟରେ ମଲ୍ଲଯୁଦ୍ଧ ଖୁବ୍ ଲୋକପ୍ରିୟ ଥିଲା । ଏହା ବିଶେଷ ଭାବରେ ରାକ୍ଷସ ଓ ବାନରମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ହନୁମାନ୍, ଅଙ୍ଗଦ, ବାଳୀ, ସୁଗ୍ରୀବ, ରାବଣ ଆଦି ଥିଲେ ଜଣେ ଜଣେ ପ୍ରବୀଣ ମଲ୍ଲ-ଯୋଦ୍ଧା । ବାଳୀ ଓ ସୁଗ୍ରୀବ ଦୁଇ ଭାଇଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା ତାହା ଥିଲା ମଲ୍ଲ-ଯୁଦ୍ଧ । ଏହି ଯୁଦ୍ଧର ମଝିରେ ହିଁ ରାମ ପ୍ରଚ୍ଛନ୍ନରେ ଥାଇ ବାଳୀଙ୍କ ଉପରେ ଶରଘାତ କରିଥିଲେ । ଆଉ ଏକ ବଡ଼ ମଲ୍ଲଯୁଦ୍ଧ ଘଟିଥିଲା ରାବଣ ଓ ସୁଗ୍ରୀବଙ୍କ ମଧ୍ୟରେ । ଏହାର ବିସ୍ତୃତ ବର୍ଣ୍ଣନା ଯୁଦ୍ଧକାଣ୍ଡର ଚତ୍ୱାରିଂଶ ସର୍ଗରେ ଦେଖିବାକୁ ମିଳିଥାଏ । ଏହା ନିମ୍ନଲିଖିତ ପରିସ୍ଥିତିରେ ସଙ୍ଘଟିତ ହୋଇଥିଲା ।

ସେତେବେଳେ ରାମ ବାନର-ସେନାବାହିନୀ ଧରି ସୁବେଲ ପର୍ବତରେ ଅବସ୍ଥାନ କରୁଥାନ୍ତି । ରାବଣ ବାନର-ସେନାର ବଳାବଳ ଆକଳନ କରିବା ନିମିତ୍ତ ନଗରର ଗୋପୁରର ଛାତ ଉପରେ ଆସି ବସିଲା । ତାଙ୍କୁ ଦେଖିବା ମାତ୍ରେ ସୁଗ୍ରୀବଙ୍କ ମନରେ ବଡ଼ କ୍ରୋଧ ଆସିଲା । ସେ ନିଜକୁ ସମ୍ଭାଳି ନପାରି ଗୋଟିଏ ମାତ୍ର ଲମ୍ଫରେ ସୁବେଲ ପର୍ବତରୁ ଯାଇ ଗୋପୁରର ଛାତ ଉପରେ ଓହ୍ଲାଇଲେ ଏବଂ ରାବଣର ମୁକୁଟକୁ ଟାଣି ଆଣି ଭୂମିସାତ୍ କରିଦେଲେ । ଏଥିରେ ରାବଣ ସୁଗ୍ରୀବଙ୍କୁ ଭୂମିରେ ପକାଇ ଦେଇ ଆଘାତ କରିବାକୁ ଲାଗିଲା । ସୁଗ୍ରୀବ ଭୂମିରୁ କୁଦା ମାରି ଉପରକୁ ଉଠିଗଲେ ଏବଂ ରାବଣଙ୍କୁ ପ୍ରତ୍ୟାଘାତ କଲେ ।

ଏହିପରି ଭାବରେ ଉଭୟ ପରସ୍ପର ଉପରେ ମୁଷ୍ଟ୍ୟାଘାତ କରିବାକୁ ଲାଗିଲେ । ପରିଶେଷରେ ଉଭୟ ଜଳଖାଇ ମଧ୍ୟରେ ପଡ଼ିଗଲେ ଏବଂ ଜଳଖାଇର ଭୂମିଭାଗକୁ ସ୍ପର୍ଶ କଲେ । ସେଠାରୁ ଉଠି ସେ ଦୁହେଁ ପୁଣି ପରସ୍ପର ସହିତ ଛନ୍ଦାଛନ୍ଦି ହୋଇ ମଲ୍ଲଯୁଦ୍ଧରେ ମାତି ରହିଲେ । ରାବଣ ଅନନ୍ୟୋପାୟ ହୋଇ ନିଜର ମାୟାଶକ୍ତିକୁ ଆଶ୍ରୟ କରିବାକୁ ବସିଲା । ସୁଗ୍ରୀବ ସେ କଥା ଜାଣି ପାରିଲେ । ତେଣୁ ସେ ରାବଣକୁ ପରାଭବ ଦେବା ଉତ୍ତାରୁ ପୁଣି ଲମ୍ଫମାରି ସୁବେଳ ପର୍ବତକୁ ଫେରି ଆସିଲେ । ଉଭୟ ଥାର ମଲ୍ଲଯୁଦ୍ଧର ନାନା ପ୍ରକାର କୌଶଳ ଅବଲମ୍ବନ କରିଥିଲେ । ସେହି କୌଶଳସମୂହ ନିମ୍ନରେ ଉଲ୍ଲେଖ କରାଯାଉଛି :

କ) ମାର୍ଜାର-ଅବସ୍ଥାନ—ବିରାଡ଼ି ଭଳି ନିଶ୍ଚଳ ଭାବରେ ଛପି ରହି ଶିକାରକୁ ଅପେକ୍ଷା କରିବାର ନାମ ମାର୍ଜାର-ଅବସ୍ଥାନ । ଏଥିରେ ଦୁଇ ମଲ୍ଲଯୋଦ୍ଧା ନିଶ୍ଚଳ ଭାବରେ ଠିଆ ହୋଇଥାନ୍ତି ଏବଂ ପରସ୍ପରର ଆକ୍ରମଣର ପ୍ରତୀକ୍ଷା କରିଥାନ୍ତି ।

ଖ) ମଣ୍ଡଳ—ମଣ୍ଡଳ ହେଉଛି ଚାରି ପ୍ରକାର, ଯଥା, 'ଚାରି', 'କରଣ', 'ଖଣ୍ଡ' ଓ 'ମହାମଣ୍ଡଳ' । ଗୋଟିଏ ପାଦ ଆଗକୁ ରଖି ଅଗ୍ରସର ହେବାକୁ 'ଚାରି' କୁହାଯାଏ । ଦୁଇ ପାଦ ଏକା ସାଥିରେ ଆଗକୁ ବଢ଼ାଇ ଅଗ୍ରସର ହେବାକୁ 'କରଣ' କୁହାଯାଏ । 'କରଣ'-ଶୈଳୀରେ କେତେ ଥର (ଦୁଇ ଥର ବା ତିନି ଥର ବା ଚାରି ଥର, ଇତ୍ୟାଦି) ଆଗକୁ ବଢ଼ିବାକୁ 'ଖଣ୍ଡ' କୁହାଯାଏ । ଏହିପରି କେତୋଟି 'ଖଣ୍ଡ' ମିଶିଗଲେ ହୁଏ 'ମହାମଣ୍ଡଳ' । ଏହି ମଣ୍ଡଳଗୁଡ଼ିକ ପୁଣି ବାମ-ଦକ୍ଷିଣ ଦିଗର ବିଚାରରେ ତିନି ଭାଗରେ ବିଭକ୍ତ, ଯଥା, ସବ୍ୟ, ଅପସବ୍ୟ, ଓ 'ସବ୍ୟାପସବ୍ୟ' । ବାମ ଦିଗକୁ ଗତି ହେଲେ ତାହାକୁ କୁହାଯାଏ ସବ୍ୟ; ଦକ୍ଷିଣ ଦିଗକୁ ଗତି ହେଲେ ତାହାକୁ କୁହାଯାଏ 'ଅପସବ୍ୟ; ବାମ ଓ ଦକ୍ଷିଣ ଦୁଇ ଦିଗକୁ ମିଶାମିଶି ହୋଇ ଗତି ହେଲେ ତାହାକୁ କୁହାଯାଏ 'ସବ୍ୟାପସବ୍ୟ' ।

ଗ) ସ୍ଥାନ—ପାଦ ପକାଇବାର ବିଭିନ୍ନ ଢଙ୍ଗକୁ କୁହାଯାଏ 'ସ୍ଥାନ' । ଏଥିରେ ବାଘ, ସିଂହ, କୁକୁର ଆଦି ପ୍ରାଣୀମାନଙ୍କୁ ଅନୁକରଣ କରି ସେହିମାନଙ୍କ ଭଳି ପାଦ ପକାଇବାକୁ ପଡ଼ିଥାଏ ।

ଘ) ଗୋମୂତ୍ରକ—ଗୋମୂତ୍ରର ଧାର ସିଧା ପଡ଼ିନଥାଏ । ଏହା ଅଙ୍କାବଙ୍କା ହୋଇ ପଡ଼ିଥାଏ । ସେହି ଢଙ୍ଗରେ ଅଙ୍କାବଙ୍କା ଭାବରେ ପାଦ ପକାଇବାକୁ କୁହାଯାଏ 'ଗୋମୂତ୍ରକ' ।

(ଙ) ଗତ-ପ୍ରତ୍ୟାଗତ—ଆଗକୁ ଚାଲିବା ଏବଂ ପଛକୁ ଫେରିଆସିବା, ଏହିପରି ମିଶ୍ରିତ ଢଙ୍ଗର ଗତିକୁ କୁହାଯାଏ 'ଗତ-ପ୍ରତ୍ୟାଗତ'।

(ଚ) ତିରଶ୍ଚୀନଗତ—ତିରଶ୍ଚୀନର ଅର୍ଥ ହେଲା ତେରଛା। ଯେପରି, ବାଜପକ୍ଷୀ ଆଦି ଶିକାରୀ ପକ୍ଷୀମାନେ ଶିକାରକୁ ଧରିଲା ବେଳେ ତେରଛା ଭାବରେ ଝାମ୍ପ ମାରିଥାନ୍ତି। ବାଘ ମଧ୍ୟ ଶିକାର ଉପରକୁ ତେରଛା ଭାବରେ ଝାମ୍ପ ମାରିଥାଏ। ପ୍ରତିଦ୍ୱନ୍ଦ୍ୱୀ ଉପରକୁ ଏହିପରି ତେରଛା ଗତିରେ ଝାମ୍ପ ମାରିବାର କୌଶଳକୁ କୁହାଯାଏ 'ତିରଶ୍ଚୀନଗତ'।

(ଛ) ବକ୍ରଗତ—ଏହା ହେଉଛି ପ୍ରତିଦ୍ୱନ୍ଦ୍ୱୀ ଉପରକୁ ଡାହାଣକୁ ଓ ବାଁକୁ ମାଡ଼ିଆସିବା। ଗୋଟିଏ ଦିଗକୁ ଆସୁଥିବାର ସଙ୍କେତ ଦେଖାଇ ହଠାତ୍ ଦିଗପରିବର୍ତ୍ତନ କରି ଅନ୍ୟ ଦିଗରୁ ମାଡ଼ି ଆସିବାର ଢଙ୍ଗକୁ କୁହାଯାଏ 'ବକ୍ରଗତ'।

(ଜ) ପ୍ରହାର-ବର୍ଜନ—ପ୍ରତିଦ୍ୱନ୍ଦ୍ୱୀର ଆଘାତକୁ ଏଡ଼ାଇ ଦେବାକୁ ଯାଇ ହଠାତ୍ ଘୁଞ୍ଚି ଆସିବାର କୌଶଳକୁ କୁହାଯାଏ 'ପ୍ରହାରବର୍ଜନ'।

(ଝ) ବର୍ଜନ— ଶତ୍ରୁର ଆଘାତକୁ ନିଜର ଆଘାତ ଦ୍ୱାରା ପ୍ରତିହତ କରିବାର କୌଶଳ 'ବର୍ଜନ' ନାମରେ ଅଭିହିତ। ଶତ୍ରୁ ଯଦି ମୁଷ୍ଟ୍ୟାଘାତ କରିବାକୁ ଉଦ୍ୟତ ଅଛି, ତା'ହେଲେ ସେହି ମୁଷ୍ଟ୍ୟାଘାତ ଦ୍ୱାରା ହିଁ ତାହାକୁ ପ୍ରତିହତ କରିବାକୁ ହେବ।

(ଞ) ପରିଧାବନ—ଆକ୍ରମଣ ଲାଗି ପ୍ରତିଦ୍ୱନ୍ଦ୍ୱୀ ପଛରେ ଧାଇଁବାକୁ କୁହାଯାଏ 'ପରିଧାବନ'।

(ଟ) ଅଭିଦ୍ରବଣ—ପ୍ରତିଦ୍ୱନ୍ଦ୍ୱୀକୁ ଅତି ଦ୍ରୁତଗତିରେ ଧାଇଁଆସି ଶକ୍ତ ଭାବରେ ସାମନା କରିବାକୁ କୁହାଯାଏ 'ଅଭିଦ୍ରବଣ'।

(ଠ) ସବିଗ୍ରହ-ଅବସ୍ଥାନ—ଆକ୍ରମଣାତ୍ମକ ମୁଦ୍ରା ଦେଖାଇ ପ୍ରତିଦ୍ୱନ୍ଦ୍ୱୀ ସମ୍ମୁଖରେ ନିର୍ଭୀକ ଭାବରେ ଠିଆ ହୋଇ ରହିବାକୁ କୁହାଯାଏ 'ସବିଗ୍ରହ-ଅବସ୍ଥାନ।

(ଡ) ଅପାବୃତ୍ତ—ପ୍ରତିଦ୍ୱନ୍ଦ୍ୱୀର ଆଘାତରୁ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ତା'ର ସମ୍ମୁଖକୁ ନଆସିବାର କୌଶଳ 'ଅପାବୃତ୍ତ' ନାମରେ ଅଭିହିତ।

(ଢ) ଅପଦ୍ରୁତ—ପ୍ରତିଦ୍ୱନ୍ଦ୍ୱୀର ଜଙ୍ଘ କିମ୍ବା ତାହାର ତଳ ଅଂଶକୁ ଧରିଦେଲେ ସେ କାବୁ ହୋଇଯିବ। ଏହି ଆଶା ରଖି ନିଜ ଶରୀରକୁ ନୁଆଁଇକରି ଆଗେଇବାର ଢଙ୍ଗକୁ କୁହାଯାଏ 'ଅପଦ୍ରୁତ'।

(ଣ) ଅବପ୍ଲୁତ—ପ୍ରତିଦ୍ୱନ୍ଦ୍ୱୀକୁ ପଦାଘାତ କରିବା ଉଦ୍ଦେଶ୍ୟରେ ମୁହଁ ତଳକୁ

କରି ତା'ର ପଦ ପ୍ରତି ଦୃଷ୍ଟି ରଖି ସ୍ଥାନ ଦେବାର ଢଙ୍ଗକୁ କୁହାଯାଏ 'ଅବପ୍ଲୁତ'।

(ଛ) ଉପନ୍ୟସ୍ତ—ପ୍ରତିଦ୍ୱନ୍ଦ୍ୱୀକୁ ଛାତିରେ ଜାବୁଡ଼ି ଧରିବା ଲାଗି ବାହା ବିସ୍ତାର କରି ଆଗେଇବା ଢଙ୍ଗକୁ କୁହାଯାଏ 'ଉପନ୍ୟସ୍ତ'।

(ଝ) ଅପନ୍ୟସ୍ତ—ପ୍ରତିଦ୍ୱନ୍ଦ୍ୱୀ ନିଜକୁ ଧରିବାକୁ ଗଲାବେଳେ ତା'ଠାରୁ ଦେଖିବାକୁ ଯାଇ ବାହୁ ଦୁଇଟିକୁ ଇତସ୍ତତଃ ଚଲାଇବାର ଢଙ୍ଗ 'ଅପନ୍ୟସ୍ତ' ନାମରେ ଅଭିହିତ।

କେବଳ ଶାରୀରିକ ବଳ ଯେ ମଲ୍ଲଯୁଦ୍ଧ ପାଇଁକି ସହାୟକ ହେଉଥିଲା ତାହା ନୁହେଁ। ଏଥିରେ ବରଂ ମାରପେଞ୍ଚର ବିଭିନ୍ନ କୌଶଳ ବେଶି କାମ କରୁଥିଲା। ଉଦାହରଣ ସ୍ୱରୂପ ରାବଣ ଥିଲା ସୁଗ୍ରୀବଙ୍କଠାରୁ ଅଧିକତର ବଳବାନ୍। କିନ୍ତୁ ମଲ୍ଲଯୁଦ୍ଧର କୌଶଳକୁ ଆଶ୍ରୟ କରି ସୁଗ୍ରୀବ ରାବଣକୁ ପରାଭବ ଦେଇପାରିଥିଲେ। ମଲ୍ଲଯୁଦ୍ଧର ଉପଯୁକ୍ତ କୌଶଳସମୂହ ମଧ୍ୟରୁ ଏବେ ମଧ୍ୟ କେତେକ କୌଶଳ ଭାରତୀୟ ମଲ୍ଲ-ଯୋଦ୍ଧାମାନଙ୍କ ଦ୍ୱାରା ଅନୁସୃତ ହେଉଛି।

## ଟିପ୍ପଣୀ


୧। Balasastri Hardass, Glimpses of the Vedic Nation, p. 520.

୨। P. C. Chakravarti, The Art of War in Ancient India, Mcrindle in Indica of Arrian quoted, p, 181.

୩। ଗୀତା, ୧୦। ୩୧।

୪। P. C Chakravarti, op. cit., p. 182.

୫। ରାମାୟଣ, ୫। ୨୧। ୨୫।

୬। ଋଗ୍ବେଦ, ୪। ୧୬। ୩୧।

୭। R. Sharma, A Socio-Political Study of the Valmiki Ramayana, Motilal Banarasidass (1986), p. 380.

୮। ରାମାୟଣ, ୨। ୨୦। ୮।

୯। ରଘୁବଂଶ, ୧୭। ୪୭।

୧୦। P. C. Chakravarti, op. cit, pp. 148-149.

୧୧। ରାମାୟଣ, ୬। ୫୯।। ୭୪।

୧୨ । ଓଟ୍ଟେବ, ୬ । ୧୮ । ୩ ।

୧୩ । ଓଟ୍ଟେବ, ୭ । ୩୨ । ୨୮ ।

୧୪ । J. L. Brockington, Righteous Rama—The Evolution of an Epic, p. 133.

୧୫ । R. Sharma, op. cit., p. 386.

୧୬ । V. R. R. Dikshitar, War in Ancient India, Macmillan and Company, Limited, London (1948), p. 156.

୧୬-କ । A. L. Basham, The Wonder that was India, Rupa & Company (1985 Reprint), p. 225.

୧୭ । ରାମାୟଣ ୬ । ୧୭ । ୨୪ ।

୧୮ । J L. Brockington, op. cit, p. 136.

୧୯ । R. Sharma, op. cit, E. W. Hopkings quoted, p. 389.

୨୦ । ରାମାୟଣ, ୬ । ୫୦ । ୫ ।

୨୧ । ଋଗ୍ବେଦ, ୨ । ୮୩ । ୫ ।

୨୧-କ । ଶୁକ୍ଳ ଯଜୁର୍ବେଦ, ୩୦ । ୧୧ ।

୨୨ । P. C. Chakravarti, op. cit.; p. 23.

୨୩ । R. Sharma, op. cit., p. 392.

୨୪ । ଐତରେୟ ବ୍ରାହ୍ମଣ, ୪ । ୯ । ୪; ୪ । ୯ । ୧ ।
ରାମାୟଣରେ ମଧ୍ୟ ଗଧଟଣା ରଥର ବର୍ଣ୍ଣନା ଅଛି । ରାବଣ ମାରୀଚ ରାକ୍ଷସ ପାଖକୁ ଗଲାବେଳେ ଗଧଟଣା ରଥଟିରେ ବସି ଯାଇଥିବା କଥା ତହିଁରେ (୩ । ୩୫ । ୬) ଉଲ୍ଲିଖିତ ।

୨୪-କ । ରାମାୟଣ, ୫ । ୪୩ । ୫ ।

୨୫ । R, Sharma, op. cit., p. 395.

୨୬ । ରାମାୟଣ, ୬ । ୮୫ । ୩୪-୩୬ ।

୨୬-କ । J. L. Brockington, op. cit, p. 136.

୨୭ । P. Sen Sharma, Kurukshtra War—A Military Study (1975), pp. 23-24.

୨୭-କ । R. Sharma, op. cit, p. 424.

୨୮ । ରାମାୟଣ, ୬ । ୩ । ୩୩ ।

୨୯ । ଋଗ୍ବେଦ, ୬ । ୪ । ୧୩ ।

୩୦ । R. Sharma, op. cit, p. 423.

୩୦-କ । J. L. Brockington, op. cit., p. 134.

୩୧ । ରାମାୟଣ, ୬ । ୨୨ । ୮୨ ।

୩୨ । Monier-Williams, A Sanskrit-Engish Dictionary, p. 655.

୩୩ । A L. Basham, op. cit, p. 134.

୩୪ । ରାମାୟଣ, ୬ । ୩ । ୨୦ ।

ବାଲ୍ମୀକି ରାମାୟଣର କୌଣସି କୌଣସି ସଂସ୍କରଣରେ ଶ୍ଳୋକାଂଶଟି କିଛିଏ ପରିବର୍ତ୍ତିତ ଆକାରରେ ଅଛି, ଯଥା, 'ନାଦେୟଂ ପାର୍ବତଂ ବାନ୍ୟଂ କୃତ୍ରିମଂ ଚ ଚତୁର୍ବିଧମ୍ ।' ଏହାର ଅର୍ଥ ହେଲା ନାଦେୟଦୁର୍ଗ, 'ପାର୍ବତଦୁର୍ଗ' ବାନ୍ୟଦୁର୍ଗ' ଓ କୃତ୍ରିମଦୁର୍ଗ ଏହିପରି ଚାରି ପ୍ରକାର ଦୁର୍ଗ ସେଠାରେ ଅଛି । ଏଠାରେ ଅମ୍ବୁଦୁର୍ଗକୁ ବାଦ ଦିଆଯାଇଛି ଏବଂ 'ବାନ୍ୟଦୁର୍ଗ' (ବଣ ଘେରରେ ଥିବା ଦୁର୍ଗ) ବୋଲି ଆଉ ଏକ ନୂତନ ପ୍ରକାର ଦୁର୍ଗର ନାମୋଲ୍ଲେଖ ଅଛି । ଯେଉଁ 'କୃତ୍ରିମଦୁର୍ଗ'ର ନାମୋଲ୍ଲେଖ ଅଛି, ତାହା ପ୍ରକୃତରେ ହେଉଛି 'ଖାନକ-ଦୁର୍ଗ' ଯେଉଁ କ୍ଷେତ୍ରରେ କୃତ୍ରିମ ଉପାୟରେ ଦୁର୍ଗର ଚାରିପଟେ ଜଳଖାଇ ତିଆରି ହୋଇଥାଏ ।

୩୫ । A. L. Basham, op. cit, p. 135.

୩୬ । ରାମାୟଣ, ୬ । ୬୨ । ୧୯ ।

୩୭ । ଋଗ୍ବେଦ, ୬ । ୨୪ । ୧୩ ।

୩୮ । ଋଗ୍ବେଦ, ୬ । ୬୬ । ୨୭ ।

୩୯ । R. Sharma, op. cit., pp. 426-427.

୪୦ । ରାମାୟଣ, ୬ । ୩୩ । ୨୧ ।

୪୧ । J. L. Brockington, op. cit., p. 139.

୪୨ । ସୁରେନ୍ଦ୍ରନାଥ ଶତପଥୀ, ଭାରତୀୟ ସଂସ୍କୃତି; ବୈଦିକ ପର୍ବ (୪ର୍ଥ ଭାଗ), ପୃ. ୧୮୭-୧୮୮ ।

୪୩ । J. L. Brockington, op. cit, p. 140.

୪୪ । ରାମାୟଣ, ୬ । ୧୦୦ । ୩୫-୩୬ ।

୪୫ । ଶାନ୍ତିକୁମାର ନାନୂରାମ ବ୍ୟାସ, ରାମାୟଣ କାଳୀନ ସମାଜ, ପୃ. ୮୨୯ ।



## ଚତୁର୍ଥ ପରିଚ୍ଛେଦ

# ଭାରତୀୟ ସଂସ୍କୃତି ଉପରେ ପ୍ରଭାବ

ରାମାୟଣ ଓ ମହାଭାରତ ଭାରତୀୟମାନଙ୍କ ପାଇଁ ଗୋଟିଏ ଗୋଟିଏ ମହାକାବ୍ୟ କେବଳ ନୁହେଁ, ଏହି ଦୁଇଟି ମିଶି ସୃଷ୍ଟି କରିଛନ୍ତି ଗୋଟିଏ ମହାଭାଷା ଯାହାର ମାଧ୍ୟମରେ ଭାରତୀୟମାନେ କଥାବାର୍ତ୍ତା କରିଥାନ୍ତି । ଭାରତୀୟ ଜନମାନସରେ ଏହି ମହାଭାଷାର ଅଖଣ୍ଡ ଓ ଅନନ୍ୟ ପ୍ରଭାବ । ସମାଜର ଉଚ୍ଚତମ ସୋପାନଠାରୁ ଆରମ୍ଭକରି ନିମ୍ନତମ ସୋପାନ ପର୍ଯ୍ୟନ୍ତ ଯେତେ ଲୋକ ଅଛନ୍ତି, ସେମାନଙ୍କ ସମସ୍ତଙ୍କ ଚିନ୍ତା ଓ ଚେତନାକୁ ମହାଭାରତ ଭଳି ରାମାୟଣ ମଧ୍ୟ ବହୁଧା ପ୍ରଭାବିତ କରିଥାଏ । ଆଦର୍ଶ ପତି-ପତ୍ନୀଙ୍କ ଉଦାହରଣ ଦେଲାବେଳେ ଆମେ ରାମ ଓ ସୀତାଙ୍କ ନାମ ଧରିଥାଉଁ । ଆଦର୍ଶ ଭ୍ରାତୃପ୍ରେମ କଥା ପଢ଼ିଲେ ଆମ ଆଖି ଆଗରେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କ ଛବିଟିମାନ ନାଚିଯାଇଥାଏ । ଦୁଷ୍ଟ ପ୍ରକୃତିର ରାଜାଙ୍କ କଥା ବିଚାରିଲା ବେଳେ ଆପେ ଆପେ ରାବଣର ଛବି ଆମ ଆଗରେ ନାଚିଯାଇଥାଏ । ଏହିପରି ଭାବରେ ସାରା ଭାରତର ଜନମାନସକୁ ରାମାୟଣ ଯୁଗ-ଯୁଗ ଧରି ଆଚ୍ଛନ୍ନ କରି ରଖିଛି । ଭାରତୀୟ ସଂସ୍କୃତିର ବିଭିନ୍ନ ବିଭାଗ, ଯଥା, ସାହିତ୍ୟ, ସ୍ଥାପତ୍ୟ, ଅଭିଲେଖ ଆଦି ରାମାୟଣର ପ୍ରଭାବରେ ପରିଶୀଳିତ । ଏହି ପରିଶୀଳନ ଯୁଗ ଯୁଗ ଧରି ଚାଲିଛି, ଏବେ ମଧ୍ୟ ଚାଲୁଛି ଏବଂ ଭବିଷ୍ୟତରେ ମଧ୍ୟ ଚାଲୁଥିବ । ବାସ୍ତବିକ ଯୁଗଦ୍ରଷ୍ଟା ମହାକବି ବାଲ୍ମୀକି ଯଥାର୍ଥରେ ଅତ୍ୟନ୍ତ ଦୃଢ଼ ଆତ୍ମବିଶ୍ୱାସର ସହିତ କହିଛନ୍ତି :

> ଯାବତ୍ ସ୍ଥାସ୍ୟନ୍ତି ଗିରୟଃ ସରିତଶ୍ଚ ମହୀତଳେ ।
> ତାବଦ୍ ରାମାୟଣକଥା ଲୋକେଷୁ ପ୍ରଚରିଷ୍ୟତି । (୧)

ଅର୍ଥାତ୍ ଏହି ପୃଥିବୀରେ ଯେ ପର୍ଯ୍ୟନ୍ତ ନଈଗୁଡ଼ିକ ବହି ଚାଲିଛି ଓ ପର୍ବତଗୁଡ଼ିକ ଅଛି, ସେ ପର୍ଯ୍ୟନ୍ତ ରାମାୟଣକଥାର ପ୍ରଚାର ଚାଲିଥିବ । ଏହା ଅକ୍ଷରେ ଅକ୍ଷରେ ସତ୍ୟ । କପିଲା ବାତ୍ସାୟନ ତେଣୁ କହନ୍ତି :

> Once Valmiki had written the epic, the epic, the theme and its poetry gave rise to and impringnated practically all future traditions in the Indian sub-continent, (୧-କ)

ଖାଲି ତ ଭାରତରେ ନୁହେଁ ଭାରତ ବାହାରେ ମଧ୍ୟ ଲୋକମାନଙ୍କ ସାଂସ୍କୃତିକ ଚେତନାକୁ ରାମାୟଣ ଯଥେଷ୍ଟ ପ୍ରଭାବାନ୍ୱିତ କରିଛି । ତେବେ ଶଂସିତ ପରିଚ୍ଛେଦରେ କେବଳ ଭାରତୀୟ ସଂସ୍କୃତି ଉପରେ ରାମାୟଣର ପ୍ରଭାବ ଆଲୋଚନୀୟ । ଏହି ଦୃଷ୍ଟିରୁ ବିଚାର କଲେ ଏହି ଆଲୋଚନା ନିଶ୍ଚିତ ଭାବରେ କୌତୂହଳପ୍ରଦ ଓ ଗୁରୁତ୍ୱପୂର୍ଣ୍ଣ ହେବ ।

**ପ୍ରୟୋଗାତ୍ମକ ଧର୍ମ :**

'ଧାରଣାତ୍ ଧର୍ମମିତ୍ୟାହୁଃ' ବା 'ଧାରଣ କରିଥିବା ହେତୁ ଏହାକୁ ଧର୍ମ ବୋଲି କୁହାଯାଏ' ବୋଲି ମହାଭାରତର ମତ । ସାଧାରଣ ଅର୍ଥରେ ବୁଝିବାକୁ ଗଲେ ଧର୍ମ ହେଉଛି କେତେକ ସଦାଚାରର ସମଷ୍ଟି ଯାହା ସମାଜକୁ ଧରି ରଖିଥାଏ । ପୂର୍ବରୁ ବେଦ, ଉପନିଷଦ ଆଦିରେ ଯେ ଧର୍ମ ସମ୍ପର୍କରେ କୁହା ଯାଇନଥିଲା ତାହା ନୁହେଁ । ଋଗ୍‌ବେଦ ତ ଦୃଢ଼ତାର ସହିତ ମଣିଷ ସମାଜକୁ ଉପଦେଶ ଦେଇ କହିଥାଏ, 'ଗଚ୍ଛ ଧର୍ମେଣ ।' ଅର୍ଥାତ୍ ତୁମେ ଧର୍ମମାର୍ଗରେ ଚାଲ । ଉପନିଷଦସମୂହର ମଧ୍ୟ ସେହି ବାଣୀ, ଯଥା, 'ସତ୍ୟଂ ବଦ ଧର୍ମଂ ଚର' ଇତ୍ୟାଦି । ଅର୍ଥାତ୍ ସତକଥା କହ, ଧର୍ମାଚରଣ କର ଇତ୍ୟାଦି । ଅବଶ୍ୟ ଧର୍ମାଚରଣ ସମ୍ପର୍କରେ ବେଦ ଓ ଉପନିଷଦ ସମୂହରେ ଧର୍ମର ସିଦ୍ଧାନ୍ତସମୂହକୁ କାର୍ଯ୍ୟକାରୀ କରି ଭଲି କାଁ-ଭାଁ କେତୋଟି ଚରିତ୍ରକୁ ଛାଡ଼ିଦେଲେ ସାମଗ୍ରିକ ମାନବ-ଜୀବନର ଆଲୋଚନା କରାଯାଇନାହିଁ । ଅନ୍ୟ ପକ୍ଷରେ ରାମାୟଣ ହେଉଛି ଏକ ମାତ୍ର ଗ୍ରନ୍ଥ ଯହିଁରେ ଧର୍ମର ପ୍ରୟୋଗ କରିବା ଯେ ସାମଗ୍ରିକ ମାନବଜୀବନରେ ସମ୍ଭବ, ତାହାର ଉଦାହରଣ ଦିଆଯାଇଛି । ତତ୍ ସଙ୍ଗେ ସଙ୍ଗେ ଅଧର୍ମର ଆଚରଣ କଲେ ମଣିଷ କି ଦୁଃଖରେ ପଡ଼େ ଏବଂ କପରି ତାହାର ବିନାଶ ଘଟେ ତାହାର ମଧ୍ୟ ଉଦାହରଣ ଦିଆଯାଇଛି । ତାହା ପୁଣି ଦିଆଯାଇଛି ଏକ ସର୍ଗବଦ୍ଧ କାବ୍ୟ ମାଧ୍ୟମରେ ରସାନ୍ୱିତ ଶୈଳୀରେ । ସେହି କାରଣରୁ ବାଲ୍ମୀକି ଆଦିକବି ନାମରେ ଓ ରାମାୟଣ ଆଦିକାବ୍ୟ ନାମରେ ଖ୍ୟାତ । ପ୍ରୟୋଗାତ୍ମକ କ୍ଷେତ୍ରରେ ଧର୍ମର ପ୍ରୟୋଗ ତିନି ପ୍ରକାର ହୋଇଥାଏ, ଯଥା, କାମ ଓ ଧର୍ମର ସମନ୍ୱୟରେ, ଧର୍ମହୀନ କାମରେ ଏବଂ କାମହୀନ ଧର୍ମରେ । ତିନି ପ୍ରକୃତିର ଲୋକେ ଏଭଳି କରିଥାନ୍ତି । ବାଲ୍ମୀକି ଏହି ତିନି ଜଗତର ସମନ୍ୱୟ ଘଟାଇଛନ୍ତି । ମଧୁସୂଦନ ତାଙ୍କ ଭାଷାରେ :

> The Ramayana story connects three worlds—kama with dharma, kama bereft of dharma and dharma devoid of kama.

× × × ×

The Ramayana describes all these three worlds with splendid opulence. (୧-ଖ)

ଏହା ପୂର୍ବରୁ ବେଦ ଓ ଉପନିଷଦସମୂହରେ କାଁ-ଭାଁ ଯେଉଁ କେତୋଟି କାହାଣୀର ଅବତାରଣା କରାଯାଇଛି, ତାହା ରସାନୁଭୂତ ସାହିତ୍ୟର ପଦବାଚ୍ୟ ନୁହେଁ । ବାଲ୍ମୀକି ରାମଙ୍କୁ ଚିତ୍ରିତ କରିଛନ୍ତି ଧର୍ମର ଏକ ମୂର୍ତ୍ତିମାନ୍ ବିଗ୍ରହ ରୂପରେ । ତାଙ୍କ ଭାଷାରେ :

ରାମୋ ବିଗ୍ରହବାନ୍ ଧର୍ମଃ ସାଧୁ ସତ୍ୟପରାକ୍ରମଃ । (୨)

ଅର୍ଥାତ୍ ରାମ ହେଉଛନ୍ତି ଧର୍ମର ମୂର୍ତ୍ତିମାନ୍ ସ୍ୱରୂପ । ସେ ସାଧୁ ଓ ସତ୍ୟବଳରେ ବଳୀୟାନ୍ । ରାମାୟଣରେ ଏଭଳି ସମସ୍ତ ଆସିଛି ଯେତେବେଳେ ମହର୍ଷିମାନେ ଓ ଦେବତାମାନେ ରାମଙ୍କୁ ଭଗବାନ୍ ବିଷ୍ଣୁଙ୍କ ଅବତାର ବୋଲି ସ୍ମରଣ କରାଇ ଦେଇଛନ୍ତି ଏବଂ କହିଛନ୍ତି ଯେ ସେ ସାକ୍ଷାତ୍ ପରମାତ୍ମା ପରଂବ୍ରହ୍ମ । କିନ୍ତୁ ରାମ ବିନୟର ସହିତ ଉତ୍ତର ଦେଇ କହିଛନ୍ତି ଯେ ସେ ଜଣେ ମଣିଷ ଏବଂ ଦଶରଥଙ୍କ ପୁଅ । ଏ ସମ୍ପର୍କରେ ବାଲ୍ମୀକିଙ୍କ ନିମ୍ନୋକ୍ତ ବକ୍ତବ୍ୟ ଦ୍ରଷ୍ଟବ୍ୟ ଯେଉଁଠି ସେ କହିଛନ୍ତି :

ଆତ୍ମାନଂ ମନୁଷ୍ୟଂ ମନ୍ୟେ ରାମଂ ଦଶରଥାତ୍ମଜମ୍ । (୩)

ଅର୍ଥାତ୍ ମୁଁ ନିଜକୁ ଜଣେ ମଣିଷ ଓ ଦଶରଥଙ୍କ ପୁଅ ରାମ ବୋଲି ମନେକରୁଛି । ମନୁଷ୍ୟଜୀବନରେ ଯେ ଧର୍ମର ସମ୍ପୂର୍ଣ୍ଣ ଆଚରଣ କରି ଚଳିବା ସମ୍ଭବପର, ଏ କଥା ବାଲ୍ମୀକି ସର୍ବପ୍ରଥମେ ରାମଙ୍କ ଜୀବନକାହାଣୀ ମାଧ୍ୟମରେ ଦର୍ଶାଇଛନ୍ତି ଏବଂ ଏହାର ପ୍ରଭାବ ମହାଭାରତଠାରୁ ଆରମ୍ଭ କରି ପରବର୍ତ୍ତୀ ଅନ୍ୟାନ୍ୟ ସାହିତ୍ୟଗ୍ରନ୍ଥ-ଗୁଡ଼ିକରେ ପଡ଼ିଛି । ଏହାର ଅବଲମ୍ବନରେ ଆଦର୍ଶ ଓ ଅନାଦର୍ଶ ମଧ୍ୟରେ, ଦୁଃଖ ଓ ସୁଖ ମଧ୍ୟରେ, ଭଲ ଓ ମନ୍ଦ ମଧ୍ୟରେ, ଧର୍ମ ଓ ଅଧର୍ମ ମଧ୍ୟରେ ନିରନ୍ତର ଚାଲିଥିବା ସଂଘର୍ଷକୁ ନେଇ ବିଭିନ୍ନ ସାହିତ୍ୟର ସୃଷ୍ଟି କରାଯାଇଛି ଏବଂ ଏବେ କରାଯାଉଛି ମଧ୍ୟ । ପରିଶେଷରେ ଆଦର୍ଶର ଜୟ ହେଉଛି, ସୁଖର ଜୟ ହେଉଛି, ଧର୍ମର ଜୟ ହେଉଛି । ଶାନ୍ତିକୁମାର ନାନୁରାମ ବ୍ୟାସ ଏହାର ପୁଷ୍ଟିସାଧନ କରି କହନ୍ତି :

ଅପନେ ଉଥଲ-ପୁଥଲଭରେ ଜୀବନ ମେଂ ରାମ କୋ କଈ ଜଟିଲ ପରିସ୍ଥିତିୟୋଁ କା ସାମନା କରନା ପଡ଼ା, ପର କୋଇ ଭି ପରିସ୍ଥିତି ଐସୀ ନହୀଂ ଥୀ, ଜିସସେ ୱେ ହତପ୍ରଭ ହୁଏ ହୋଂ, ଅଥବା ଜିସକା ଉନ୍ହୋଂନେ ଶାରୀରିକ ଏବଂ ଆତ୍ମିକ ଶକ୍ତି, ସତ୍ୟ ଏବଂ ନ୍ୟାୟପ୍ରିୟତା ତଥା ପରହିତ କେ ଲିଏ

ସହିତ କା ତ୍ୟାଗ କରନେ କା ଭାବନା କେ ବଲ ପର ହିନ୍ଦୁ ନ ରହସ୍ତା
ହୈ । (୪)

ରାମ ଯେଉଁ କାମ କରି ଦେଖାଇଛନ୍ତି, ଯେଉଁ ଶୁଦ୍ଧ ଆଚରଣ ଦ୍ୱାରା ସତତ ପରିସ୍ଫୁଟିତ ହୋଇଛନ୍ତି, ତାହା ଯେ ସାଧାରଣ ମନୁଷ୍ୟ ଜୀବନରେ ସମ୍ଭବ ଏ କଥା ବାଲ୍ମୀକି ଦୃଢ଼ତାର ସହିତ ଘୋଷଣା କରିଛନ୍ତି । ରାମ ଯୁଗ-ଯୁଗ ଧରି ଆମ ସମସ୍ତଙ୍କ ପାଇଁ ଆଦର୍ଶ ହୋଇ ରହିଛନ୍ତି । ଅଶିକ୍ଷିତ ଜନସାଧାରଣଙ୍କ ଉପରେ ମଧ୍ୟ ରାମଚରିତର ପ୍ରଭାବ ସମଧିକ ପ୍ରବଳତର ଯାହାର ପୁଷ୍ଟି ଉମାଶଙ୍କର ଜୋଷୀ ଏହିଭଳି କରିଥାନ୍ତି :

In fact Rama became a byword with religious and spiritual mantralike overtones amongst the illiterate populace even as OM amongst those well-versed in scriptures. (୫)

ସୀତା, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ, ହନୁମାନ୍ ଆଦି ମଧ୍ୟ ଜଣେ ଜଣେ ସମଧିକ ଆଦର୍ଶ ଚରିତ୍ର । ଏହି ଦୃଷ୍ଟିରୁ ରାମାୟଣକୁ ଧର୍ମର ଏକ ପ୍ରୟୋଗାତ୍ମକ କାବ୍ୟଗ୍ରନ୍ଥ ବୋଲି କହିବାର ଯଥେଷ୍ଟ ଯଥାର୍ଥତା ଅଛି । ଏହା ପରବର୍ତ୍ତୀ ସାହିତ୍ୟ ସୃଷ୍ଟି-ସମୂହରେ ଭାରତୀୟ ସାଂସ୍କୃତିକ ଚେତନାକୁ ଯଥେଷ୍ଟ ଉଦ୍‌ବୁଦ୍ଧ ତଥା ଉଜ୍ଜୀବିତ କରିଛି । ପରବର୍ତ୍ତୀ ଅନୁଚ୍ଛେଦଗୁଡ଼ିକରେ ଏହାର ପ୍ରଭାବ କିପରି ବିଭିନ୍ନ ଭାରତୀୟ ସାହିତ୍ୟଗୁଡ଼ିକରେ ପଡ଼ିଛି, ତାହାର ସବିଶେଷ ଆଲୋଚନା କରାଯାଉଛି ।

## ସଂସ୍କୃତ ସାହିତ୍ୟ :

ଉଇଣ୍ଟରନିଜ୍‌ଙ୍କ ମତରେ ରାମାୟଣ ହେଉଛି ଲୋକଗାଥାଗୁଡ଼ିକର ଏକ କାବ୍ୟିକ ରୂପାୟନ ଯାହା ବାଲ୍ମୀକି ଦେଇଥିଲେ । ଏହି ଲୋକଗାଥାଗୁଡ଼ିକ କାହିଁ କେତେ ଯୁଗରୁ ଚଳି ଆସୁଥିଲା ତାହା କହିବା ଅସମ୍ଭବ । ବାସ୍ତବିକ, ମହାଭାରତ, ବୌଦ୍ଧଜାତକ ଗଳ୍ପ ଆଦିର ମୂଳ ହେଉଛି ଲୋକଗାଥାସମୂହ । ଏହାକୁ ବିଭିନ୍ନ ସମୟରେ ବିଭିନ୍ନ ସାହିତ୍ୟକାରମାନେ ରସାନ୍ୱିତ ଶୈଳୀରେ ପରିବେଷଣ କରିଛନ୍ତି । ରାମାୟଣ ଗୀତିକାବ୍ୟର ଶୈଳୀରେ ଉପସ୍ଥାପିତ ଲୋକଗାଥାସମୂହର ପ୍ରଥମ ସଙ୍କଳନ ହୋଇଥିବା କାରଣରୁ ପ୍ରଥମ କାବ୍ୟଗ୍ରନ୍ଥ ଭାବରେ ଏହାର ପ୍ରଭାବ ପରବର୍ତ୍ତୀ ସାହିତ୍ୟରେ ପଡ଼ିବା ସ୍ୱାଭାବିକ । ବାସ୍ତବିକ ତାହା ହିଁ ଘଟିଛି । ବାଲ୍ମୀକିଙ୍କ ପରେ ଆସିଥିବା ସଂସ୍କୃତ ସାହିତ୍ୟରେ ପ୍ରଥମ ସ୍ରଷ୍ଟା ହେଲେ ବ୍ୟାସଦେବ ଯାହାଙ୍କ ସୃଷ୍ଟ ମହାଭାରତ ଆଦିକାବ୍ୟ ରାମାୟଣ ପରି

ମଧ୍ୟ ମାନ୍ୟତା ପାଇଥାଏ । ବ୍ୟାସ ସ୍ୱୟଂ ସ୍ୱୀକାର କରିଛନ୍ତି ଯେ ଶ୍ରେଷ୍ଠ ଇତିହାସ] ଯୁଗରୁ କବିବୁଦ୍ଧି ସମୂହର ଉଦୟ ହୋଇଛି । ତାଙ୍କ ବକ୍ତବ୍ୟ ହେଲା :

ଇତିହାସୋତ୍ତମାସ୍ୟାନ୍ମାଦ୍ୟନ୍ତେ କବିବୁଦ୍ଧୟଃ । (୭)

ବ୍ୟାସଙ୍କ ସମୟରେ ରାମାୟଣକୁ ଇତିହାସରୂପରେ ଗଣା ଯାଉଥିଲା । ଅତଏବ, ସେ ବାଲ୍ମୀକିଙ୍କ ପ୍ରଭାବକୁ ସ୍ୱୀକାର କରିଥିବାର କୌଣସି ସନ୍ଦେହ ନାହିଁ ।] ରାମାୟଣରେ ମହାଭାରତ ଉପାଖ୍ୟାନ ନାହିଁ । ଅଥଚ ମହାଭାରତର ଏକ ପୃଥକ୍ ଅଧ୍ୟାୟରେ ରାମୋପାଖ୍ୟାନ ସ୍ଥାନିତ । ଆମ ଭାରତୀୟମାନଙ୍କର ବିଶ୍ୱାସ ଯେ ରାମାୟଣ ତ୍ରେତାଯୁଗର ହେଲେ ମହାଭାରତ ତାହାର ପରବର୍ତ୍ତୀ ଦ୍ୱାପର ଯୁଗର । ତେଣୁ ରାମାୟଣର ପାତ୍ର-ପାତ୍ରୀମାନେ ମହାଭାରତର ପାତ୍ର-ପାତ୍ରୀ-ମାନଙ୍କ ପୂର୍ବବର୍ତ୍ତୀ । ଅତଏବ, ମହାଭାରତ ନିଶ୍ଚିତ ଭାବରେ ରାମାୟଣର] ପରବର୍ତ୍ତୀ କାବ୍ୟ । ମହାଭାରତକାରଙ୍କ ଉପରେ ରାମାୟଣର ପ୍ରଭାବ ପଡ଼ିଥିବା କଥା କବି ସମାଲୋଚକ ରାଜଶେଖର (୯ମ ଶତାବ୍ଦୀ) ମହାଭାରତ ଉପରେ ଆଧାରିତ ଅସମ୍ପୂର୍ଣ୍ଣ ଥିବା ତାଙ୍କ ନାଟକ ବାଳଭାରତର ପ୍ରଥମ ଅଙ୍କରେ ଅତି ସ୍ପଷ୍ଟ ଭାବରେ କହିଛନ୍ତି । ତାଙ୍କ ବକ୍ତବ୍ୟ ଅନୁସାର ବାଲ୍ମୀକି ଓ ବ୍ୟାସ ଦୁହିଁଙ୍କ ମଧ୍ୟରେ କଥୋପକଥନ ଚାଲିଛି । ବ୍ୟାସ ଏଥିରେ ବାଲ୍ମୀକିଙ୍କୁ ଗୁରୁ ଉପାଧ୍ୟାୟ ଓ ପ୍ରଥମ କବି ବୋଲି ଆବାହନ କରିଛନ୍ତି । ପ୍ରଖ୍ୟାତ କବି-ସମାଲୋଚକ ଟି.ଏସ୍. ଏଲିଅଟ (T.S. Eliot)ଙ୍କ ଲିଖିତ 'Tradition and Individual Talent' ଶୀର୍ଷକ ପ୍ରବନ୍ଧରେ କହିଛନ୍ତି ଯେ କୌଣସି କବି ନୂଆ କିଛି ସୃଷ୍ଟି କରନ୍ତି ନାହିଁ । ତାଙ୍କ କୃତି ଅତୀତର ମୃତକବିମାନଙ୍କ କୃତି ଉପରେ ଆଧାରିତ ଏବଂ ସେ ତାଙ୍କ ନିଜସ୍ୱ ଶୈଳୀରେ ଯାହା ବା ଲେଖନ୍ତି । ସମ୍ପୃକ୍ତ ପଙ୍କ୍ତିଟି ହେଲା :

> No poet or artist of any art, has his complete meaning alone. His significance, his appreciation is the appreciation of his relation to the dead poets' and artists. (୭)

ସେ ଏଇ ଯେଉଁ କଥା କହିଛନ୍ତି ତାହାକୁ ଆଧୁନିକ ସମାଲୋଚକମାନେ ସାହିତ୍ୟ ସମାଲୋଚନାର ଏକ ନୂତନ ମୌଳିକ ତତ୍ତ୍ୱ ବୋଲି ଧରିଥାନ୍ତି । କିନ୍ତୁ ଏହା କେତେ ଦୂର ନୂତନ କି ନୁହେଁ ତାହା ବ୍ୟାସଙ୍କ ଉପରଲିଖିତ ବକ୍ତବ୍ୟକୁ ଅନୁଧ୍ୟାନ କଲେ ଜାଣିହେବ । ଏଲିଏଟ୍‌ଙ୍କ ବକ୍ତବ୍ୟଟି ବ୍ୟାସଙ୍କ ବକ୍ତବ୍ୟର ଏକ ପ୍ରତିଚ୍ଛବି କହିଲେ ଅତ୍ୟୁକ୍ତି ହେବ ନାହିଁ । ମହାଭାରତରେ 'ରାମୋପାଖ୍ୟାନ'

ସହିତ ଏଥିରେ ସଂଯୋଜିତ ହରିବଂଶରେ ମଧ୍ୟ ରାମକଥାର ଉଲ୍ଲେଖ ରହିଛି । ସେ ଯାହା ହେଉ’ ବାଲ୍ମୀକିଙ୍କ ରାମାୟଣର ପ୍ରଭାବ ତାଙ୍କ ପରବର୍ତ୍ତୀ କାଳରେ ସୃଷ୍ଟ ବ୍ୟାସକୃତ ସଂସ୍କୃତ ମହାଭାରତରେ ଯେ ପଡ଼ିଛି ଏଥିରେ ସନ୍ଦେହ ନାହିଁ ।

ସେ ତ ଗଲା ମହାଭାରତ କଥା । ବାଲ୍ମୀକି ଯେ ସମସ୍ତ ମଧୁମୟ କାବ୍ୟକୃତିର ଜଣେ ମାର୍ଗଦର୍ଶୀ କବି ଏ କଥା ଭୋଜ ତାଙ୍କ ରାମାୟଣ ଚମ୍ପୂରେ ବର୍ଣ୍ଣନା କରିଛନ୍ତି । ତାଙ୍କ ବକ୍ତବ୍ୟ ହେଲା, ବାଲ୍ମୀକି ହେଉଛନ୍ତି, ‘ମଧୁମୟଭଣିତୀନାଂ ମାର୍ଗଦର୍ଶୀ କବିଃ’ ବା ‘ମଧୁମୟ ବାଣୀସମୂହର ମାର୍ଗଦର୍ଶୀ କବି’ । (୮) ଖାଲି ତ ଭୋଜ ନୁହନ୍ତି, କାଳିଦାସସମେତ ବାଲ୍ମୀକିଙ୍କ ପରବର୍ତ୍ତୀ ସମସ୍ତ କବି ବାଲ୍ମୀକିଙ୍କୁ ‘ଆଦିକବି’ ଭାବରେ ଓ ତାଙ୍କ କୃତ ରାମାୟଣ ମହାକାବ୍ୟକୁ ଆଦିକାବ୍ୟ କହି ସମ୍ମାନିତ କରିଥାନ୍ତି । କାଳିଦାସ ତାଙ୍କ ‘ରଘୁବଂଶ’ କାବ୍ୟରେ ରାମାୟଣକୁ ‘କବିପ୍ରଥମପଦ୍ଧତି’ ଓ ବାଲ୍ମୀକିଙ୍କୁ ‘ଆଦିକବି’ ବୋଲି କହିଛନ୍ତି । ଭି:ରାଘବନ୍‌ଙ୍କ ମତରେ, ‘କାଳିଦାସ ବାଲ୍ମୀକିଙ୍କ ଭାବସମୂହ ଓ ଶବ୍ଦଭଣ୍ଡାରରୁ ଖାଦ୍ୟ ଆହରଣ କରି ସ୍ୱୀୟ କଳ୍ପନା ଓ ଭାବ ପ୍ରକାଶନର କ୍ଷମତାକୁ ସମୃଦ୍ଧ ଓ ସଶକ୍ତ ରୂପେ ଗଢ଼ି ତୋଳିଛନ୍ତି ।’ (୯) କାଳିଦାସ ଯେଉଁ ‘ମେଘଦୂତ’ କାବ୍ୟରେ ଯକ୍ଷ ଦ୍ୱାରା ସ୍ୱପ୍ରିୟା ପାଖକୁ ମେଘ ହାତରେ ସନ୍ଦେଶ ପଠାଇବାର ଉଦ୍ୟମ କରିଛନ୍ତି ଏବଂ ଆହୁରି ଅନେକ ଯେଉଁ ଦୂତକାବ୍ୟମାନ ଭାରତଭୂମିରେ ସୃଷ୍ଟ ହୋଇଛି, ସେ ସବୁର ମୂଳ ଉତ୍ସ ହେଉଛି ବାଲ୍ମୀକିକୃତ ରାମାୟଣ, ଯହିଁରେ ହନୁମାନ୍‌ଙ୍କୁ ରାମଙ୍କ ପାଖରୁ ରାବଣଗୃହରେ ବନ୍ଦିନୀ ପ୍ରିୟତମା ସୀତାଙ୍କ ପାଖକୁ ଦୂତ ହିସାବରେ ପଠାଯିବାର ବର୍ଣ୍ଣନା ଅଛି । ଯକ୍ଷର କୁବେରଙ୍କଠାରୁ ଅଭିଶାପ ପାଇବା କଥାଟି ବାଲ୍ମୀକି ରାମାୟଣର (୩ । ୪ । ୧୭-୧୮) ରମ୍ଭା ପ୍ରତି ପ୍ରେମାସକ୍ତ ଥିବା ତୁମ୍ବୁରୁ ଗନ୍ଧର୍ବ ଅଭିଶପ୍ତ ହୋଇ ରାକ୍ଷସ ବିରାଧ ହୋଇ ଜନ୍ମିଥିବା କାହାଣୀରୁ ନିଆ-ଯାଇଛି । ତାଙ୍କ ରଚିତ ‘ରଘୁବଂଶ’ କାବ୍ୟ ମଧ୍ୟ ରାମାୟଣ ଉପରେ ଆଧାରିତ । ଭବଭୂତି ଅନେକ ସ୍ଥାନରେ ନିଜ ଉତ୍ତରରାମଚରିତ ନାଟକରେ ବାଲ୍ମୀକି-ରାମାୟଣର ପୂର୍ବ ଶ୍ଳୋକକୁ ଉଦ୍ଧାର କରିଛନ୍ତି । ଅଶ୍ୱଘୋଷଙ୍କ (ଖ୍ରୀଷ୍ଟୀୟ ୧ମ ଶତାବ୍ଦୀ) ‘ବୁଦ୍ଧଚରିତ’ ସଂପୂର୍ଣ୍ଣ ରୂପେ ବାଲ୍ମୀକି ରାମାୟଣକୁ ଆଧାର-ଶିଳା ରୂପେ ଗ୍ରହଣ କରିନେଇଛି । ବ୍ୟାସଙ୍କ ନିମ୍ନୋକ୍ତ ବକ୍ତବ୍ୟ ଏହାର ପରିପୁଷ୍ଟି କରିଥାଏ ।

अश्वघोष ने बौद्ध होते हुए भी अपने ‘बुद्धचरित’ में सिद्धार्थ का चरित रामायण के राम के आधार पर किया है । (१०)

ଭକ୍ତି, ଭାରବି, ପ୍ରାକୃତ କବି ଆଢ଼୍ୟରାଜ ଓ ବାଣ ଆଦିଙ୍କ ଅବସ୍ଥା ମଧ୍ୟ ତଦ୍ରୂପ । ସେମାନେ ମଧ୍ୟ ସ୍ୱୀୟ ସାହିତ୍ୟକୃତି ଲାଗି ରାମାୟଣରୁ ଖାଦ୍ୟ ଆହରଣ କରିଛନ୍ତି । ଓଡ଼ିଆ କବି ଜୟଦେବଙ୍କ ଉପରେ ମଧ୍ୟ ରାମାୟଣର ପ୍ରଭାବ ପଡ଼ିଛି । ଦଶାବତାର ସ୍ତୋତ୍ରରେ ଉଲ୍ଲିଖିତ ରାମାବତାର ସମ୍ପର୍କିତ ପଦଟିକୁ ଏଠାରେ ଉଦାହରଣ ସ୍ୱରୂପ ନିଆଯାଇପାରେ । ବାଲ୍ମୀକି ରାମାୟଣକୁ ଆଧାର କରି କେତେକ ପରିବର୍ତ୍ତିତ ସହିତ ଆହୃତ ଅନେକ ରାମାୟଣ ଗ୍ରନ୍ଥ ଯଥା ଆନନ୍ଦ ରାମାୟଣ, ଅଧ୍ୟାତ୍ମ ରାମାୟଣ, ଭୋଜଙ୍କ ମହାନାଟକ ଆଦି ବିଭିନ୍ନ ସମୟରେ ଲେଖା ଯାଇଛି । ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀରେ ଲିଖିତ ଭୁଷୁଣ୍ଡିଙ୍କ ରାମାୟଣ ମଧ୍ୟ ସଂସ୍କୃତ ଭାଷାର ଏକ ଶ୍ରେଷ୍ଠ କୃତି । ଏଥିରେ ରାମ ସୀତାଙ୍କ ପ୍ରେମର ତାନ୍ତ୍ରିକ ଦିଗ ଉପରେ ଗୁରୁତ୍ୱ ଦିଆଯାଇଛି ।

ବାଲ୍ମୀକିଙ୍କ ପ୍ରଭାବ ସଂସ୍କୃତ ନାଟ୍ୟକାରମାନଙ୍କ ଉପରେ ମଧ୍ୟ ସମଧିକ ପଡ଼ିଛି । ଏମାନଙ୍କ ପାଇଁ ରାମାୟଣ ଆରମ୍ଭରୁ ହିଁ ପ୍ରେରଣାର ମୁଖ୍ୟ ସ୍ରୋତ ହୋଇ ରହି ଆସିଛି । ବାଲ୍ମୀକି ସୃଷ୍ଟ ଆଦି କାବ୍ୟର ଉଦ୍ଦେଶ୍ୟ ଥିଲା ସାହିତ୍ୟକୁ କଳାତ୍ମକ ରୂପ ଦେବା ଏବଂ ତାହାକୁ ରସ ଓ ସୌନ୍ଦର୍ଯ୍ୟର ଆସ୍ୱାଦନ ନିମିତ୍ତ ଏକ ସୁନ୍ଦର ଭୂମି ରୂପରେ ଗଢ଼ି ତୋଳିବା । ଏହି ଉଦ୍ଦେଶ୍ୟର ପରିପୂର୍ତ୍ତି ଯାଇ ସଂସ୍କୃତ ନାଟକସମୂହରେ ହେଲା । (୧୧) ବୈଦିକ ଆଖ୍ୟାନସମୂହ ଓ କଥୋପକଥନ ଭଙ୍ଗୀରେ ସଜ୍ଜିତ ଉପନିଷଦୀୟ କାହାଣୀସମୂହ ମାନବୀୟ ସୁଖ-ଦୁଃଖ, ଆଶା-ନିରାଶା, ବେଦନା-ଅଶ୍ରୁ ଆଦି ସହିତ ସେତେଟା ସମ୍ବନ୍ଧ ରଖିନଥିଲା । ତାହା ଅଧିକ ପରିମାଣରେ ଚିନ୍ତା । ଚେତନାର ଉର୍ଦ୍ଧ୍ୱତମ ସ୍ଥିତିକୁ ସ୍ପର୍ଶ କରିଥିଲା । କିନ୍ତୁ ରାମାୟଣକାବ୍ୟ ମାନବ-ଜୀବନ ଓ ତତ୍ସମ୍ପର୍କୀୟ ସମ୍ବେଦନା ପ୍ରତି ଅଧିକତର ଦୃକ୍‌ପାତ କରିଥିଲା । ତାହା ଧୂଳି-ମାଟିର ସଂସାରକୁ ଛୁଇଁଥିଲା ଏବଂ ସାଧାରଣ ଓ ବିଜ୍ଞ ଗୋଷ୍ଠୀ ଉଭୟଙ୍କ ରସାସ୍ୱାଦନ ଲାଗି ଖୋରାକ ଯୋଗାଉଥିଲା । ତେଣୁ ନାଟକ-ରଚନାରେ ତାହାର ଆବଶ୍ୟକତା ତଥା ଯଥାର୍ଥତା ଅଧିକତର ଅନୁଭୂତ ହୋଇପାରିଥିଲା । ବାସ୍ତବିକ, ଏଇଥିରେ ହିଁ ତାହା ବିଶେଷ ଭାବରେ ସିଦ୍ଧି ଆଣି ଦେଇପାରିଥିଲା । ଭବଭୂତିଙ୍କ 'ଉତ୍ତର ରାମ-ଚରିତ' କଥା ତ ପୂର୍ବରୁ ଆଲୋଚନା କରାଯାଇଛି । ଏହା ରାମାୟଣର ଉତ୍ତରକାଣ୍ଡ ଉପରେ ଆଧାରିତ । ସେ ଏହା ଛଡ଼ା ରାମାୟଣ କାହାଣୀକୁ ଭିତ୍ତି କରି 'ମହାବୀରଚରିତ' ନାଟକଟି ମଧ୍ୟ ଲେଖିଛନ୍ତି । ଭାସଙ୍କ ତିନୋଟି ନାଟକ 'ବାଳଚରିତ', 'ଅଭିଷେକ' ଓ 'ପ୍ରତିମା' ମଧ୍ୟ ରାମାୟଣରୁ କଥାବସ୍ତୁ ଆହରଣ କରିଛି । ଏହି ତିନୋଟିଯାକ ନାଟକ ଦ୍ୱାରା ସାମଗ୍ରିକ ରାମାୟଣର କାହାଣୀଟିକୁ ସମ୍ପୂର୍ଣ୍ଣ କରାଯାଇଛି । ଭାସଙ୍କ ନାଟକସମୂହରେ ପାଣିନି-ବ୍ୟାକରଣକୁ ସବୁ ଜାଗାରେ ଅନୁସରଣ କରାଯାଇନାହିଁ । ବିଶେଷକରି ସାଧାରଣ ପାତ୍ରପାତ୍ରୀ

ମାନଙ୍କ କଥାବାର୍ତ୍ତାରେ ଦେଶଜ ଶବ୍ଦାବଳୀର ପ୍ରୟୋଗ କରାଯାଇଛି । ଏତଦ୍ଦ୍ୱାରା ଏହା ବାଲ୍ମୀକିଙ୍କ ଶୈଳୀକୁ ନିଷ୍ଠାର ସହିତ ଅନୁସରଣ କରିଛି । ଏହି ନାଟକସମୂହର ଆଉ ଏକ ବୈଶିଷ୍ଟ୍ୟ ହେଲା, ଏଗୁଡ଼ିକରେ ଭାସ କେବଳ ତ ରାମାୟଣର କାହାଣୀ ଉପସ୍ଥାପନା କରିନାହାନ୍ତି, ବରଂ ସେ ତତ୍‌କାଳୀନ ସାମାଜିକ ପୃଷ୍ଠଭୂମିର ସମ୍ୟକ୍ ବ୍ୟାଖ୍ୟା ଓ ସମୀକ୍ଷା ମଧ୍ୟ କରିଛନ୍ତି । ଏହି ବ୍ୟାଖ୍ୟା ଓ ସମୀକ୍ଷା ମାଧ୍ୟମରେ ସେ ଚିରନ୍ତନ ମାନବୀୟ ମୂଲ୍ୟବୋଧ ଓ ସଂବେଦନାର ଅବତାରଣା ମଧ୍ୟ କରିଛନ୍ତି । ଏହାର ପରିପୁଷ୍ଟି ବ୍ୟାସ ନିମ୍ନଲିଖିତ ପଙ୍‌କ୍ତି ଦ୍ୱାରା କରିଛନ୍ତି :

> ଇନ୍ ମେଂ ନାଟକକାର ନେ ରାମ କେ ଜୀବନ ଔର୍ ଉନ୍ କେ କାର୍ଯୋଂ କା ପ୍ରାଚୀନ ହୋତେ ହୁଏ ଭୀ ସର୍ବଥା ନବୀନ ଢଙ୍ଗ୍ ସେ ପ୍ରସ୍ତୁତ କୀ ଗଈ ହୈ । (୧୨)

'ଅଭିଜ୍ଞାନଶାକୁନ୍ତଳମ୍' ନାଟକରେ କାଳିଦାସ ପରିପରିତ୍ୟକ୍ତା ଶକୁନ୍ତଳାଙ୍କର ମାରିଚ ଋଷିଙ୍କ ଆଶ୍ରମରେ ଥାଇ ପୁତ୍ର ଭରତଙ୍କୁ ଜନ୍ମଦେଲେ ବୋଲି ଯେଉଁ ବର୍ଣ୍ଣନା ଅଛି ତାହା ରାମାୟଣ ବର୍ଣ୍ଣିତ ପତିପରିତ୍ୟକ୍ତା ସୀତାଙ୍କର ବାଲ୍ମୀକିଙ୍କ ଆଶ୍ରମରେ ଥିବା ଅବସରରେ ଲବ-କୁଶ ଦୁଇ ପୁତ୍ରଙ୍କୁ ଜନ୍ମ ଦେଇଥିବା କାହାଣୀରୁ ଆନୀତ ଭଳି ମନେହୁଏ । ଦିଙ୍‌ନାଗଙ୍କ (ଅଥବା ଧୀରନାଗଙ୍କ) କୁନ୍ଦମାଳା, ରାଜଶେଖରଙ୍କ 'ବାଲରାମାୟଣ', ମୁରାରି ମିଶ୍ରଙ୍କ 'ଅନର୍ଘରାଘବ', ଜୟଦେବଙ୍କ 'ପ୍ରସନ୍ନରାଘବ' ଓ ରାମଭଦ୍ର ଦୀକ୍ଷିତଙ୍କ 'ଜାନକୀପରିଣୟ' ଆଦି ନାଟକଗୁଡିସମୂହ ମଧ୍ୟ ସଂସ୍କୃତ ନାଟକ-ସାହିତ୍ୟରେ ସମଧିକ ସୁପ୍ରସିଦ୍ଧ । ସଂସ୍କୃତ ନାଟ୍ୟକାର-ମାନେ ବାଲ୍ମୀକିରାମାୟଣ ପ୍ରତି କେତେ ଦୂର ଋଣୀ ତାହାର ସୂଚନା ଦେଇ ମୁରାରି ମିଶ୍ର ତାଙ୍କ ନାଟକରେ ସ୍ପଷ୍ଟ ଭାବରେ କହିଦେଇଛନ୍ତି ଯେ 'ସମସ୍ତ କବିରୂପୀ ବେପାରୀମାନଙ୍କ ପାଇଁ ବାଲ୍ମୀକି ଏକ ବଡ଼ ପୁଞ୍ଜିର ଭଣ୍ଡାର ସୃଷ୍ଟି କରିଯାଇଛନ୍ତି ।' ଏହିପରି ସଂସ୍କୃତ ସାହିତ୍ୟରେ ଆହୁରି ଅନେକ କାବ୍ୟ ଓ ନାଟକ ଅଛି ଯହିଁରେ ଆଦିକବି ବାଲ୍ମୀକିଙ୍କ ରାମାୟଣର ପ୍ରଭାବ ସୁସ୍ପଷ୍ଟ ।

**ପାଲି-ପ୍ରାକୃତ ସାହିତ୍ୟ :**

ସଂସ୍କୃତ ସାହିତ୍ୟ ଭଳି ପାଲି-ପ୍ରାକୃତ ସାହିତ୍ୟ ମଧ୍ୟ ପ୍ରାଚୀନ କାଳରେ ଯଥେଷ୍ଟ ସମୃଦ୍ଧ ଥିଲା । ସଂସ୍କୃତ ରାଜଭାଷା ଥିଲା ବେଳେ ପାଲି-ପ୍ରାକୃତ ଥିଲା ଗଣଭାଷା । ପୂର୍ବ-ଭାରତରେ ପାଲିର ପ୍ରଚଳନ ଥିଲା ବେଳେ ପଶ୍ଚିମ ଓ ଉତ୍ତର-ଭାରତରେ ପ୍ରାକୃତ ଭାଷାରେ ପ୍ରଚଳନ ଥିଲା । ଦକ୍ଷିଣ-ଭାରତରେ ଦ୍ରାବିଡ଼ୀୟ

ଭାଷାମାନ ସେମାନଙ୍କ ସ୍ୱତନ୍ତ୍ର ସ୍ଥିତି ବଜାୟ ରଖିଥିଲା । ଦ୍ରାବିଡ଼ୀୟ ଭାଷାମାନଙ୍କ ସାହିତ୍ୟରେ ରାମାୟଣର ପ୍ରଭାବ ସଂପର୍କରେ ପୃଥକ୍ ଭାବରେ ଆଲୋଚନା କରାଯିବ । ଏହି ଅନୁଚ୍ଛେଦରେ କେବଳ ପାଲି-ପ୍ରାକୃତ ସାହିତ୍ୟରେ ରାମାୟଣର ପ୍ରଭାବ ସମ୍ପର୍କରେ ଆଲୋଚନା କରାଯାଉଛି । ପ୍ରାକୃତକବି ଆଢ୍ୟରାଜ (ଗୁଣାଢ୍ୟ)ଙ୍କ କଥା ତ ପୂର୍ବରୁ କୁହାଯାଇଛି । ପାଲି ଜାତକଗଳ୍ପରେ ଥିବା 'ଦଶରଥ ଜାତକ' (ସଂ. ୪୬୧) ରାମାୟଣ ଉପରେ ଆଧାରିତ । କିନ୍ତୁ ଏଥିରେ କିଛିଟା ବୌଦ୍ଧ ରୂପାନ୍ତର ଘଟିଛି । ରାମଙ୍କୁ ରାମପଣ୍ଡିତ ଓ ଲକ୍ଷ୍ମଣଙ୍କୁ ଲକ୍ଷ୍ମଣପଣ୍ଡିତ ବୋଲି ଆଖ୍ୟା ଦିଆଯାଇ ରାମ, ସୀତା ଓ ଲକ୍ଷ୍ମଣ ଭାଇ-ଭଉଣୀ ବୋଲି କୁହାଯାଇଛି । ଏଭଳି କାହିଁକି କରାଯାଇଛି ତାହା ଅଧିକତର ଗବେଷଣାସାପେକ୍ଷ । ହୁଏତ ବୌଦ୍ଧେତର ଆର୍ଯ୍ୟମାନଙ୍କୁ ସମାଲୋଚନା କରିବା ଉଦ୍ଦେଶ୍ୟରେ ଏହା କରାଯାଇଥିବ । ନହେଲେ ଶାକ୍ୟମାନଙ୍କ ମଧ୍ୟରେ ଭାଇ-ଭଉଣୀଙ୍କ ମଧ୍ୟରେ ସଂଘଟିତ ହେଉଥିବା ବିବାହ ପ୍ରଥାକୁ ଉପଲକ୍ଷ୍ୟ କରି ଏଭଳି କୁହାଯାଇଥିବ । ଏ ସଂପର୍କରେ ଜାଣିରଖିବା ଉଚିତ ଯେ ଶାକ୍ୟମାନେ ଇକ୍ଷ୍ୱାକବଂଶୀ (ଇକ୍ଷ୍ୱାକୁ-ବଂଶୀ) ବୋଲି ଦାବି କରୁଥିଲେ । ସଂପୃକ୍ତ ଜାତକରେ ରାମ-ସୀତା-ଲକ୍ଷ୍ମଣ ମଧ୍ୟ ହେଉଛନ୍ତି ସେହି ଇକ୍ଷ୍ୱାକବଂଶୀ । ଏହି ବଂଶଗତ ସାମ୍ୟ ହେତୁ ଏଭଳି ବିବାହ କଥାର ଉଲ୍ଲେଖ ରହିଥାଇପାରେ । ସେ ଯାହା ହେଉ, ଦଶରଥ-ଜାତକର ସ୍ରଷ୍ଟାଙ୍କ ଉପରେ ରାମାୟଣର ପ୍ରଭାବ ଯେ ପଡ଼ିଛି ଏହା ଅନସ୍ୱୀକାର୍ଯ୍ୟ । ରାମାୟଣରେ ପ୍ରଭାବ ଆଉ ଏକ ଜାତକ ଗଳ୍ପରେ ମଧ୍ୟ ଦେଖାଯାଏ । ତାହା ହେଉଛି ଜୟଦ୍ଦିସ ଜାତକ (ସଂ. ୫୧୩) । ଏଥିରେ ଦଣ୍ଡକାରଣ୍ୟର ଉଲ୍ଲେଖ ଅଛି । ଆଉ ମଧ୍ୟ ରାମଙ୍କ ବନବାସ ସମୟରେ ତାଙ୍କ ଗୌରାଙ୍ଗୀ ମାତା କୌଶଲ୍ୟା କପରି କବାଣର ଅଧିକାରିଣୀ ହୋଇଥିଲେ ତାହାର ମଧ୍ୟ ଉଲ୍ଲେଖ ଅଛି ।

ପ୍ରାକୃତ ଭାଷାରେ ଲିଖିତ ଶ୍ୱେତାମ୍ବର ଜୈନମାନଙ୍କ ରାମାୟଣ ପଦ୍ୟାକାରରେ ଲିଖିତ । ଏହାର ନାମ 'ପୌମଚରିୟମ୍' ଏବଂ ଏହାର ସ୍ରଷ୍ଟା ବିମଲସୂରି । ଏହା ମହାବୀରଙ୍କ ସିଦ୍ଧିପ୍ରାପ୍ତିର ୫୩୦ ବର୍ଷ ପରେ ଲିଖିତ । ପଣ୍ଡିତମାନେ ଏହାକୁ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ସ୍ଥାନିତ କରିଥାନ୍ତି । ବାଲ୍ମୀକି-ରାମାୟଣର ରାମ, ଲକ୍ଷ୍ମଣ, ସୀତା, ରାବଣ, କୁମ୍ଭକର୍ଣ୍ଣ ଆଦି ଚରିତ୍ରସମୂହ ଏଥିରେ ଅତି ସୁନ୍ଦର ଭାବରେ ଉପସ୍ଥାପିତ । ଏହି ଗ୍ରନ୍ଥ କିନ୍ତୁ ମୂଳ ରାମାୟଣର ଅନୁବାଦ ନୁହେଁ । ଏହା ସାମାନ୍ୟ କେତେକ ପରିବର୍ତ୍ତନ ସହିତ ମୂଳ ରାମାୟଣର ଏକ ଜୈନ ରୂପାନ୍ତର ।

ଏହି ଆଲୋଚନାରୁ ଉପଲବ୍‌ଧ ହେବ ଯେ ପାଲି-ପ୍ରାକୃତ ସାହିତ୍ୟରେ ମଧ୍ୟ ରାମାୟଣ ସମଧିକ ପ୍ରଭାବ ବିସ୍ତାର କରିଛି । ଏହା ରାମାୟଣ-ପରମ୍ପରାର ଲୋକପ୍ରିୟତାର ନିଦର୍ଶନ ।

**କନ୍ନଡ଼ ସାହିତ୍ୟ :**

କର୍ଣ୍ଣାଟକରେ ଜୈନଧର୍ମର ପ୍ରଭାବ ବହୁତ ଘନ ଘନ ଥିଲା । ତେଣୁ କନ୍ନଡ଼ ଭାଷାରେ ଯେଉଁ ରାମାୟଣମାନଙ୍କର ସୃଷ୍ଟି ହୋଇଥିଲା ସେଗୁଡ଼ିକରେ ଜୈନ-ରାମାୟଣର ପ୍ରଭାବ ବିଶେଷ ଭାବରେ ଥିଲା । ତାହା ଛଡ଼ା ବାଲ୍ମୀକି-ରାମାୟଣ, ଅଧ୍ୟାତ୍ମ ରାମାୟଣ ଓ ଆନନ୍ଦ ରାମାୟଣ ଆଦି ଗ୍ରନ୍ଥ ସମୂହର ମିଶ୍ରିତ ଅନୁକୃତିରେ ରାମାୟଣମାନ ମଧ୍ୟ ରଚିତ ହୋଇଥିଲା । ବଡ଼ ସୁଖର ବିଷୟ ହେଲା, ଏବେ ମଧ୍ୟ କନ୍ନଡ଼ ଭାଷାରେ ରାମାୟଣ ଗ୍ରନ୍ଥମାନ ରଚିତ ହେଉଛି । ଅଧ୍ୟାପକ କେ. ଭି. ପୁଟ୍ଟପ୍‌ପା ଚଳିତ ଶତାବ୍ଦୀରେ ତାଙ୍କ ଯୁଗାନ୍ତକାରୀ 'ଶ୍ରୀରାମାୟଣଦର୍ଶନ' ପୁସ୍ତକଟି ଇଂରାଜୀରେ ଲେଖିଛନ୍ତି ଏବଂ ସେଥିପାଇଁ ସାହିତ୍ୟ ଏକାଡେମୀ ଓ ଜ୍ଞାନପୀଠ ପୁରସ୍କାର ପାଇଛନ୍ତି । ଏହା ଇଂରାଜୀ ଭାଷାରେ ଲେଖା ହୋଇଥିଲେ ହେଁ ବାଲ୍ମୀକିରାମାୟଣର କର୍ଣ୍ଣାଟକରେ କିଭଳି ପ୍ରଭାବ ଅକ୍ଷୁଣ୍ଣ ରହିଛି, ତାହାର ସୂଚନା ଦେଉଛି । ଏତଦ୍‌ବ୍ୟତୀତ ଚଳିତ ଶତାବ୍ଦୀରେ କନ୍ନଡ଼ ଭାଷାରେ ଲିଖିତ ମସ୍ତି ଭେଙ୍କଟେଶ ଆୟାରଙ୍କ ଲିଖିତ 'ଶ୍ରୀରାମ ପଟ୍ଟାଭିଷେକ' ଗ୍ରନ୍ଥଟି ବାଲ୍ମୀକିରାମାୟଣର କାହାଣୀ ଉପରେ ଆଧାରିତ । ଯେଉଁ ଭାରତୀୟ ଭାଷାଗୁଡ଼ିକରେ ରାମାୟଣ-ପରଂପରାକୁ ଆଧାର କରି ଏବେ ମଧ୍ୟ ନବୀନତାର ସ୍ପର୍ଶ ଦେଇ ନୂତନ ନୂତନ ସୃଷ୍ଟିଶୀଳ କୃତିମାନ ଲେଖାଯାଉଛି, ତନ୍ମଧ୍ୟରେ କନ୍ନଡ଼ ଭାଷା ଏକ ପ୍ରମୁଖ ସ୍ଥାନର ଅଧିକାରୀ ।

ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ କରି କର୍ଣ୍ଣାଟକରେ ଗୋଟିଏ ପ୍ରକାର ସାହିତ୍ୟ ଓ ନୃତ୍ୟ ଚାଲିଆସୁଛି । ଏହା ସର୍ବତ୍ର ଅତି ଲୋକପ୍ରିୟତା ହାସଲ କରିଛି । ଏହାର ନାମ 'ଯକ୍ଷଗାନ' । ଏଥିରେ ଗାନ ଓ ନୃତ୍ୟ ମାଧ୍ୟମରେ ରାମାୟଣର ବିଭିନ୍ନ କାହାଣୀମାନ ଉପସ୍ଥାପିତ କରାଯାଇଥାଏ । ଏହା ଛଡ଼ା ଅନେକ ସ୍ଥାନରେ ନିୟମିତ ଭାବରେ ଏହାର ପାରାୟଣ ମଧ୍ୟ କରାଯାଉଛି । ପାରାୟଣ ଶେଷରେ ଅତିଥିମାନଙ୍କ ଭୋଜନରେ ଆପ୍ୟାୟିତ କରାଯିବା ସାଥେ ସାଥେ ରାମଙ୍କ ପଟ୍ଟାଭିଷେକ କରାଯିବାର ବିଧି ଅଛି । ଏଠାରେ ସମସ୍ତ ବ୍ରାହ୍ମଣ-ସମ୍ପ୍ରଦାୟର ବ୍ୟକ୍ତିଙ୍କ ଘରେ ରାମଙ୍କ ଜନ୍ମତିଥି ଚୈତ୍ର ଶୁକ୍ଳପକ୍ଷର ନବମୀକୁ 'ରାମନବମୀ'ର ମାନ୍ୟତା ଦେଇ ପାଳନ କରାଯାଇଥାଏ । ଦ୍ୱାଦଶ ଶତାବ୍ଦୀର

ମଧ୍ୟଯୁଗରେ ରାମକଥାର ପ୍ରଚଳନ ଖୁବ୍ ଜୋର୍‌ସୋର୍‌ରେ ଚାଲିଲା । ଏହା ଥିଲା ନାଗଚନ୍ଦ୍ରଙ୍କ ସମୟ । ସେ ଜୈନ ପୁରାଣ ଶୈଳୀରେ ତାଙ୍କ ରାମାୟଣ ଗ୍ରନ୍ଥ ରଚନା କଲେ । ଏହି କାହାଣୀ ନାନା ପ୍ରକାର ଜୈନ ଚନ୍ତାଧାରାକୁ ଅନୁସରଣ କରିଥିବା ହେତୁ ଏଥିରେ ମୂଳ ରାମାୟଣର ନାନା ପ୍ରକାର ବିଚ୍ୟୁତି ସ୍ୱାଭାବିକ ଢଙ୍ଗରେ ଦେଖାଯାଇଥିଲା । ତାଙ୍କ ଆଗରେ ସେତେବେଳେ ଥିଲା ଦୁଇଟି ରାମକଥା । ଗୋଟିଏ ହେଉଛି ବିମଳସୂରିଙ୍କ ପ୍ରାକୃତ ରଚନା 'ପୌମଚରିୟମ୍' (ପଦ୍ମଚରିତ) ଏବଂ ଗୁଣଭଦ୍ରଙ୍କ ସଂସ୍କୃତ ରଚନା 'ଉତ୍ତରପୁରାଣ' । ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀର କବି ଗୁରୁଣ୍ଡରାୟ କନ୍ନଡ଼ ଭାଷାରେ 'ରାମକଥା' ରଚନା କରିଛନ୍ତି । କବି ନରହରି (ଖ୍ରୀଷ୍ଟୀୟ ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ) କନ୍ନଡ଼ଭାଷାରେ ସପ୍ତପଦୀ ଶୈଳୀରେ ରାମକଥା ରଚନା କରିଛନ୍ତି । ଏଥିର ୧୧୨ ସର୍ଗରୁ ୫୫ଟି ସର୍ଗ ବାଲ୍ମୀକି ରାମାୟଣର ଯୁଦ୍ଧକାଣ୍ଡରୁ ଆନୀତ । ଏଥିରେ ମଧ୍ୟ ମୂଳ ରାମାୟଣଠାରୁ ଅନେକ ବିଚ୍ୟୁତି ଦେଖାଯାଇଥାଏ । ଏଥିରେ ରାବଣ ଶିବଧନୁ ଭଙ୍ଗ କରିବାର ଚେଷ୍ଟା କରିଛି; କିନ୍ତୁ ବିଫଳ ମନୋରଥ ହୋଇ ଲଙ୍କାକୁ ଫେରି ଆସିଛି । ଏହା ଛଡ଼ା ସୀତାଙ୍କ ସ୍ୱୟଂବରରେ ଦେବତାମାନେ ମଧ୍ୟ ଭାଗ ନେଇ-ଥିବାର ବର୍ଣ୍ଣନା ଏଥିରେ ଅଛି । ପ୍ରାୟ ୧୭ଶ ଶତାବ୍ଦୀର ପ୍ରାରମ୍ଭରେ କର୍ଣ୍ଣାଟକର ରାଜା ଚାମରାଜ ଓ୍ୱାଡ଼ିଆର୍ ବିରୂପାକ୍ଷ ବୋଲି ଜଣେ କବିଙ୍କୁ ବାଲ୍ମୀକି ରାମାୟଣର କନ୍ନଡ ଭାଷାରେ ଗଦ୍ୟାନୁବାଦ କରିବା କାର୍ଯ୍ୟରେ ନିୟୋଜିତ କରିଥିଲେ । ସେ ଯେଉଁ ସାହିତ୍ୟକୃତିଟି ତିଆରି କଲେ ତାହାର ନାମ 'ଚାମରାଜୋକ୍ତିବାଣୀବିଳାସ ରାମାୟଣ' । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବିଖ୍ୟାତ କନ୍ନଡ଼ ସାହିତ୍ୟକାର ମୁଦ୍ଦାନ ଗଦ୍ୟରେ ରାମାୟଣ-କାହାଣୀ ଲେଖିଲେ ଯାହାର ନାମ 'ରାମାଶ୍ୱମେଧ' । ଏହା ଆଧୁନିକ ଶୈଳୀରେ ଲିଖିତ ଏବଂ ଏବେ ମଧ୍ୟ କନ୍ନଡ଼ଭାଷାଭାଷୀମାନଙ୍କ ଦ୍ୱାରା ଅଦୃତ । ସେ ମଧ୍ୟ କନ୍ନଡ଼ ଭାଷାରେ ସପ୍ତପଦୀ ଶୈଳୀରେ 'ଅଧ୍ୟାତ୍ମରାମାୟଣ' ଓ 'ରାମପଟ୍ଟାଭିଷେକ' ବୋଲି ଆଉ ଦୁଇଟି ଗ୍ରନ୍ଥ ଲେଖିଛନ୍ତି । ଡକ୍ଟର କେ. ଭି. ପୁଟ୍ଟାପପା (କୁଭେମ୍ପୁ)ଙ୍କ 'ରାମାୟଣ ଦର୍ଶନ' ଓ ଡକ୍ଟର ମସ୍ତି ଭେଙ୍କଟେଶ ଆୟଙ୍ଗାର୍‌ଙ୍କ 'ରାମପଟ୍ଟାଭିଷେକ' ପୁସ୍ତକଦ୍ୱୟ ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । ଏହି ପୁସ୍ତକଦ୍ୱୟ ଯଥାକ୍ରମେ ଚଳିତ ଶତାବ୍ଦୀର ୪ର୍ଥ ଦଶକ ଓ ୭ମ ଦଶକ ମଧ୍ୟରେ ଲିଖିତ । ଦୁଇଟିଯାକ ଗ୍ରନ୍ଥ ପ୍ରାଚୀନ କାହାଣୀର ଆଶ୍ରୟ ନେଇଥିଲେ ମଧ୍ୟ ଆଧୁନିକ ଶୈଳୀ ଓ ଅବବୋଧକୁ ଅକ୍ଷୁଣ୍ଣ ରଖିଛି । ସେଥିପାଇଁ ଏହି ଗ୍ରନ୍ଥଦ୍ୱୟ କନ୍ନଡ଼ ସାହିତ୍ୟରେ ଦୁଇଟି ମାଇଲ-ଖୁମ୍ବ ଭଳି ଶୋଭା ପାଉଛି ।

ଏହି ଆଲୋଚନାରୁ ଜାଣିହେବ, କନ୍ନଡ଼ ସାହିତ୍ୟରେ ବାଲ୍ମୀକି-ରାମାୟଣର ପ୍ରଭାବ କେତେ ନିବିଡ଼, ଗଭୀର ଓ ଯୁଗାନ୍ତପ୍ରସାରୀ ।

**ମାଲୟାଲମ ସାହିତ୍ୟ :**

ଦକ୍ଷିଣ ଭାରତର ଚାରି ଦ୍ରାବିଡ଼ ଭାଷାରୁ ମାଲୟାଲମ ଅନ୍ୟତମ । ଆଧୁନିକ କେରଳର ଅଧିବାସୀମାନେ ଏହା କହିଥାନ୍ତି । ବହୁକାଳ ଧରି ଏହି ଅଞ୍ଚଳରେ ତାମିଲ ଭାଷାର ପ୍ରଚଳନ ଥିଲା । ଅନେକଗୁଡ଼ିଏ କାରଣରୁ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଏଠାରେ ସଂସ୍କୃତ ଭାଷାର ସମ୍ମିଶ୍ରଣରେ ଗୋଟିଏ ନୂତନ ଭାଷାର ଅଭ୍ୟୁଦୟ ହେଲା ଏବଂ ତାହା ସାଥେ ସାଥେ ଏକ ନୂତନ ଲିପିର ମଧ୍ୟ ଅଭ୍ୟୁଦୟ ହେଲା । ଏହି ନୂତନ ଭାଷା ସୃଷ୍ଟିର ମୁଖ୍ୟ କାରଣ ଥିଲା ଉତ୍ତର ଓ ପୂର୍ବ ଦିଗରୁ ଆର୍ଯ୍ୟମାନଙ୍କର ଏ ଦେଶକୁ ଆଗମନଜନିତ ପ୍ରଭାବ । ଏହି ଅଞ୍ଚଳର ଦ୍ରାବିଡ଼-ଅଧିବାସୀମାନେ ଆର୍ଯ୍ୟାନୁଗତ ହେଲେ ଏବଂ ଏହି ଭାଷାରେ ଅନେକ ସଂସ୍କୃତ ଶବ୍ଦର ଅନୁପ୍ରବେଶ ଘଟିଲା । ଏବେ ମଧ୍ୟ କେରଳରେ ଅନେକ ନୈଷ୍ଠିକ ବ୍ରାହ୍ମଣ ଅଛନ୍ତି । ଆର୍ଯ୍ୟମାନଙ୍କ ଆଗମନ ସାଥେ ସାଥେ ରାମାୟଣ ଓ ମହାଭାରତ, ଏହି ଦୁଇ ମହାକାବ୍ୟ ମଧ୍ୟ ଏ ଅଞ୍ଚଳକୁ ଆସି ଧୀରେ ଧୀରେ ଲୋକପ୍ରିୟ ହେବାକୁ ଲାଗିଲା । ଏହି ପୃଷ୍ଠଭୂମିରେ ଯେତେବେଳେ ମାଲୟାଲମ ଭାଷା ଓ ସାହିତ୍ୟର କ୍ରମବିକାଶ ହେବାକୁ ଲାଗିଲା, ତାହା ସ୍ୱାଭାବିକ ଭାବରେ ଏହି ଦୁଇ ମହାକାବ୍ୟ ବର୍ଣ୍ଣିତ ସଂସ୍କୃତିଦ୍ୱାରା ପ୍ରଭାବାନ୍ୱିତ ହେଲା । ଏହିପରି ଭାବରେ ବାଲ୍ମୀକି-ରାମାୟଣର ପ୍ରଭାବ ମାଲୟାଲମ ସାହିତ୍ୟ ଉପରେ ଆସି ପଡ଼ିଲା ଯାହାକି ଏ ପର୍ଯ୍ୟନ୍ତ ମଧ୍ୟ ଅକ୍ଷୁଣ୍ଣ ଅଛି । ଏଠାକାର ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ଧର୍ମାନ୍ତର ଗ୍ରହଣ କରି ଖ୍ରୀଷ୍ଟିୟାନ ହୋଇଥିଲେ ମଧ୍ୟ ନିଜକୁ ରାମାୟଣ ପରଂପରାର ନିବିଡ଼ ବନ୍ଧନରୁ ମୁକ୍ତ କରିବାକୁ ଇଚ୍ଛା କରି ନାହାନ୍ତି ।

ପ୍ରାଚୀନ କାଳରୁ କେରଳର ମନ୍ଦିର ପ୍ରାଙ୍ଗଣସମୂହରେ ସଂସ୍କୃତ ଭାଷାରେ ଲିଖିତ ନାଟକ, ଯାହା ଆଦି ଅଭିନୀତ ହେଉଥିଲା । ବିଷୟବସ୍ତୁ ଥିଲା ରାମାୟଣ ଓ ମହାଭାରତରୁ ଆନୀତ । ସାଧାରଣ ଲୋକେ ସଂସ୍କୃତ ଭାଷା ବୁଝି ପାରୁ-ନଥିବାରୁ ସଙ୍ଗେ ସଙ୍ଗେ ଏହାର ଅର୍ଥକୁ ପ୍ରଚଳିତ ଲୋକଭାଷାରେ (ତାମିଲ୍‌ର ଏକ ସ୍ଥାନୀୟ କଥିତ ଭାଷାରେ) ବୁଝାଇ ଦିଆଯାଉଥିଲା । ଏହି କ୍ରମରେ ଅନେକ ସଂସ୍କୃତ ଶବ୍ଦ ଏଥିରେ ପଶିଯାଇ ଧୀରେ ଧୀରେ ଗୋଟିଏ ପୁଷ୍କଳ ସୁସଂସ୍କୃତ ଭାଷା ଗଢ଼ିଉଠିଲା । ତାହାର ନାମ ମାଲୟାଲମ୍ । ଏହି ମିଶ୍ରଣ ଫଳରେ ଏଭଳି ଏକ ନୂତନ ରୁଚିର ଶୈଳୀର ଆବିର୍ଭାବ ହେଲା ଯାହାକୁ କୁହାଗଲା 'ମଣିପ୍ରବାଳମ୍' । କେ. ଏମ୍. ଜର୍ଜ ଏହାର ପୁଷ୍ଟି ସାଧନ କରି କହନ୍ତି ;

The influence of Sanskrit was so dominant on the active language of Kerala that it produced a peculiar variety of literary dialect called manipravalam. (୧୩)

ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀ ପୂର୍ବରୁ ମାଲୟାଲମ୍ ଭାଷାରେ କୌଣସି ପୁସ୍ତକ ରଚିତ ହୋଇନଥିଲା । ଏ ପର୍ଯ୍ୟନ୍ତ ୧୨ଶ ଶତାବ୍ଦୀରେ ଲିଖିତ 'ରାମଚରିତମ୍'କୁ ମାଲୟାଲମ୍ ଭାଷାର ଆଦ୍ୟତମ ରଚନା ବୋଲି ଧରାଯାଇଥାଏ । 'ରାମଚରିତମ୍' ଏକ ଚତୁଷ୍ପଦୀ ସମ୍ବଳିତ କାବ୍ୟ । ତାମିଲ କାବ୍ୟମାନଙ୍କ ଶୈଳୀରେ ଏହା ଲିଖିତ । ଏଥିରେ ସର୍ବମୋଟ ୧୮୧୪ଟି ଚତୁଷ୍ପଦୀ ଓ ୧୬୪ଟି ଭାଗ ଅଛି । ଏହା ବାଲ୍ମୀକିରାମାୟଣର ଯୁଦ୍ଧକାଣ୍ଡକୁ ଆଧାର କରି ରଚିତ । ସଂପୂର୍ଣ୍ଣ ବାଲ୍ମୀକିରାମାୟଣ ସହଜ-ସରଳ ମାଲୟାଲମ ଭାଷାରେ ଆସେ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀରେ 'କନ୍ନସ୍ସ ରାମାୟଣମ୍' ପୁସ୍ତକ ମାଧ୍ୟମରେ । ଏହି କାବ୍ୟ ମଧ୍ୟ ଚତୁଷ୍ପଦୀ ଶୈଳୀରେ ଲିଖିତ ଏବଂ ଏଥିରେ ସର୍ବମୋଟ ୩୦୫୯ଟି ଚତୁଷ୍ପଦୀର ସମାହାର ଘଟିଛି । ବିଖ୍ୟାତ କବି ରାମ ପାନିକର (ଅନ୍ୟ ନାମ କନ୍ନସ୍ସ) ଏହାର ସ୍ରଷ୍ଟା । ଏହାର ସାହିତ୍ୟିକ ଗୁଣ ଅତି ଉଚ୍ଚ ମାନର । ଏହା ପରେ ଆସେ କବି ଆୟାପ୍ପିଲ୍ଲି ଆଶାନ୍‌ଙ୍କ ସୃଷ୍ଟି 'ରାମକଥାପ୍ପାଟ୍ଟୁ' । ଏହା ମଧ୍ୟ ବାଲ୍ମୀକିରାମାୟଣର ଅନୁବାଦ । ଏହା ୩୧୬୩ଟି ପଦ ଓ ୨୭୯ଟି ଭାଗ ସଂବଳିତ । ଏହା କିନ୍ତୁ 'କନସ୍ସ ରାମାୟଣମ୍', ଓ 'ରାମଚରିତମ୍' କାବ୍ୟଦ୍ୱୟ ଭଳି ସେତେଟା ଉଚ୍ଚ ମାନର ନୁହେଁ ଏବଂ ତେଣୁ ଏହାର ସେତେଟା ଆଦୃତ ନାହିଁ ।

ଏହା ପରେ ଆସେ ପୂନମ୍ ନମ୍ପୁତିରିଙ୍କ ଦ୍ୱାରା ସୃଷ୍ଟ 'ରାମାୟଣ ଚମ୍ପୂ' । ଏହା ମଧ୍ୟ ୧୫ଶ ଶତାବ୍ଦୀରେ ଲିଖିତ । ଏହା ବାଲ୍ମୀକି-ରାମାୟଣର ଅନୁବାଦ ନୁହେଁ । ଅନ୍ୟ ପକ୍ଷରେ ଏହା ତାହାର ଛାୟାରେ ଲିଖିତ । ଏହାର ଆରମ୍ଭ ହୋଇଛି ରାବଣଜନ୍ମରେ ଏବଂ ଶେଷ ହୋଇଛି ରାମଙ୍କ ସ୍ୱର୍ଗାରୋହଣରେ । ଏହା ଏକ ଉଚ୍ଚ ମାନର ଗ୍ରନ୍ଥ ଏବଂ ଗାଢ ଶୈଳୀରେ ଲିଖିତ । ଭୋଜଙ୍କ 'ରାମାୟଣ ଚମ୍ପୂ'ର ଶୈଳୀକୁ ଏହା ଆଶ୍ରୟ କରିଛି । ଏଥିରେ କୋଡ଼ିଏଟି ଭାଗ ବିଦ୍ୟମାନ । ପଣ୍ଡିତମଣ୍ଡଳୀ ଦ୍ୱାରା ଏହା ବିଶେଷ ଭାବରେ ଆଦୃତ ହୋଇଥିଲା । ତାହା ପରେ ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀରେ ସୃଷ୍ଟି ହୁଏ 'ଅଧ୍ୟାତ୍ମ ରାମାୟଣ'ର ଅନୁବାଦ । ଏହାର ଅନୁବାଦକ ଟୁଞ୍ଚାଟ୍ଟୁ ଏଝୁତ୍ତଚ୍ଛନ୍ । ଏହା ଏକ ଉଚ୍ଚମାନର ଗ୍ରନ୍ଥ । କେରଳର ହିନ୍ଦୁ ପରିବାରମାନଙ୍କରେ ଏହା ଆମୂଳଚୂଳ ଥରେ ଲେଖାଏଁ ଆବୃତ୍ତି

ହେବାକୁ ଲାଗିଲା । କାଳକ୍ରମେ ଏହି ଆବୃତ୍ତି ଅଣ-ହିନ୍ଦୁ ପରିବାରମାନଙ୍କ ମଧ୍ୟରେ ବି ପ୍ରବେଶ କଲା । ଏଚ୍. ଗୁଣ୍ଡର୍ଟ ଏହାକୁ 'କିଲିପ୍ପାଟ୍ଟୁ' (ଶୁକସଂଗୀତ) ନାଁ ଦେଇଛନ୍ତି; କାରଣ ତାଙ୍କ ମତରେ ଏକ ଦିବ୍ୟ ଶୁକ ମୁଖରୁ ସେ ଏହା ଶୁଣିଥିଲେ । ଏହା ମୂଳ ଅଧ୍ୟାତ୍ମ ରାମାୟଣର ଅନୁବାଦ କେବଳ ନୁହେଁ; ଏଥିରେ କବିଙ୍କ ନିଜସ୍ୱ ସୃଷ୍ଟିଶୀଳତାର ଅନେକ ନିଦର୍ଶନ ଦେଖିବାକୁ ମିଳିଥାଏ । ଏହି ଗ୍ରନ୍ଥସୃଷ୍ଟିର ପ୍ରାୟ ଶହେ ବର୍ଷ ପରେ କୋଟ୍ଟାୟମର ରାଜା କାବ୍ୟ-ଶୈଳୀରେ ସଂପୂର୍ଣ୍ଣ ବାଲ୍ମୀକିରାମାୟଣର ଅନୁବାଦ ମାଲୟାଲମ ଭାଷାରେ କରନ୍ତି । ନିକଟ ଅତୀତରେ ଉଲ୍ଲୁଥୋଲ ବାଲ୍ମୀକି-ରାମାୟଣର ଶ୍ଳୋକାନୁକ୍ରମରେ କାବ୍ୟିକ ଅନୁବାଦ କରିଛନ୍ତି । ଏହି ଅନୁବାଦ ବିଶ୍ୱସନୀୟ ହେବା ସଙ୍ଗେ ସଙ୍ଗେ ସୁଶ୍ରାବ୍ୟ, ସୁପାଠ୍ୟ ଓ ସୁସ୍ୱାଦ୍ୟ ହୋଇପାରିଛି । ଏହିପରି ଭାବରେ ମାଲୟାଲମରେ ବାଲ୍ମୀକିରାମାୟଣର ଅଥବା ତଦାଶ୍ରିତ ସଂସ୍କୃତ ଭାଷାରେ ସୃଷ୍ଟ ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକର ଅନେକଗୁଡ଼ିଏ ଅନୁବାଦ ବିଭିନ୍ନ ସମୟରେ ହୋଇ ଆସିଛି । ତାହା ସଙ୍ଗେ ସଙ୍ଗେ ଏହି ରାମାୟଣର ଅନୁସରଣରେ ଲିଖିତ ତୁଳସୀଦାସଙ୍କ ରାମଚରିତମାନସ ଭଳି ଅନ୍ୟାନ୍ୟ ଭାଷାରେ ସୃଷ୍ଟ ଗ୍ରନ୍ଥଗୁଡ଼ିକର ମଧ୍ୟ ଅନୁବାଦ ହୋଇ ଆସିଛି ।

ନାଟକ ଓ ନୃତ୍ୟ ମାଧ୍ୟମରେ ମଧ୍ୟ କେରଳରେ ରାମକଥାର ପ୍ରଚାର ଓ ପ୍ରସାର ହୋଇ ଆସୁଛି । ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀର ମଧ୍ୟଭାଗରେ ଏଠାରେ ଗଢ଼ି ଉଠିଥିବା ପ୍ରସିଦ୍ଧ ନୃତ୍ୟ 'କଥକାଳି' ନୃତ୍ୟ ନାଟିକା ରାମାୟଣ ଉପରେ ଆଧାରିତ ବିଭିନ୍ନ ଆଖ୍ୟାନକୁ ଆଶ୍ରୟ କରିଥାଏ । ଆଉ ଏକ ନାଟ୍ୟ-ଶୈଳୀର ନାମ 'ତୁଲ୍ଲାଇ' ଯାହାର ଆରମ୍ଭ ୧୮ଶ ଶତାବ୍ଦୀର ମଧ୍ୟଭାଗରେ ହୋଇଥିଲା । ଏହାର ସ୍ରଷ୍ଟା ଥିଲେ ପ୍ରସିଦ୍ଧ ବ୍ୟଙ୍ଗ୍ୟ କବି କୁଞ୍ଚନ୍ ନାମ୍ବିୟାର । ଏହା ଏକକ ନୃତ୍ୟନାଟ୍ୟ । ଏଥିରେ ବିଭିନ୍ନ ପୁରାଣରୁ କଥାବସ୍ତୁମାନ ଆହୃତ ହୋଇ ସର୍ବମୋଟ ୪୦ଟି ନୃତ୍ୟନାଟ୍ୟର ସଂକଳନ ହୋଇଛି । ତନ୍ମଧ୍ୟରୁ ରାମାୟଣ-ଆଧାରିତ ନୃତ୍ୟନାଟ୍ୟର ସଂଖ୍ୟା ଆଠ । ଗୋଟିଏ ପ୍ରକାର ଗ୍ରାମ୍ୟନୃତ୍ୟର ନାମ ହେଉଛି 'ତୋଲପାବକତ୍ତୁ' ଯାହା ପାଲଘାଟର କାଳୀ-ମନ୍ଦିରମାନଙ୍କରେ ଅନୁଷ୍ଠିତ ହୋଇଥାଏ । ଏଥିରେ ଚର୍ମନିର୍ମିତ ପୁତ୍ତଳିକାମାନଙ୍କର ନୃତ୍ୟ ପ୍ରଦର୍ଶିତ କରାଯାଇଥାଏ । ଏହି ନୃତ୍ୟର ଚରିତ୍ରମାନେ ରାମାୟଣରୁ ଆନୀତ । ମୁଖ୍ୟ ପୁତ୍ତଳିକା-ନର୍ତ୍ତକଙ୍କ ଦ୍ୱାରା ନୃତ୍ୟର ବିଷୟବସ୍ତୁର ବର୍ଣ୍ଣନା କରାଯାଇଥାଏ । ଅବଶ୍ୟ ନୃତ୍ୟର ବିଷୟବସ୍ତୁସମୂହ ବାଲ୍ମୀକିରାମାୟଣରୁ ଆନୀତ ନହୋଇ ଆନୀତ ହୋଇଥାଏ ତାମିଲ୍ 'କମ୍ବମ୍ ରାମାୟଣ'ରୁ ଯାହା କି ବାଲ୍ମୀକିରାମାୟଣ ଉପରେ ଆଧାରିତ, ଯଦିଓ ଏହା ଏକ ସର୍ଜନାତ୍ମକ କାବ୍ୟ ।

ରଙ୍ଗମଞ୍ଚରେ ମଧ୍ୟ ରାମକଥା ଉପରେ ଆଧାରିତ ନାଟକମାନ ଖୁବ୍ ପ୍ରତିଷ୍ଠା ଓ ଲୋକପ୍ରିୟତା ହାସଲ କରିଛି । ଇ. ଭି. କୃଷ୍ଣ ପିଲ୍ଲାଇଙ୍କ 'ରାମରାଜାଭିଷେକମ୍', ସି. ଏନ୍. ଶ୍ରୀକଣ୍ଠନ୍ ନାୟାର୍‌ଙ୍କ 'କାଞ୍ଚନ ସୀତା' ଓ ଥିକୋଡ଼ିୟାନ୍‌ଙ୍କ 'ପୁଷ୍ପବୃଷ୍ଟି' ଆଦି ନାଟକସମୂହକୁ ଉଦାହରଣ ସ୍ୱରୂପ କଥା ଯାଇପାରେ ।

ଏହିପରି ଭାବରେ ମାଲୟାଲମ୍ ସାହିତ୍ୟକୁ ବିଭିନ୍ନ ଭାବରେ ରାମକଥା ଯୁଗ-ଯୁଗ ଧରି ଖାଦ୍ୟସାର ଯୋଗାଇ ଆସିଛି । ଏହା ଫଳରେ ମୂଳ ସଂସ୍କୃତ ଗ୍ରନ୍ଥର ମୌଳିକତାରକ୍ଷା କରାଯିବା ସହିତ ଅନେକଗୁଡ଼ିଏ ସୁନ୍ଦର-ସୁନ୍ଦର ସର୍ଜନାତ୍ମକ ସାହିତ୍ୟକୃତିମାନଙ୍କର ସୃଷ୍ଟି ହୋଇପାରିଛି ।

**ତେଲୁଗୁ ସାହିତ୍ୟ :**

ଦକ୍ଷିଣଭାରତର ଚାରୋଟି ମୁଖ୍ୟ ଭାଷା ହେଲା ତେଲୁଗୁ, ତାମିଲ, କନ୍ନଡ଼ ଓ ମାଲୟାଲମ । ଏହି ଚାରୋଟିଯାକ ଭାଷାର ସାହିତ୍ୟ ଖୁବ୍ ଉନ୍ନତ ଏବଂ ଗୋଟିଏ ଗୋଟିଏ ଉନ୍ନତ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଅତି ପ୍ରାଚୀନ କାଳରୁ ହିଁ ରାମାୟଣ ଓ ମହାଭାରତର ଯୁଗାନ୍ତକାରୀ ପ୍ରଭାବ ଫଳରେ ଏହିସବୁ ଅଞ୍ଚଳର ସାହିତ୍ୟ ଓ ସଂସ୍କୃତର ମହାସ୍ରୋତରେ ଭକ୍ତିକ ଧାରାର ସଂଯୋଗ ଘଟିଛି । ଯଦିଓ ଆମେ ତେଲୁଗୁ ଭାଷାର ଅଭିଲେଖମାନ ଖ୍ରୀଷ୍ଟୀୟ ୬ଷ୍ଠ-୭ମ ଶତାବ୍ଦୀରେ ହୋଇ ଥିବାର ପ୍ରମାଣ ପାଇଥାଉଁ, ତଥାପି ସାହିତ୍ୟ ହିସାବରେ ଏହାର ଆରମ୍ଭ ହୋଇଥାଏ ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରେ । ଏହି ମତ ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ସୁନୀତିକୁମାର ଚାଟାର୍ଜିଙ୍କ ନିମ୍ନୋକ୍ତ ମନ୍ତବ୍ୟ ଦ୍ୱାରା ପରିପୁଷ୍ଟ :

> Although we have some Telugu inscriptions dating from the 6th-7th century A D, the literary career of Telugu started from the 12th century A. D. (୧୪)

ତେଲୁଗୁ ଆନ୍ଧ୍ରମାନଙ୍କର ଭାଷା । ଏବକାର ଆନ୍ଧ୍ରପ୍ରଦେଶ ଛଡ଼ା ଓଡ଼ିଶା, ତାମିଲନାଡ଼ୁ, କର୍ଣ୍ଣାଟକ ଓ ମଧ୍ୟପ୍ରଦେଶର କେତେକ ଅଞ୍ଚଳରେ ତେଲୁଗୁଭାଷା-ଭାଷୀମାନେ ଅଛନ୍ତି । ସେମାନେ ହେଉଛନ୍ତି ହିନ୍ଦୀ ପଛକୁ ଭାରତର ଦ୍ୱିତୀୟ ବୃହତ୍ତମ ଭାଷାଭାଷୀ ସମାଜ । ମେଗାସ୍ଥିନିସ୍‌ଙ୍କ (ଖ୍ରୀ: ପୂ ୪ର୍ଥ ଶତାବ୍ଦୀ) ବିବରଣୀରେ ମଧ୍ୟ ଆନ୍ଧ୍ରମାନେ ଦକ୍ଷିଣପୂର୍ବ ଭାରତରେ ଏକ ବଳୀୟାନ୍ ରାଜନୈତିକ ଶକ୍ତି ଥିବା କଥାର ବର୍ଣ୍ଣନା ଅଛି । ଆମକୁ ବୁଝିବାକୁ ହେବ ଯେ ତେଲୁଗୁ ଓ ଆନ୍ଧ୍ର ଏକାର୍ଥବାଚକ । ଜି. ଏନ୍. ରେଡ୍ଡିଙ୍କ ଭାଷାରେ :

The two terms Telugu and Andhra have been synonymously used from the early times and they signify one and the same people, region and language. (୧୫)

କିନ୍ତୁ ଏତେ ପୂର୍ବର ତେଲୁଗୁ ସାହିତ୍ୟ ଆମକୁ ଦେଖିବାକୁ ମିଳେନାହିଁ । ପୂର୍ବ କଥିତ ମତେ ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରୁ ହିଁ ଏହି ଭାଷାର ସର୍ବପ୍ରଥମ ସାହିତ୍ୟ ଦେଖିବାକୁ ମିଳିଥାଏ । ଏତେ ପ୍ରାଚୀନ ପରଂପରାର ଦାୟାଦ ହୋଇଥିବା କାରଣରୁ ତେଲୁଗୁମାନଙ୍କ ଉପରେ ବାଲ୍ମୀକି ରାମାୟଣର ପ୍ରଭାବ ପଡ଼ିବା ସ୍ୱାଭାବିକ ଏବଂ ସେହି ପ୍ରଭାବର ସୌରଭରେ ସେମାନଙ୍କ ଭାଷା-ସାହିତ୍ୟ ଓ ସଂସ୍କୃତି ପରିଶୀଳିତ ହେବା ମଧ୍ୟ ସ୍ୱାଭାବିକ । ବାସ୍ତବିକ ତାହାହିଁ ଘଟିଛି । ତେଲୁଗୁ ସାହିତ୍ୟ ଓ ତେଲୁଗୁ ଲୋକସାହିତ୍ୟରେ ରାମାୟଣର ପ୍ରଭାବ ସଂପର୍କରେ ପି. ଆର୍. ଶର୍ମାଙ୍କ ନିମ୍ନୋକ୍ତ ମନ୍ତବ୍ୟ ଦର୍ଶନୀୟ :

The Ramayana literature in Telugu is vast and varied and the poets drew inspiration from Valmiki. (୧୬)

କାବ୍ୟ, ଦ୍ୱିପଦ, ଶତକ, ଯକ୍ଷଗାନ (ନୃତ୍ୟ-ନାଟିକା), ଶତକ ସ୍ତୋତ୍ର, ସଙ୍ଗୀତ, ନାଟକ ଆଦି ସାହିତ୍ୟର ବିଭିନ୍ନ ବିଭାଗରେ ଏହାର ପ୍ରଭାବ ପରିଲକ୍ଷ୍ୟଣୀୟ । ଏହି ସାହିତ୍ୟକୃତିସମୂହକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଗୋଟିଏ ହେଲା ପୂର୍ବରାମାୟଣ (ଆରମ୍ଭରୁ ରାମଙ୍କ ସିଂହାସନାରୋହଣ ପର୍ଯ୍ୟନ୍ତ) ଏବଂ ଅପରଟି ହେଲା ଉତ୍ତରରାମାୟଣ (ପରବର୍ତ୍ତୀ ରାମାୟଣ-କାହାଣୀ) । ବାଲ୍ମୀକି ରାମାୟଣ ଛଡ଼ା ଅନ୍ୟାନ୍ୟ ରାମାୟଣ, ଯଥା, ଅଧ୍ୟାତ୍ମ, ଆନନ୍ଦ, ଅଦ୍ଭୁତ ଓ ବାଶିଷ୍ଠ ଆଦି ରାମାୟଣସମୂହ ଏବଂ ବାଲ୍ମୀକି ରାମାୟଣର ଅନୁକୃତିରେ ଲିଖିତ ଅନ୍ୟାନ୍ୟ ଭାଷାର ରାମାୟଣ, ଯଥା, ତୁଳସୀଦାସଙ୍କ ରାମଚରିତମାନସ (ହିନ୍ଦୀ) ଓ କମ୍ବନ୍‌ଙ୍କ ରାମାୟଣ (ତାମିଲ) ଆଦି ଗ୍ରନ୍ଥସମୂହ ମଧ୍ୟ ଏଗୁଡ଼ିକର ଅନ୍ତର୍ଗତ । ଏଗୁଡ଼ିକର ଉଭୟ ଗଦ୍ୟ ଓ ପଦ୍ୟ ରୂପାନ୍ତର ଦେଖିବାକୁ ମିଳିଥାଏ ।

ତେଲୁଗୁରେ ଯେଉଁ ରାମାୟଣ ଗ୍ରନ୍ଥମାନ ଲେଖାଯାଇଛି, ସେମାନଙ୍କ ମଧ୍ୟରେ 'ରଙ୍ଗନାଥ ରାମାୟଣମ୍', 'ଭାସ୍କର ରାମାୟଣମ୍' 'କଣ୍ଠ ବରଦରାଜୁ ରାମାୟଣମ୍' ଓ 'ମୋଲ୍ଲ ରାମାୟଣମ୍' ପ୍ରମୁଖ ସ୍ଥାନ ଅଧିକାର କରିଛି । ଶେଷୋକ୍ତ ରାମାୟଣଦ୍ୱୟ ଚମ୍ପୂ (ଗଦ୍ୟ-ପଦ୍ୟ ମିଶ୍ରିତ) ଶୈଳୀରେ ଲିଖିତ । ଅନ୍ୟ ରାମାୟଣ

ଗୁଡ଼ିକ ଦ୍ୱିପଦ ଶୈଳୀରେ ମୂଳ ବାଲ୍ମୀକି-ରାମାୟଣ ଢଙ୍ଗରେ ଲିଖିତ । ରଙ୍ଗନାଥମ୍, ରାମାୟଣମ୍ (୧୨୪୦ ଖ୍ରୀଷ୍ଟାବ୍ଦ) ସର୍ବପ୍ରାଚୀନ ତେଲୁଗୁ ଭାଷାରେ ଲିଖିତ ରାମାୟଣ ବୋଲି ବିଦ୍ୱାନ୍‌ମାନଙ୍କ ମତ । ଏଥିରେ ସର୍ବମୋଟ ୧୭,୨୯୦ଟି ଦ୍ୱିପଦ ଅଛି (ବାଲ୍ମୀକି-ରାମାୟଣର ଶ୍ଳୋକ ସଂଖ୍ୟା ୨୪୦୦୦) । ଏଥିରୁ ଏହି ପ୍ରମାଣ ମିଳୁଛି ଯେ ଏହା ସଂପୂର୍ଣ୍ଣ ବାଲ୍ମୀକିରାମାୟଣର ଅନୁବାଦ ନୁହେଁ । ଏହା ମୂଳ ରାମାୟଣର ଅନୁକୃତି ମାତ୍ର । ଏହି ଗ୍ରନ୍ଥର ଗୋଟିଏ ବୈଶିଷ୍ଟ୍ୟ ହେଲା ରାବଣ ଓ ତା'ର ପରିବାରର ଲୋକମାନଙ୍କର ଏକ ପ୍ରଶଂସାପୂର୍ଣ୍ଣ ଭାବମୂର୍ତ୍ତି ଏଥିରେ ଦିଆଯାଇଛି । ଆଉ ଗୋଟିଏ ଦୃଷ୍ଟିରୁ ମଧ୍ୟ ଏହାର ପ୍ରାଧାନ୍ୟ ଅଛି । ଆଜିମାନଙ୍କ ମଧ୍ୟରେ ଦେଖାଯାଉଥିବା ଛାୟା-ନୃତ୍ୟନାଟିକାରେ ଏହି ରାମାୟଣର କେତେକ ଅଂଶ ବୋଲାଯାଇଥାଏ । ଏହି ପରିପ୍ରେକ୍ଷୀରେ ଏହା ଅପେକ୍ଷାକୃତ ଅଧିକତର ଲୋକପ୍ରିୟତା ହାସଲ କରିଛି ।

'ମୋଲ୍ଲା-ରାମାୟଣମ୍'ର ସୃଷ୍ଟି ହୁଏ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ । ଏହାର ଜନ୍ମଦାତ୍ରୀ ହେଉଛନ୍ତି ମୋଲ୍ଲା ନାମଧେୟା ଜଣେ ନାରୀ । ସେ ମାଟିର ହାଣ୍ଡି, ମାଠିଆ ଆଦି ଗଢ଼ି ଜୀବିକାନିର୍ବାହ କରୁଥିଲେ । ଏଥିରେ ମୂଳ ରାମାୟଣରୁ କେତେକ ପରିବର୍ତ୍ତନ ଦେଖା ଦେଇଥାଏ । ଉଦାହରଣ ସ୍ୱରୂପ ଅଯୋଧ୍ୟାକାଣ୍ଡର ଗୋଟିଏ ବିଷୟକୁ ନିଆଯାଉ । ରାମ ବନବାସ ଯିବା ଅବସରରେ ନିଷାଦରାଜ ଗୁହଙ୍କୁ ଗଙ୍ଗା ପାରି କରାଇ ଦେବା ପାଇଁ କହୁଛନ୍ତି । କିନ୍ତୁ ଗୋଟିଏ ସର୍ତ୍ତ ରଖୁଛନ୍ତି ଯେ ସେ ନିଜେ ରାମଙ୍କ ପାଦ ଦିଓଟିକୁ ଧୋଇଦେବେ; କାରଣ ତାଙ୍କର ଆଶଙ୍କା, କାଳେ ରାମଙ୍କ ପାଦଧୂଳି ପଡ଼ି ତାଙ୍କ ନୌକାଟି ଅହଲ୍ୟା ପଥରରୁ ନାରୀ-ରୂପାନ୍ତର ପାଇଲା ଭଳି ନାରୀଟିଏ ହୋଇଯିବ । ରାମ ଏଥିରେ ରାଜି ହୋଇଛନ୍ତି ଓ ତାଙ୍କ ପାଦ ଦିଓଟି ଗୁହଙ୍କଦ୍ୱାରା ଧୂଆଯିବାର ସୁଯୋଗ ତାଙ୍କୁ (ଗୁହଙ୍କୁ) ଦେଇଛନ୍ତି । ସମ୍ଭବତଃ ଏହାର ପ୍ରଭାବରେ ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜ ବହୁ ଶତ ବର୍ଷ ପରେ ତାଙ୍କ ଲିଖିତ ବୈଦେହୀଶବିଳାସ ଗ୍ରନ୍ଥରେ ରାମଙ୍କ ମିଥିଳାପୁରୀକୁ ସୀତାଙ୍କ ସ୍ୱୟଂବର-ସଭାକୁ ଯିବା ଅବସରରେ ବାଟରେ ଗଙ୍ଗାକୁ ପାରିହେବା ବେଳେ ଜଣେ କୈବର୍ତ୍ତ ଦ୍ୱାରା ଏହିପରି ଯୁକ୍ତି-ଛଳରେ ରାମଙ୍କ ପାଦ ଧୂଆଇଛନ୍ତି । ଏହିଭଳି ଅନେକ ପରିବର୍ତ୍ତନ 'ମୋଲ୍ଲା-ରାମାୟଣମ୍'ରେ ଦେଖିବାକୁ ମିଳେ ଯାହା ଦ୍ୱାରା ତାଙ୍କ କୃତି ବିକୃତ ହୋଇନାହିଁ; ବରଂ ଅଧିକତର ରସୋତ୍ତୀର୍ଣ୍ଣ ହୋଇଛି ।

କଟ୍ଟ ବରଦାରାଜୁଙ୍କ (୧୭ଶ ଶତାବ୍ଦୀ) ରାମାୟଣ ଗ୍ରନ୍ଥ ମୂଳ ରାମାୟଣର ପଦ୍ୟାନୁବାଦ । ଏଥିରେ ବେଶି କିଛି ପରିବର୍ତ୍ତନ ନାହିଁ ଯଦିଓ ସାହିତ୍ୟକାର ରାମଙ୍କ

ଜନ୍ମକୁ ବୁଧବାର ଦିନ ସ୍ଥାପିତ କରିଛନ୍ତି । 'ମୋଲ୍ଲା-ରାମାୟଣମ୍,' 'ରଙ୍ଗନାଥ ରାମାୟଣମ୍' ଓ 'ଭାସ୍କର ରାମାୟଣମ୍' ଗ୍ରନ୍ଥ ତିନୋଟିରେ ଏହି ଜନ୍ମଦିନ ରବିବାର ବୋଲି କୁହାଯାଇଛି ।

ଉପରୋକ୍ତ ରାମାୟଣଗୁଡ଼ିକ ଛଡ଼ା ତେଲୁଗୁ ଭାଷାରେ ସଂକ୍ଷିପ୍ତ ଭାବରେ କେତେକ ରାମାୟଣର ସୃଷ୍ଟି ହୋଇଛି । ତନ୍ମଧ୍ୟରେ ଅୟ୍ୟଲରାଜୁ ରାମଭଦ୍ରୁଡୁଙ୍କ ସୃଷ୍ଟ (୧୫୧୦-୧୫୮୦) 'ରାମାଭ୍ୟୁଦୟମ୍' ଗ୍ରନ୍ଥଟି ବିଖ୍ୟାତ । ସେ ବିଜୟନଗରର ରାଜା କୃଷ୍ଣଦେବରାୟଙ୍କ ସଭାକବି ଥିଲେ । ରାମାୟଣର କୌଣସି ପ୍ରଧାନ ବିଷୟକୁ ବାଦ ନଦେଇ ସେ ଏଇ ଯେଉଁ ସଂକ୍ଷିପ୍ତ ଗ୍ରନ୍ଥଟିର ସୃଷ୍ଟି ରସାଳ ଭଙ୍ଗୀରେ କରିଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ । ରାମାୟଣର ଆଉ ଏକ ସଂକ୍ଷିପ୍ତ ସଂସ୍କରଣର ସ୍ରଷ୍ଟା ହେଉଛନ୍ତି କୁଚିମଞ୍ଚି ତିମ୍ମକବି (ଖ୍ରୀଷ୍ଟୀୟ ୧୭ଶ-୧୮ଶ ଶତାବ୍ଦୀ) । ତାଙ୍କ ଲେଖାର ବିଶେଷତ୍ୱ ହେଲି ସେ କେବଳ ତେଲୁଗୁ ଭାଷାର ଦେଶଜ ଶବ୍ଦଗୁଡ଼ିକର ବ୍ୟବହାର କରିଛନ୍ତି; ଆଦୌ ସଂସ୍କୃତ ଶବ୍ଦର ବ୍ୟବହାର କରିନାହାନ୍ତି । ଏହା ଏକ ନୂତନ ପ୍ରଚେଷ୍ଟା ଭାବରେ ଅଭିନନ୍ଦନୀୟ । କେତେକ ଭଲ-ଭଲ ରାମାୟଣଗ୍ରନ୍ଥ ଆଉ ମିଳୁନାହିଁ । କାଳର କବଳରେ ସେଗୁଡ଼ିକ ଲୋପ ପାଇଯାଇଛି । ତ୍ରୟୋଦଶ ଶତାବ୍ଦୀର ଜଣେ ଶ୍ରେଷ୍ଠ କବି ଏର୍ରଣ ଏରପ୍ରେଗଡ଼ଙ୍କ ଲିଖିତ ରାମାୟଣକୁ ଉଦାହରଣ ହିସାବରେ ନିଆଯାଇପାରେ । ଶୁଣାଯାଏ ଯେ ସେ କୁଆଡ଼େ ସର୍ବପ୍ରଥମେ ବାଲ୍ମୀକି-ରାମାୟଣର ବିଶ୍ୱସନୀୟ ତେଲୁଗୁ ଅନୁବାଦ କରିବାର ପ୍ରଚେଷ୍ଟା କରିଥିଲେ । ତିରୁପତିର ଅନ୍ନମଚର୍ଯ୍ୟଙ୍କ (୧୫ଶ ଶତାବ୍ଦୀ) ଲିଖିତ 'ଅନ୍ନମୟ୍ୟ ରାମାୟଣମ୍' ଗ୍ରନ୍ଥଟି ମଧ୍ୟ ସେହି ଶ୍ରେଣୀର ।

ବର୍ତ୍ତମାନ ବାଲ୍ମୀକି-ରାମାୟଣର ମୌଳିକତାକୁ ରକ୍ଷା କରି ତେଲୁଗୁ ଭାଷାରେ ଯେଉଁ ଅନୁବାଦ ଗ୍ରନ୍ଥମାନ ମିଳୁଛି, ତନ୍ମଧ୍ୟରେ ସର୍ବପ୍ରଥମ ସୃଷ୍ଟି ହେଉଛି ଗୋପୀନାଥ ଭେଙ୍କଟ କବି (୧୮୨୦-୧୮୯୦)ଙ୍କର । ତାଙ୍କ ପରେ ଆସନ୍ତି ସୁବ୍ବା ରାଓ (୧୮୬୩-୧୯୩୯) ଯେ ହେଉଛନ୍ତି 'ଶ୍ରୀମଦ୍ ଆନ୍ଧ୍ର ବାଲ୍ମୀକି ରାମାୟଣମ୍ ଗ୍ରନ୍ଥଟିର ସ୍ରଷ୍ଟା । ଏହା ଛଡ଼ା ରାମାୟଣକୁ ଆଧାର କରି ଅନେକ ଖଣ୍ଡବାକ୍ୟ' କବିତା ଓ ସମାଲୋଚନାମୂଳକ ପ୍ରବନ୍ଧମାନ ମଧ୍ୟ ତେଲୁଗୁ'ଭାଷାରେ ଲେଖା ହୋଇଛି ଏବଂ ଏବେ ଲେଖା ହେଉଛି ମଧ୍ୟ । ତେଲୁଗୁ ଲୋକସାହିତ୍ୟ ମଧ୍ୟ ରାମାୟଣର ବିଭିନ୍ନ କଥାବସ୍ତୁକୁ ନେଇ ବିଭିନ୍ନ ସମୟରେ ସୃଷ୍ଟି ହୋଇଛି । ଏଗୁଡ଼ିକ ଗୀତ ଆକାରରେ ଅଛି । ଏଗୁଡ଼ିକର ଲୋକପ୍ରିୟତା ଖୁବ୍ ପ୍ରବଳ । ରାମାୟଣକୁ ଆଶ୍ରୟକରି ଲୋକନୃତ୍ୟର ପ୍ରଚଳନ ଏହି ଅଞ୍ଚଳରେ ଅଛି । ଲୋକ-

ସାହିତ୍ୟ ପରି ଏହା ମଧ୍ୟ ସମଧିକ ଲୋକପ୍ରିୟ । ଅତଏବ, ରାମ-ସାହିତ୍ୟ ବିଷୟ ବିସ୍ତାରକୁ ନେଲାବେଳେ ଏଗୁଡ଼ିକୁ ନ୍ୟୂନତା ଦେଇହେବ ନାହିଁ ।

ଏହିପରି ଭାବରେ ଯୁଗ ଯୁଗ ଧରି ରାମାୟଣ ତେଲୁଗୁ ସାହିତ୍ୟକୁ ଅନୁପ୍ରେରିତ କରିଆସିଛି ଏବଂ ଲୋକପ୍ରିୟ ହୋଇଆସିଛି । ଏବେ ମଧ୍ୟ ରାମାୟଣର ଲୋକପ୍ରିୟତା ହ୍ରାସ ପାଇନାହିଁ । ଏବେ ମଧ୍ୟ ଲୋକେ ରାମଙ୍କୁ ବିଷ୍ଣୁଙ୍କ ଅବତାର ଜ୍ଞାନରେ ପୂଜା କରି ଆସୁଛନ୍ତି । ଆନ୍ଧ୍ରପ୍ରଦେଶରେ ପ୍ରାୟ ପ୍ରତିଟି ଗାଁରେ ଗୋଟିଏ ଗୋଟିଏ ରାମମନ୍ଦିର ଦେଖିବାକୁ ମିଳିଥାଏ । ତେଲୁଗୁ ସାହିତ୍ୟରେ ରାବଣର ଶୌର୍ଯ୍ୟ-ବୀର୍ଯ୍ୟ ଆଦିର ପୁଷ୍କଳ ପ୍ରଶଂସା କରାଯାଇଛି; କିନ୍ତୁ ରାମଙ୍କର ନିନ୍ଦା କରାଯାଇନାହିଁ ।

### ତାମିଲ ସାହିତ୍ୟ :

ତାମିଲସାହିତ୍ୟ ଅତି ପ୍ରାଚୀନ । କେତେକ ପଣ୍ଡିତଙ୍କ ମତ ଯେ ଏହା ବେଦସୃଷ୍ଟିର ସମକାଳୀନ । ତାମିଲମାନଙ୍କର ଧାରଣା ହେଲା ଅଗସ୍ତ୍ୟ ଋଷି ଯେ କି ପ୍ରଥମ ଆର୍ଯ୍ୟ ହିସାବରେ ଦକ୍ଷିଣ-ଭାରତରେ ବିନ୍ଧ୍ୟକୁ ଅତିକ୍ରମ କରି ପ୍ରବେଶ କରିଥିଲେ, ସେ ହେଉଛନ୍ତି ତାମିଲ ଭାଷା ଓ ତାହାର ଆଦି ବ୍ୟାକରଣର ସ୍ରଷ୍ଟା । ତାମିଲ ପୂର୍ବରୁ ଏକ କଥିତଭାଷା ଆକାରରେ ଥିଲି । ଅଗସ୍ତ୍ୟ ତାହାକୁ ବ୍ୟାକରଣର ଏକ ନିୟମ-ଶୃଙ୍ଖଳାର ଗଣ୍ଡି ମଧ୍ୟରେ ରଖି ଲିଖିତ ଭାଷାରେ ପରିଣତ କରିଥିଲେ । ଟି. ବରୋଙ୍କ ଭଳି ଜଣେ ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍ ମତ ଦେଇ କହନ୍ତି ଯେ କେତେକ ବୈଦିକ ଶବ୍ଦର ସୃଷ୍ଟି ମୂଳରେ ଦ୍ରାବିଡ଼ ଭାଷାର ପ୍ରଭାବ ପଡ଼ିଛି । (୧୭) ଏମ୍. ଶ୍ରୀନିବାସ ଆୟଙ୍ଗାର୍ ମଧ୍ୟ ଅନୁରୂପ କଥା କହିଥାନ୍ତି । (୧୮) ତାମିଲ ଭାଷା ଓ ସାହିତ୍ୟର ଏଭଳି ପ୍ରାଚୀନତା ଦୃଷ୍ଟିରୁ ତାହା ଉପରେ ବାଲ୍ମୀକିରାମାୟଣର ପ୍ରଭାବ ବିଶେଷ ଭାବରେ ପଡ଼ିବା ସ୍ୱାଭାବିକ । ଏଣୁ ଏ ବିଷୟରେ ଆଲୋଚନା କରିବା କୌତୂହଳୋଦ୍ଦୀପକ ହେବ ।

ଖ୍ରୀ. ପୂ: ୬୦୦ରୁ ଖ୍ରୀ: ଅ. ୬୦୦ ପର୍ଯ୍ୟନ୍ତ ଏକ ହଜାର ବର୍ଷ ଧରି ତାମିଲ ସାହିତ୍ୟର ଯେଉଁ ଯୁଗ ଥିଲା, ତାହାକୁ କୁହାଯାଉଥିଲା ସଙ୍ଗମଯୁଗ । ସଙ୍ଗମ ଅର୍ଥ ସଂଘ । ପ୍ରସିଦ୍ଧ ସାହିତ୍ୟକାରମାନେ ଏକାଠି ମିଶି ଗୋଟିଏ ସଙ୍ଗମ ଗଢ଼ୁଥିଲେ ଏବଂ ଏହି ସଙ୍ଗମ ତତ୍କାଳୀନ ପ୍ରଚଳିତ କବିତାଗୁଡ଼ିକୁ ସଂକଳିତ କରୁଥିଲା । ଏହି କବିତାଗୁଡ଼ିକ ମୁଖ୍ୟତଃ ପ୍ରେମ, ପ୍ରଣୟ ଓ ବୀରତ୍ୱକୁ ଆଶ୍ରା କରି ଲେଖା ଯାଉଥିଲା । ଏହି ସଂକଳନକୁ ଲୋକମାନେ ଶୁଦ୍ଧ

ସାହିତ୍ୟ ବିଷୟ ପଢ଼ୁଥିଲେ । ଏହି ପ୍ରକ୍ରିୟା ମାଧ୍ୟମରେ କେବଳ ମୁଖ୍ୟ କବିତାଗୁଡ଼ିକ ସଂକଳିତ ହେଉଥିଲ । ତେଣୁ ଏହି ଦୀର୍ଘ ସମୟ ମଧ୍ୟରେ ହୁଏତ ଅନେକଗୁଡ଼ିଏ କବିତା ନଷ୍ଟ ହୋଇଯାଇଥିବ । ଏଗୁଡ଼ିକରେ କାଁ-ଭୁଁ ରାମାୟଣର ବିଷୟବସ୍ତୁମାନ ଖଣ୍ଡିତ ଆକାରରେ ସ୍ଥାନ ପାଇଥିଲ । କିନ୍ତୁ ଏହି ଯୁଗରେ ରାମାୟଣର ସଂପୂର୍ଣ୍ଣ ଅନୁବାଦ ପ୍ରତି କେହି ଦୃଷ୍ଟି ଦେଉନଥିଲେ । ବହୁ ବିଳମ୍ବିତ ଯୁଗ ପର୍ଯ୍ୟନ୍ତ ବାଲ୍ମୀକି-ରାମାୟଣର ଅନୁବାଦ ହିସାବରେ ଅଥବା ଅନୁକୃତିରେ କୌଣସି ରାମାୟଣ ରଚିତ ହୋଇନଥିଲ । ପୂର୍ଣ୍ଣାବୟବ ଧରି ତାମିଲ ଭାଷାରେ ପ୍ରଥମ ରାମାୟଣର ସୃଷ୍ଟି ହେଲ କମ୍ବନ୍‌ଙ୍କ ଦ୍ୱାରା । ତାଙ୍କ ଗ୍ରନ୍ଥକୁ 'ରାମାବତାର ମହାକଥା' (କମ୍ବ-ରାମାୟଣ) ବୋଲି କୁହାଯାଏ । କମ୍ବନ୍ ଥିଲେ କୁଲୋତ୍ତୁଙ୍ଗ ଚୋଳ ତୃତୀୟଙ୍କ (୧୧୭୮-୧୨୧୮) ରାଜସଭାର କବି । ଅବଶ୍ୟ ଟି: ପି: ମୀନାକ୍ଷିସୁନ୍ଦରନ୍ କମ୍ବନ୍‌ଙ୍କୁ ଖ୍ରୀଷ୍ଟୀୟ ୯ମ ଶତାବ୍ଦୀରେ ସ୍ଥାନିତ କରିଥାନ୍ତି । (୧୯) ସେ ଯାହା ହେଉ, କମ୍ବନ୍‌ଙ୍କ ରାମାୟଣ ଯେ ତାମିଲ ଭାଷାର ସର୍ବପ୍ରଥମ ପୂର୍ଣ୍ଣାଙ୍ଗ ରାମାୟଣ, ଏ ବିଷୟରେ ସମସ୍ତେ ସହମତ । ଏଥିରେ ମାନବୀୟ ସଂବେଗ, ଅନୁଭୂତି ଓ ସମସ୍ୟାମାନ ସମ୍ୟକ୍ ଭାବରେ ପରିସ୍ଫୁଟ । ଏହାର ନାଟକୀୟ ଶକ୍ତି ଓ ମାହାତ୍ମ୍ୟ ଅତି ବଳିଷ୍ଠ । ଏହା କଳ୍ପନାର ସୌରଭରେ ପରିଶୀଳିତ ହେବା ସଙ୍ଗେ ସଙ୍ଗେ ବାଲ୍ମୀକୀୟ ସହଜ-ସରଳ ଉପମା-ସମୂହରେ ମଧ୍ୟ ପରିପୂରିତ । ଏଥିରେ ବାଲ୍ମୀକିଙ୍କ ଭଳି ଅତିମାନବୀୟ ଚିନ୍ତା ଓ ଚେତନାକୁ ମାନବୀୟ ରୂପ ଦେବାର ପ୍ରୟାସ କରାଯାଇଛି । ନ୍ୟାୟମୂର୍ତ୍ତି ଏସ୍. ମହାରାଜନ୍ କମ୍ବନ୍‌ଙ୍କ ରାମାୟଣର ଇଂରାଜୀ ଅନୁବାଦ କରିଛନ୍ତି । ଏ ପ୍ରସଙ୍ଗରେ ସେ କହିଛନ୍ତି :

> His (Kamban's) great poetry keeps its hold firmly on the centuries, because he gives poetic articulation to those timeless problems which arise at all times and the answers to which will continue the spirit of man till the end of time. (୨୦)

ଅତଏବ, ବାଲ୍ମୀକିଙ୍କ ରାମାୟଣ ଭଳି କମ୍ବନ୍‌ଙ୍କ ରାମାୟଣ ମଧ୍ୟ ଚିରନ୍ତନ ସାହିତ୍ୟ ଏବଂ ସେହି ଦୃଷ୍ଟିରୁ ଆଧୁନିକ ସାହିତ୍ୟର ପର୍ଯ୍ୟାୟରେ ଗିବ । କାରଣ ସେ ମଧ୍ୟ ବାଲ୍ମୀକିଙ୍କ ଭଳି ତାଙ୍କ ଗ୍ରନ୍ଥରେ ଏକ ସୁନ୍ଦର ଓ ଆଦର୍ଶ ମାନବ-ସମାଜ ଗଢ଼ି ତୋଳିବାର ସନ୍ଦେଶ ଜଗତକୁ ଦେଇଛନ୍ତି । କମ୍ବନ୍‌ଙ୍କ ରାମାୟଣ

ଯେ ପୁରାପୂରି ବାଲ୍ମୀକି ରାମାୟଣର ଅନୁବାଦ ଏ କଥା କହିବା ଠିକ୍ ହେବ ନାହିଁ । ସାହିତ୍ୟକୁ ରସୋତ୍ତୀର୍ଣ୍ଣ କରିବା ଉଦ୍ଦେଶ୍ୟରେ ସେ ଏଠି ସେଠି ଅନେକ ପରିବର୍ତ୍ତନ କରିଛନ୍ତି ଏବଂ କେତେକ ସୁନ୍ଦର ପରିସ୍ଥିତିର ସୃଷ୍ଟି କରିଛନ୍ତି ଯାହା କାବ୍ୟଟିର ଚମତ୍କାରିତା ଆଣି ଦେଇଛି । ଉଦାହରଣ ସ୍ୱରୂପ, ସୀତାଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣଙ୍କର ମାୟାମୃଗର ଚିତ୍କାର 'ହା ରାମ' ବୋଲି ଶୁଣିବା ପରେ ତାଙ୍କୁ (ରାମଙ୍କୁ) ଖୋଜିବା ପାଇଁ ଯିବା ଏବଂ ଯିବା ପୂର୍ବରୁ ସୀତାଙ୍କୁ କୁଟୀର ବାହାରକୁ ନ ଆସିବା ପାଇଁ କହି ତିନୋଟି ରେଖା ଟାଣିଦେଇ ତାହାକୁ ଅନ୍ତିମ ସୀମା ବୋଲି ଧାର୍ଯ୍ୟ କରିବା । ମୂଳ ରାମାୟଣରେ ଏଭଳି ରେଖା ଟାଣିବା କଥାର ଉଲ୍ଲେଖ ନାହିଁ । ଏଥିରେ ଲକ୍ଷ୍ମଣ କେବଳ କୁଟୀର ବାହାରକୁ ଆସିବା ପାଇଁ ସୀତାଙ୍କୁ ବାରଣ କରିଦେଇ ଯାଇଛନ୍ତି । କମ୍ବନ୍‌ଙ୍କ ଦ୍ୱାରା ସୃଷ୍ଟ ଲକ୍ଷ୍ମଣ-ରେଖା କାବ୍ୟଟିର ଚମତ୍କାରିତାକୁ ଅଧିକତର ଭାବରେ ବଢ଼ାଉଛି ଏବଂ ତେଣୁ ଏହା ସ୍ୱାଦ୍ୟ ହୋଇପାରିଛି । କମ୍ବନ୍‌ଙ୍କ ରାମାୟଣକୁ ଅବଲମ୍ବନ କରି ଚକ୍ରବର୍ତ୍ତୀ ରାଜଗୋପାଲାଚାରୀ (୨୦ଶ ଶତାବ୍ଦୀ) ଇଂରାଜୀରେ କ୍ଷୁଦ୍ର ରାମାୟଣ ଗ୍ରନ୍ଥଟିଏ ଲେଖିଛନ୍ତି । ଏହା ସାରା ପୃଥିବୀରେ ଲୋକପ୍ରିୟ । ଏହାର ଅନୁବାଦ ପୃଥିବୀର ପ୍ରାୟ ସବୁ ପ୍ରଧାନ-ପ୍ରଧାନ ଭାଷାରେ ହୋଇଛି । ଏହି ଭାବରେ ସାରା 'କମ୍ବ-ରାମାୟଣ' ପୃଥିବୀବିଖ୍ୟାତ ହୋଇପାରିଛି ।

ଅବଶ୍ୟ ସଙ୍ଗମଯୁଗ ଓ କମ୍ବନ୍, ଏହି ମଧ୍ୟବର୍ତ୍ତୀ କାଳରେ ରାମାୟଣର ପ୍ରାଧାନ୍ୟ ଯେ ତାମିଲନାଡ଼ୁରୁ ସମ୍ପୂର୍ଣ୍ଣ ଲୋପ ପାଇଯାଇଥିଲା, ତାହା ନୁହେଁ । ବରଂ ଏହା ପୂର୍ବଭଳି ଅକ୍ଷୁଣ୍ଣ ଥିଲା । ବୈଷ୍ଣବ ଅଲଓ୍ୱାରମାନଙ୍କ ଓ ଶୈବ ନାୟନମାରମାନଙ୍କ ଯୁଗରେ ଭକ୍ତିସାହିତ୍ୟର ବିପୁଳ ସୃଷ୍ଟି ହୋଇଥିଲା ଏବଂ ସେହି ସୃଷ୍ଟିସମ୍ଭାର ମଧ୍ୟରେ ରାମକଥା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଏହା ଘଟିଥିଲା ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ । ବୈଷ୍ଣବ ଆଲଓ୍ୱାର ମାନଙ୍କ ଭକ୍ତିରସସଂବଳିତ ରଚନାସମୂହରେ ଆମେ ରସୋଚ୍ଛଳ କାବ୍ୟିକ ସ୍ପର୍ଶ ଦେଖିବାକୁ ପାଇଥାଉଁ । ପେରିୟାଲଓ୍ୱାର ହନୁମାନ୍‌ଙ୍କର ସୀତାଙ୍କୁ ରାମଙ୍କ ମୁଦ୍ରିକା ଦେବା କଥାର ଆଲୋଚନା କରି ସୁନ୍ଦର କବିତାମାନ ଲେଖିଛନ୍ତି । କୁଲଶେଖରଲଓ୍ୱାର ରାମଙ୍କ ବନବାସ ଅବସରରେ ଦଶରଥଙ୍କ ଦୁଃଖକୁ ବର୍ଣ୍ଣନା କରି ସରସ ଓ କରୁଣରସଭରା କବିତା ସୃଷ୍ଟି କରିଛନ୍ତି । ସେ ମଧ୍ୟ ୧୦ଟି କବିତା ମାଧ୍ୟମରେ ସଂକ୍ଷେପରେ ସମସ୍ତ ରାମାୟଣ କାହାଣୀର ବର୍ଣ୍ଣନା କରିଛନ୍ତି । ଆହୁରି ସରସ ଓ ସୁନ୍ଦର ରଚନା ହେଉଛି ଥିରୁମଙ୍ଗାଇ ଆଲଓ୍ୱାରଙ୍କ କବିତାସୃଷ୍ଟି

ଯହିଁରେ ସେ ରାବଣର ମୃତ୍ୟୁରେ ରାକ୍ଷସମାନଙ୍କ ଦୁରବସ୍ଥାର ବର୍ଣ୍ଣନା କରିଛନ୍ତି । ତାଙ୍କ ସୃଷ୍ଟି କେବଳ ତ ମୌଳିକ ନୁହେଁ, ତାହା ନାଟକୀୟ ମଧ୍ୟ ।

ଅନୁରୂପ ଭାବରେ ଶୈବ ନାୟନାରମାନେ ମଧ୍ୟ ତାମିଲ ସାହିତ୍ୟକୁ ସେମାନଙ୍କ ପୁଷ୍କଳ ରସୋତ୍ତୀର୍ଣ୍ଣ କବିତାନୁଦାନ ଦେଇ ଯାଇଛନ୍ତି । ଏଥିରେ ରାମକଥାର ପ୍ରାଧାନ୍ୟ ପୂର୍ବ ଭଳି ଅକ୍ଷୁଣ୍ଣ ରହିଛି । ରାବଣର କୈଳାଶ ପର୍ବତକୁ ଅଟକାଇଦେବା କଥା ଓ ସାମବେଦୀୟ ସ୍ତୁତି ମାଧ୍ୟମରେ ଶିବଙ୍କୁ ପ୍ରସନ୍ନ କରାଇବାର କଥା ଏହି ସୃଷ୍ଟିସମ୍ଭାରରେ ଅତି ସରସ ଭାବରେ ବର୍ଣ୍ଣିତ । ଏଥିରେ ରାବଣକୁ ପ୍ରାଧାନ୍ୟ ଦିଆଯାଇ ଲଙ୍କାର ସୌଷ୍ଠବ ଓ ଗୌରବ ବର୍ଣ୍ଣିତ ହୋଇଛି । ରାବଣକୁ ମାରିବା ପରେ ରାମଙ୍କ ଅନୁତାପ ଆସିଥିବା ଏବଂ ସେଥିରେ ଦଗ୍ଧ ହୋଇ ତାଙ୍କର ଶିବପୂଜା କରିଥିବା କଥା ମଧ୍ୟ ଏଥିରେ ସ୍ଥାନ ପାଇଛି । ଏହି ପରମ୍ପରା ଏବେ ମଧ୍ୟ ତାମିଲମାନଙ୍କୁ ବିଶେଷ ଭାବରେ ରାବଣଭକ୍ତ ହେବାର ଅନୁପ୍ରେରଣା ଦେଉଛି ।

ଏବେ ମଧ୍ୟ ତାମିଲ ଭାଷାରେ ବିଭିନ୍ନ ଲେଖକ ରାମାୟଣର କଥାବସ୍ତୁକୁ ଖଣ୍ଡିତ ଆକାରରେ ନେଇ କାବ୍ୟମାନ ଓ ଉପନ୍ୟାସମାନ ରଚନା କରୁଛନ୍ତି ।

ତାମିଲନାଡୁର ଲୋକନୃତ୍ୟ ଓ ଲୋକସାହିତ୍ୟ ମଧ୍ୟ ରାମାୟଣର କଥାବସ୍ତୁରେ ଭରପୂର ।

ଏହି ଦୃଷ୍ଟିରୁ ଦେଖିଲେ ବାଲ୍ମୀକିରାମାୟଣର ପ୍ରଭାବ ତାମିଲ ସାହିତ୍ୟରେ ଅତି ବଳିଷ୍ଠ ଭାବରେ ଯେ ପଡ଼ିଛି ଏଥିରେ ସନ୍ଦେହ ନାହିଁ । ସାରା ଭାରତରେ ରାମାୟଣର ପ୍ରଭାବ ଅବିଚ୍ଛିନ୍ନ ଓ ପୁଷ୍କଳ ଭାବରେ ପଡ଼ିବାଦ୍ୱାରା ସମ୍ପୃକ୍ତ ଅଞ୍ଚଳଗୁଡ଼ିକର ସାହିତ୍ୟ ନବ-ନବ ସୃଷ୍ଟିସମ୍ଭାର ଦ୍ୱାରା ଯେପରି ଋଦ୍ଧିମନ୍ତ ହୋଇଛି, ତାମିଲ ସାହିତ୍ୟର ଅବସ୍ଥା ମଧ୍ୟ ଠିକ୍ ତଦ୍ରୂପ । ଏହି ରାମାୟଣ ସାରା ଭାରତକୁ ଦେଶରେଥିବା ବିବିଧତା ଓ ବୈଭିନ୍ନ୍ୟ ସତ୍ତ୍ୱେ ଐକ୍ୟର ଏକ ସାଂସ୍କୃତିକ କଠିନ-ସୂତ୍ରରେ ବାନ୍ଧି ରଖିଛି ।

## ଗୁଜୁରାଟି-ସାହିତ୍ୟ :

ରାମାୟଣରୁ ବିଷୟବସ୍ତୁ ଗ୍ରହଣ କରି କାବ୍ୟ, କବିତା, ନାଟକ ଆଦି ସୃଷ୍ଟି କରିବାରେ ଭାରତର ସମସ୍ତ ଭାଷାର ସାହିତ୍ୟକାରମାନଙ୍କ ମଧ୍ୟରେ ଅତି ପ୍ରାଚୀନ କାଳରୁ ପ୍ରତିଦ୍ୱନ୍ଦ୍ୱିତା ଲାଗିଥିବାର ଦେଖାଯାଏ । ଗୁଜୁରାଟି ସାହିତ୍ୟ ମଧ୍ୟ ସେହି ପ୍ରତିଦ୍ୱନ୍ଦ୍ୱିତାରୁ ପଛେଇନଥିଲା । ଏହି କାର୍ଯ୍ୟରେ ଗୁଜୁରାଟି ସାହିତ୍ୟକାରମାନେ

ହୋଇ ସିଦ୍ଧି ହାସଲ କରିଥିଲେ ତାହା ପରବର୍ତ୍ତୀ ସାହିତ୍ୟକାରମାନଙ୍କ ପାଇଁ ପ୍ରାୟତଃ ଭଲ କାର୍ଯ୍ୟ କରିଛି ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଭାରତର ପ୍ରାୟ ସର୍ବତ୍ର ଭକ୍ତି-ସାହିତ୍ୟର ପ୍ରଖର ସ୍ରୋତ ବହିବାକୁ ଲାଗିଥିଲା । ଏହି ଯେଉଁ ପ୍ରଖର ସ୍ରୋତଟି ବହି-ଚାଲିଥିଲା, ତହିଁରେ ଗୁଜୁରାଟି ସାହିତ୍ୟ ନିଜକୁ ସଫଳତାର ସହିତ ସାମିଲ କରିଦେଇ ପାରିଥିଲା । ଗୁଜରାଟରେ ଯେତେବେଳେ ବୈଷ୍ଣବଧର୍ମ ଚେର ଧରିଲା, ସେତେବେଳେ ଏକ ଅଦ୍ଭୁତ ପରିସ୍ଥିତିର ଉଦ୍ଭବ ହେଲା । ବର୍ଣ୍ଣ-ନିର୍ବିଶେଷରେ ସମସ୍ତେ ରାମ ଓ କୃଷ୍ଣ, ବିଷ୍ଣୁଙ୍କର ଏହି ଦୁଇ ଅବତାରଙ୍କୁ ସମାନ ଭାବରେ ପୂଜା କରୁନଥିଲେ । ରାମପୂଜାଠାରୁ କୃଷ୍ଣପୂଜା ଅଧିକତର ଲୋକପ୍ରିୟ ଥିଲା । ବ୍ରାହ୍ମଣମାନଙ୍କ ମଧ୍ୟରେ ହିଁ ରାମପୂଜା ସୀମାବଦ୍ଧ ଥିଲା । କ୍ଷତ୍ରିୟମାନେ ଶିବ ଓ ଦୁର୍ଗାଙ୍କୁ ପୂଜା କରୁଥିଲେ । ସମସ୍ତ ସମ୍ପ୍ରଦାୟ ମଧ୍ୟରେ କୃଷ୍ଣପୂଜା ପ୍ରାଧାନ୍ୟ ଲାଭ କରିଥିଲା । ତେଣୁ ଗୁଜୁରାଟି ଭାଷାରେ ରାମସାହିତ୍ୟ ଅପେକ୍ଷା କୃଷ୍ଣସାହିତ୍ୟର ପ୍ରାବଲ୍ୟ ଦେଖା ଯାଇଥାଏ । ଅବଶ୍ୟ ଏକ ବ୍ୟତିକ୍ରମ ଦେଖା ଦେଇଥାଏ କବି ଗିରିଧରଙ୍କ କ୍ଷେତ୍ରରେ । ସେ ବୈଶ୍ୟ ହୋଇଥିଲେ ବି ବାଲ୍ମୀକିରାମାୟଣକୁ ଆଧାର କରି 'ରାମଚରିତ' ବୋଲି ଏକ କାବ୍ୟ ସୃଷ୍ଟି କରନ୍ତି ୧୮୩୭ରେ । ଅବଶ୍ୟ ଏହା ପୂର୍ବରୁ ଯେ ଗୁଜୁରାଟି ସାହିତ୍ୟରେ ରାମାୟଣର ଅନୁପ୍ରବେଶ ଘଟିନଥିଲା ତାହା ନୁହେଁ । ପୂର୍ବରୁ କବିମାନେ ଅବଶ୍ୟ ସଂପୂର୍ଣ୍ଣ ରାମାୟଣର ସୃଷ୍ଟି କରିବା ଆରମ୍ଭ କରିଦେଇଥିଲେ । ଏ ସଂପର୍କରେ ନାକର (୧୬୮୭), କହନ୍ (୧୬୭୧) ଓ ବିଷ୍ଣୁଦାସ (୧୬୮୯) ଆଦି କବିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନେ ସମସ୍ତେ ସମ୍ପୂର୍ଣ୍ଣ ରାମାୟଣ ଲେଖିଥିଲେ । କିନ୍ତୁ ଏଗୁଡ଼ିକ ସେତେଟା ଲୋକପ୍ରିୟ ହୋଇପାରି ନଥିଲା । କର୍ମନ୍ ମନ୍ତ୍ରୀଙ୍କ (୧୪୭୦) 'ସୀତାହରଣ', ଭୀମଙ୍କ (୧୫୦୦) 'ରାମଲୀଳା', ଶ୍ରୀଧରଙ୍କ (୧୫୦୯) 'ରାବଣ-ମନ୍ଦୋଦରୀ ସଂବାଦ' ଓ ସ୍ୱୟଂଭୂଦବଙ୍କ 'ରାମାୟଣ-ପୁରାଣ' ଆଦି କୃତି ମଧ୍ୟ ରାମକାହାଣୀ ଉପରେ ଆଧାରିତ । ଶେଷୋକ୍ତ ସୃଷ୍ଟିଟିରେ ସାମଗ୍ରିକ ରାମାୟଣର ବର୍ଣ୍ଣନା ଥିଲା ବେଳେ ଅନ୍ୟାନ୍ୟ ସୃଷ୍ଟି ଗୁଡ଼ିକରେ ରାମାୟଣରୁ ଆନୀତ କେତେକ ନିର୍ଦ୍ଦିଷ୍ଟ ବିଷୟବସ୍ତୁର ବର୍ଣ୍ଣନା ରହିଛି ଏବଂ ସେଗୁଡ଼ିକୁ କାବ୍ୟିକ ରୂପାୟନ ଦିଆଯାଇଛି । ୧୮୩୭ରେ ଗିରିଧରଙ୍କ ଦ୍ୱାରା ସୃଷ୍ଟ 'ରାମଚରିତ' ଖ୍ୟାତି, ଗୌରବ, ସୌଷ୍ଠବ ଓ ଲୋକପ୍ରିୟତାରେ ଏଗୁଡ଼ିକୁ ବଳିଯାଇଥିଲା । ଏବେ ଗୁଜୁରାଟରେ ରାମାୟଣ କହିଲେ ଲୋକେ ଏହି 'ରାମଚରିତ'କୁ ହିଁ ବୁଝିଥାନ୍ତି । ଏହି ସବୁର ସୃଷ୍ଟି ପୂର୍ବରୁ ରାମାୟଣର ଖଣ୍ଡିତ ବିଷୟବସ୍ତୁକୁ ନେଇ କେତେକ ଲୋକସଙ୍ଗୀତର ମଧ୍ୟ ସୃଷ୍ଟି ହୋଇଥିଲା ।

ଏବେ ମଧ୍ୟ ଏହି ସଙ୍ଗୀତଗୁଡ଼ିକରୁ କେତେକ ଲୋକପ୍ରିୟ ହୋଇ ରହିଛି । ବିବାହ ଆଦି ଶୁଭାନୁଷ୍ଠାନମାନଙ୍କରେ ସେଗୁଡ଼ିକୁ ବୋଲାଯାଉଛି ।

ଉଦ୍ଧବ ଓ ବିଷ୍ଣୁଦାସ (୧୭ଶ ଶତାବ୍ଦୀ) ଥିଲେ ଦୁଇ ଭାଇ । ସେମାନେ ରାମାୟଣକୁ ଛଅଟି କାଣ୍ଡରେ ସମାପ୍ତ କରିଛନ୍ତି ଏବଂ ଉତ୍ତରକାଣ୍ଡଟିକୁ ଛାଡ଼ି ଦେଇଛନ୍ତି । ପରବର୍ତ୍ତୀ କାଳରେ ଆଉ ଜଣେ ବିଷ୍ଣୁଦାସ ଅବଶ୍ୟ ରାମାୟଣକୁ ୭ଟି କାଣ୍ଡରେ ସମାପ୍ତ କରିଛନ୍ତି । ସେ କିନ୍ତୁ ବିଷୟବସ୍ତୁର ଆହରଣ ଲାଗି ବାଲ୍ମୀକିରାମାୟଣ ଅପେକ୍ଷା କାଳିଦାସଙ୍କ 'ରଘୁବଂଶ' କାବ୍ୟ ଉପରେ ଅଧିକତର ନିର୍ଭରଶୀଳ ହୋଇଛନ୍ତି । ତାହା ଛଡ଼ା ସେ କେତେକ ବିଷୟବସ୍ତୁକୁ ରାମାୟଣସମ୍ପର୍କୀୟ ଲୋକପରଂପରାରୁ ମଧ୍ୟ ଗ୍ରହଣ କରିଛନ୍ତି । ଏତଦ୍-ବ୍ୟତୀତ ସେ 'ଅଙ୍ଗଦବିଷ୍ଟି' ଓ 'ଲବକୁଶଆଖ୍ୟାନ'ର ମଧ୍ୟ ସ୍ରଷ୍ଟା । ଅନ୍ୟ କେତେକ ବିଶିଷ୍ଟ ରାମାୟଣ ହେଲା ବୈକୁଣ୍ଠଙ୍କର (୧୫୮୪) 'ରାମବିବାହ', ଶୋଧଜିଙ୍କର 'ହନୁମନ୍ତଚରିତ', ଶିବଦାସଙ୍କର (୧୭୧୨) 'ପରଶୁରାମ-ଆଖ୍ୟାନ' ଓ ହରିଦାସ (୧୭୬୬)ଙ୍କର 'ସୀତାବିରହ' ।

ବିଭିନ୍ନ ସମୟରେ ରାମାୟଣରୁ ଖଣ୍ଡିତ କାହାଣୀମାନ ଆହରଣ କରି ବିଭିନ୍ନ ନାଟକମାନ ଗୁଜୁରାଟି ଭାଷାରେ ଲେଖା ଯାଇଛି । ଉଦାହରଣସ୍ୱରୂପ ନର୍ମଦଙ୍କ (୧୮୭୦) 'ରାମ-ଜାନକୀଦର୍ଶନ', ଦୋଲତରାମ ପାଣ୍ଡ୍ୟଙ୍କ (୧୮୮୭) 'ଇନ୍ଦ୍ରଜିତ୍‌ବଧକାବ୍ୟ', ରଣଜିତ୍‌ଲାଲ ପାଣ୍ଡ୍ୟଙ୍କ (୧୯୨୭) 'ରାମଣିକଥା' ଆଦିଗ୍ରନ୍ଥଗୁଡ଼ିକୁ ନିଆଯାଇପାରେ ।

ରାମାୟଣର ପାତ୍ରପାତ୍ରୀମାନଙ୍କୁ ନେଇ ନାନାଭାଇ ଭଟ୍ଟ ଚଳିତ ଶତାବ୍ଦୀରେ (୨୦ଶ ଶତାବ୍ଦୀରେ) 'ରାମାୟଣନନ୍ ପାତ୍ରୋ' ଶୀର୍ଷକ କେତୋଟି କ୍ଷୁଦ୍ର ପୁସ୍ତକ ଲେଖିଛନ୍ତି । ଏଗୁଡ଼ିକ କ୍ଷୁଦ୍ରଗଳ୍ପ ଶୈଳୀରେ ସଜ୍ଜିତ ଓ ଖୁବ୍ ସୁଖପାଠ୍ୟ । ଏଗୁଡ଼ିକ ମୂଳ ବାଲ୍ମୀକି ରାମାୟଣକୁ ଆଧାର କରିଥିଲେ ମଧ୍ୟ କ୍ଷୁଦ୍ରଗଳ୍ପଗୁଡ଼ିକୁ ରସାନ୍ୱିତ କରିବା ଉଦ୍ଦେଶ୍ୟରେ କେତେକ କଳ୍ପନାର ପୁଟ ଏଗୁଡ଼ିକରେ ଦିଆଯାଇଛି । ଏହି ପୁସ୍ତକ ସିରିଜ୍ ଏଭଳି ଲୋକପ୍ରିୟ ଯେ ଏଗୁଡ଼ିକର ଅନୁବାଦ ହିନ୍ଦୀ ଆଦି ଅନ୍ୟାନ୍ୟ ଭାଷାଗୁଡ଼ିକରେ କରାଯାଇଛି ଏବଂ ସେହି ସେହି ଭାଷାଭାଷୀମାନଙ୍କ ନିକଟରେ ଏଗୁଡ଼ିକ ସମଧିକ ଲୋକପ୍ରିୟତା ଓ ଆଦୃତି ହାସଲ କରିପାରିଛି ।

ଗୁଜୁରାଟି ସାହିତ୍ୟରେ ବାଲ୍ମୀକିରାମାୟଣର ସାମଗ୍ରୀକ ଗଦ୍ୟାନୁବାଦ ଅଥବା ସଂକ୍ଷିପ୍ତ ଗଦ୍ୟ-ରୂପାୟନ ମଧ୍ୟ ପରିଦୃଷ୍ଟ ହୋଇଥାଏ । ଦଲ୍‌ପତ

କ. ଦେଶାଇଙ୍କ କୃତ 'ଶ୍ରୀରାମକଥା'କୁ ନିଦର୍ଶନ ହିସାବରେ ନିଆଯାଇପାରେ । ଏହା ସମ୍ପୂର୍ଣ୍ଣ ବାଲ୍ମୀକିରାମାୟଣର ଅନୁବାଦ ନହୋଇଥିଲେ ହେଁ ଏହାର ସଂକ୍ଷିପ୍ତ କଳେବର ମଧ୍ୟରେ ରାମାୟଣର ପ୍ରାୟ ସମସ୍ତ କାହାଣୀ ସ୍ଥାନିତ । ସମସ୍ତ ବର୍ଣ୍ଣନା ମଧ୍ୟ ଏଥିରେ ବିଶ୍ୱସମୀୟତାର ସହିତ ଦିଆଯାଇଛି । ପଦ୍ୟ-ସାହିତ୍ୟ ହିସାବରେ ଏହାର ଯଥେଷ୍ଟ ମୂଲ୍ୟ ଅଛି । ଉତ୍ତପତ୍ତିରଂ ଏମ୍. ତ୍ରିପାଠୀ (୧୯୬୨) ତାଙ୍କ କୃତ 'ସଂକ୍ଷିପ୍ତ ରାମାୟଣ'ରେ ଓ ରମଣଭାଇ ପି: ସୋମ୍ (୧୯୪୬) ତାଙ୍କ କୃତ 'ରାମାୟଣ କଥାମଙ୍ଗଳ'ରେ ଏହିଭଳି ପ୍ରଚେଷ୍ଟା କରି ସଫଳକାମ ହୋଇଛନ୍ତି ।

ଭକ୍ତିଯୁଗରେ ଲିଖିତ ରାମାୟଣଗ୍ରନ୍ଥସମୂହରେ ରାମ ଓ ସୀତାଙ୍କୁ ଯଥାକ୍ରମେ ବିଷ୍ଣୁ ଓ ଲକ୍ଷ୍ମୀଙ୍କ ଅବତାର ରୂପେ ଗ୍ରହଣ କରାଯାଇଛି ଏବଂ ଏହା ଫଳରେ ସେହି ରଚନାସମୂହରେ ଦୁହିଁଙ୍କଠାରେ ଦେବତ୍ୱର ଆରୋପ କରାଯାଇଛି । ଏଣୁ ଏହି ରଚନାମାନଙ୍କରେ ମାନବୀୟ ଚେତନାଠାରୁ ଅତି-ମାନବୀୟ ଚେତନା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଏହି ସାହିତ୍ୟକୃତି-ଗୁଡ଼ିକ ତେଣୁ ମାନବଜୀବନର ସମାଲୋଚନାଠାରୁ ଦୂରେଇ ଯାଇଛନ୍ତି । ଅଥଚ ବାଲ୍ମୀକିରାମାୟଣରେ ରାମ, ସୀତା ଆଦି ଚରିତ୍ରମାନେ ହେଉଛନ୍ତି ସାଧାରଣ ମଣିଷ । ମଣିଷର ସୁଖ, ଦୁଃଖ, ଆଶା, ନିରାଶା ଆଦି ସବୁ କିଛିରେ ସେମାନେ ପରିପ୍ଳୁତ । ସେହି କାରଣରୁ ଚିରନ୍ତନ ସାହିତ୍ୟ ହିସାବରେ ବାଲ୍ମୀକି-ରାମାୟଣ ଏବେ ମଧ୍ୟ ଅମର ହୋଇ ରହିଛି । ତୁଳନାତ୍ମକ ଭାବରେ ଭକ୍ତିଯୁଗରେ ସୃଷ୍ଟ ଗୁଜୁରାଟି ସାହିତ୍ୟର ରାମାୟଣ ଗ୍ରନ୍ଥମାନ ସେଭଳି ଉଚ୍ଚ ସ୍ଥାନ ଅଧିକାର କରିପାରି ନାହିଁ । ଚଳିତ ଶତାବ୍ଦୀରେ କିନ୍ତୁ ଯେଉଁ ରାମାୟଣକୃତିମାନ ଲେଖାଯାଇଛି ଅଥବା ଲେଖାଯାଉଛି ସେଗୁଡ଼ିକ ମାନବଧର୍ମୀ ହେବା ଉଦ୍ଦେଶ୍ୟରେ ବାଲ୍ମୀକିଙ୍କ ପନ୍ଥାକୁ ଅନୁକରଣ କରିବାରେ ଚେଷ୍ଟିତ । କେତେକ ସାହିତ୍ୟକାର ଏହି କାର୍ଯ୍ୟରେ ଖୁବ୍ ସଫଳତା ହାସଲ କରି-ପାରିଛନ୍ତି । ଯାହା ବୋଧ ହେଉଛି, ବାଲ୍ମୀକିରାମାୟଣ ପୂର୍ବଭଳି ଏବେ ମଧ୍ୟ ଗୁଜୁରାଟି ସାହିତ୍ୟକୁ ଦିଗ୍‌ଦର୍ଶନ ଦେଇଚାଲିଛି ଏବଂ ଭବିଷ୍ୟତରେ ଦେଇ ଚାଲିଥିବ ମଧ୍ୟ ।

**ପଞ୍ଜାବି ସାହିତ୍ୟ :**

ପଞ୍ଜାବ ସାହିତ୍ୟର ସୁବର୍ଣ୍ଣଯୁଗ ଆରମ୍ଭ ହୁଏ ଗୁରୁ ନାନକଙ୍କ (୧୪୬୯-୧୫୩୮) ସମୟରେ ଓ ଶେଷ ହୁଏ ଦଶମ ଶିଖଗୁରୁ ଗୁରୁ ଗୋବିନ୍ଦ ସିଂହଙ୍କ (୧୬୬୬-୧୭୦୮) ସମୟରେ । ଗୁରୁ ନାନକଙ୍କ ଲେଖାରେ ସାଙ୍ଗୀତିକତା

ସହିତ ଭକ୍ତି ମନ୍ତ୍ର ଉପମା ଓ ଚମତ୍କାର ତୀକ୍ଷ୍‌ଣତା ଦେଖିବାକୁ ମିଳିଥାଏ । ସେ ଜାତି-ବର୍ଣ୍ଣନିର୍ବିଶେଷ ସମସ୍ତ ମାନବଜାତି ଉଦ୍ଦେଶ୍ୟରେ କାବ୍ୟକବିତା ଲେଖିଛନ୍ତି ଏବଂ ଉପଦେଶାବଳୀ ଦେଇଛନ୍ତି । ସେ ସମସ୍ତଙ୍କ ଅଭ୍ୟୁଦୟ କାମନା କରିଛନ୍ତି । ତାଙ୍କ କାବ୍ୟ-କବିତାର ଛନ୍ଦେ ଛନ୍ଦେ ଧାର୍ମିକ ସହନଶୀଳତାର ବିମଳ ଉଚ୍ଛଳ ଧାରା ପ୍ରବାହିତ । ସେତେବେଳେ ଭାରତରେ ମୁସଲମାନଙ୍କ ଶାସନ ଚାଲିଥିଲା ଏବଂ କେତେକ ଶାସକଙ୍କ ସମୟରେ ଅଣମୁସଲମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଉଥିଲା । ଏହି ପୃଷ୍ଠଭୂମିରେ ତେଣୁ ସହନ-ଶୀଳତାର ବାଣୀ ପ୍ରଚାର କରିବାର ଉଭୟ ଧାର୍ମିକ ଓ ରାଜନୈତିକ ଆବଶ୍ୟକତା ଥିଲା । ଏହାର ସାମାଜିକ ଆବଶ୍ୟକତା ମଧ୍ୟ କିଛି କମ୍ ନଥିଲା; କାରଣ ସାମାଜିକ ଶାନ୍ତି ବିନା ଦେଶ ଓ ଜାତିର ଉନ୍ନତି ଥିଲା ଅସମ୍ଭବ । ଏହି ଆବଶ୍ୟକତାକୁ ଗୁରୁ ନାନକ ଯଥେଷ୍ଟ ଭାବରେ ପୂରଣ କରିଥିଲେ । ଏହି ପରିପୂର୍ତ୍ତି ଲାଗି ତାଙ୍କୁ ଉପନିଷଦସମୂହର ମାନବବାଦୀ ଦାର୍ଶନିକ ତତ୍ତ୍ୱମାନ ଯଥେଷ୍ଟ ସାହାଯ୍ୟ କରିଥିଲା । ଏଭଳି ଦାର୍ଶନିକ ଜ୍ଞାନର ଅଧିକାରୀ ହୋଇଥିବା ସତ୍ତ୍ୱେ ତାଙ୍କ କାବ୍ୟକବିତାରେ କାବ୍ୟିକ ପ୍ରତିଭା କିଛି କମ୍ ଭାବରେ ପ୍ରକଟିତ ହୋଇନଥିଲା । ଏହି ମତର ପୁଷ୍ଟିସାଧନ କରି ଏସ୍. ଏସ୍. କୋହଲି ଯଥାର୍ଥରେ କହନ୍ତି :

> His philosophical thoughts never foreshadow his poetic genius. There are references to all the creeds and sects in Nanak's time. (୨୧)

ତାଙ୍କ କୃତିସମୂହ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ସହନଶୀଳତାର ଭାବ ସୃଷ୍ଟି କରାଇବାରେ ଯଥେଷ୍ଟ ସହାୟକ ହୋଇଥିଲା ।

କିନ୍ତୁ ଅଚିରେ ଅବସ୍ଥାର ପରିବର୍ତ୍ତନ ଘଟିଲା ଯେତେବେଳେ ମୋଗଲ ସମ୍ରାଟ୍ ଆଉରଙ୍ଗଜେବ୍ ଅତି ପ୍ରବଳତା ସହିତ ଅଣମୁସଲମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ । ଏତିକିବେଳେ ଶିଖ୍‌ମାନେ ସ୍ୱଧର୍ମକୁ ରକ୍ଷା କରିବା ଲାଗି ଖଡ୍‌ଗ ଉତ୍ତୋଳନ କରିବାକୁ ଆରମ୍ଭ କଲେ । ଶିଖଗୁରୁ ତେଗ୍‌ବାହାଦୁରଙ୍କୁ ସ୍ୱଧର୍ମର ରକ୍ଷାଲାଗି ଆତ୍ମବଳି ଦେବାକୁ ପଡ଼ିଲା । ତାଙ୍କ ପରେ ଦଶମ ଓ ଶେଷ ଗୁରୁ ଗୋବିନ୍ଦ ସିଂହ ଭାରତୀୟମାନଙ୍କ ମଧ୍ୟରେ ଭାରତୀୟତାର ଚେତନା ଜାଗ୍ରତ କରାଇଲେ, ସେମାନଙ୍କୁ ସ୍ୱଧର୍ମର ସଂରକ୍ଷଣ ଲାଗି ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ପ୍ରବର୍ତ୍ତାଇଲେ ଏବଂ ସେମାନଙ୍କୁ ସାହସୀ

ଓ ବୀରପୁରୁଷ ଭାବରେ ଠିଆ ହେବା ନିମିତ୍ତ ଅନୁପ୍ରେରଣା ଦେଲେ । ତାଙ୍କ ଲିଖିତ ବାଲ୍ମୀକିରାମାୟଣ ଉପରେ ଆଧାରିତ 'ରାମାବତାର' କାବ୍ୟ ଏହି ପୃଷ୍ଠ-ଭୂମିରେ ଲେଖା ହୋଇଥିଲା । ଗୁରୁ ନାନକ ଅବଶ୍ୟ ତାଙ୍କ ଲେଖାବଳୀ ମାଧ୍ୟମରେ ରାମଙ୍କୁ ମର୍ଯ୍ୟାଦାପୁରୁଷ ଓ ଭଗବାନ୍‌ଙ୍କ ଅବତାର ବୋଲି ପ୍ରତିପାଦିତ କରିଥିଲେ । କିନ୍ତୁ ଗୁରୁ ଗୋବିନ୍ଦ ସିଂହ ତାଙ୍କ ଆର୍ଯ୍ୟଧର୍ମ ଓ ଆର୍ଯ୍ୟସଂସ୍କୃତିର ରକ୍ଷକ ଥିବା ଜଣେ ବୀରପୁରୁଷ ଭାବରେ ପ୍ରତିପାଦିତ କଲେ । ତାଙ୍କ 'ରାମାବତାର' କାବ୍ୟରେ ରାମଙ୍କ ବୀରତ୍ୱ ଅଧିକତର ପ୍ରାଥମିକତା ପାଇଲା । ଉକ୍ତ କାବ୍ୟର ୮୬୧ତମ ପଦରେ ସେ କହିଛନ୍ତି ଯେ ଏହି ଗ୍ରନ୍ଥରେ ସେ 'ରଘୁବୀର କଥା ପରସଙ୍ଗ' ବା ରଘୁବୀରଙ୍କ କଥା ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ରାମ ଏଭଳି ବୀରତ୍ୱ କେମିତି ପାଇଲେ ? ଏଭଳି ଆତ୍ମପ୍ରତିଷ୍ଠା କେମିତି ପାଇଲେ ? ଏହା କ'ଣ ଆପେ ଆସିଲା ନା ଭାଗ୍ୟ ଆଣି ଦେଲା । ବାଲ୍ମୀକିଙ୍କ ମତରେ ମାନବଜୀବନର ଏହି ସମ୍ଭାବ୍ୟ ମହନୀୟତାକୁ ରାମ ନିଜେ ଉଦ୍ୟମ-ବଳରେ ହାସଲ କରିଥିଲେ । ମଧୁସୂଦନ ପତି ଏହି ମତର ପୁଷ୍ଟିସାଧନ କରି କହନ୍ତି :

> Rama understands this human propensity only too well. His extraordinary righteousness is built on the foundations of a rigorous, meticulous self-culture. (୨୨)

ରାମ ଯଦି ଏହା ହାସଲ କରିପାରିଥିଲେ, ତା' ହେଲେ ଅନ୍ୟମାନେ ଏବଂ ବିଶେଷ କରି ଶିଖମାନେ କାହିଁକି ତାହା କରିପାରିବେ ନାହିଁ ? ଗୁରୁ ଗୋବିନ୍ଦ ସିଂହଙ୍କର ସମସ୍ତଙ୍କ ପାଇଁ ଥିଲା ଏହି ପ୍ରଶ୍ନ । ଏହାର ଉତ୍ତର ସେ ନିଜେ ଦେଇ କହିଥିଲେ, ଏହା ନିଶ୍ଚିତ ଭାବରେ ସମ୍ଭବପର । ଏଥିପାଇଁ କେବଳ ନିରବଚ୍ଛିନ୍ନ ଉଦ୍ୟମ ମାଧ୍ୟମରେ ଆତ୍ମଚର୍ଯ୍ୟା ଆବଶ୍ୟକ । ଏହାର ପ୍ରଭାବ ଭାରତୀୟମାନଙ୍କ ଉପରେ ବିଶେଷ କରି ଶିଖ୍‌ମାନଙ୍କ ଉପରେ ଯଥେଷ୍ଟ ଭାବରେ ପଡ଼ିଲା ଏବଂ ସେମାନେ ନିଜ ଧର୍ମକୁ ରକ୍ଷା କରିବା ନିମିତ୍ତ ଦୃଢ଼ପ୍ରତିଜ୍ଞ ହୋଇ ଉଠିଲେ । ନିଜ ଧର୍ମ ପ୍ରତି ନିଷ୍ଠା ଓ ପ୍ରତିଶ୍ରୁତିବଦ୍ଧତା ସେମାନଙ୍କଠାରେ ଏବେ ମଧ୍ୟ ଅକ୍ଷୁଣ୍ଣ ରହିଛି । ଏହି ଦୃଷ୍ଟିରୁ ଗୁରୁ ଗୋବିନ୍ଦ ସିଂହଙ୍କୁ ପଞ୍ଜାବି ଭାଷାରେ ସର୍ବପ୍ରଥମ ରାମାୟଣ ଗ୍ରନ୍ଥର ସ୍ରଷ୍ଟା ଭାବରେ ଗ୍ରହଣ କରାଯାଇଥାଏ ।

ତାଙ୍କ କାବ୍ୟକୃତିଟି ସୁନ୍ଦର ଉପମା ଓ ରୂପକ ଆଦିରେ ଅଳଙ୍କୃତ । ବର୍ଣ୍ଣନାର ଚାତୁର୍ଯ୍ୟ ମଧ୍ୟ କିଛି କମ୍ ସୁନ୍ଦର ନୁହେଁ । ସରସ, ସୁନ୍ଦର

ପଦାବଳୀ ଦ୍ୱାରା ତାହା ପାଠକର ମନକୁ ମୁଗ୍ଧ କରିଥାଏ ଏବଂ ତା'କୁ ଭାବରସପ୍ରଣୋଦିତ ହେବାରେ ସାହାଯ୍ୟ କରିଥାଏ । ଏବେ ମଧ୍ୟ ତାହା ପଞ୍ଜାବ ପରିବାରମାନଙ୍କରେ ଏକ ସୁଖପାଠ୍ୟ ପବିତ୍ର ଗ୍ରନ୍ଥ ଭାବରେ ଗୃହୀତ ଓ ସମ୍ମାନିତ ।

ବାଲ୍ମୀକିରାମାୟଣ ଓ ଗୁରୁ ଗୋବିନ୍ଦ ସିଂହଙ୍କ ରାମାବତାର ମଧ୍ୟରେ ତୁଳନା କଲେ ଆମେ ନିମ୍ନଲିଖିତ ପାର୍ଥକ୍ୟମାନ ପାଇଥାଉଁ ।

କ) ମହର୍ଷି ବାଲ୍ମୀକି ଅରଣ୍ୟରେ ଜନଗହଳିରୁ ଦୂରରେ ଥାଇ ରାମାୟଣ କାବ୍ୟଟିକୁ ଲେଖିଥିଲେ । ଗୁରୁ ଗୋବିନ୍ଦ ସିଂହ ଥିଲେ ଜଣେ ସନ୍ଥ ପୁରୁଷ ଓ ତତ୍ତ୍ୱ ସଙ୍ଗେ ସଙ୍ଗେ ଜଣେ ବୀରପୁରୁଷ ମଧ୍ୟ । ସେ ଲୋକଗହଳି ମଧ୍ୟରେ ଥାଇ ଏବଂ ଧାର୍ମିକ ସଂଘର୍ଷକୁ ନିରବଚ୍ଛିନ୍ନ ଭାବରେ ସମ୍ମୁଖୀନ କରି ତାଙ୍କ ଗ୍ରନ୍ଥଟି ଲେଖିଥିଲେ ।

ଖ) ବାଲ୍ମୀକି ତାଙ୍କ ରାମାୟଣରେ ଦୁଇ ପ୍ରକାର ଛନ୍ଦର ପ୍ରୟୋଗ କରିଛନ୍ତି । ଗୁରୁ ଗୋବିନ୍ଦ ସିଂହ 'ରାମାବତାର' କାବ୍ୟରେ ୭୯ ପ୍ରକାର ବିଭିନ୍ନ ଛନ୍ଦର ପ୍ରୟୋଗ କରିଥିଲେ । ବାଲ୍ମୀକି କ୍ରୌଞ୍ଚମିଥୁନ ମଧ୍ୟରୁ କ୍ରୌଞ୍ଚୀଟିର ଆକୁଳ କ୍ରନ୍ଦନ ଦ୍ୱାରା ଅନୁପ୍ରେରିତ ହୋଇ କାବ୍ୟରଚନା କରିଥିଲେ । ଅନ୍ୟ ପକ୍ଷରେ ଗୁରୁ ଗୋବିନ୍ଦ ସିଂହଙ୍କ ପାଇଁ କାହାରି ଅନୁପ୍ରେରଣାର ଆବଶ୍ୟକତା ନଥିଲା । ସେ ଥିଲେ ଜଣେ ଜନ୍ମସିଦ୍ଧ କବି ।

ଗ) ବାଲ୍ମୀକିଙ୍କ କାବ୍ୟରେ ଯେତେଟା ସାଙ୍ଗୀତିକତା ନାହିଁ ଯେତେଟା ଗୁରୁ ଗୋବିନ୍ଦ ସିଂହଙ୍କ 'ରାମାବତାର'ରେ ଅଛି ।

ଘ) ବାଲ୍ମୀକିରାମାୟଣର ଚରିତ୍ରମାନେ ସାଧାରଣ ମଣିଷ । ସାଧାରଣ ମଣିଷ ଭଳି ସେମାନେ ସୁଖରେ ଉଲ୍ଲସିତ ଓ ଦୁଃଖରେ ବ୍ୟଥିତ । ସାଧାରଣ ମଣିଷର ସମସ୍ତ ଦୁର୍ବଳତା ସେମାନଙ୍କଠାରେ ଅଛି । 'ରାମାବତାର'ର ଚରିତ୍ରମାନେ ଭଗବାନଙ୍କ ଇଚ୍ଛା ଓ ନିର୍ଦ୍ଦେଶ ଉପରେ ନିର୍ଭର କରନ୍ତି ।

ଙ) ବାଲ୍ମୀକିରାମାୟଣରେ ରାମଙ୍କ ବନଯାତ୍ରା କରିବା ଅବସରରେ କୌଶଲ୍ୟା ତାଙ୍କ ଆଗରେ ସପତ୍ନୀ କୈକେୟୀଙ୍କ ଦ୍ୱାରା ଅବହେଳିତା ହୋଇଥିବାର ଅଭିଯୋଗ କରି ରାମଙ୍କ ସହିତ ବନଯାତ୍ରା କରିବାପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । 'ରାମାବତାର' କାବ୍ୟରେ କୌଶଲ୍ୟାଙ୍କର

ସେଭଳି କିଛି ଅଭିଯୋଗର ଉଲ୍ଲେଖ ନାହିଁ । ସେ ବରଂ ନିଜ ଚିତ୍ତରେ ଦୃଢ଼ତା ରଖି ଅଶ୍ରୁପୂର୍ଣ୍ଣ ନେତ୍ରରେ ରାମଙ୍କୁ ଆଶୀର୍ବାଦ କରିଛନ୍ତି ଏବଂ ବନଗମନ ଲାଗି ଅନୁମତି ଦେଇଛନ୍ତି । ଏଥିରେ କୌଶଲ୍ୟାଙ୍କ ମହନୀୟତା ଅଧିକତର ସ୍ପଷ୍ଟ ଭାବରେ ପ୍ରକଟିତ ହୋଇଛି ।

ଏହିପରି ଭାବରେ ଗୁରୁ ଗୋବିନ୍ଦ ସିଂହଙ୍କ 'ରାମାବତାର' କାବ୍ୟରେ ମୂଳ ରାମାୟଣଠାରୁ ଅନେକଟା ବିଚ୍ୟୁତି ଥିବାର ଦେଖାଯାଇଥାଏ । ଏହି ବିଚ୍ୟୁତି କିନ୍ତୁ କାବ୍ୟଟିକୁ ବିକୃତ ନକରି ଆହୁରି ଅଧିକ ମହନୀୟ, ସୁନ୍ଦର ଓ ରସୋତ୍ତୀର୍ଣ୍ଣ କରିଛି । ପରବର୍ତ୍ତୀ କାଳରେ ଆଉ କେତେକ ରାମାୟଣଗ୍ରନ୍ଥ ପଞ୍ଜାବି ଭାଷାରେ ଲେଖାଯାଇଥିଲେ ହେଁ 'ରାମାବତାର' କାବ୍ୟକୁ କୌଣସି କୃତି ଅତିକ୍ରମ କରିପାରିନାହିଁ ।

ଅମରନାଥ ଗୁପ୍ତା (୧୮୫୭-୧୯୦୫) ବାଲ୍ମୀକିରାମାୟଣର ପଞ୍ଜାବି ଭାଷାରେ ଅନୁବାଦ କରିଛନ୍ତି । ୧୯୫୩ରେ ଲାଲ ଶାସ୍ତ୍ରୀ 'ରାମକଥା' ଶୀର୍ଷକ ଦେଇ ରାମାୟଣ ଲେଖିଛନ୍ତି । ଏହା ବାଲ୍ମୀକିରାମାୟଣର ଗଦ୍ୟାନୁବାଦ । ସେ ପୁଣି ୧୯୫୫ରେ 'ରାମକଥା'କୁ ପଦ୍ୟରୂପ ଦେଇଛନ୍ତି ।

ଜ୍ଞାନୀ ସନ୍ତ ସିଂହ ତୁଳସୀଦାସଙ୍କ 'ରାମଚରିତମାନସ'କୁ ଟୀକା ସହିତ ଅନୁବାଦ କରିଛନ୍ତି । ଏହା ପ୍ରଥମେ ପ୍ରକାଶିତ ହୋଇଛି ୧୮୯୪ରେ । ଜ୍ଞାନୀ ଈଶର-ସିଂହ ତୁଳସୀରାମାୟଣର ପଞ୍ଜାବି ପଦ୍ୟାନୁବାଦ କରିଛନ୍ତି ୧୯୫୭ରେ ।

ଏହିପରି ଭାବରେ ଦେଖିବାକୁ ଗଲେ ପଞ୍ଜାବି ସାହିତ୍ୟରେ ରାମାୟଣୀୟ ପରଂପରା ଏ ପର୍ଯ୍ୟନ୍ତ ମଧ୍ୟ ସଂରକ୍ଷିତ ହୋଇ ରହିଛି ।

**କାଶ୍ମୀରି ସାହିତ୍ୟ :**

ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଭଳି କାଶ୍ମୀରି ସାହିତ୍ୟ ମଧ୍ୟ ରାମାୟଣ ଦ୍ୱାରା ବିଶେଷ ଭାବରେ ପ୍ରଭାବାନ୍ୱିତ । କାଶ୍ମୀର ଅଞ୍ଚଳରେ ରାମ-ପରଂପରା ଅତି ପ୍ରାଚୀନ । କାଶ୍ମୀରୀୟ କବି ଓ ଲେଖକମାନଙ୍କ ଉପରେ ସଂସ୍କୃତ ଭାଷାରେ ଗ୍ରନ୍ଥମାନ ରଚନା କରିବା ସମୟରୁ ହିଁ ଏହି ପ୍ରଭାବ ପଡ଼ି-ଆସିଛି । ଅଲଙ୍କାରବିତ୍ କାଶ୍ମୀରୀୟ ପଣ୍ଡିତ ମମ୍ମଟ ତାଙ୍କ ଲିଖିତ 'କାବ୍ୟ ପ୍ରକାଶ'ରେ ରାମ ଓ ରାବଣଙ୍କ ବିଷୟରେ ଉଲ୍ଲେଖ କରି କହିଛନ୍ତି, 'ରାମାଦିବଦ୍ ବର୍ତ୍ତିତବ୍ୟଂ ନ ରାବଣାଦିବତ୍' । ଅର୍ଥାତ୍ ଆମ୍ଭମାନଙ୍କର ରାମ ଆଦିଙ୍କ ଭଳି ଆଚରଣ ଦେଖାଇବା ଉଚିତ, ରାବଣ ଆଦିଙ୍କ ଭଳି କିନ୍ତୁ ନୁହେଁ । ଏଥିରୁ ଅନୁମିତ ହୁଏ ଯେ ରାମକଥା ସେତେବେଳେ କାଶ୍ମୀରରେ ପ୍ରବେଶ କରି-

ଯାଉଥିଲା ଏବଂ ରାମଙ୍କୁ ଜଣେ ସୁଶୀଳ ତଥା ମର୍ଯ୍ୟାଦାବାନ୍ ପୁରୁଷ ବୋଲି ଗଣା ଯାଉଥିଲା । ଆଉ ଜଣେ କାଶ୍ମୀରୀୟ ପଣ୍ଡିତ ଥିଲେ କ୍ଷେମେନ୍ଦ୍ର । ତାଙ୍କଦ୍ୱାରା ସଂସ୍କୃତ ଭାଷାରେ ସୃଷ୍ଟ 'ରାମାୟଣକଥାମଞ୍ଜରୀ' କାବ୍ୟଟି କେବଳ ବାଲ୍ମୀକିଙ୍କ ରାମାୟଣର ଏକ ସଂକ୍ଷିପ୍ତ ସଂସ୍କରଣ ନୁହେଁ; ବରଂ ଏଥିରେ ତାଙ୍କର ଅନେକ କିଛି ନୂତନତ୍ୱ ଅଛି । 'କନକ-ଜାନକୀ' ଶୀର୍ଷକ ଆଉ ଏକ ଗ୍ରନ୍ଥରେ ସେ ରାମଙ୍କ ଅଶ୍ୱମେଧ-ଯଜ୍ଞ ସଂପର୍କରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ବାଲ୍ମୀକିଙ୍କ ରାମାୟଣରେ ରାମଙ୍କଦ୍ୱାରା କୁଶର ଜାନକୀ-ମୂର୍ତ୍ତି ତିଆରି ହୋଇଥିବାର ବର୍ଣ୍ଣନା ଅଛି । କିନ୍ତୁ ଏଠାରେ କ୍ଷେମେନ୍ଦ୍ର ସୁନାର ଜାନକୀ-ମୂର୍ତ୍ତି ନିର୍ମିତ ହୋଇ-ଥିବାର ବର୍ଣ୍ଣନା କରିଛନ୍ତି । ଏ କ୍ଷେତ୍ରରେ ସେ ବାଲ୍ମୀକିଙ୍କୁ ଛାଡ଼ିଦେଇ 'ରଘୁବଂଶ'ର ସ୍ରଷ୍ଟା କାଳିଦାସଙ୍କ ଅନୁକରଣ କରିଛନ୍ତି । କ୍ଷେମେନ୍ଦ୍ରଙ୍କ 'ଦଶାବତାରଚରିତମ୍'ରେ ରାମଙ୍କୁ ବିଷ୍ଣୁଙ୍କ ଅବତାର ଭାବରେ ଚିତ୍ରିତ କରାଯାଇଛି । ସୋମଦେବଙ୍କ 'କଥାସରିତ୍ସାଗର'ରେ ମଧ୍ୟ ରାମାୟଣର କେତେକ କାହାଣୀର ଉଲ୍ଲେଖ ଅଛି । ଏହା ପ୍ରମାଣ କରୁଛି ଯେ ଅତି ପ୍ରାଚୀନ କାଳରୁ କାଶ୍ମୀରରେ ରାମାୟଣ-ପରଂପରା ଗଢ଼ି ଆସୁଛି । ତାହା ହୋଇ ନଥିଲେ ଏତେ ସଂଖ୍ୟାର ପ୍ରଖ୍ୟାତ ସଂସ୍କୃତ ସାହିତ୍ୟକାର ରାମାୟଣକୁ ଅବଲମ୍ବନ କରି ଗ୍ରନ୍ଥମାନ ଲେଖିନଥାନ୍ତେ । ଏହି ପରଂପରା କାଶ୍ମୀରି ସାହିତ୍ୟ ଓ ଲୋକଗୀତ ଓ ଲୋକକଥାକୁ ଯଥେଷ୍ଟ ପ୍ରଭାବାନ୍ୱିତ କରିଛି ।

କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ହେଉଛି, କାଶ୍ମୀରରେ କୃଷ୍ଣ-ପରଂପରା ରାମପରଂପରାର ବହୁତ ପଛରେ ପ୍ରବେଶ କରିଥିଲେ ମଧ୍ୟ ଏହା (କୃଷ୍ଣପରଂପରା) ଅଧିକତର ଲୋକପ୍ରିୟତା ହାସଲ କରିପାରିଛି । ଏଣୁ ସ୍ଥାନୀୟ କାଶ୍ମୀରି ଭାଷାରେ ରାମ ସଂପର୍କୀୟ ସାହିତ୍ୟ ସୃଷ୍ଟି 'କୃଷ୍ଣସଂପର୍କୀୟ ସାହିତ୍ୟ ସୃଷ୍ଟିର ପରେ ହିଁ ହୋଇଛି । କୃଷ୍ଣପରଂପରାକୁ ଆଶ୍ରୟ କରି ସଂପୂର୍ଣ୍ଣ କାବ୍ୟଟିଏ ୧୪୭୦ ଖ୍ରୀ: ଅ:ରେ କାଶ୍ମୀରି ଭାଷାରେ ଲେଖା ଯାଇଥିଲା । ଏହାର ସ୍ରଷ୍ଟା ଥିଲେ ଉଚ୍ଚବତାର ଯେ ଥିଲେ ସୁଲତାନ୍ ଜଇନୁଲ୍ଲାବଦ୍ଦିନଙ୍କ (୧୪୨୦-୧୪୭୦) ସଭାକବି । ଅଥଚ ଏହି ଭାଷାରେ ପ୍ରଥମ ରାମାୟଣର ସୃଷ୍ଟି ହୋଇଥିଲା ୧୮୪୩ ଖ୍ରୀ. ଅ.ରେ ମହାରାଜ ରଣବୀର ସିଂହଙ୍କ ରାଜତ୍ୱ କାଳରେ । ଏହାର ନାମ 'ଶଙ୍କରରାମାୟଣ' । ସେ ଥିଲେ ଡୋଗ୍ରାଶାସକ । ଡୋଗ୍ରା-ଶାସକମାନଙ୍କ ଇଷ୍ଟଦେବ ଥିଲେ ରାମ । ସେହି କାରଣରୁ ସମ୍ଭବତଃ ରାମପରଂପରା ଏଠାରେ ପୁଣି ଥରେ ଉଜ୍ଜୀବିତ ହୋଇ ଉଠିଥିଲା । ରାଜାଙ୍କ ଅନୁପ୍ରେରଣା ଓ ସହାନୁଭୂତି ପାଇବା ଫଳରେ ସାହିତ୍ୟକାରମାନେ ରାମକଥାକୁ ଆଧାର କରି ଗ୍ରନ୍ଥମାନ ଲେଖିବାକୁ ଲାଗିଲେ । ତାହା ପରେ ୧୮୪୭

ମସିହାରେ ସୃଷ୍ଟି ହୁଏ 'ପ୍ରକାଶ ରାମାୟଣ' । କାଶ୍ମୀରି ଭାଷାର ତୃତୀୟ ରାମାୟଣ ହେଉଛି 'ବିଷ୍ଣୁପ୍ରତାପ ରାମାୟଣ' ଯାହାର ସୃଷ୍ଟି ହୁଏ ୧୯୧୩ ମସିହାରେ ବିଷ୍ଣୁ କାଉଲ୍‌ଙ୍କ ଦ୍ୱାରା । ଏହି ଭାଷାର ଚତୁର୍ଥ ରାମାୟଣର ନାମ 'ଶର୍ମୀ ରାମାୟଣ' । ଏହା ତୁଳସୀଦାସଙ୍କ 'ରାମଚରିତମାନସ' ଉପରେ ଆଧାରିତ । ଏହାର ସ୍ରଷ୍ଟା ନୀଳକଣ୍ଠ ଶର୍ମୀ ଏବଂ ଏହି ଗ୍ରନ୍ଥଟିର ପ୍ରକାଶକାଳ ୧୯୨୬ । ପଞ୍ଚମ ରାମାୟଣର ସ୍ରଷ୍ଟା ହେଉଛନ୍ତି ତାରାଚନ୍ଦ ଯାହାଙ୍କ କୃତିଟି ପ୍ରକାଶ ପାଏ ୧୯୨୭ରେ । ଷଷ୍ଠ ରାମାୟଣର ସ୍ରଷ୍ଟା ହେଉଛନ୍ତି ଅମରନାଥ । ତାଙ୍କ କୃତିଟି ମଧ୍ୟ ପ୍ରକାଶ ପାଏ ୧୯୨୭ରେ । ଶୁଣାଯାଏ ଯେ ଆନନ୍ଦ ରାମ ବୋଲି ଜଣେ କବି କାଶ୍ମୀରି ଭାଷାରେ ୧୯୪୦ରେ ରାମାୟଣଟିଏ ଲେଖିଛନ୍ତି । ଏହି ଗ୍ରନ୍ଥଗୁଡ଼ିକ ମଧ୍ୟରୁ କେବଳ 'ପ୍ରକାଶ ରାମାୟଣ' ପୁସ୍ତକ ଆକାରରେ ପ୍ରକାଶ ପାଇଛି ଏବଂ ଅନ୍ୟାନ୍ୟ ରାମାୟଣଗୁଡ଼ିକ ପାଣ୍ଡୁଲିପି ଆକାରରେ ଅଛି ।

କାଶ୍ମୀରି ସମାଜରେ ଯେଉଁ ଲୋକଗୀତଗୁଡ଼ିକ ବହୁଦିନ ଧରି ଚାଲି ଆସୁଛି, ସେଗୁଡ଼ିକରେ ରାମାୟଣୀୟ ପ୍ରଭାବ ପୂର୍ବ ଭଳି ଅକ୍ଷୁଣ୍ଣ ରହିଛି । ବିବାହ-ସମୟରେ କନ୍ୟା ବିଦାୟ ଓ ବରାଗମନ ସମୟରେ ରାମାୟଣ ଉପରେ ଆଧାରିତ ବିଭିନ୍ନ ଲୋକଗୀତମାନ ସ୍ତ୍ରୀଲୋକମାନେ ଗାଇ ଆସୁଛନ୍ତି ।

**ମଣିପୁରୀ ସାହିତ୍ୟ :**

ମଣିପୁରୀ ସାହିତ୍ୟରେ ରାମାୟଣର ପ୍ରଭାବ ବଡ଼ ବିଳମ୍ବରେ ପଡ଼ିଛି । ମଣିପୁରୀ ରାଜା ଥାଆନ୍ତି ଗରିବନିବାସ (୧୭୦୯-୧୭୪୮) । ଏହି ସମୟରେ ହିଁ ରାମାନନ୍ଦୀ ସମ୍ପ୍ରଦାୟର ଧର୍ମ ମଣିପୁରରେ ରାଷ୍ଟ୍ରର ଧର୍ମ ହିସାବରେ ଗୃହୀତ ହୁଏ । ପୂର୍ବରୁ ଏଠାରେ ବଙ୍ଗୀୟ ବୈଷ୍ଣବ ଧର୍ମର ପ୍ରଭାବ ପଡ଼ିଥାଏ । ଏଥିରେ କୃଷ୍ଣକଥାର ପ୍ରାଥମିକତା ଥାଏ, ରାମକଥାର କିନ୍ତୁ ନୁହେଁ । କିନ୍ତୁ ରାମକଥା ଯେ ଲୋକସ୍ମୃତିରେ ଲୋକଗାଥା ମାଧ୍ୟମରେ ନଥାଏ ତାହା ନୁହେଁ, ଯଦିଓ ମଣିପୁରୀ ଭାଷାରେ ଲିଖିତ ରାମସାହିତ୍ୟର ସୃଷ୍ଟି ହୋଇନଥାଏ । ଉଦାହରଣ ସ୍ୱରୂପ ଚୈତନ୍ୟଙ୍କ ଦ୍ୱାରା ପ୍ରଚାରିତ କୀର୍ତ୍ତନ ମାଧ୍ୟମରେ ହେଉଥିବା ନାମଯଜ୍ଞ ବା ନାମମନ୍ତ୍ରକୁ ବିଚାର କରାଯାଇପାରେ । ଏହା ହେଲା :

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ॥

ହରି, କୃଷ୍ଣ, ରାମ ସମସ୍ତେ ଏକାର୍ଥବାଚକ ବିଷ୍ଣୁଙ୍କ ଅବତାର ବୋଲି ଲୋକେ ଗ୍ରହଣ କରି ନେଇଥାନ୍ତି । ତେଣୁ ସେମାନେ କୃଷ୍ଣଙ୍କ ନାମ ସହିତ ହରି ଓ ରାମଙ୍କ ନାମ ମଧ୍ୟ କୀର୍ତ୍ତନ କରିଥାନ୍ତି ।

ରାଜା ଗରିବନିବାସ ପୂର୍ବରୁ ତାଙ୍କ ଗୁରୁ ଗୋପାଳ ଦାସଙ୍କଦ୍ୱାରା ବଙ୍ଗୀୟ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । କିନ୍ତୁ ଖ୍ରୀଷ୍ଟୀୟ ୧୭୩୭ରେ ଆଉ ଜଣେ ଗୁରୁ ସିଲ୍‌ହଟ୍ଟର (ବର୍ତ୍ତମାନ ବଙ୍ଗଳାଦେଶରେ) ଶାନ୍ତ ଦାସ ମହନ୍ତଙ୍କ ଦ୍ୱାରା ରାମାନନ୍ଦୀ ସଂପ୍ରଦାୟର ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ସେ ସେହି ଧର୍ମକୁ ରାଷ୍ଟ୍ରୀୟ ଧର୍ମ ଭାବରେ ଗ୍ରହଣ କରିନେଲେ । ତାଙ୍କର ପ୍ରେରଣାରେ ତାଙ୍କ ସଭାକବି ଅଙ୍ଗମ ଗୋପୀ ମଣିପୁରୀ ଭାଷାରେ ସପ୍ତକାଣ୍ଡ ବିଶିଷ୍ଟ ରାମାୟଣର ଅନୁବାଦ କଲେ । ଏହା ଥିଲା ପଦ୍ୟାକାରରେ ଏବଂ ଏହା ପୂର୍ବସୃଷ୍ଟ ବଙ୍ଗୀୟ 'କୃତ୍ତିବାସରାମାୟଣ'କୁ (୧୫ଶ ଶତାବ୍ଦୀ) ଆଶ୍ରୟ କରିଥିଲା । ଅବଶ୍ୟ ଏହା 'କୃତ୍ତିବାସରାମାୟଣ'ର ସଂପୂର୍ଣ୍ଣ ଅନୁବାଦ ନଥିଲା । ଏଥିରେ ମଣିପୁରୀ କବିଙ୍କର ଅନେକଟା ସ୍ୱକୀୟତା ଥିଲା । ଏଥିରେ ଥିବା ତିନୋଟି ମାତ୍ର କାଣ୍ଡ, ଯଥା, ସୁନ୍ଦରକାଣ୍ଡ, ଲଙ୍କାକାଣ୍ଡ, ଓ ଉତ୍ତରକାଣ୍ଡ ଆଜି ସୁଦ୍ଧା ପ୍ରକାଶିତ । ଏହା ମଣିପୁରୀ ଲିପିରେ ଲିଖିତ । ସେତେବେଳେ ଚଳୁଥିବା ବଙ୍ଗୀୟ-ଅସମୀୟ ଲିପିଠାରୁ ଏହା ଭିନ୍ନ । ଆଉ ଜଣେ ବିଶିଷ୍ଟ ପଣ୍ଡିତ ଥିଲେ ଲମଙ୍ଗୋ ସିଂ କୋଣ୍ଠୌଜମ୍ବ ଯେ ମଣିପୁର ରାଜା ରାଜର୍ଷି ଭାଗ୍ୟଚନ୍ଦ୍ରଙ୍କର ସଭାକବି ଥିଲେ । ସେ ରାମଙ୍କ ମୃତ୍ୟୁକୁ ଆଧାର କରି 'ରାମ ନୋଙ୍ଗବ' ବୋଲି କାବ୍ୟଟିଏ ଲେଖିଛନ୍ତି । ଏହାର କଥାବସ୍ତୁ ରାମାୟଣର ଉତ୍ତରକାଣ୍ଡର ଶେଷଭାଗରୁ ଗୃହୀତ । କାବ୍ୟଟିର ଶେଷରେ କବି ରାମରୂପୀ ନାରାୟଣଙ୍କ ଉଦ୍ଦେଶ୍ୟରେ ପ୍ରଣତି ଢାଳିଛନ୍ତି । ଏହା ସ୍ଥୂଳତଃ ଏକ ଭକ୍ତିକ କାବ୍ୟ ।

ଆଧୁନିକ ମଣିପୁରୀ ସାହିତ୍ୟରେ ମଧ୍ୟ ରାମାୟଣର ପ୍ରଭାବ ସମଧିକ ଦର୍ଶନୀୟ । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଏଗୁଡ଼ିକର ସୃଷ୍ଟି । କବି ଏ. ମୀନକେତନ 'ସୀତାବନବାସ' ନାଟକଟି ତିନି ଦଶକ ମଧ୍ୟରେ ଲେଖିଛନ୍ତି । ସଂପୂର୍ଣ୍ଣ ବାଲ୍ମୀକିରାମାୟଣ ମଣିପୁରୀ ଭାଷାରେ ଅନୂଦିତ ହୋଇଛି । ଏହାର ଅନୁବାଦକ ହେଉଛନ୍ତି ଏଲ୍. ଆଇ. ସିଂହ । ଭବଭୂତିଙ୍କ 'ଉତ୍ତରରାମଚରିତ' ନାଟକର ମଧ୍ୟ ମଣିପୁରୀ ଅନୁବାଦ ହୋଇଯାଇଛି । ବଙ୍ଗଳା କବି ମାଇକେଲ ମଧୁସୂଦନ ଦତ୍ତଙ୍କ 'ମେଘନାଦବଧ' କାବ୍ୟର ସଂପୂର୍ଣ୍ଣ ମଣିପୁରୀ ଅନୁବାଦ ଏଚ୍. ନବଦ୍ୱୀପଚନ୍ଦ୍ର ସିଂହଙ୍କଦ୍ୱାରା ହୋଇଯାଇଛି । ପିଲାମାନଙ୍କ ପାଇଁ ବାଲ୍ମୀକିରାମାୟଣର ଗଦ୍ୟାକାରରେ ଏହି ଭାଷାରେ ସଂକ୍ଷିପ୍ତ ସଂସ୍କରଣ ମଧ୍ୟ ହୋଇଯାଇଛି । ଏହିପରି ଭାବରେ ମଣିପୁରୀ ସାହିତ୍ୟକାରମାନେ ରାମାୟଣର ପ୍ରଦୀପଟିକୁ ଚିର ଜାଜ୍ଜ୍ୱଲ୍ୟମାନ କରି ରଖିଛନ୍ତି । ଏହି ପ୍ରଦୀପ ଏବେ ମଧ୍ୟ ମଣିପୁରୀ ସାହିତ୍ୟ ଓ ସଂସ୍କୃତିକୁ ଦିଗ୍‌ଦର୍ଶନ ଦେଉଛି ।

ଦୁର୍ଗାପୂଜା, ରାମନବମୀ ଆଦି ବିଭିନ୍ନ ପର୍ବପର୍ବାଣି ମଧ୍ୟ ରାମାୟଣ-ପରଂପରାକୁ ଏହି ଅଞ୍ଚଳରେ ଉଜ୍ଜୀବିତ କରି ରଖିଛି । ଏ ଦିଗରେ ଲୋକନୃତ୍ୟ, ଲୋକଗାଥା, ଲୋକଗୀତ ଆଦିର ଅବଦାନ ମଧ୍ୟ କିଛି କମ୍ ନୁହେଁ । ଯାତ୍ରାମାନଙ୍କରେ ମଧ୍ୟ ରାମାୟଣର କାହାଣୀଗୁଡ଼ିକ ଅଭିନୀତ ହେବା ଫଳରେ ଲୋକମାନଙ୍କ ମଧ୍ୟରେ ରାମକଥା ଖୁବ୍ ଲୋକପ୍ରିୟ ହୋଇପାରିଛି । ତୁଳସୀଦାସଙ୍କ ଭାଷାରେ 'ରାମକଥା ଅମୃତ ସମାନ' । ଏହି ଅମୃତର ସ୍ୱାଦକୁ ଅନ୍ୟାନ୍ୟ ଭାଷାଭାଷୀମାନଙ୍କ ଭଳି ମଣିପୁର ଭାଷାଭାଷୀମାନେ ଏବେ ମଧ୍ୟ ଚାଖୁଛନ୍ତି ।

## ଅସମିୟା ସାହିତ୍ୟ

ବାଲ୍ମୀକିଙ୍କ ରାମାୟଣ ସଂପର୍କରେ କୁହାଯାଇଛି :

Valmik's Ramayana is an immortal poem, serving as an ur-text to numerous succeeding reconstructions down the centuries but preserving its unexcelled poetic preeminence. (୨୩)

ଶତାବ୍ଦୀ-ଶତାବ୍ଦୀ ଧରି ରାମାୟଣର ଏହି ହେଉଁ ପ୍ରଭାବ, ତାହା ଫଳରେ ଭାରତୀୟ ଭାଷାମାନଙ୍କରେ ରାମାୟଣ ଉପରେ ଆଧାର କରି ଅନେକଗୁଡ଼ିଏ ଗ୍ରନ୍ଥ ଲେଖା ହେବାକୁ ଲାଗିଲା । ଅସମିୟା ଭାଷା ଓ ସାହିତ୍ୟ ସେଥିରୁ ବାଦ ଯାଇନଥିଲା । ଆସାମର ସାହିତ୍ୟ ଓ ସଂସ୍କୃତିରେ ପ୍ରାଚୀନ କାଳରୁ କୃଷ୍ଣ-ପରଂପରାର ପ୍ରଭାବ ଅଧିକତର ପ୍ରବଳ ଥିବାର ଜଣାଯାଏ । ରାମପରଂପରା ଓ ତାହାର ଅନୁସରଣରେ ଅସମିୟା ଭାଷାରେ ରାମାୟଣର ସୃଷ୍ଟି ବହୁ ବିଳମ୍ବରେ ପ୍ରାୟ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ହୋଇଥିବାର ଜଣାଯାଏ । ଏହି ଶତାବ୍ଦୀରେ ଲିଖିତ ହରିହର ପଣ୍ଡିତଙ୍କ କାବ୍ୟ 'ଲବକୁଶେର ଯୁଦ୍ଧ'କୁ ଉଦାହରଣ ହିସାବରେ ନିଆ ଯାଇପାରେ । ଏହାର କଥାବସ୍ତୁ 'ଜୈମିନୀୟ ମହାଭାରତ'ରୁ ଆହୃତ । ।ଅବଶ୍ୟ ଅସମୀୟା ଭାଷାରେ ଲେଖାଯାଇଥିବା ଅନେକ ଗୁଡ଼ିଏ ତାମ୍ରଫଳକ ମିଳିଛି । ପ୍ରାଚୀନତମ ତାମ୍ରଫଳକ ହେଉଛି ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ । କିନ୍ତୁ ଖୁବ୍ କମ୍ ସଂଖ୍ୟକ ତାମ୍ରଫଳକରେ ରାମଙ୍କ ନାମୋଲ୍ଲେଖ ଦେଖିବାକୁ ମିଳିଥାଏ, ଯଦିଓ ଅଧିକ ସଂଖ୍ୟକ ତାମ୍ରଫଳକରେ କୃଷ୍ଣଙ୍କ ନାମୋଲ୍ଲେଖ ଅଛି । ପୂର୍ବକଥିତ ମତେ ପ୍ରାଚୀନ କାଳରେ କୃଷ୍ଣପରଂପରା ରାମପରଂପରାଠାରୁ ଅଧିକତର ପ୍ରାଥମିକତା ଓ ମାନ୍ୟତା ପାଇଥିବାର ଏହା

ଫଳଶ୍ରୁତି । ଚତୁର୍ଦ୍ଦଶ ଶତାବ୍ଦୀର ରାମାୟଣ ଲେଖକଙ୍କ ନାମ ମାଧବ କନ୍ଦଲି । ତାଙ୍କ ଅନୁପ୍ରେରକ ଥିଲେ ରାଜା ମହାମାଣିକ୍ୟ । ସମ୍ଭବତଃ ଉତ୍ତରଭାରତୀୟ ଭାଷାମାନଙ୍କରେ ସୃଷ୍ଟ ରାମାୟଣ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଏହି ରାମାୟଣଟି ହେଉଛି ପ୍ରାଚୀନତମ । ଏହା ପଦ୍ୟାକାରରେ ଲିଖିତ । ମାଧବ କନ୍ଦଲି ବାଲ୍ମୀକି-ରାମାୟଣର ବିଶ୍ୱସନୀୟ ଅନୁବାଦ କରିଛନ୍ତି, ଆକ୍ଷରିକ ଅନୁବାଦ କିନ୍ତୁ ନୁହେଁ । କନ୍ଦଲି ନିଜେ ତାଙ୍କ ରାମାୟଣରେ ସ୍ୱୀକାର କରିଛନ୍ତି ଯେ ସେ ନିଜ ବୁଦ୍ଧି ଅନୁସାରେ ମୂଳକାବ୍ୟର ଅର୍ଥକୁ ବିକୃତ ନକରି ସଂକ୍ଷେପରେ ତାଙ୍କ ଗ୍ରନ୍ଥଟିକୁ ଲେଖିଛନ୍ତି । ତାଙ୍କ ନିଜ ଭାଷାରେ, "ଅପୋନାରା ବୁଦ୍ଧି ଅର୍ଥ ଯିମତ ବୁଝିଲେଁ । ସଂକ୍ଷେପ କରିୟା ତାକ ପଦ ବିରଚିଲେ ।" ତୁଳସୀ ରାମାୟଣ ଓ କୃତ୍ତିବାସ ରାମାୟଣରେ ରାମଙ୍କୁ ଭଗବାନ୍ ବିଷ୍ଣୁଙ୍କ ଅବତାର ଭାବରେ ଚର୍ଚ୍ଚିତ କରାଯାଇଛି ଏବଂ ତାଙ୍କଠାରେ ନାନାବିଧ ଅତିମାନବୀୟ ଐଶ୍ୱରିକ ଶକ୍ତି ଥିବାର ଅବତାରଣା କରାଯାଇଛି । ଉଦାହରଣ ସ୍ୱରୂପ, କୃତ୍ତିବାସ ତୁଳସୀଦାସଙ୍କଠାରୁ ଆଗେଇ ଯାଇ କହିଛନ୍ତି ଯେ ଜନ୍ମ ହେଲା ବେଳେ ରାମଙ୍କର ଚତୁର୍ହାତ ଥିଲା । ଅଥଚ ବାଲ୍ମୀକି-ରାମାୟଣର ରାମ ହେଉଛନ୍ତି ଜଣେ ମଣିଷ । କନ୍ଦଲି ମଧ୍ୟ ବାଲ୍ମୀକିଙ୍କୁ ଅନୁସରଣ କରି ରାମଙ୍କୁ ମଣିଷ ଭାବରେ ଚର୍ଚ୍ଚିତ କରିଛନ୍ତି । ଏହା ଫଳରେ ତାଙ୍କ କାବ୍ୟ ବାସ୍ତବିକତାର ଗଣ୍ଡି ମଧ୍ୟରେ ରହିପାରିଛି । କୁହାଯାଏ ଯେ କନ୍ଦଲି ସାତ କାଣ୍ଡଯାକ ବାଲ୍ମୀକି-ରାମାୟଣର ଅନୁବାଦ କରିଥିଲେ । କିନ୍ତୁ ଏବେ ପାଞ୍ଚଟି ମାତ୍ର କାଣ୍ଡ ମିଳୁଛି । ଅନ୍ୟ ଦୁଇଟି କାଣ୍ଡ, ଯଥା, ଆଦିକାଣ୍ଡ ଓ ଉତ୍ତରକାଣ୍ଡ ମିଳୁନାହିଁ । ଏହି ଦୁଇଟି କାଣ୍ଡ କୌଣସି କାରଣରୁ ନଷ୍ଟ ହୋଇ-ଯାଇଛି । କେତେକଙ୍କ ମତ ଯେ 'ଆଦିକାଣ୍ଡ' ଓ 'ଉତ୍ତରକାଣ୍ଡ' ବାଲ୍ମୀକି ରାମାୟଣରେ ପରେ ସଂଯୋଜିତ ହୋଇଛି ଯେତେବେଳେ ରାମଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଗଲା । ତେଣୁ ଜାଣି-ଶୁଣି କବି କନ୍ଦଲି ଏହି ଦୁଇଟି କାଣ୍ଡକୁ ଛାଡ଼ିଦେଇଛନ୍ତି । ଏହା କିନ୍ତୁ ଠିକ୍ ନୁହେଁ । ଏହି ଦୁଇଟି କାଣ୍ଡ ମୂଳରୁ ହିଁ ରାମାୟଣରେ ଥିଲା । ଏ ସଂପର୍କରେ ଲେଖକ ପୃଥକ୍ ଭାବରେ ବିଭିନ୍ନ ତଥ୍ୟ ଉପସ୍ଥାପିତ କରି ସବିଶେଷ ଆଲୋଚନା କରିଛନ୍ତି । ତାହା ଦ୍ରଷ୍ଟବ୍ୟ । (୨୪) ପ୍ରାୟ ଶହେ ବର୍ଷରୁ ଊର୍ଦ୍ଧ୍ୱ ସମୟ ପରେ ବୈଷ୍ଣବ ସନ୍ଥକବି ଶଙ୍କରଦେବ ଅସମିୟା ଭାଷାରେ 'ଆଦିକାଣ୍ଡ' ରଚନା କଲେ ଏବଂ ତାଙ୍କ ଶିଷ୍ୟ ମାଧବଦେବ ମଧ୍ୟ ଉତ୍ତରକାଣ୍ଡ ରଚନା କଲେ । ଏହିପରି ଭାବରେ ପ୍ରାଚୀନ କୃତି ହିସାବରେ ଅସମିୟା ରାମାୟଣରେ ବାଲ୍ମୀକିଙ୍କ ସାତ କାଣ୍ଡ ରହିଥିଲା ।

ତାହା ପରେ ୧୬ଶ ଶତାବ୍ଦୀରେ ଅନନ୍ତ କଣ୍ଡଲି ପୁନର୍ବାର ରଚନା କରନ୍ତି କଣ୍ଡଲିଙ୍କ ଅନୁଦିତ ପାଞ୍ଚକାଣ୍ଡ ରାମାୟଣକୁ । ସେ ଜଣେ ଶଙ୍କରପନ୍ଥୀ ବୈଷ୍ଣବ କବି ଥିଲେ । ସେ ରାମଙ୍କୁ ଦେବତାଙ୍କ ମାନ୍ୟତା ଦେବା ଉଦ୍ଦେଶ୍ୟରେ ତାଙ୍କ କାବ୍ୟରେ ନୂତନ ନୂତନ ବିଷୟବସ୍ତୁଗୁଡ଼ିକର ଅବତାରଣା କରିଛନ୍ତି ଯାହା କି ମାଧବ କଣ୍ଡଲିଙ୍କ ରଚନାରେ କିମ୍ବା ବାଲ୍ମୀକିଙ୍କ ରଚନାରେ ନଥିଲା । ଅନନ୍ତ କଣ୍ଡଲିଙ୍କ ଲେଖାକୁ ଏକ ସୃଷ୍ଟିଶୀଳ ନୂତନ କୃତି ଭିସାବରେ ଗ୍ରହଣ କରାଯାଇପାରେ । ସେ ମଧ୍ୟ 'ମହୀରାବଣବଧ' ବୋଲି ଆଉ ଏକ କାବ୍ୟ ଲେଖିଛନ୍ତି ଯାହାର କଥାବସ୍ତୁ 'ଅଧ୍ୟାତ୍ମରାମାୟଣ'ରୁ ଗୃହୀତ । ଏହି ୧୬ଶ ଶତାବ୍ଦୀର ଶେଷଭାଗ ଆଡ଼କୁ କଳାପଚନ୍ଦ୍ର ଦ୍ୱିଜ ଲେଖନ୍ତି 'ରାମାୟଣଚନ୍ଦ୍ରିକା' ଯାହା ରାମାୟଣର ଏକ ସଂକ୍ଷିପ୍ତ ସଂସ୍କରଣ । ଏହା ସେତେଟା ଲୋକପ୍ରିୟତା ଅଥବା ସାହିତ୍ୟିକ ଶ୍ରେଷ୍ଠତା ହାସଲ କରିପାରିନାହିଁ । ତାହା ଉତ୍ତାରୁ ଶଙ୍କରଦେବଙ୍କ କୀର୍ତ୍ତନଶୈଳୀକୁ ଅନୁକରଣ କରି ୧୭ଶ ଶତାବ୍ଦୀରେ କବି ଅନନ୍ତ କାୟସ୍ଥ ଲେଖନ୍ତି 'ରାମକୀର୍ତ୍ତନ' ଗ୍ରନ୍ଥ । ରଘୁନାଥ ମହନ୍ତ (୧୮ଶ ଶତାବ୍ଦୀ) ହେଉଛନ୍ତି ଅସମିୟା ଭାଷାର ପ୍ରଥମ ସ୍ରଷ୍ଟା ଯେ କି ରାମାୟଣକୁ ଗଦ୍ୟାକାରରେ ଲେଖିଛନ୍ତି । ଏହା ଅତି ସରଳ ଭାଷାରେ ଓ ସାବଲୀଳ ଢଙ୍ଗରେ ଲିଖିତ ଯଦିଓ ଏଥିରେ ସ୍ରଷ୍ଟାଙ୍କ ଗଭୀର ଦାର୍ଶନିକ ଜ୍ଞାନ ପ୍ରତିଫଳିତ । ଏତଦ୍‌ବ୍ୟତୀତ ଏଥିରେ ଉଚ୍ଛଳ ଭକ୍ତିର ଧାରା ଛଳ-ଛଳ ହୋଇ ବହି ଯାଉଛି । ବାଲ୍ମୀକି-ରାମାୟଣର ଅସମୀୟା ଅନୁବାଦ ଚଳିତ ଶତାବ୍ଦୀରେ (୨୦ଶ ଶତାବ୍ଦୀ) ଗୌହାଟି ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ।

ଏହା ଛଡ଼ା ଅସମିୟା ଭାଷା, ସାହିତ୍ୟ ଓ ସଂସ୍କୃତି ରାମକଥାସଂପର୍କିତ ଅନେକଗୁଡ଼ିଏ ଲୋକଗୀତ ଓ ଲୋକକାହାଣୀରେ ମଧ୍ୟ ଭରପୂର । ଲୋକଗୀତ, ରାମଲୀଳା, ଯାତ୍ରା ଆଦି ଲୋକନାଟ୍ୟ ସମୂହ ମଧ୍ୟ ଏ ଦିଗରେ ପଛାଇ ନାହାନ୍ତି । ଖାଲି ତ ଆସାମରେ ନୁହେଁ, ସାରା ଭାରତର ବିଭିନ୍ନ ଅଞ୍ଚଳରେ ମଧ୍ୟ ଲୋକନୃତ୍ୟ, ଲୋକଗୀତ ଆଦିରେ ରାମାୟଣପରଂପରାର ଗଭୀର ପ୍ରଭାବ ପଡ଼ିଛି ଏବଂ ଏବେ ମଧ୍ୟ ତାହା ଅକ୍ଷୁଣ୍ଣ ଅଛି । ରାମକଥାର ପ୍ରଥମ ପ୍ରଭାବ ପଡ଼ିଛି ବ୍ୟାସଙ୍କ କୃତ ମହାଭାରତର 'ହରିବଂଶ' ଖଣ୍ଡରେ । ଏହି ହରିବଂଶ ଉପରେ ଆଧାରିତ ରାମଲୀଳା ଆଜି ଗାଁ-ଗାଁରେ ଓ ସହର-ବଜାରରେ ସବୁଠାରେ ଅଭିନୀତ ହୋଇ ଚାଲିଛି । ଏହା ଶାନ୍ତିକୁମାର ନାନୂରାମ ବ୍ୟାସଙ୍କ ନିମ୍ନଲିଖିତ ବକ୍ତବ୍ୟ ଦ୍ୱାରା ପରିପୁଷ୍ଟ :

ରାମାୟଣ ସେ ଲୌକିକ ସଂସ୍କୃତ ଓ ପ୍ରାଚୀନ ନାଟକକାରୋଂ କୋ ହୀ ପ୍ରେରଣା ନହୀଂ ମିଲୀ, ବରନ୍ ଆଜ ଭୀ ଭାରତ ମେଂ ଉସକେ ଆଧାର ପର

ନାଟକ ଔର ଚଲଚିତ୍ର ନିର୍ମିତ କିୟେ ଜା ରହେ ହୈଁ । ରାମ କଥା କେ ସବ ପ୍ରଥମ ନାଟକୀକରଣ କା ଉଲ୍ଲେଖ ହରିବଂଶ ମେଂ ହୁଆ ହୈ ଔର ଉସ୍‌କା ବର୍ତ୍ତମାନ ରୂପ ନଗର-ନଗର ଔର ଗାଁଓ-ଗାଁଓ ମେଂ ଖେଲୀ ଜାନେୱାଲୀ ରାମଲୀଲାଓଂ ମେଂ ପାୟା ଜାତା ହୈ । ବିଶେଷକର ଚୈତ୍ର ଓ ଆଶ୍ୱିନ କେ ନବରାତ୍ର-ମହୋତ୍ସବ ମେଂ ରାମାୟଣ କେ ଅନେକ ଦୃଶ୍ୟ ଅଭିନୀତ କିୟେ ଜାତେ ହୈଂ, ତଥା ଅନ୍ତ ମେଂ ରାବଣ-କୁମ୍ଭକର୍ଣ୍ଣ-ମେଘନାଦ କେ ପୁତଲୋଂ କୋ ଜଲାକର ପାପ ପର ପୁଣ୍ୟ କୀ ବିଜୟ ସୂଚିତ କୀ ଜାତୀ ହୈ । (୨୫)

ଏହିପରି ଭାବରେ ରାମାୟଣ-ପରଂପରା ଆସାମର ସାହିତ୍ୟ ଓ ସଂସ୍କୃତି ଉପରେ ଯୁଗ-ଯୁଗ ଧରି ପ୍ରଭାବ ପକାଇ ଆସିଛି ।

## ହିନ୍ଦୀ ସାହିତ୍ୟ :

ରାମକଥା ଅତି ବିଚିତ୍ର ଏବଂ ଏହାର ସ୍ରୋତ ଅତି ପ୍ରବଳ । ଖାଲିତ ଭାରତ ନୁହେଁ, ଭାରତର ସୀମାକୁ ଡେଇଁ ଏହା ପ୍ରାୟ ସାରା ଏସିଆ ଭୂଖଣ୍ଡରେ ବିସ୍ତାରଲାଭ କରିଛି । ଅନେକ ଯୁଗ ଇତିମଧ୍ୟରେ ବିତିଗଲାଣି । କିନ୍ତୁ ଏହାର ପ୍ରଭାବ ଏ ପର୍ଯ୍ୟନ୍ତ ମଧ୍ୟ ମଉଳି ଯାଇନାହିଁ । ରାମସାହିତ୍ୟର ସୃଷ୍ଟି ଏବେ ମଧ୍ୟ ଚାଲିଛି । ଗୋଟିଏ ଆଦିଗ୍ରନ୍ଥ ବାଲ୍ମୀକିରାମାୟଣ ଯେ ଏଭଳି ପ୍ରଭାବ ବିସ୍ତାର କରିପାରିଛି, ଏ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

The boundaries of the sway of this literature expands to the whole of Asia. (୨୬)

ଗୋସ୍ୱାମୀ ତୁଲସୀଦାସଙ୍କର ତ ସେହି ମତ ଯେଉଁଠି ସେ କହିଛନ୍ତି 'ରାମକଥା କାଇ ମିତି ଜାଗା ନହି’ । (୨୭) ରାମକଥାର ଏହି ବିସ୍ତାର-ପ୍ରକ୍ରିୟା ମାଧ୍ୟମରେ ଏହା ହିନ୍ଦୀଭାଷା ଉପରେ ବେଶ୍ ବିପୁଳ ପ୍ରଭାବ ପକାଇଥିବା ସ୍ୱାଭାବିକ । ବାସ୍ତବିକ ତାହା ହିଁ ଘଟିଛି ଏବଂ ରାମକଥାର ଏହି ପ୍ରଭାବ ଫଳରେ ହିନ୍ଦୀ ସାହିତ୍ୟ ଯଥେଷ୍ଟ ସମୃଦ୍ଧ ହୋଇପାରିଛି । ପ୍ରକୃତରେ ଦେଖିବାକୁ ଗଲେ ହିନ୍ଦୀଭାଷାଭାଷୀମାନଙ୍କ ମଧ୍ୟରେ ରାମକଥା ଯେତେଟା ଲୋକପ୍ରିୟ ହୋଇପାରିଛି, ଅନ୍ୟ ଭାଷାଭାଷୀମାନଙ୍କ ମଧ୍ୟରେ ସେତେଟା ହୋଇ ପାରିନାହିଁ । ଦୁଇ ପ୍ରକାର ଗ୍ରନ୍ଥମାନେ ଏହି ପ୍ରଭାବ ପାଇଁ ଦାୟୀ । ପ୍ରଥମ ପ୍ରକାର ଗ୍ରନ୍ଥମାନେ ହେଲେ ବାଲ୍ମୀକିକୃତ ରାମାୟଣ ଏବଂ ତଦାଶ୍ରିତ ସଂସ୍କୃତ ତଥା ପାଲି-ପ୍ରାକୃତ ଭାଷାରେ

ଲିଖିତ ଅନ୍ୟାନ୍ୟ ଗ୍ରନ୍ଥ । ଦ୍ୱିତୀୟ ପ୍ରକାର ଏକମାତ୍ର ଗ୍ରନ୍ଥଟି ହେଲା ଆକବରଙ୍କ ଶାସନକାଳରେ ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀରେ ଲିଖିତ ତୁଳସୀ ଦାସଙ୍କ ହିନ୍ଦୀ 'ରାମଚରିତ ମାନସ' । ଐତିହାସିକ ଭି. ଏ. ସ୍ମିଥ୍ ଆକବରଙ୍କ ଅପେକ୍ଷା ତୁଳସୀଦାସଙ୍କୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ତାଙ୍କ ମତରେ ତୁଳସୀଦାସ ହେଉଛନ୍ତି :

> The greatest man of his age in India, greater even than Akbar himself, inasmuch as the conquest of hearts and minds of millions of men and women effected by the poet was an achievement infinitely more lasting and important than any or all of the victories gained in war by the monarch. (୨୮)

ହିନ୍ଦୀ ସାହିତ୍ୟର ଏହି ବଳିଷ୍ଠ ରାମାୟଣୀୟ ପରଂପରା ବିଷୟରେ ଆଲୋଚନା କରିବା ତେଣୁ ବିଶେଷ ଗୁରୁତ୍ୱପୂର୍ଣ୍ଣ ତଥା କୌତୂହଳପ୍ରଦ ।

ହିନ୍ଦୀ ବର୍ତ୍ତମାନ ଭାରତର ରାଷ୍ଟ୍ରଭାଷା । ଏହାର ଅଧିକାଂଶ ଲୋକ ହିନ୍ଦୀଭାଷାଭାଷୀ । ଉତ୍ତରଭାରତର ବିହାର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ରାଜସ୍ଥାନ ଦିଲ୍ଲୀ, ହରିଆନା ଓ ହିମାଚଳପ୍ରଦେଶ ଆଦି ରାଜ୍ୟମାନଙ୍କରେ ଏହି ଭାଷାଭାଷୀ-ମାନେ ସଂଖ୍ୟାଧିକ । ସ୍ଥୂଳ ଭାବରେ କହିବାକୁ ଗଲେ ଏହି ଅଞ୍ଚଳଗୁଡ଼ିକରେ ବିଭିନ୍ନ ସମୟରେ ତିନି ପ୍ରକାର ଉପଭାଷା (ବୋଲି) ପ୍ରଚଳିତ । ଏଗୁଡ଼ିକ ହେଲା ବ୍ରଜଭାଷା (ଆଗ୍ରା-ମଥୁରା ଅଞ୍ଚଳର ବୋଲି), ଅଓ୍ୱଧି (ଅଯୋଧ୍ୟା ଅଞ୍ଚଳରେ ପ୍ରଚଳିତ ବୋଲି) ଏବଂ ଖଡ଼ିବୋଲି (ଦିଲ୍ଲୀ ଅଞ୍ଚଳରେ ପ୍ରଚଳିତ ବୋଲି) । ପ୍ରାଚୀନ ହିନ୍ଦୀ ସାହିତ୍ୟରେ ଏହି ବୋଲିଗୁଡ଼ିକ ସ୍ଥାନୀୟ ବିଶିଷ୍ଟ ଉପବୋଲି-ଗୁଡ଼ିକ ସହିତ ମିଶି ବିଭିନ୍ନ କୃତିମାନ ଲେଖାଯାଇଛି । କିନ୍ତୁ ବର୍ତ୍ତମାନ ହିନ୍ଦୀ ଲେଖକମାନେ ଖଡ଼ିବୋଲିକୁ ଲେଖାର ମାଧ୍ୟମ ରୂପେ ବ୍ୟବହାର କରୁଛନ୍ତି ଏବଂ ରାଷ୍ଟ୍ରଭାଷା କହିଲେ ଏହି ବୋଲିକୁ ହିଁ ବୁଝାଇଥାଏ । ଅବଶ୍ୟ ଅନ୍ୟ ବୋଲି-ଗୁଡ଼ିକରେ ସ୍ଥାନୀୟ ଅଞ୍ଚଳରେ ସାହିତ୍ୟକୃତିମାନ ସୃଷ୍ଟି ହେଉଛି । କିନ୍ତୁ ସେଗୁଡ଼ିକର ପ୍ରଭାବ ସେହି ସେହି ଅଞ୍ଚଳଗୁଡ଼ିକରେ ହିଁ ସୀମାବଦ୍ଧ । ଉଦାହରଣ ସ୍ୱରୂପ ବ୍ରଜଭାଷା, ଅଓ୍ୱଧି, ମୈଥିଳୀ, ଭୋଜପୁରୀ, ରାଜସ୍ଥାନୀ ଆଦି ବୋଲିଗୁଡ଼ିକୁ ବିଚାର କରାଯାଇପାରେ । ଯଦିଓ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରୁ ଖଡ଼ିବୋଲି ଓ ବ୍ରଜଭାଷାର ସମ୍ମିଶ୍ରଣ ଅଣାଇ ସାହିତ୍ୟସୃଷ୍ଟି କରାଯାଉଥିଲା, ତଥାପି ଊନବିଂଶ

ଶତାବ୍ଦୀର ମଧ୍ୟଭାଗରୁ କେବଳ ଖଡ଼ିବୋଲିରେ ହିଁ ହିନ୍ଦୀର ସାହିତ୍ୟକୃତିଗୁଡ଼ିକ ଲେଖାଯାଉଛି ।

ମୂଳ ରାମାୟଣର ସ୍ରଷ୍ଟା ବାଲ୍ମୀକିଙ୍କ ଜନ୍ମ ଉତ୍ତରଭାରତରେ । ଏହାର ସୃଷ୍ଟି ମଧ୍ୟ ହୋଇଥିଲା ଉତ୍ତରଭାରତରେ । ଏଣୁ ଏହା ମୂଳରୁ ହିଁ ଏଠାରେ ଲୋକପ୍ରିୟତା ହାସଲ କରିଥିବା ସ୍ୱାଭାବିକ । ବାସ୍ତବିକ ତାହା ହିଁ ଘଟିଥିଲା । କିନ୍ତୁ ଅନେକ ଐତିହାସିକ କାରଣରୁ ଏହାର ପ୍ରଭାବ ଏହି ଅଞ୍ଚଳରେ ଧୀରେ ଧୀରେ ମଳିନ ପଡ଼ିଯିବାକୁ ଆରମ୍ଭ କଲା । ବୌଦ୍ଧଧର୍ମ, ଜୈନଧର୍ମ, ଶାକ୍ତଧର୍ମ, ଶୈବଧର୍ମ ଆଦି ଧର୍ମଗୁଡ଼ିକ ଏହି ଅଞ୍ଚଳରେ ବିଭିନ୍ନ ସମୟରେ ସେମାନଙ୍କ ପୃଥକ୍-ପୃଥକ୍ ପ୍ରଭାବ ବିସ୍ତାର କରି ରହିଲା । ତାହା ବ୍ୟତୀତ ପୁଣି ଥିଲା ବୈଦେଶିକମାନଙ୍କର ଯଥା, ଗ୍ରୀକ୍, ଶକ, ହୁନ୍, କୁଷାଣ ଓ ମୁସଲମାନଙ୍କର ଆକ୍ରମଣ । ତନ୍ମଧ୍ୟରୁ ବୌଦ୍ଧ, ଜୈନ ଓ ମୁସଲମାନମାନଙ୍କର ପ୍ରଭାବ ବହୁତ ଦିନ ପର୍ଯ୍ୟନ୍ତ ରହିଲା । ଏବେ ବୌଦ୍ଧମାନଙ୍କ ପ୍ରଭାବ କିଛିଟା କମିଯାଇଥିଲେ ମଧ୍ୟ ଅନ୍ୟ ଦୁଇ ସମ୍ପ୍ରଦାୟର ପ୍ରଭାବ ଅନେକଟା ରହିଛି । ଧର୍ମ ଓ ସଂସ୍କୃତିର ଘାତ ପ୍ରତିଘାତ ପ୍ରକ୍ରିୟା ମଧ୍ୟରେ ରାମାୟଣର ପ୍ରଭାବ କିଛିଟା କମିଗଲା । ଏହା ପରେ ଆସିଲା ଭାଗବତ ଧର୍ମ ଓ ଏହା ଉପରେ ପ୍ରତିଷ୍ଠିତ ବୈଷ୍ଣବଧର୍ମ । ଏଥିରେ କୃଷ୍ଣକଥା ଉପରେ ପ୍ରାଧାନ୍ୟ ଦିଆଗଲା ଏବଂ କୃଷ୍ଣଭକ୍ତିର ନାନା ପ୍ରକାର ବ୍ୟାଖ୍ୟା କରାଗଲା । ଗୋପୀମାନଙ୍କର କୃଷ୍ଣଙ୍କ ସହିତ ମିଳନକୁ ଆତ୍ମାର ପରମାତ୍ମାଙ୍କ ସହିତ ମିଳନର ବ୍ୟାଖ୍ୟା କରାଗଲା । ସେଥିପାଇଁ ତ ଏହି ଅଞ୍ଚଳରେ ସୃଷ୍ଟ 'ଭୁଷୁଣ୍ଡି ରାମାୟଣ'ରେ ଓ 'ଅଧ୍ୟାତ୍ମରାମାୟଣ'ରେ କୃଷ୍ଣଲୀଳା ସହିତ ପ୍ରତିଦ୍ୱନ୍ଦ୍ୱିତା କରିବା ଉଦ୍ଦେଶ୍ୟରେ ରାମାୟଣ କାବ୍ୟ ରଚନା କରାଗଲା । ଅବଶ୍ୟ ତାହା ଥିଲା ସଂସ୍କୃତ ଭାଷାରେ; କାରଣ ସେପର୍ଯ୍ୟନ୍ତ ଏଭଳି ରଚନା କରିବା ପାଇଁ ହିନ୍ଦୀ-ଭାଷା ଯଥେଷ୍ଟ ବିକଶିତ ହୋଇନଥିଲା । 'ଭୁଷଣ୍ଡି ରାମାୟଣ'ର ସୃଷ୍ଟି ହୁଏ ୧୨ଶ ଶତାବ୍ଦୀରେ ବୋଲି ବହୁ ପଣ୍ଡିତଙ୍କର ସିଦ୍ଧାନ୍ତ । ଅବଶ୍ୟ ପ୍ରଖ୍ୟାତ ବିଦ୍ୱାନ୍ ଡ. ରାଘବନ୍‌ଙ୍କ ମତରେ ଏହାର ସୃଷ୍ଟି ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ । (୨୯) କିନ୍ତୁ ଏଥିରେ ଥିବା ଜୟଦେବୀୟ ପ୍ରଭାବରୁ ଜଣାପଡ଼େ ଯେ ଏହା ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀ ପୂର୍ବରୁ ଲେଖାଯାଇନଥିବ । ଦ୍ୱିତୀୟତଃ ଉଗ୍ର ଶୃଙ୍ଗାରିକତାରେ ପରିପୂର୍ଣ୍ଣ ୮ମ ଶତାବ୍ଦୀୟ ସୃଷ୍ଟ ବୌଦ୍ଧ 'ବଜ୍ରଯାନ' ବା 'ତନ୍ତ୍ରଯାନ'ର ପ୍ରଭାବ ମଧ୍ୟ ଏଥିରେ ପଡ଼ିଛି । ଏଣୁ ରାଘବନ୍‌ଙ୍କ ଯୁକ୍ତି ଦୁର୍ବଳ ବୋଲି ମନେହୁଏ । ଏହି ରାମାୟଣର ତଥା ଅଧ୍ୟାତ୍ମରାମାୟଣର ପ୍ରଭାବ ବହୁ ବର୍ଷ ପର୍ଯ୍ୟନ୍ତ ସମ୍ଭବତଃ ଉତ୍ତରଭାରତରେ ଥିଲା । ସେଥିପାଇଁ ତୁଳସୀଦାସ

(ଖ୍ରୀଷ୍ଟୀୟ ୧୬ଶ-୧୭ଶ ଶତାବ୍ଦୀ) ତାଙ୍କ 'ରାମଚରିତମାନସ'ରେ ବାଲ୍ମୀକି-ରାମାୟଣ ଛଡ଼ା ଏହି ଦୁଇଟି ରାମାୟଣରୁ ଅନେକ କିଛି ବିଷୟବସ୍ତୁ ଗ୍ରହଣ କରିଛନ୍ତି । ଏହି ବିଷୟରେ ବିସ୍ତୃତ ଆଲୋଚନା ପରେ କରାଯିବ ।

ଏହିଭଳି ଧାର୍ମିକ-ସାଂସ୍କୃତିକ-ସାହିତ୍ୟିକ ପୃଷ୍ଠଭୂମିର ବୈଚିତ୍ର୍ୟ ମଧ୍ୟରେ ଆବିର୍ଭାବ ହୁଅନ୍ତି କବୀର, ନାନକ, ସୂରଦାସ, ତୁଳସୀଦାସ ଓ ମୀରାବାଈଙ୍କ ଭଳି ଭକ୍ତକବିଗଣ । ଏମାନଙ୍କ ସାହିତ୍ୟିକ ଯଶଃ ଓ କୀର୍ତ୍ତି ହିନ୍ଦୀଭାଷାଭାଷୀ ଅଞ୍ଚଳର ପରିସୀମାକୁ ଟପିଯାଏ । ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ମତ ଏହାର ପରିପୋଷକ । ସେ କହନ୍ତି :

> The name and fame of these poets have not only crossed the boundaries of the Hindi-speaking area, but have also gone far beyond India itself. (୩୦)

ଏହା ପୂର୍ବରୁ ବୈଷ୍ଣବ ଆଚାର୍ଯ୍ୟ ରାମାନନ୍ଦ (୧୪୦୦-୧୪୭୦) ଆସି ଯାଇଥାନ୍ତି ଏବଂ ଆସି ବି ଯାଇଥାନ୍ତି ଅପର ବୈଷ୍ଣବ ଆଚାର୍ଯ୍ୟ ବଲ୍ଲଭାଚାର୍ଯ୍ୟ । ରାମାନନ୍ଦଙ୍କ ଶିଷ୍ୟ ହୁଅନ୍ତି ଅନେକ ନୀଚ ବର୍ଗର ଲୋକ, ଯଥା କବୀର (ତନ୍ତୀ), ରଇଦାସ ଓ ରବିଦାସ (ମୋଚି) । ରାମାନନ୍ଦ ଓ ବଲ୍ଲଭାଚାର୍ଯ୍ୟଙ୍କ ପୂର୍ବରୁ ଆଉ ଜଣେ ବୈଷ୍ଣବ ଦାର୍ଶନିକ ରାମାନୁଜ (୧୦୧୭-୧୧୩୭) ମଧ୍ୟ ଆସି ଯାଇଥାନ୍ତି । ରାମାନନ୍ଦ ଓ ରାମାନୁଜ ଥାଆନ୍ତି ରାମଭକ୍ତ । ବଲ୍ଲଭାଚାର୍ଯ୍ୟ ଥାଆନ୍ତି କୃଷ୍ଣଭକ୍ତ । କବୀର ଅବଶ୍ୟ ରାମଙ୍କୁ ଭକ୍ତି କରୁଥାନ୍ତି, କିନ୍ତୁ ବାଲ୍ମୀକିଙ୍କ ରାମଙ୍କୁ ନୁହେଁ ଯାହାଙ୍କୁ କବି ମାନବୀୟ ରୂପ ଦେଇଛନ୍ତି । ସେ କହୁଥାନ୍ତି ଯେ ହିନ୍ଦୁମାନଙ୍କ ରାମ ଓ ମୁସଲମାନମାନଙ୍କ ରହିମ ହେଉଛନ୍ତି ଏକ ଭଗବାନ୍ । ତେଣୁ ତାଙ୍କ ଶିଷ୍ୟମାନେ ଉଭୟ ହିନ୍ଦୁ ଓ ମୁସଲମାନ୍ ସଂପ୍ରଦାୟରୁ ଆସିଥାନ୍ତି । ଏହିପରି ଭାବରେ ହିନ୍ଦୀଭାଷାଭାଷୀ ଅଞ୍ଚଳରେ ରାମଭକ୍ତିର ଏକ ଦିବ୍ୟ ଆନ୍ଦୋଳନ ଚାଲେ । ଏହି ଆନ୍ଦୋଳନକୁ ସୁଫି କବିମାନେ ସେମାନଙ୍କ କାବ୍ୟ ଓ ଗୀତାବଳୀ ମଧ୍ୟରେ ମାନବୀୟ ପ୍ରେମିକ-ପ୍ରେମିକାପ୍ରେମରୁ ଭକ୍ତ-ଭଗବାନ୍‌ଙ୍କ ପ୍ରେମରେ ରୂପାନ୍ତରିତ କରି ଆହୁରି ଅଧିକ ପ୍ରଖରତର ଭାବରେ ବୁଝାଇ ଦେଇଥାନ୍ତି । ସର୍ବପ୍ରଥମ ସୁଫି କବି ହେଉଛନ୍ତି ମଉଲନା ଦାଉଦ (୧୪ଶ-୧୫ଶ ଶତାବ୍ଦୀ) । ତାଙ୍କ ରଚିତ 'ଚନ୍ଦାୟନ' ଏକ ପ୍ରଧାନ ପ୍ରେମକାବ୍ୟ । ଅନ୍ୟ ପ୍ରଧାନ-ପ୍ରଧାନ ସୁଫି କବିମାନେ ହେଲେ କୁତୁବାନ୍ (୧୬ଶ ଶତାବ୍ଦୀ) ଯେ ଥିଲେ 'ମଧୁମାଲତୀ' ପ୍ରେମକାବ୍ୟର ସ୍ରଷ୍ଟା । ଏହି ସମୟର ସବୁଠାରୁ ବଡ଼ ପ୍ରତିଷ୍ଠିତ କବି ହେଉଛନ୍ତି ମାଲିକ ମହମ୍ମଦ ଜୟସି (୧୪୦୨-୧୫୪୩)

ଯାହାଙ୍କ ଅମର କୃତି 'ପଦ୍ମାବତ୍' ଖୁବ୍ ଲୋକପ୍ରିୟ ହୋଇପାରିଥିଲା । ଏହା ଦୋହା ଓ ଚଉପଦୀ ଛନ୍ଦରେ ରଚିତ । ଏହି ସମସ୍ତ କୃତି (ସୁଫି-କବିକୃତି) ଅଉଧି ବୋଲିରେ ଲିଖିତ । ଏ ସବୁର ସୃଷ୍ଟି ମୂଳରେ ଥିଲା ମୌଳ ଭାରତୀୟ ଚିନ୍ତାଧାରା ଯାହା ବେଦାନ୍ତଦର୍ଶନ ଉପରେ ପ୍ରତିଷ୍ଠିତ । ଏହି ଦର୍ଶନ ଦୈହିକ ପ୍ରେମକୁ ଈଶ୍ୱରୀୟ ପ୍ରେମରେ ରୂପାନ୍ତରିତ କରାଇବା ଲାଗି ମାନବ-ସମାଜକୁ ଉପଦେଶ ଦେଇଥାଏ । ଓଡ଼ିଶାରେ ପ୍ରଚଳିତ ପଞ୍ଚସଖାଯୁଗୀୟ ରାଗାନୁଗା ଭକ୍ତି ମଧ୍ୟ ଠିକ୍ ଏହି ଶ୍ରେଣୀୟ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଠିକ୍ ଏହି ସମୟରେ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀର ଇଟାଲୀୟ କବି ତାଙ୍କ ଅମର କୃତି 'Divine Comedy' କାବ୍ୟରେ ବିଏଟ୍ରିସ୍‌ଙ୍କ ପ୍ରତି ପ୍ରାଥମିକ ସ୍ତରରେ ଥିବା ଦୈହିକ ପ୍ରେମକୁ ଦିବ୍ୟ ପ୍ରେମରେ ଉତ୍ତରଣ କରାଇଛନ୍ତି । ହୁଏତ ଏହି ଜ୍ଞାନ ଭାରତୀୟ ବେଦାନ୍ତ ଦର୍ଶନର ଅଧ୍ୟୟନ ଓ ଅନୁଶୀଳନ ଫଳରେ ତାଙ୍କଠାରେ ଉପଲବ୍ଧ ହୋଇଥାଇପାରେ । ଏହିସବୁ ସାହିତ୍ୟ ଏକାଠି ମିଶ୍ରିତ ହୋଇ ନିମ୍ନଲିଖିତ ପରିସ୍ଥିତି ସୃଷ୍ଟି କଲା :

କ) ବାଲ୍ମୀକିଙ୍କ ମାନବୀୟ ରାମଙ୍କ ସ୍ୱରୂପ ଓ ପ୍ରକୃତି ବଦଳିଯାଇ ସେ ଦେବତା ହୋଇଗଲେ ।

ଖ) ସେହି ଦେବତାଙ୍କୁ ହିନ୍ଦୁମାନେ ଭଗବାନ୍ ବିଷ୍ଣୁଙ୍କ ଅବତାର ବୋଲି କହିବାକୁ ଲାଗିଲେ ।

ଗ) ତାଙ୍କୁ ମୁସଲମାନମାନେ ରହିମ୍ ବୋଲି କହିବାକୁ ଲାଗିଲେ ।

ଘ) ରାମାୟଣର ଏଭଳି ରୂପପରିବର୍ତ୍ତନ ଫଳରେ ରାମକଥା ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ଲୋକପ୍ରିୟ ହେବାକୁ ଲାଗିଲା ।

ଙ) ପୂର୍ବରୁ ଭାଗବତକାରଙ୍କଦ୍ୱାରା ପ୍ରକାଶିତ କୃଷ୍ଣ ଓ ଗୋପୀମାନଙ୍କ ମଧ୍ୟରେ ଥିବା ଦିବ୍ୟ ପ୍ରେମ ଯାହାକୁ 'ଭୁଷୁଣ୍ଡି ରାମାୟଣକାର' (୧୨ଶ ଶତାବ୍ଦୀ) ଗ୍ରହଣ କରି ରାମ-ସୀତାଙ୍କ ପ୍ରତି ଇପ୍ସିତ ପ୍ରେମମିଶା ଭକ୍ତିରେ ଆରୋପିତ କରିଥିଲେ ତାହା ଏବେ ଆହୁରି ଅଧିକ ଉଦଗ୍ର ଭାବରେ ଉପରୋକ୍ତ ଆଚାର୍ଯ୍ୟମାନଙ୍କ ଦ୍ୱାରା ଓ ସନ୍ଥକବିମାନଙ୍କ ଦ୍ୱାରା ପ୍ରଚାରିତ ଓ ପ୍ରସାରିତ ହେବାକୁ ଲାଗିଲା ।

ଚ) ରାମଙ୍କୁ ନିର୍ଗୁଣ ବ୍ରହ୍ମଙ୍କ ସହିତ ସମୀକୃତ କରାଗଲା । ଏହି ସମୀକରଣ ପ୍ରକ୍ରିୟାରେ ସନ୍ଥକବି କବୀର ଓ ଅନ୍ୟ ଜଣେ ସନ୍ଥକବି ଦାଦୁ ଦୟାଲ୍ (୧୫୪୪-୧୬୦୩) ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଏହି ଯେଉଁ ପ୍ରେମ ଓ ଭକ୍ତିର ପୁଣ୍ୟତୋୟା ଗଙ୍ଗା ହିନ୍ଦିଭାଷାଭାଷୀ ଅଞ୍ଚଳରେ ବହିବାକୁ ଲାଗିଲା, ତାହାର କୂଳରେ ବସି କାବ୍ୟତପସ୍ୟା କରୁଥିବା ଅବସରରେ ତୁଳସୀଦାସ (୧୫୩୨-୧୬୨୩) ନିଜେ ବି ସେହି ମହାସ୍ରୋତରେ ଭାସିଗଲେ । ସେ ଲେଖିଲେ 'ରାମଚରିତମାନସ' ବା 'ରାମଚରିତର ମାନସହ୍ରଦ' । କବିଙ୍କ ଦୃଷ୍ଟିରେ ଏହା ମାନସହ୍ରଦର ଜଳ ଭଳି ନିର୍ମଳ । ଅନ୍ୟ ଭାଷାରେ କହିବାକୁ ଗଲେ ଏହା 'ନିର୍ମଳ ରାମଚରିତ' । ପଣ୍ଡିତମାନଙ୍କ ମତ ଯେ ସେ ବହୁ ତୀର୍ଥଯାତ୍ରା କରି ସାରିବା ପରେ ଶେଷରେ ରାମଙ୍କ ଜନ୍ମଭୂମି ଅଯୋଧ୍ୟାକୁ ଯାଇ ସେଠାରେ ୧୫୭୪ ମସିହାରେ 'ରାମଚରିତମାନସ'ର ଲେଖା ଆରମ୍ଭ କଲେ ଏବଂ ପରେ ବାରାଣସୀକୁ ଆସି ସେଠାରେ ଏହାକୁ ସମ୍ପୂର୍ଣ୍ଣ କଲେ । ତାଙ୍କ ମୃତ୍ୟୁ ବାରାଣସୀରେ ହୋଇଥିଲା ୧୬୨୩ ମସିହାରେ ।

ତୁଳସୀଦାସ ମୁଖ୍ୟତଃ ଦୁଇଟି ଉଦ୍ଦେଶ୍ୟ ରଖି ତାଙ୍କ ରାମାୟଣ ଲେଖିଥିଲେ । ପ୍ରଥମଟି ହେଲା ରାମକଥାକୁ ଲୋକପ୍ରିୟ କରାଇବା ଏବଂ ଦ୍ୱିତୀୟଟି ହେଲା ରାମଙ୍କୁ ଦେବତା ବୋଲି ପ୍ରତିପାଦିତ କରାଇ ତାଙ୍କ ପ୍ରତି ଥିବା ଭକ୍ତିର ସାଗରରେ ସମଗ୍ର ମାନବସମାଜକୁ ବୁଡ଼ାଇ ଦେବା । ସମଗ୍ର ଭାରତରେ ବିଶେଷ କରି ଉତ୍ତର ଭାରତରେ ଏହା ଯେ ଖୁବ୍ ଲୋକପ୍ରିୟ ହୋଇପାରିଛି, ଏଥିରୁ ତାଙ୍କ ସାଧନାର ସଫଳତା ସୂଚିତ ହୁଏ । ଦକ୍ଷିଣ-ଭାରତରେ ଏହା ପ୍ରାୟ ସବୁ ଆଞ୍ଚଳିକ ଭାଷାରେ ଅନୂଦିତ ହୋଇଛି ଅଥବା ଏହାକୁ ଆଧାର କରି ସାହିତ୍ୟକୃତିମାନ ସୃଷ୍ଟି ହୋଇଛି ।

ତୁଳସୀଦାସଙ୍କ ରାମଚରିତମାନସ ମୁଖ୍ୟତଃ ବାଲ୍ମୀକିଙ୍କ ରାମାୟଣ ଉପରେ ଆଧାରିତ ଥିଲା । ଅନ୍ୟାନ୍ୟ ଯେଉଁ ରାମାୟଣଗ୍ରନ୍ଥଗୁଡ଼ିକୁ ସେ ଆକରକ୍ଷେତ୍ର ଭାବରେ ଗ୍ରହଣ କରିଥିଲେ ସେଗୁଡ଼ିକ ହେଲା ଅଧ୍ୟାତ୍ମରାମାୟଣ, ଯୋଗ-ବାଶିଷ୍ଠ ରାମାୟଣ, ଭାଗବତପୁରାଣ, ଭୂଷଣ୍ଡି-ରାମାୟଣ, ଶିବପୁରାଣ, କମ୍ବ-ରାମାୟଣ ଓ ପ୍ରସନ୍ନ ରାଘବ ନାଟକ । ଏହାର ବାଲ୍ମୀକି-ରାମାୟଣଠାରୁ ମୌଳିକ ପ୍ରଭେଦ ହେଲା ଏହି ଯେ ଏଥିରେ ରାମଙ୍କୁ ବିଷ୍ଣୁଙ୍କ ଅବତାର ଭାବରେ ଚର୍ଚ୍ଚିତ କରାଯାଇଛି, ବାଲ୍ମୀକିଙ୍କ ଭଳି ଜଣେ ସାଧାରଣ ମଣିଷ ଭାବରେ କଳ୍ପିତ ନୁହେଁ । ତୁଳସୀଦାସ ଜନକଙ୍କ ଉପବନରେ ଶିବଧନୁଭଙ୍ଗ ପୂର୍ବରୁ ରାମ ଓ ସୀତାଙ୍କୁ ପରସ୍ପରଙ୍କ ସହିତ ଭେଟ କରାଇ ଦେଇଛନ୍ତି ଏବଂ ପ୍ରଥମ ଦର୍ଶନରେ ହିଁ ପରସ୍ପରଙ୍କ ପ୍ରେମରେ ପଡ଼ି ଯାଇଥିବା କଥାର ଅବତାରଣା କରିଛନ୍ତି । ପୁଣି ସେ ଏହି ସନ୍ଦର୍ଶନଜନିତ ପ୍ରେମକୁ ବିଷ୍ଣୁ ଓ ଲକ୍ଷ୍ମୀଙ୍କ ପରସ୍ପରଙ୍କ ସନ୍ଦର୍ଶନଜନିତ ପ୍ରେମ ସହିତ ସମାନ କରିଛନ୍ତି । ବାଲ୍ମୀକିରାମାୟଣରେ ବିବାହ ପୂର୍ବରୁ ଏଭଳି

ଘଟଣାର ଅବତାରଣା ନାହିଁ । ଅଥଚ କମ୍ବରାମାୟଣରେ ଏହା ଅଛି । ଏହା ଛଡ଼ା ଆହୁରି ଅନେକ କ୍ଷେତ୍ରରେ ରାମଚରିତମାନସରେ ମୂଳ ବାଲ୍ମୀକି-ରାମାୟଣଠାରୁ ବିଚ୍ୟୁତି ପରିଲକ୍ଷିତ ହୁଏ । ସେଥିରୁ କେତେକ ପ୍ରଧାନ ପ୍ରଧାନ ବିଚ୍ୟୁତି ହେଲା :

କ) ରାବଣ ଦ୍ୱାରା ଅପହୃତ ହେବା ପୂର୍ବରୁ ସୀତା ଅଗ୍ନିରେ ପ୍ରବେଶ କରିଥିଲେ ଏବଂ ରାବଣ କେବଳ ଛାୟା-ସୀତାଙ୍କୁ ହିଁ ଅପହରଣ କରିଥିଲା । ଏ କଥା ବାଲ୍ମୀକି-ରାମାୟଣରେ ନାହିଁ । ତୁଳସୀଦାସ ଏହାର ଅବତାରଣା କରିଛନ୍ତି ସୀତାଙ୍କ ପବିତ୍ରତାକୁ ରକ୍ଷା କରିବାପାଇଁ ।

ଖ) ଭାଗବତ ପୁରାଣ ଓ ଅଧ୍ୟାତ୍ମରାମାୟଣରେ ବର୍ଣ୍ଣିତ ରାମଙ୍କ ଶୈଶବ-ଲୀଳା ତୁଳସୀଦାସ ଗ୍ରହଣ କରିଛନ୍ତି ଯାହା ବାଲ୍ମୀକିରାମାୟଣରେ ନାହିଁ ।

ଗ) ସଂସ୍କୃତ ଭାଷାରେ ଲିଖିତ ରାମକଥାର ନାଟକମାନଙ୍କରେ ରାମଙ୍କ ଶିବଧନୁଭଙ୍ଗ ସୀତାଙ୍କ ଉପସ୍ଥିତିରେ ହୋଇଛି ଯାହାକୁ ତୁଳସୀଦାସ ଗ୍ରହଣ କରିଛନ୍ତି । ଏହା ମଧ୍ୟ ମୂଳ ବାଲ୍ମୀକିରାମାୟଣରେ ନାହିଁ ।

ଘ) 'ମହାନାଟକ'କୁ ଆଧାର କରି ଶିବଧନୁ ଭଙ୍ଗର ଠିକ୍ ପରେ ପରେ ମିଥିଳାକୁ ପରଶୁରାମଙ୍କ ଆଗମନ ଓ ତାଙ୍କର ରାମ ଓ ଲକ୍ଷ୍ମଣଙ୍କ ସହିତ ବାକ୍ୟାଳାପ ହୋଇଥିବା କଥା ତୁଳସୀଦାସ ବର୍ଣ୍ଣନା କରିଛନ୍ତି । ଏହା ମଧ୍ୟ ବାଲ୍ମୀକିରାମାୟଣରେ ନାହିଁ ।

ଙ) ଏହି 'ମହାନାଟକ'କୁ ପୁଣି ଆଶ୍ରା କରି ତୁଳସୀଦାସ ତାଙ୍କ ଗ୍ରନ୍ଥରେ ରାବଣ ଓ ଅଙ୍ଗଦଙ୍କ ମଧ୍ୟରେ ଏବଂ ସୀତା ଓ ତ୍ରିଜଟାଙ୍କ ମଧ୍ୟରେ ହୋଇଥିବା ବାର୍ତ୍ତାଳାପ ବିଷୟର ଅବତାରଣା କରିଛନ୍ତି । ବାଲ୍ମୀକିରାମାୟଣ କିନ୍ତୁ ଏ ବିଷୟରେ ନୀରବ ।

ତୁଳସୀଦାସଙ୍କ ଜୀବଦ୍ଦଶାରେ ହିଁ ତାଙ୍କ ସୃଷ୍ଟି 'ରାମଚରିତମାନସ' ଲୋକପ୍ରିୟ ହୋଇଗଲା । ଏହାର ଅନୁଶୀଳନ କଲେ ଏବଂ ତତ୍କାଳୀନ ଧାର୍ମିକ-ସାଂସ୍କୃତିକ ପୃଷ୍ଠଭୂମିକୁ ବିଚାରକୁ ନେଲେ ଏହାର ଲୋକପ୍ରିୟତା ନେଇ ଆମେ ନିମ୍ନଲିଖିତ କାରଣଗୁଡ଼ିକୁ ଚିହ୍ନିତ କରିପାରିବା ।

କ) ଏହା ସହଜ ଓ ସରଳ ଶୈଳୀରେ ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଅଓ୍ୱଧିବୋଲିରେ ଲେଖାଯାଇ ଥିଲା ।

ଖ) ଏହା ଲୀଳାୟିତ ଛନ୍ଦରେ ଚଉପଦୀ ଶୈଳୀରେ ଲେଖାଯାଇଥିଲା ଏବଂ ଶୁଣିବା ପାଇଁ ମଧୁର ଥିଲା । ତେଣୁ ପ୍ରବଚନ ଓ ରାମଲୀଳା ମାଧ୍ୟମରେ

ଏହାକୁ ଲୋକମାନଙ୍କ ଆଗରେ ସଫଳତାର ସହିତ ଉପସ୍ଥାପିତ କରାଯାଇ ପାରୁଥିଲା ।

ଗ) ପଣ୍ଡିତମାନେ କହନ୍ତି ଯେ କୃଷ୍ଣଲୀଳା ଢ଼ଙ୍ଗରେ ତୁଳସୀଦାସ ରାମଲୀଳାର ପ୍ରଚଳନ କରିଥିଲେ । ଏହି ରାମଲୀଳା ଏଭଳି ଲୋକପ୍ରିୟ ହୋଇ ଉଠିଲା ଯେ ଏହା ଭାରତର ପ୍ରାୟ ସବୁ ଭାଷାରେ ପ୍ରଚଳିତ ହେବାକୁ ଲାଗିଲା । ଫଳରେ 'ରାମଚରିତମାନସ' ଘରେ ଘରେ ପଢ଼ାହୋଇଗଲା ।

ଘ) ଏହା ମାନବୀୟ ପ୍ରେମ ଓ ଦୈବୀ ପ୍ରେମ ମଧ୍ୟରେ ଏକ ସେତୁ ଭାବରେ ଠିଆ ହୋଇ ଦୁଇ ପ୍ରେମକୁ ଯୋଡ଼ିଥିଲା । ଏହା ଫଳରେ ମାନବୀୟ ପ୍ରେମ ଦୈବୀ ପ୍ରେମରେ ରୂପାନ୍ତରିତ ହେଲା ଏବଂ ଦୈବୀ ପ୍ରେମ ଧୂଳି-ମାଟିର ସଂସାରକୁ ଓହ୍ଲାଇଆସିଲା ।

ଙ) ଏଥିରେ ଥିବା ଶୀଳାତ୍ମକବାଣୀସମ୍ଭୂତ ବୌଦ୍ଧ ଜାତକ-ଗଳ୍ପଗୁଡ଼ିକ ଭଳି ଲୋକମାନଙ୍କ ମନକୁ ଛୁଇଁଲା ।

ଚ) ଏହା ଧର୍ମ-ଧର୍ମ ମଧ୍ୟରେ ସମନ୍ୱୟର ବାଣୀ ପ୍ରଚାର କଲା । ତେଣୁ ତତ୍‌କାଳୀନ ସର୍ବଧର୍ମସମନ୍ୱୟବାଣୀ ସମ୍ରାଟ୍ ଆକବରଙ୍କ ପୃଷ୍ଠପୋଷକତା ଲାଭ କଲା ।

ଛ) ରାମଙ୍କୁ ଭଗବାନ୍‌ଙ୍କ ଅବତାର ଭାବରେ ଚିତ୍ରିତ କରିବା ଫଳରେ ରାମକଥା ହରିକଥାର ରୂପ ନେଲା । ତେଣୁ ଏହି ଗ୍ରନ୍ଥ ଲୋକମାନଙ୍କଠାରୁ ଅଧିକତର ମାନ୍ୟତା ପାଇଲା । ଏହି ପ୍ରସଙ୍ଗରେ ତୁଳସୀଦାସ କହିଲେ, "ଜୀବ ନ ଲହୀ ସୁଖ ହରି ପ୍ରତିକୂଲ ।" (୩୧) ଅର୍ଥାତ୍ ହରିଙ୍କ ପ୍ରତିକୂଳ ଆଚରଣ କରି କେହି ସୁଖୀ ହୋଇପାରିବେ ନାହିଁ । ସେ ପୁଣି କହିଲେ, "କବି ନ ହୋଉ ନ ହି ବେନେ ପ୍ରବୀପୁ ସକଲ କଲା ସବ ବିଦ୍ୟାହୀନୁ ।" (୩୨) ଅର୍ଥାତ୍ 'ମୁଁ କବି ନୁହେଁ କିମ୍ବା କଥା କହିବାରେ ଧୁରନ୍ଧର ନୁହେଁ । ସକଳ କଳା ଓ ସକଳ ବିଦ୍ୟା ବିଷୟରେ ମୁଁ ଅନଭିଜ୍ଞ ।' କି ଚମତ୍କାର ଭାବରେ ତାଙ୍କ ନମ୍ରତା ପ୍ରକଟିତ ! ଅଥଚ କି ପାଣ୍ଡିତ୍ୟପୂର୍ଣ୍ଣ ଓ ସୂଚିତାକ୍ଷଣ ତାଙ୍କ ବକ୍ତବ୍ୟ ।

ଜ) ତୁଳସୀଦାସଙ୍କ ଠାରେ ପ୍ରଚଣ୍ଡ ସୃଷ୍ଟିଶୀଳ ପ୍ରତିଭା ଥିଲେ ମଧ୍ୟ ସେ ଥିଲେ ସମସ୍ତ କ୍ଲାସିକ୍-ସାହିତ୍ୟର ସ୍ରଷ୍ଟାଙ୍କ ଭଳି ଅତି ବିନୟୀ ।

ଏହି ସବୁ କାରଣରୁ ତୁଳସୀଦାସଙ୍କ କୃତି ହିନ୍ଦୀସାହିତ୍ୟରେ ଚିରଅମର ହୋଇ ରହିଛି ।

ତୁଳସୀଦାସଙ୍କ ପରେ ରାମାୟଣ ପରଂପରାକୁ ଅନୁସରଣ କରି ଶାଶ୍ୱତ କୃତି ସୃଷ୍ଟି କରିବାର କବି ହେଉଛନ୍ତି ମୈଥିଳୀଶରଣ ଗୁପ୍ତ (୧୮୮୬-୧୯୬୬) ସେ ବଙ୍ଗୀୟ କବି 'ମେଘନାଦବଧ'ର ଅନୁବାଦ କରିଛନ୍ତି । ଏହା ମୂଳ କୃତି ଭଳି କାବ୍ୟାକାରରେ ସୃଷ୍ଟ । 'ମେଘନାଦବଧ' ବାଲ୍ମୀକିରାମାୟଣର ଅନୁବାଦ ନୁହେଁ । ଅନ୍ୟ ପକ୍ଷରେ, ଏହା ଏକ ସର୍ଜନାତ୍ମକ କାବ୍ୟ ଗ୍ରନ୍ଥ । ମୈଥିଳୀଶରଣ ଗୁପ୍ତଙ୍କ ଦୀର୍ଘ କବିତା 'ସାକେତ' ପ୍ରାଚୀନ ଅଯୋଧ୍ୟାର କୀର୍ତ୍ତିସମୃଦ୍ଧିରେ ମୁଖରେ । ଏଥିରେ ମଧ୍ୟ ବିରହିଣୀ ଉର୍ମିଳାଙ୍କ ଦୁଃଖସମେତ ରାମକଥାର ସଙ୍କେତ ଅଛି । ଏହା ଏକ ସଫଳ କାବ୍ୟକୃତି ।

ରାମାୟଣର କଥାବସ୍ତୁକୁ ନେଇ କେତେକ ଉପନ୍ୟାସ ମଧ୍ୟ ଚଳିତ ଶତାବ୍ଦୀରେ (ବିଂଶ ଶତାବ୍ଦୀରେ) ଲେଖାଯାଇଛି । ତନ୍ମଧ୍ୟରୁ ଆଚାର୍ଯ୍ୟ ଚତୁରସେନ ଶାସ୍ତ୍ରୀଙ୍କ 'ବୟଂ ରକ୍ଷାମଃ' ଏକ ସଫଳ କୃତି ଭାବରେ ମାନ୍ୟତା ପାଇଛି । ଏହା ରାବଣର ଜୀବନଚରିତ ନେଇ ଲିଖିତ ।

ଏହା ଛଡ଼ା ହିନ୍ଦୀ ଭାଷାର ଲୋକନାଟ୍ୟ ଓ ଅନ୍ୟାନ୍ୟ ଲୋକସାହିତ୍ୟ ଗାଥା ଆକାରରେ ହେଉ ଅଥବା ଢଗ ଢମାଳି ଆକାରରେ ହେଉ ଯୁଗେ ଯୁଗେ ହିନ୍ଦୀଭାଷାଭାଷୀମାନଙ୍କୁ ଉଦ୍‌ବୁଦ୍ଧ କରି ଆସୁଛି । ତୁଳସୀଦାସଙ୍କ ସମୟରୁ ପ୍ରଚଳିତ ରାମଲୀଳା ଆଜି ସର୍ବତ୍ର ଲୋକପ୍ରିୟ । ଏହା ପ୍ରାଦେଶିକ ଅନ୍ୟାନ୍ୟ ଭାଷା ସାହିତ୍ୟଗୁଡ଼ିକୁ ମଧ୍ୟ ସଞ୍ଚରିତ କରିଛି ।

ଏହିପରି ଭାବରେ ବିଭିନ୍ନ ସମୟରେ ବିଭିନ୍ନ ସ୍ରଷ୍ଟାମାନେ ରାମାୟଣ ଉପରେ ଆଧାରିତ ଗ୍ରନ୍ଥମାନ ଲେଖିଛନ୍ତି । କିନ୍ତୁ କେହି ତୁଳସୀଦାସଙ୍କ 'ରାମ-ଚରିତ ମାନସ'କୁ ଅତିକ୍ରମ କରିପାରି ନାହାନ୍ତି । ଏହାର କାରଣ ହେଉଛି ତୁଳସୀଦାସ ଜଣେ ସନ୍ଥ ଥିବା ସଙ୍ଗେ ସଙ୍ଗେ ଥିଲେ ମଧ୍ୟ ଜଣେ ଜନ୍ମଜାତକବି ।

**ବଙ୍ଗଳା ସାହିତ୍ୟ :**

ଅନ୍ୟ ଭାରତୀୟ ସାହିତ୍ୟମାନଙ୍କ ଭଳି ବଙ୍ଗଳା ସାହିତ୍ୟର ମଧ୍ୟ ଦୀର୍ଘ ରାମାୟଣପରଂପରା ରହିଛି । ଏହି ସାହିତ୍ୟରେ ପ୍ରଥମ ରାମାୟଣ ସୃଷ୍ଟି ହୁଏ କୃତ୍ତିବାସ ଓଝାଙ୍କ ଦ୍ୱାରା (୧୫ଶ ଶତାବ୍ଦୀ) । ଏହା କିନ୍ତୁ ବାଲ୍ମୀକି ରାମାୟଣର ବିଶ୍ୱସନୀୟ ଅନୁବାଦ ନୁହେଁ । ଏଥିରେ ବଙ୍ଗୀୟ ସଂସ୍କୃତି ଓ ଚାଲିଚଳନ ଆଦିର ପ୍ରଭାବ ପଡ଼ିଛି । ତୁଳସୀଦାସ ତାଙ୍କ 'ରାମଚରିତମାନସ

ଲେଖିବାର ପ୍ରାୟ ଶହେ ବର୍ଷ ପୂର୍ବରୁ କୃତ୍ତିବାସଙ୍କ ରାମାୟଣ ସୃଷ୍ଟ । ସେହି ଦୃଷ୍ଟିରୁ ଏହାର ଐତିହାସିକ ଗୁରୁତ୍ୱ ଅଛି । ବର୍ତ୍ତମାନ ଯେଉଁ କୃତ୍ତିବାସଙ୍କ ରାମାୟଣରେ ବଙ୍ଗଦେଶରେ ପ୍ରଚଳିତ ତାହା ତାଙ୍କ ମୂଳ ରାମାୟଣର ମୌଳିକତାକୁ ରକ୍ଷା କରିଛି କି ନାହିଁ ଏଥିରେ ଅନେକ ପଣ୍ଡିତଙ୍କର ସନ୍ଦେହ ଅଛି । ଏହି ମତକୁ ପରିପୁଷ୍ଟ କରି ଭବତୋଷ ଦତ୍ତ ଯଥାର୍ଥରେ କହନ୍ତି :

> Scholars even doubt, whether the present text contains a single line composed originally by the poet. (୩୩)

ଏହାର କାରଣ ହେଲା; ଦୀର୍ଘ ପାଞ୍ଚ ଶହ ବର୍ଷ ଧରି ଏହା ଲୋକପ୍ରିୟ ଥିବା କାରଣରୁ ଏବଂ ଗାଁ-ଗାଁରେ ବିଭିନ୍ନ ସ୍ୱରରେ ବୋଲାଯାଉଥିବା କାରଣରୁ ଏଥିରେ ସ୍ଥାନୀୟ ଆବଶ୍ୟକତାକୁ ଦୃଷ୍ଟିରେ ପ୍ରକ୍ଷେପମାନ ପଶିଯାଇଛି । ପୋଥି-ଗୁଡ଼ିକର ନକଲକାରମାନେ ଯେଉଁଠି ସ୍ୱୟଂ ପ୍ରତିଭାଧର କବି ଓ ପଣ୍ଡିତ ଅଛନ୍ତି, ସେମାନେ ମଧ୍ୟ ସ୍ଥାନେ-ସ୍ଥାନେ ନିଜ ପ୍ରତିଭାର ଅଭିପ୍ରକାଶ କରିବାକୁ ଯାଇ କେତେକ ପଦ ଯୋଡ଼ି ଦେଇଛନ୍ତି । ଏହାର ମୌଳିକତା ରକ୍ଷା ହୋଇଥାଉ ଅଥବା ନଥାଉ ଏହାର ଲୋକପ୍ରିୟତା କିନ୍ତୁ କୌଣସି ଦୃଷ୍ଟିରୁ ଊଣା ପଡ଼ିନାହିଁ । ବରଂ ଏହା ବଢ଼ି ବଢ଼ି ଚାଲିଛି ।

କୃତ୍ତିବାସଙ୍କ ବଙ୍ଗଭାଷାରେ ଏହି ଗ୍ରନ୍ଥଟି ଲେଖିବାର କାରଣ କ'ଣ ଥିଲା ? ସେ ତ ଜଣେ ପ୍ରବୀଣ ସଂସ୍କୃତ ପଣ୍ଡିତ ଥିଲେ । ପୂର୍ବପ୍ରଚଳିତ ପରଂପରାକୁ ଅନୁସରଣ କରି ସେ ସଂସ୍କୃତରେ ଲେଖିଲେ ନାହିଁ କାହିଁକି ? ଏହାର ଉତ୍ତର ଆମେ ତାଙ୍କ ଲେଖାରୁ ହିଁ ପାଇପାରିବା । ତାଙ୍କ କହିବା ଅନୁସାରେ ବଙ୍ଗଭାଷାରେ ରାମାୟଣ ଲେଖିବାର ତିନୋଟି କାରଣ ଥିଲା । ପ୍ରଥମରେ ସେ ବାଲ୍ମୀକିଙ୍କୁ ଜଣେ ଶ୍ରେଷ୍ଠ ମୁନି ହିସାବରେ ମାନ୍ୟତା ଦେଉଥିଲେ । ଦ୍ୱିତୀୟରେ ସେ ରାଜାଦେଶରେ ସାତକାଣ୍ଡ ରାମାୟଣ ରଚନା କରିବାପାଇଁ ଆଗେଇଲେ । ଅବଶ୍ୟ ଏହି ରାଜା କିଏ ତାଙ୍କ ନାମ ସେ କୁଆଡ଼ି ଉଲ୍ଲେଖ କରିନାହାନ୍ତି । ସମ୍ଭବତଃ ତାଙ୍କ ପୃଷ୍ଠପୋଷକତାରେ ସେ ଏହି ଗ୍ରନ୍ଥଟିକୁ ଲେଖିଲେ । ଏହି ପୃଷ୍ଠପୋଷକତା ଆର୍ଥିକ ସାହାଯ୍ୟ ଆକାରରେ ହୋଇଥାଇପାରେ ଅଥବା ରାଜାଙ୍କ ଦ୍ୱାରା ତାଙ୍କ ଭରଣପୋଷଣ ନେବାର ଦାୟିତ୍ୱ ନେବା ଆକାରରେ ହୋଇଥାଇପାରେ । ତୃତୀୟତଃ ଏହି ଦିବ୍ୟ ଗ୍ରନ୍ଥଟିକୁ ନିଜ ମାତୃଭାଷା ବଙ୍ଗଳାରେ ଲୋକମାନଙ୍କ ଆଗରେ ଉପସ୍ଥାପିତ କରିବାକୁ ସେ ଚାହିଁଥିଲେ । ତାଙ୍କ ଭାଷାରେ ଏହା ଥିଲା 'ଦେବସୃଷ୍ଟି' (ଦେବେର୍ ସୃଜିତ) । ଏଥିରୁ

ତାଙ୍କର ମାତୃଭାଷାପ୍ରୀତିର ଓ ନିଜ ଭାଷାଭାଷୀମାନଙ୍କ ପ୍ରତି ଥିବା ଆଦର-ସମ୍ମାନର ଯଥେଷ୍ଟ ସୂଚନା ମିଳିଥାଏ । ବାସ୍ତବିକ, ଏହା ଥିଲି ସାହିତ୍ୟ କ୍ଷେତ୍ରରେ ଏକ ନୂତନ ତଥା ବୈପ୍ଳବିକ ପଦକ୍ଷେପ । ଏ କ୍ଷେତ୍ରରେ ଆମକୁ ଲକ୍ଷ୍ୟ କରିବାକୁ ହେବ ଯେ ସେତେବେଳେ ରାମଚରିତକୁ ସଂସ୍କୃତ ଭାଷାରେ ନଶୁଣି ଅନ୍ୟ ଭାଷାରେ ଶୁଣିବା ଥିଲା ମହାପାପ । ଏଭଳି ଶୁଣୁଥିବା ଲୋକ ନରକରେ ପଡ଼ିବେ ବୋଲି ବିଶ୍ବାସ କରାଯାଉଥିଲି । ଗୋଟିଏ ପ୍ରଖ୍ୟାତ ଉକ୍ତି ହେଲା :

ଅଷ୍ଟାଦଶ ପୁରାଣାନି ରାମସ୍ୟ ଚରିତାନି ଚ ।
ଭାଷାୟାଂ ମାନବଃ ଶ୍ରୁତ୍ୱା ରୌରବଂ ନରକଂ ବ୍ରଜେତ୍ ।।

ଅର୍ଥାତ୍ ଅଷ୍ଟାଦଶ ପୁରାଣ ଓ ରାମଚରିତକୁ ଦେଶଜ ଭାଷାରେ ଶୁଣିବା ଲୋକ ରୌରବ-ନରକରେ ଯାଇ ପଡ଼ିବେ । ଏହା ସତ୍ତ୍ୱେ ସଂସ୍କୃତ ପଣ୍ଡିତ କୃତ୍ତିବାସ ରାମାୟଣକୁ ବଙ୍ଗଭାଷାରେ ଲେଖିଲେ ଏବଂ ବଙ୍ଗାଳିମାନେ ବି ତାହାକୁ ଶ୍ରଦ୍ଧାର ସହିତ ଶୁଣିଲେ । ଏହା ଉଭୟ କବିଙ୍କ କ୍ଷେତ୍ରରେ ଓ ଶ୍ରୋତାମାନଙ୍କ କ୍ଷେତ୍ରରେ କମ୍ ବଡ଼ ପ୍ରସାରିତ ତଥା ଉଦାର ମନୋଭାବର ସୂଚନା ଦେଇନଥାଏ ।

କୃତ୍ତିବାସ ବାଲ୍ମୀକିରାମାୟଣକୁ ତାଙ୍କ ସୃଷ୍ଟିର ଆକରକ୍ଷେତ୍ର ଭାବରେ ଅବଶ୍ୟ ଗ୍ରହଣ କରିଛନ୍ତି । କେତେକ କାହାଣୀ ସେ ନିଜେ ସୃଷ୍ଟି କରିଛନ୍ତି ଏବଂ ଆଉ କେତେକ ସେ ଅଧ୍ୟାତ୍ମରାମାୟଣ, ଯୋଗବାସିଷ୍ଠ ରାମାୟଣ, ମହାଭାରତ, ଜୈମିନି ଭାରତ, ଦେବୀ ଭାଗବତ, ମାର୍କଣ୍ଡେୟ ପୁରାଣ, ସ୍କନ୍ଦପୁରାଣ, କୂର୍ମପୁରାଣ, ବୃହଦ୍ଧର୍ମପୁରାଣ ଓ କାଳିକା ପୁରାଣ, ରଘୁବଂଶ ଆଦି ଗ୍ରନ୍ଥସମୂହରୁ ସଂଗ୍ରହ କରିଛନ୍ତି । ଏହାର ଏକମାତ୍ର କାରଣ ଥିଲି ତାଙ୍କ କାବ୍ୟଟିକୁ ରସୋତ୍ତୀର୍ଣ୍ଣ, ଶିଳ୍ପାତ୍ମକ ଓ ଲୋକପ୍ରିୟ କରାଇବା । ଏବେ ମଧ୍ୟ ଏହି କାହାଣୀସମୂହ ଲୋକମୁଖରେ ଓ ଲୋକଯାତ୍ରା, ରାମଲୀଳା ଆଦିରେ ସ୍ଥାନ ପାଉଛି । ବାଲ୍ମୀକି-ରାମାୟଣରେ ସ୍ଥାନ ନପାଇ କୃତ୍ତିବାସ-ରାମାୟଣରେ ସ୍ଥାନ ପାଇଥିବା କେତେକ ବିଶିଷ୍ଟ କାହାଣୀ ହେଲା :

କ) ସୌଦାସଙ୍କ କାହାଣୀ, (ଖ) ଦଳିପ ଓ ରଘୁଙ୍କ କାହାଣୀ, (ଗ) ଶନିର ଦଶରଥଙ୍କ ରାଜ୍ୟରେ ଅନର୍ଥ ଉଆଇବାର କୁଚକ୍ରାନ୍ତ, (ଘ) ଗଣେଶଙ୍କ ଜନ୍ମ, (ଙ) ଶମ୍ବରାସୁରବଧ, (ଚ) କୈକେୟୀଙ୍କ ଦଶରଥଙ୍କଠାରୁ ବରପ୍ରାପ୍ତି, (ଛ) ମେଘନାଦର ସାନ ଭାଇ ବୀରବାହୁର ଯୁଦ୍ଧ, (ଜ) ବିଭୀଷଣଙ୍କ ପୁଣ୍ୟାତ୍ମା ପୁତ୍ରଙ୍କ କାହାଣୀ, (ଝ) ମହୀରାବଣ ଓ ଅହିରାବଣ ସମ୍ପର୍କୀୟ କାହାଣୀ, (ଞ) ତରଣୀସେନର ଯୁଦ୍ଧ, (ଟ) ହନୁମାନ୍‌ଙ୍କ ଦ୍ୱାରା ତାଙ୍କ କାଖ ତଳେ

ସୂର୍ଯ୍ୟଙ୍କୁ ଧଣରଖିବାର କାହାଣୀ, (ଠ) ରାମଙ୍କ ଦ୍ୱାରା ଚଣ୍ଡୀପୂଜା ଏବଂ ଚଣ୍ଡୀଙ୍କ ପ୍ରସାଦବଳରେ ରାବଣର ନିଧନ, (ଡ଼) ରାବଣର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ରାମଙ୍କୁ ରାଜଧର୍ମ ସମ୍ପର୍କରେ ଉପଦେଶ ଦେବା, (ଢ଼) ଭଉଣୀମାନଙ୍କ ଅନୁରୋଧରେ ସୀତାଙ୍କର ଖଡ଼ିରେ ରାବଣର ଚିତ୍ର ଆଙ୍କିବା ଏବଂ ଏଥିରେ ରାମଙ୍କ ମନରେ ସୀତାଙ୍କ ଚରିତ୍ର ନେଇ ସନ୍ଦେହ ଉପୁଜିବା ଏବଂ ତାହା ଫଳରେ ତାଙ୍କଦ୍ୱାରା ସୀତାଙ୍କୁ ନିର୍ବାସନଦଣ୍ଡ ଦେବା, (ଣ) ଲବ ଓ କୁଶଙ୍କର ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଆଦିଙ୍କ ସହିତ ଯୁଦ୍ଧ, (ତ) ମେନକାଙ୍କ ସୌନ୍ଦର୍ଯ୍ୟ ଦେଖି ରାଜା ଜନକଙ୍କ ଶୁକ୍ର ସ୍ଖଳିତ ହୋଇ ତାହା ପରେ ପରେ ସୁନାର ଅଣ୍ଡାରେ ପରିଣତ ହେବା ଏବଂ ଶେଷରେ ଯଦନେ ଜନକଙ୍କ ଲଙ୍ଗଳଲୁହା ବାଜି ମାଟିତଳୁ ସେହି ଅଣ୍ଡାରୁ ସୀତାଙ୍କର ଜନ୍ମ ହେବା, ଇତ୍ୟାଦି ଇତ୍ୟାଦି । ଏହି କାହାଣୀଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ଏଗୁଡ଼ିକ ରାମାୟଣ ଗ୍ରନ୍ଥଟିକୁ ବୃଥାରେ ତ ... ବିତ କରିନାହିଁ, ବରଂ ନୂଆ-ନୂଆ ପରିସ୍ଥିତିଗୁଡ଼ିକର ସୃଷ୍ଟି ଦ୍ୱାରା ଏଥିରେ ନାଟକୀୟତା ଆଣିଦେଇଛି । ପୁଣି ପୂର୍ବାପର ଘଟଣାଗୁଡ଼ିକର ସନ୍ନିବେଶ ଫଳରେ କାହାଣୀଗୁଡ଼ିକରେ ବିଶ୍ୱସନୀୟତା ବୃଦ୍ଧି ପାଇଛି ଏବଂ ଗ୍ରନ୍ଥଟି ଅଧିକତର ବାସ୍ତବବାଦୀ ହୋଇପାରିଛି । ସଂକ୍ଷେପରେ କହିବାକୁ ଗଲେ ରାମାୟଣର ପାଠକ ଓ ଶ୍ରୋତାମାନଙ୍କ ମନ ଗ୍ରନ୍ଥଟିରେ ଅଧିକରୁ ଅଧିକ ଲାଗି ରହିପାରିଛି ।

କୃତ୍ତିବାସ-ରାମାୟଣ ସମ୍ପର୍କରେ ଅସିତ କୁମାର ବାନର୍ଜୀ ଯେଉଁ ମତ ଦିଅନ୍ତି ତାହା ଅନୁଧ୍ୟାନ କଲେ ଆମେ ଜାଣିପାରିବା ଏହାର ମାହାତ୍ମ୍ୟ କେତେ ! ତାଙ୍କ ଭାଷାରେ :

> Shadows of history, with much struts and frets vanish in the oblivion while the immortal epic of the sage-poet and narrative poetry of Kruthibasa, concerning the saga of Ramachandra, will ever remain fresh and lively in the memory of readers irrespective of cast, creed and belief. (୩୪)

ଏହି ଦୃଷ୍ଟିରୁ କୃତ୍ତିବାସଙ୍କ ରାମାୟଣ ବଙ୍ଗଳାସାହିତ୍ୟରେ ଏକ ଅମର କୃତି ।

କୃତ୍ତିବାସଙ୍କ ପରେ ବଙ୍ଗଳା ସାହିତ୍ୟରେ ଅନେକ ରାମାୟଣ ସ୍ରଷ୍ଟାଙ୍କର ଉଦୟ ହୁଏ । ସେମାନେ ଆଂଶିକ ଭାବରେ କିମ୍ବା ପୂର୍ଣ୍ଣାଙ୍ଗ ଭାବରେ ରାମାୟଣର ରଚନା କରନ୍ତି । ଏହା ଛଡ଼ା ବଙ୍ଗଳା ପାଲା ସାହିତ୍ୟରେ ମଧ୍ୟ

ରାମାୟଣର ଖଣ୍ଡିତ ରୂପ ନେଇ କେତେକ ପାଲାର ସୃଷ୍ଟି ହୁଏ । ଏହି ପାଲାଗୁଡ଼ିକର ଲୋକପ୍ରିୟତାରୁ ରାମାୟଣର ଲୋକପ୍ରିୟତା ସୂଚିତ ହୋଇଥାଏ । ପ୍ରଧାନ-ପ୍ରଧାନ ପାଲାଗୁଡ଼ିକ ହେଲା ତରଣୀସେନବଧ, ମହୀରାବଣର ପାଲା, ଶିବ-ରାମେର ଯୁଦ୍ଧ, ଲକ୍ଷ୍ମଣେର ଶକ୍ତିଶେଲ, ସୀତାର ବନବାସ, ଲବ-କୁଶେର ଯୁଦ୍ଧ, ଇତ୍ୟାଦି ଇତ୍ୟାଦି । ଏଗୁଡ଼ିକର ଆଧାର କୃତ୍ତିବାସ-ରାମାୟଣ, ବାଲ୍ମୀକି-ରାମାୟଣ କିନ୍ତୁ ନୁହେଁ । ବିଭିନ୍ନ ସମୟରେ ରାମାୟଣ ଗ୍ରନ୍ଥ ଲେଖିଥିବା କବିମାନେ ହେଲେ ଅଦ୍ଭୁତାଚାର୍ଯ୍ୟ (୧୭ଶ ଶତାବ୍ଦୀ), ଚନ୍ଦ୍ରାବତୀ (୧୭ଶ ଶତାବ୍ଦୀ) କବିଚନ୍ଦ୍ର (୧୮ଶ ଶତାବ୍ଦୀ), ରାମାନନ୍ଦ ଘୋଷ (୧୮ଶ ଶତାବ୍ଦୀ) ଓ ଜଗଦ୍ରାମ (୧୮ଶ ଶତାବ୍ଦୀ) । ପୂର୍ବରୁ କୁହାଯାଇଛି ଯେ ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଅଧ୍ୟାତ୍ମରାମାୟଣ ଏକତମ ଯାହାକୁ ନିର୍ଭର କରି କୃତ୍ତିବାସ ତାଙ୍କ ରାମାୟଣ ଲେଖିଛନ୍ତି । ଉପରୋକ୍ତ ଗ୍ରନ୍ଥକାରମାନେ ମଧ୍ୟ ନିଜ ନିଜର ରାମାୟଣ ଗ୍ରନ୍ଥମାନ ଲେଖିଲାବେଳେ ସେହି 'ଅଧ୍ୟାତ୍ମରାମାୟଣ' ଉପରେ ନିର୍ଭରଶୀଳ ହୋଇଛନ୍ତି । ଏହାର କାରଣ ହେଉଛି କୃଷ୍ଣତତ୍ତ୍ୱର ଆଧ୍ୟାତ୍ମିକ ବ୍ୟାଖ୍ୟା ସହିତ ପ୍ରତିଦ୍ୱନ୍ଦ୍ୱିତା କରି ଯେତେବେଳେ ଜନସମ୍ପ୍ରଦାୟ ମଧ୍ୟରେ ରାମତତ୍ତ୍ୱର ପ୍ରଚାର ହେବାକୁ ଲାଗିଲା ସେତେବେଳେ ଅଧ୍ୟାତ୍ମରାମାୟଣ ବର୍ଣ୍ଣିତ ଆଧ୍ୟାତ୍ମିକ ଦିଗ ପ୍ରତି ବାଧ୍ୟ ହୋଇ କାବ୍ୟସ୍ରଷ୍ଟାମାନଙ୍କ ଦୃଷ୍ଟି ଆକୃଷ୍ଟ ହେବାକୁ ଲାଗିଲା । ରାମ ଏବେ ପରମାତ୍ମା ଭଗବାନ୍ ହୋଇଗଲେ । ସେ ଆଉ ବାଲ୍ମୀକି-ରାମାୟଣର ରାଜା ଦଶରଥଙ୍କ ପୁତ୍ର ମନୁଷ୍ୟ ରାମ ହୋଇ ରହିଲେ ନାହିଁ । ରାମାୟଣ-କାହାଣୀକୁ ଆଶ୍ରୟ କରି ମାଇକେଲ ମଧୁସୂଦନ ଦତ୍ତ (୧୯ଶ ଶତାବ୍ଦୀ) ଲେଖିଛନ୍ତି ତାଙ୍କର ଦୀର୍ଘକାବ୍ୟ 'ମେଘନାଦ ବଧ' । ଏହା ପାଶ୍ଚାତ୍ୟ ମହାକାବ୍ୟ ଶୈଳୀରେ ଲିଖିତ । ଏଥିର ପାତ୍ର-ପାତ୍ରୀମାନଙ୍କ ଚରିତ୍ରଚିତ୍ରଣ, ଉପମା, ପ୍ରକୃତି ବର୍ଣ୍ଣନା ଆଦି ଅନନ୍ୟ । ଏହା ଏକ ଆଧୁନିକ ମହାକାବ୍ୟ ଯହିଁରେ ମାନବବାଦର ନୂପୁର-ଗୁଞ୍ଜରଣ ପୁଷ୍କଳ ଭାବରେ ଶୁଣିବାକୁ ମିଳିଥାଏ । ଆଉ ଜଣେ ଶ୍ରେଷ୍ଠ ଗଦ୍ୟ ଲେଖକ ଆସନ୍ତି ହେମଚନ୍ଦ୍ର ଭଟ୍ଟାଚାର୍ଯ୍ୟ (୧୯ଶ ଶତାବ୍ଦୀ) ଯେ ବାଲ୍ମୀକି-ରାମାୟଣର ସମ୍ପୂର୍ଣ୍ଣ ଗଦ୍ୟାନୁବାଦ କରନ୍ତି । ଏହି ଅନୁବାଦର ବିଶ୍ୱସନୀୟତା ପ୍ରଶଂଶନୀୟ । ରାଜଶେଖର ବସୁ (୧୮୮୦-୧୯୬୦) ମଧ୍ୟ ବାଲ୍ମୀକି-ରାମାୟଣର ଆଉ ଜଣେ ଶ୍ରେଷ୍ଠ ଅନୁବାଦକ । କବିଗୁରୁ ରବୀନ୍ଦ୍ରନାଥ ଠାକୁର ମଧ୍ୟ ରାମାୟଣ-ପରଂପରା ଉପରେ ଆଧାରିତ ଲେଖାବଳୀ ମାଧ୍ୟମରେ ବଙ୍ଗଳା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ରାମାୟଣ ସଂସ୍କୃତି ଉପରେ ସେ ଅନେକଗୁଡ଼ିଏ ପ୍ରବନ୍ଧ ଲେଖିଛନ୍ତି । ତାହା ଛଡ଼ା ଲକ୍ଷ୍ମଣ-ପତ୍ନୀ ଉର୍ମିଳା-ଚରିତ୍ରକୁ ନେଇ ସେ ଗୋଟିଏ ଖଣ୍ଡ କବିତା ଲେଖିଛନ୍ତି ଯାହାର ଶୀର୍ଷକ

ହେଉଛି 'କାବ୍ୟେର ଉପେକ୍ଷିତା' । ଏଥିରେ ଊର୍ମିଳାଙ୍କ ଉପେକ୍ଷିତ ଜୀବନର କରୁଣ କାହାଣୀ ଅତି ମାର୍ମିକ ଭାବରେ ବର୍ଣ୍ଣିତ । ରବୀନ୍ଦ୍ରନାଥ ତାଙ୍କର 'ରାମାୟଣ' ଶୀର୍ଷକ ପ୍ରବନ୍ଧରେ (୧୯୦୩) କି ସୁନ୍ଦର ଭାବରେ ଏହି ଯଥାର୍ଥ କଥାଟି କହିଛନ୍ତି :

> ରାମାୟଣ ମହାଭାରତକେ କେବଲମାତ୍ର ମହାକାବ୍ୟ କହିଲେ ଚଲିବେ ନା, ତାହା ଇତିହାସଓ ବଟେ; ଘଟନାବଲୀର ଇତିହାସ ନହେ, କାରଣ ସେରୂପ ଇତିହାସ ସମୟବିଶେଷକେ ଅବଲମ୍ବନ କରିୟା ଥାକେ । ରାମାୟଣ-ମହାଭାରତ ଭାରତବର୍ଷେର ଚିରକାଲେର ଇତିହାସ । ଅନ୍ୟ ଇତିହାସ କାଲେ କାଲେ କତଇ ପରିବର୍ତ୍ତିତ ହଇଲ, କିନ୍ତୁ ଏ ଇତିହାସେର ପରିବର୍ତ୍ତନ ହୟ ନାଇ । ଭାରତବର୍ଷେର ଯାହା ସାଧନା, ଯାହା ଆରାଧନା, ଯାହା ସଂକଳ୍ପ ତାହାର ଇତିହାସ ଏଇ ଦୁଇ ବିପୁଲ କାବ୍ୟ-ହର୍ମ୍ୟେର ମଧ୍ୟେ ଚିରକାଲେର ସିଂହାସନେ ବିରାଜମାନ ।

ରବୀନ୍ଦ୍ରନାଥଙ୍କ ଏହି ବିସ୍ତୃତ ଦୃଷ୍ଟି ରାମାୟଣର ଚିରନ୍ତନତାକୁ ଗଭୀର ଓ ଯଥାର୍ଥ ଭାବରେ ମାପିପାରିଛି । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଚଳିତ ଶତାବ୍ଦୀ (ବିଂଶ ଶତାବ୍ଦୀ) ପର୍ଯ୍ୟନ୍ତ ମଧ୍ୟ ରାମାୟଣ ପରଂପରା ବଙ୍ଗଳା ସାହିତ୍ୟରେ ଅକ୍ଷୁଣ୍ଣ ରହିଛି ।

ପାଲା ଏକ ଲୋକସାହିତ୍ୟ । ରାମାୟଣର କାହାଣୀକୁ ଆଂଶିକ ରୂପରେ ଗ୍ରହଣ କରି ଯେଉଁ ପ୍ରଧାନ-ପ୍ରଧାନ ପାଲାଗୁଡ଼ିକର ସୃଷ୍ଟି ବିଭିନ୍ନ ସମୟରେ ହୋଇଥିଲା ତଦ୍‌ବିଷୟରେ ପୂର୍ବରୁ କୁହାଯାଇଛି । ସେଗୁଡ଼ିକର ଲୋକପ୍ରିୟତା ଏବେ ମଧ୍ୟ ହ୍ରାସ ପାଇନାହିଁ ।

ଗୋଟିଏ ପ୍ରକାର ଲୋକସଙ୍ଗୀତ ଅଛି ଯାହାର ନାଁ 'ପାଟୁଆ-ସଙ୍ଗୀତ' । ଗୋଟିଏ ଶ୍ରେଣୀର ଲୋକେ ରାମାୟଣ, ମହାଭାରତ ଓ ପୁରାଣ ଆଦିକୁ ଆଶ୍ରୟ କରି ବସ୍ତ୍ରରେ ଚିତ୍ରମାନ ଆଙ୍କିଥାନ୍ତି ଏବଂ ଏହି ଚିତ୍ରଗୁଡ଼ିକୁ ପ୍ରଦର୍ଶନ କରିବା ଅବସରରେ ତତ୍ସମ୍ପର୍କରେ ଥିବା ସଙ୍ଗୀତମାନ ଗାଇ ଲୋକମାନଙ୍କ ଚିତ୍ତ-ବିନୋଦନ କରିଥାନ୍ତି । ଏହି କାର୍ଯ୍ୟକୁ ଜୀବିକାନିର୍ବାହର ଅବଲମ୍ବନ ରୂପେ ସେମାନେ ଗ୍ରହଣ କରିନେଇଥାନ୍ତି । ଏହି ସଙ୍ଗୀତଗୁଡ଼ିକ ଗାଁଗହଳରେ ଏବେ ମଧ୍ୟ ଲୋକପ୍ରିୟ । ଦକ୍ଷିଣ-ବଙ୍ଗଳାରେ ଏଭଳି 'ପାଟୁଆ' ସଙ୍ଗୀତକାରମାନଙ୍କ ପ୍ରାଚୁର୍ଯ୍ୟ ଦେଖାଯାଇଥାଏ । 'କୁଶନ୍‌ଗାନ୍' ଉତ୍ତରବଙ୍ଗଳାସ୍ଥ କୁଚବିହାର ଅଞ୍ଚଳରେ ଥିବା ରାଜବଂଶୀ-ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଏବେ ମଧ୍ୟ ଖୁବ୍

ଲୋକପ୍ରିୟ ଅଛି । ଗାୟକ ରାମାୟଣର କାହାଣୀ ଗାଆନ୍ତି ଏବଂ କେତେକ ଦୋହା ଧରୁଥିବା ଲୋକ ପାଲି ଧରନ୍ତି । ଗ୍ରାମୀଣ କବିତା ଶୈଳୀରେ ଲିଖିତ ଆଉ ଏକ ପ୍ରକାର ସୃଷ୍ଟିର ନାଁ ହେଉଛି 'ପାଞ୍ଚାଲି' । ରାମାୟଣରୁ ସଂଗୃହୀତ ବିଭିନ୍ନ କଥାବସ୍ତୁକୁ ନେଇ ଏହା ରଚିତ । ପ୍ରଧାନ ପ୍ରଧାନ ପାଞ୍ଚାଲି-ସଂଗୀତ ମଧ୍ୟରେ ଅଛି ଅଶୋକବନରେ ସୀତାଙ୍କ ହନୁମାନ୍‌ଙ୍କ ସହିତ କଥାବାର୍ତ୍ତା ସୀତାଙ୍କ ଦୁଃଖ, ସୀତାହରଣ, ଭରତଙ୍କ ଭ୍ରାତୃପ୍ରେମ ଇତ୍ୟାଦି । ଏହା ପୂର୍ବ ବଙ୍ଗଳା (ଏବର ବଙ୍ଗଳାଦେଶ) ଅଞ୍ଚଳରେ ବିଶେଷ ଭାବରେ ପ୍ରଚଳିତ । ଆଉ ଗୋଟିଏ ପ୍ରକାର ରାମାୟଣ ଅଛି ଯାହା ମୌଖିକ ରାମାୟଣ ନାମରେ ଖ୍ୟାତ ଏବଂ ଯାହାକୁ ସ୍ତ୍ରୀମାନେ ବିବାହ, ବ୍ରତଘର, ସନ୍ତାନଜନ୍ମ ଆଦି ଉତ୍ସବଗୁଡ଼ିକରେ ବୋଲିଥାନ୍ତି । ଏହା ଚନ୍ଦ୍ରାବତୀଙ୍କ (୧୬ଶ ଶତାବ୍ଦୀ) କୃତ । ସେ ସନ୍ୟାସିନୀ ଥାଇ ଏକାକିନୀ ଜୀବନ କଟାଇଥିଲେ । ଏହି ରାମାୟଣରେ ତେଣୁ କରୁଣରସ ଭରପୂର ଅଛି, ବୀରରସ କିନ୍ତୁ ନୁହେଁ । ଚନ୍ଦ୍ରାବତୀ-ରାମାୟଣରେ ଜନକ କାହିଁକି ସୀତାଙ୍କ ବିବାହ ଲାଗି ଶିବଧନୁକୁ ଉଠାଇବାର ସର୍ତ୍ତଟି ଏହା ରଖିଲେ ତାହା ବୁଝାଇ ଦିଆଯାଇଛି । ଦିନେ ପୂଜାଘରକୁ ସୀତା ଲିପା-ପୋଛା କରୁଥିଲେ । ବାଁ ହାତରେ ଶିବଧନୁକୁ ଟେକିଧରି ସେ ଡ଼ାହାଣ ହାତରେ ଘରକୁ ଲିପୁଥିଲେ । ଜନକ ଏହା ଦେଖି ଜଣେ ଉପଯୁକ୍ତ ବୀର ସୀତାଙ୍କ ଲାଗି ଠିକଣା କରିବା ନିମିତ୍ତ ଏଭଳି ଶିବଧନୁ ଟେକିବାର ସର୍ତ୍ତଟିକୁ ରଖିଲେ । ଏହା ଏକ ନୂତନ ଓ ବିଚିତ୍ର ବ୍ୟାଖ୍ୟା । ଏହା ସୀତାଙ୍କ ମାହାତ୍ମ୍ୟକୁ ବଢ଼ାଇଥାଏ ।

ମେଦିନୀପୁର ଜିଲ୍ଲାରେ ସାନ୍ତାଳମାନଙ୍କ ମଧ୍ୟରେ ଗୋଟିଏ ପ୍ରକାର ଲୋକନୃତ୍ୟ ଅଛି ଯାହାର ନାମ 'ଭୁଅଙ୍ଗନାଚ' । ଏହା ବିଜୟା ଦଶମୀ ଦିନ ହୁଏ । ସାନ୍ତାଳମାନେ ନିଜକୁ ରାମଙ୍କ ହସ୍ତରେ ପରାଜିତ ହୋଇଥିବା ରାବଣର ବଂଶଧର ବୋଲି ବିଚାରି ସେହି ଘଟଣାକୁ ସ୍ମରଣ କରିବାକୁ ଯାଇ ଏହି ନୃତ୍ୟ କରିଥାନ୍ତି ।

ଏବେ ମଧ୍ୟ ପଣ୍ଡିତମାନେ ରାମାୟଣର ବିଭିନ୍ନ ଦିଗ ଉପରେ ଆଲୋଚନା କରି ଗ୍ରାମ ନଗରେ ସବିଶେଷ ପ୍ରବଚନମାନ ଦେଉଛନ୍ତି । ଏହି ପ୍ରବଚନମାନ ବିଶେଷ ଭାବରେ କଲିକତାରେ ପରିପୁଷ୍ଟ ଥିଲେହେଁ ଏଗୁଡ଼ିକ ଯେ ଜନସଂପ୍ରଦାୟ ମଧ୍ୟରେ ରାମାୟଣ ପରଂପରାକୁ ଉଜ୍ଜୀବିତ କରି ରଖିବା ଦିଗରେ ସହାୟକ ହୋଇଛି, ଏ କଥା ନିଶ୍ଚିତ ଭାବରେ ସତ୍ୟ ।

ଏହିପରି ଭାବରେ ବାଲ୍ମୀକି-ରାମାୟଣ ଓ ତଦାଶ୍ରିତ ଅନ୍ୟାନ୍ୟ ରାମାୟଣ ଗ୍ରନ୍ଥମାନ ଯୁଗେ ଯୁଗେ ବଙ୍ଗଳା ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରି ଆସିଛି ।

## ମରାଠି ସାହିତ୍ୟ :

ଅନ୍ୟାନ୍ୟ ଆଞ୍ଚଳିକ ଭାଷାଗୁଡ଼ିକ ଭଳି ମରାଠି ଭାଷା ମଧ୍ୟ ସମଧିକ ଭାବରେ ଏକ ପ୍ରାଚୀନ ଭାଷା ଏବଂ ଏହାର ସାହିତ୍ୟ ମଧ୍ୟ ରାମପରଂପରାରେ ସମୃଦ୍ଧ । ଏହା ମହାରାଷ୍ଟ୍ର ରାଜ୍ୟର ସରକାରୀ ଭାଷା । ଯଦିଓ ଏହାର ସାହିତ୍ୟ ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀଠାରୁ ପୁରାତନ ନୁହେଁ, ତଥାପି ଏହି ଭାଷାର ପ୍ରାଚୀନ ରୂପକୁ ନେଇ ଲିଖିତ ଗୋଟିଏ ଶିଳାଲେଖକୁ ଐତିହାସିକମାନେ ଖ୍ରୀଷ୍ଟୀୟ ୧୦୦୦ ଶତାବ୍ଦୀରେ ସ୍ଥାନିତ କରିଥାନ୍ତି । କର୍ଣ୍ଣାଟକରେ ଥିବା ଗୋମତେଶ୍ୱରଙ୍କ ବିରାଟ୍ ଶିଳାମୂର୍ତ୍ତିର ପାଦଦେଶରେ ଏହା ଦେଖିବାକୁ ମିଳିଥାଏ । ଏହା ଗୋଟିଏ ବାକ୍ୟରେ ଅଛି । ତାହା ହେଲା 'ଚଣ୍ଡରାୟେ କରବିୟେଲେ' ଅର୍ଥାତ୍ ଚଣ୍ଡରାଜଙ୍କଦ୍ୱାରା କୃତ' । ପ୍ରାଚୀନ ପ୍ରାକୃତରୁ ମରାଠିର ଉତ୍ପତ୍ତି ହୋଇଛି । ଏହି ଭାଷା ୧୧ଶ ଶତାବ୍ଦୀ ଆଡ଼କୁ ଯାଇ ଏହାର ପ୍ରକୃତ ରୂପରେଖ ନେଲା ।

ମରାଠି ସାହିତ୍ୟକୁ ସମୟ ଅନୁକ୍ରମରେ ସାଧାରଣତଃ ନିମ୍ନମତେ ତିନି ଭାଗରେ ବିଭକ୍ତ କରାଯାଇଥାଏ :

କ) ପ୍ରାଚୀନଯୁଗ ଯାହା ଖ୍ରୀ. ଅ. ୧୩୫୦ ପର୍ଯ୍ୟନ୍ତ ବିସ୍ତୃତ;

ଖ) ମଧ୍ୟଯୁଗ ଯାହା ଖ୍ରୀ: ଅ: ୧୩୫୦ରୁ ଖ୍ରୀ: ଅ: ୧୮୦୦ ପର୍ଯ୍ୟନ୍ତ ବିସ୍ତୃତ; ଏବଂ

ଗ) ଆଧୁନିକ ଯୁଗ ଯାହାର ଆରମ୍ଭ ଖ୍ରୀ: ଅ: ୧୮୦୦ରୁ ।

ମହାରାଷ୍ଟ୍ର ଅଞ୍ଚଳରେ ଯାଦବ ରାଜାମାନଙ୍କର ରାଜତ୍ୱ ଶେଷ ହୁଏ ଖ୍ରୀ. ଅ. ୧୩୨୦ରେ । ଏହି ସମୟରେ ବିଶେଷ କରି ଶେଷ ତିନି ରାଜାଙ୍କ ସମୟରେ (ଖ୍ରୀ: ଅ: ୧୧୮୯ରୁ ଖ୍ରୀ. ଅ. ୧୩୨୦ ପର୍ଯ୍ୟନ୍ତ) ମରାଠି ସାହିତ୍ୟର ବିଶେଷ ବିକାଶ ଘଟିଥିଲା । ଏହି ସମୟରେ ରାମାୟଣପରଂପରା ଓ ମହାଭାରତପରଂପରା ଉପରେ ଆଧାର କରି ଗ୍ରନ୍ଥମାନ ରଚିତ ହୋଇଥିଲା । ସନ୍ଥକବି ନାମଦେବ (୧୨୭୦-୧୩୫୦) ସନ୍ଥକବି ତଥା ପ୍ରଖ୍ୟାତ ଦାର୍ଶନିକ ଜ୍ଞାନଦେବଙ୍କ ଶିଷ୍ୟ । ନାମଦେବ କୌଳିକ ବୃତ୍ତିରେ ଜଣେ ଦରଜି ଏବଂ ସେ ଅନେକଗୁଡ଼ିଏ ଭକ୍ତିରସପୂର୍ଣ୍ଣ ସଙ୍ଗୀତର ସ୍ରଷ୍ଟା ଭାବରେ ସୁପରିଚିତ । ତାଙ୍କର ଦୁଇଟି ଭକ୍ତିରସାତ୍ମକ କବିତା ଶିଖ୍‌ମାନଙ୍କ ଆଦିଗ୍ରନ୍ଥରେ ସ୍ଥାନିତ । ନାମଦେବଙ୍କ କବିତାବଳୀରେ ରାମଙ୍କ ନାମ ମଧ୍ୟ ପ୍ରକାଶିତ । ତାଙ୍କ କବିତାଗୁଡ଼ିକ ମହାରାଷ୍ଟ୍ରର ଘରେ ଘରେ ଆଦୃତି ଲାଭ କରିଥିଲା । ଏବେ ମଧ୍ୟ ଏଗୁଡ଼ିକର ଆଦର୍-ସମ୍ମାନ କିଛି ହେଲେ ଊଣା ପଡ଼ିନାହିଁ ।

ତାହା ପରେ ଆମେ ମଧ୍ୟ ଯୁଗକୁ ଆସିବା ଯାହାକୁ ପୂର୍ବକଥିତ ମତେ (ଖ୍ରୀ: ଅ: ୧୩୫୦ରୁ ଖ୍ରୀ: ଅ: ୧୫୫୦ ପର୍ଯ୍ୟନ୍ତ) ମରାଠି ସାହିତ୍ୟର ଅନ୍ଧକାରମୟ ଯୁଗ ବୋଲି କୁହାଯାଇଥାଏ । ଏହି ସମୟର ଶାସନର ପ୍ରତିକୂଳ ସ୍ଥିତି ଏହି ସାହିତ୍ୟର ଅଭିବୃଦ୍ଧିରେ ବାଧା ସୃଷ୍ଟି କରିଥିଲା । ମୁସଲମାନଙ୍କ ଆକ୍ରମଣ ଓ ବାରମ୍ବାର ଦୁର୍ଭିକ୍ଷର ପଦଧ୍ୱନି ଏହି ସ୍ଥିତିକୁ ଆହୁରି ଜଟିଳ କରି ଦେଇଥିଲା । ଏହି ସମୟରେ (ଖ୍ରୀ: ଅ: ୧୨୯୪ରେ) ପ୍ରସିଦ୍ଧ ଖିଲଜି ସମ୍ରାଟ୍ ଆଲ୍ଲାଉଦ୍ଦିନ ଖିଲଜି ମହାରାଷ୍ଟ୍ରକୁ ଆକ୍ରମଣ କରି ତାହାକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଦେଇଥିଲେ । ସେହି ଦିନଠାରୁ ଏଠାରେ ମୁସଲମାନ୍ ଶାସନର ଭିତ୍ତିଭୂମି ପଡ଼ିଗଲା । ମୁସଲମାନ୍ ଶାସକମାନଙ୍କ ହିନ୍ଦୁବିରୋଧୀ ମନୋଭାବ ସାମାଜିକ ବାତାବରଣକୁ ଅସ୍ଥିର କରିଦେଲା ଏବଂ ଏଭଳି ଅଶାନ୍ତ ପରିବେଶ ସାହିତ୍ୟିକ ସୃଷ୍ଟିରେ ଅନ୍ତରାୟ ସୃଷ୍ଟି କଲା । ଏହି ସମୟରେ ନରସିଂହ ସରସ୍ୱତୀ ଓ ଜନାର୍ଦ୍ଦନ ସ୍ୱାମୀଙ୍କ ଭଳି ସନ୍ଥ କବିଦ୍ୱୟଙ୍କ ଆବିର୍ଭାବ ଘଟିଲା । ସେମାନେ ଭକ୍ତିରସାତ୍ମକ କବିତାଗୁଡ଼ିକ ଦ୍ୱାରା ମରାଠି ଭାଷାକୁ ସମୃଦ୍ଧ କରିବାକୁ ଲାଗିଲେ । ସେମାନେ ବୈଷ୍ଣବ ଥିବା ହେତୁ ସେମାନଙ୍କ କୃତିସମୂହରେ ରାମକଥା ମଧ୍ୟ ସ୍ଥାନ ପାଇବାକୁ ଲାଗିଲା । ବାସ୍ତବିକ ଭକ୍ତିରସାତ୍ମକ କବିତା-ସମୂହର ବିରାଟ ମନ୍ଦିର ନିର୍ମାତା ହେଉଛନ୍ତି ଆଉ ଦୁଇଜଣ ସନ୍ଥକବି ଯେଉଁମାନଙ୍କ ଆବିର୍ଭାବ ପରେ ହୋଇଥିଲା । ସେମାନେ ହେଲେ ଏକନାଥ ସ୍ୱାମୀ (୧୫୪୮-୯୦) ଓ ତୁକାରାମ (୧୫୮୮-୧୬୪୯) । ଏକନାଥ ଥିଲେ ରାମକଥା ଉପରେ ଆଧାରିତ 'ଭାବାର୍ଥ ରାମାୟଣ'ର ସ୍ରଷ୍ଟା । ଏହା ବାଲ୍ମୀକି ରାମାୟଣକୁ ଆଧାରରୂପେ ଗ୍ରହଣ କରିଥିଲେ ମଧ୍ୟ ଏକ ସର୍ଜନାତ୍ମକ କାବ୍ୟର ଆସନ ଗ୍ରହଣ କରିଛି । ଏଥିରେ ସର୍ବମୋଟ ୨୦,୦୦୦ପଦ ରହିଛି । ଏଠାରେ ମନେ ରଖିବାକୁ ହେବ ଯେ ବାଲ୍ମୀକିରାମାୟଣର ଶ୍ଲୋକ ସଂଖ୍ୟା ୨୪,୦୦୦ । ଏକନାଥ ଜ୍ଞାନେଶ୍ୱରଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ଥିବା କାରଣରୁ ତାଙ୍କ କୃତିରେ ଗଭୀର ଦାର୍ଶନିକତା ପରିସ୍ଫୁଟ । ସେ ରାମଙ୍କ କାହାଣୀକୁ ପ୍ରାଧାନ୍ୟ ନଦେଇ ପ୍ରାଧାନ୍ୟ ଦେଇଛନ୍ତି ରାମତତ୍ତ୍ୱକୁ । ଏହି ଦୃଷ୍ଟିରୁ ସେ ବାଲ୍ମୀକି-ରାମାୟଣ ଅପେକ୍ଷା ଅଧ୍ୟାତ୍ମରାମାୟଣର ଅଧିକତର ନିକଟବର୍ତ୍ତୀ । ବାଲ୍ମୀକିଙ୍କ ମନୁଷ୍ୟରୂପୀ ରାମ ତାଙ୍କ ନିକଟରେ ଦେବତାରୂପୀ ରାମ ଭାବରେ ପ୍ରତିଭାତ ।

ତୁକାରାମଙ୍କ କବିତାସମୂହ 'ଅଭଙ୍ଗ' ନାମରେ ଖ୍ୟାତ । ଏଗୁଡ଼ିକର ସାଙ୍ଗୀତିକତା ଅପୂର୍ବ ଏବଂ ଏଗୁଡ଼ିକ ଉଦାର ଭକ୍ତିରସରେ ପରିପୂର୍ଣ୍ଣ । ତାହା

ଛଡ଼ା ଏଗୁଡ଼ିକର ମରାଠି ଭାଷାରେ ସରଳ-ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ଜନସମାଜର ଚିତ୍ତ-ମନକୁ ଛୁଇଁଥାଏ । ଏଗୁଡ଼ିକ ସେତେବେଳେ ଯେଉଁପରି ଭାବରେ ଜନମାନସକୁ ସ୍ପର୍ଶ କରିଥିଲା ଏବେ ପ୍ରାୟ ୩୫୦ ବର୍ଷ ପରେ ମଧ୍ୟ ସେହିପରି ସ୍ପର୍ଶ କରୁଛି । ତାଙ୍କ ଅଭଙ୍ଗସମୂହରୁ କେତୋଟିରେ ରାମଙ୍କ ମାହାତ୍ମ୍ୟ ମଧ୍ୟ ପ୍ରକାଶିତ । ସେ ଥିଲେ ଧର୍ମ ନାମରେ ଥିବା ଅନ୍ଧବିଶ୍ୱାସ ଓ ତାହାକୁ ଭିତ୍ତି କରି ଦେଖାଯାଉଥିବା ଅସହନଶୀଳତାର ବିରୋଧୀ । ତାଙ୍କ କବିତାଗୁଡ଼ିକ ତେଣୁ ବିଭିନ୍ନ ସଂପ୍ରଦାୟ-ଗୁଡ଼ିକୁ ଓ ବିଭିନ୍ନ ଧର୍ମଗୁଡ଼ିକୁ ଗୋଟିଏ କନକ-ସୂତ୍ରରେ ସଂଯୁକ୍ତ କରିଦେଲା । ତାଙ୍କ ସୃଷ୍ଟ ସର୍ବଧର୍ମସମନ୍ୱୟର ଶଙ୍ଖନାଦ ପରବର୍ତ୍ତୀ ଯୁଗରେ ଆସିଥିବା ବୈଷ୍ଣବୀୟ କବିମାନଙ୍କ କବିତାଗୁଡ଼ିକ ମାଧ୍ୟମରେ ଶୁଣାଯିବାକୁ ଲାଗିଲା ଯାହା ଫଳରେ ଶିବାଜି (୧୭ ଶତାବ୍ଦୀ) ମହାରାଷ୍ଟ୍ରକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ରରେ ପରିଣତ କରିପାରିଲେ ।

ତୁକାରାମଙ୍କ ପରେ ମରାଠି ସାହିତ୍ୟର ରଙ୍ଗମଞ୍ଚରେ ଆବିର୍ଭୂତ ହୋଇଥିବା ଶ୍ରୀଧର (୧୬୭୮-୧୭୨୮) 'ରାମବିଜୟ' କାବ୍ୟର ସ୍ରଷ୍ଟା ଯାହା ଥିଲା ବାଲ୍ମୀକିରାମାୟଣ ଉପରେ ଆଧାରିତ । ପୁଣି ଆସିଲେ ଗୁରୁ ସମର୍ଥ ରାମଦାସ (୧୬୭୮-୧୭୨୮) ଯେ ଥିଲେ ଶିବାଜିଙ୍କ ଗୁରୁ । ସେ 'ଦାସବୋଧ' ନାମକ ଗୋଟିଏ ପ୍ରଜ୍ଞାତ୍ମକ ଗ୍ରନ୍ଥର ସ୍ରଷ୍ଟା । ଏଥିରେ ସେ ଅନ୍ୟାନ୍ୟ ଜିନିଷ ମଧ୍ୟରେ ରାମଙ୍କୁ ଜଣେ ଆଦର୍ଶ ରାଜା ଭାବରେ ଚିତ୍ରିତ କରି ତାଙ୍କ ଗୁଣାବଳୀର କୀର୍ତ୍ତନ କରିଛନ୍ତି । ଶିବାଜି ଏଥି-ବର୍ଣ୍ଣିତ ଉପଦେଶାବଳୀରୁ ଜଣେ ସୁଶାସକ ହେବାପାଇଁ ଅନୁପ୍ରେରଣା ପାଇଥିଲେ । ମୁକ୍ତେଶ୍ୱର ଥିଲେ ଏକନାଥଙ୍କ ନାତି (ଝିଅଙ୍କ ପୁଅ) । ସେ ରାମାୟଣକୁ ନିଜର ସ୍ୱତନ୍ତ୍ର ଶୈଳୀରେ ଲେଖିଛନ୍ତି । ଏହା ଅନୁବାଦ ନୁହେଁ । ଅନ୍ୟ ପକ୍ଷରେ ଏହା ଏକ ମୌଳିକ ସୃଷ୍ଟି ।

ଆଧୁନିକ ଯୁଗରେ ମରାଠି ସାହିତ୍ୟରେ ରାମାୟଣ ଗ୍ରନ୍ଥକୁ ଆଧାର କରି କେତେକ ନାଟକ ଓ ଉପନ୍ୟାସ ରଚିତ ହୋଇଛି ଏବଂ ଆଉ କେତେକ ଗବେଷଣାମୂଳକ ପ୍ରବନ୍ଧ ମଧ୍ୟ ରଚିତ ହୋଇଛି । ପ୍ରବନ୍ଧକାରମାନଙ୍କ ମଧ୍ୟରେ ରାମକୃଷ୍ଣ ଗୋପାଳ ଭଣ୍ଡାରକର (୧୮୩୭-୧୯୨୫) ପ୍ରମୁଖ ସ୍ଥାନ ଅଧିକାର କରିଛନ୍ତି । ବିଷ୍ଣୁ ଅମୃତ ଭାବେ ରାମକଥାକୁ ଆଶ୍ରୟ କରି 'ସୀତାସ୍ୱୟମ୍ବର' ନାମକ ନାଟକଟିଏ ଲେଖିଛନ୍ତି । ସର୍ବପ୍ରଥମେ ଏହା ୧୮୪୧ ମସିହାରେ ଅଭିନୀତ ହୋଇଥିଲା । ବଳବନ୍ତ ପାଣ୍ଡୁରଙ୍ଗ କିର୍ଲୋସ୍କର (୧୮୪୩-୧୮୮୫) ଅନେକଗୁଡ଼ିଏ ପୌରାଣିକ ନାଟକ ଲେଖିଛନ୍ତି । 'ରାମରାଜ୍ୟବିଜୟ' ନାଟକଟି (୧୮୮୪) ତନ୍ମଧ୍ୟରୁ ଅନ୍ୟତମ । ଏହାର ବିଷୟବସ୍ତୁ ପୌରାଣିକ ହେଲେ

ମଧ୍ୟ ପ୍ରକାଶଭଙ୍ଗୀ ଆଧୁନିକ । ରାମାୟଣ-ମୂଲ୍ୟବୋଧସମ୍ଭୂତର ଆଧୁନିକ ଯୁଗରେ ପ୍ରୟୋଜନୀୟତାକୁ ନେଇ ଏହା ଲିଖିତ । ଏଣୁ ଏହା ଏକ ଆଧୁନିକ ସାହିତ୍ୟ-କୃତି ଭାବରେ ଗଣାଯାଏ । 'ଯଯାତି' ଉପନ୍ୟାସର ଲେଖକ ଭି. ଏସ୍. ଖାଣ୍ଡେକର (୧୮୯୮-୧୯୭୭) ପୌରାଣିକ ଉପନ୍ୟାସ ଲେଖିବାରେ ସିଦ୍ଧହସ୍ତ । 'ଯଯାତି' ଉପନ୍ୟାସ ପ୍ରଥମ ଜ୍ଞାନପୀଠ ପୁରସ୍କାର ପାଇବାର ଅଧିକାରୀ ହୋଇପାରିଥିଲା । ତାଙ୍କ ଉପନ୍ୟାସ-ସମ୍ଭୂତର ବୈଚିତ୍ର୍ୟ ହେଲା ସେ ପୌରାଣିକ ଚରିତମାନଙ୍କୁ ଉପଲକ୍ଷ୍ୟ ମାତ୍ର ଗ୍ରହଣ କରି ଆଧୁନିକ ଯୁଗର କଥା ହିଁ ଲେଖିଥାନ୍ତି । ତାଙ୍କଦ୍ୱାରା ଲିଖିତ 'କ୍ରୌଞ୍ଚବଧ' ଉପନ୍ୟାସର କଥାବସ୍ତୁ ରାମାୟଣ ଉପରେ ଆଧାରିତ ।

ଆଧୁନିକ ଯୁଗରେ କୃଷ୍ଣକଥା ରାମକଥାଠାରୁ ଅଧିକ ପ୍ରାଥମିକତା ମରାଠି ଭାଷାରେ ପାଇଥିବାର ଦେଖାଯାଏ । ପରିମାଣ ଦୃଷ୍ଟିରୁ କୃଷ୍ଣକଥା ଉପରେ ଆଧାରିତ ଗ୍ରନ୍ଥମାନଙ୍କ ସଂଖ୍ୟା ଅପେକ୍ଷାକୃତ ଅଧିକ । କିନ୍ତୁ ରାମାୟଣ-ପରଂପରାରେ ଯେ ଅବକ୍ଷୟ ମହାରାଷ୍ଟ୍ରରେ ଘଟିଛି ତାହା କହିବା ଠିକ୍ ହେବନାହିଁ । ରାମକଥାକୁ ଆଧାର କରି ଲେଖାଯାଇଥିବା ଭଜନମାନ ଏବେ ମଧ୍ୟ ଲୋକପ୍ରିୟ । ବିବାହୋତ୍ସବମାନଙ୍କର ଏବେ ମଧ୍ୟ ସ୍ତ୍ରୀଲୋକମାନେ ରାମକଥାକୁ ଆଶ୍ରୟ କରି ସୃଷ୍ଟ ହୋଇଥିବା ଲୋକଗୀତମାନ ଗାଇଥାନ୍ତି । ହିନ୍ଦିଭାଷାଭାଷୀ ଅଞ୍ଚଳମାନଙ୍କରେ ପ୍ରଚଳିତ ଥିବା ରାମଲୀଳା ଭଳି ମରାଠି ଭାଷାରେ ଅବଶ୍ୟ ସ୍ୱତନ୍ତ୍ର ରାମଲୀଳା-ସାହିତ୍ୟର ସୃଷ୍ଟି ହୋଇନାହିଁ; କାରଣ ତୁଳସୀଦାସଙ୍କ 'ରାମଚରିତମାନସ' ଭଳି ସରସ-ସୁନ୍ଦର ଭକ୍ତିରସାତ୍ମକ ଗ୍ରନ୍ଥଟିଏ ଏ ପର୍ଯ୍ୟନ୍ତ ଏହି ଭାଷାରେ କେହି ଲେଖି ନାହାନ୍ତି । କିନ୍ତୁ ହିନ୍ଦିଭାଷାଭାଷୀ ଅଞ୍ଚଳମାନଙ୍କରୁ ଏବେ ମଧ୍ୟ ରାମଲୀଳା ପ୍ରଦର୍ଶନ କରୁଥିବା ଦଳମାନେ ଆସି ଅତି ସଫଳତାର ସହିତ ମହାରାଷ୍ଟ୍ରର ପୁରପଲ୍ଲୀରେ ସର୍ବତ୍ର ରାମଲୀଳା ପ୍ରଦର୍ଶନ କରୁଛନ୍ତି ଏବଂ ଏହି ଲୀଳା ଏବେ ମଧ୍ୟ ଖୁବ୍ ଲୋକପ୍ରିୟ ଅଛି । ଅତଏବ, ଏଠାରେ ରାମପରଂପରା ପୂର୍ବ ଭଳି ଅକ୍ଷୁଣ୍ଣ ରହିଛି ।

**ନେପାଳି ସାହିତ୍ୟ :**

ସେହିକ ସୁକୁମାରୀ ଭଟ୍ଟାଚାର୍ଜୀ ଯଥାର୍ଥରେ କହିଥିଲେ :

The Ramayana conveys the highest moral value, viz, the proper attitude to suffering in life. And this eloquent message is ageless; it remains even in our troubled times when suffering has assumed

many different forms but remains unchanged in content. (୩୪-କ)

ଏହି ଚିରନ୍ତନ ରାମାୟଣୀୟ ସନ୍ଦେଶ ଭାରତର ପ୍ରତ୍ୟେକଟି ପ୍ରାନ୍ତୀୟ ଭାଷା-ସାହିତ୍ୟରେ ପ୍ରତିଫଳିତ । ତେଣୁ ଏହା ନେପାଳି ସାହିତ୍ୟରେ ଅନୁରୂପ ଭାବରେ ପ୍ରତିଫଳିତ ହେବାର ଯଥେଷ୍ଟ କାରଣ ଅଛି । ବାସ୍ତବିକ ତାହା ହିଁ ଘଟିଛି । ଯୁଗ-ଯୁଗ ଧରି ରାମପରଂପରା ନେପାଳି ସାହିତ୍ୟକୁ ଦିଗ୍‌ଦର୍ଶନ ଦେଇଆସୁଛି ।

ନେପାଳି ଭାଷା ନେପାଳର ରାଷ୍ଟ୍ରଭାଷା ହୋଇଥିଲେ ହେଁ ଏହା ମଧ୍ୟ ଆମ ସମ୍ବିଧାନରେ ଏକ ଭାରତୀୟ ଭାଷାର ସ୍ୱୀକୃତି ପାଇଛି । ନେପାଳର ସଂସ୍କୃତି ସହିତ ଭାରତୀୟ ସଂସ୍କୃତିର ଅବିଚ୍ଛିନ୍ନ ସଂପର୍କ ରହିଛି । କେବଳ ଇଂରେଜ ଶାସନକାଳରେ ଏହାକୁ ଏକ ସ୍ୱତନ୍ତ୍ର ଦେଶର ମର୍ଯ୍ୟାଦା ଦିଆଯାଇ ରାଜନୈତିକ ଓ ସାମରିକ ଦୃଷ୍ଟିକୋଣରୁ ଇଂରେଜ ସରକାର ଏହା ସହିତ ଏକ ସ୍ୱତନ୍ତ୍ର ସନ୍ଧିରେ ଆବଦ୍ଧ ହୋଇଥିଲେ । ବହୁବର୍ଷ ଧରି ଏହା ଭାରତର ଅଂଶବିଶେଷ ହୋଇ ରହିଥିଲା । ଗୌତମ ବୁଦ୍ଧ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ଏହିଠାରେ ଥିବା କପିଳବାସ୍ତୁରେ ଜନ୍ମଗ୍ରହଣ କରିଥିଲେ । ଏବେ ମଧ୍ୟ ପଶ୍ଚିମ ବଙ୍ଗଳାର ଦାର୍ଜିଲିଂ ଜିଲ୍ଲାର ଅଧିକାଂଶ ଅଧିବାସୀଙ୍କ ମାତୃଭାଷା ହେଉଛି ନେପାଳି । ତେଣୁ ନେପାଳି ସାହିତ୍ୟରେ ରାମାୟଣ-ପରଂପରାର ପ୍ରଭାବ ବିଷୟରେ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ; ଏହି ଭାଷା ଭାରତୀୟ ମହାଭାଷାର ଧାରାର ଏକ ଉପଧାରା ମାତ୍ର ।

ଯଦିଓ ସଂସ୍କୃତ ଭାଷାରେ ଲିଖିତ 'ଅଧ୍ୟାତ୍ମରାମାୟଣ' ମୂଳତଃ ବାଲ୍ମୀକିଙ୍କ ରାମାୟଣକୁ ଆଧାର କରିଛି ତଥାପି ଉଭୟର ଲକ୍ଷ୍ୟ ଓ ସନ୍ଦେଶ ଭିନ୍ନ-ଭିନ୍ନ । ବାଲ୍ମୀକି ରାମଙ୍କୁ ଜଣେ ରକ୍ତମାଂସଧାରୀ ସାଧାରଣ ମଣିଷ ଭାବରେ ଚିତ୍ରିତ କରିଛନ୍ତି ଏବଂ ତାଙ୍କର ନାନା ସଦ୍‌ଗୁଣର ଅଧିକାରୀ ଥିବାର ବର୍ଣ୍ଣନା କରିଛନ୍ତି । ତହିଁରେ ସେ ଜଣେ ଆଦର୍ଶସ୍ଥାନୀୟ ମନୁଷ୍ୟରୂପରେ ପ୍ରତିଭାତ । ଏହାର ଅନ୍ୟ ଚରିତ୍ରମାନେ ମଧ୍ୟ ସେମିତି ସାଧାରଣ ମଣିଷ । କିନ୍ତୁ ଅଧ୍ୟାତ୍ମ-ରାମାୟଣରେ ରାମଙ୍କୁ ବିଷ୍ଣୁଙ୍କ ଅବତାର ଓ ସୀତାଙ୍କୁ ଲକ୍ଷ୍ମୀଙ୍କ ଅବତାର ଭାବରେ ଚିତ୍ରିତ କରାଯାଇଛି । ଏଣୁ ରାମଭକ୍ତିର ରସରେ ଏହା ପରିପ୍ଳୁତ । ତୁଳସୀଦାସ ତାଙ୍କ ରାମଚରିତମାନସରେ ରାମଙ୍କ ଦେବତ୍ୱକୁ ସ୍ୱୀକାର କରିଥିଲେ ମଧ୍ୟ ତାଙ୍କଠାରେ ମାନବୀୟ ମନୋବୃତ୍ତି ଥିବା କଥାର ମଧ୍ୟ ପୁଷ୍କଳ ବର୍ଣ୍ଣନା କରିଛନ୍ତି । ତାଙ୍କ ଗ୍ରନ୍ଥରେ ରାମଙ୍କ ଶୈଶବଲୀଳା ଠିକ୍ ଜଣେ ସାଧାରଣ

ଶିଶୁର ଶୈଶବଲୀଳା ଭଲ ହୋଇଛି । ସେ ତେଣୁ ବିଶେଷ ଭାବରେ ଅଧ୍ୟାତ୍ମରାମାୟଣ ଉପରେ ନିର୍ଭରଶୀଳ ହୋଇଛନ୍ତି । ନେପାଳି ସାହିତ୍ୟରେ ସୃଷ୍ଟ ରାମାୟଣଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ଦେଖିବା ଯେ ପ୍ରାୟ ସବୁଗୁଡ଼ିକ ଅଧ୍ୟାତ୍ମରାମାୟଣ ଉପରେ ଆଧାରିତ । 'ଅଧ୍ୟାତ୍ମରାମାୟଣ' ନେପାଳିମାନଙ୍କ ମଧ୍ୟରେ ଅଧିକତର ଲୋକପ୍ରିୟତା ହାସଲ କରିଥିବାର ମନେହୁଏ ।

ନେପାଳି ସାହିତ୍ୟରେ ପ୍ରଥମେ ଗଦ୍ୟାକାରରେ ରାମାୟଣର ରଚନା ହୋଇଥିଲା ୧୮୩୩ ମସିହାରେ । ଏହା ଏ ପର୍ଯ୍ୟନ୍ତ ମୁଦ୍ରିତ ହୋଇନାହିଁ ଏବଂ ଏହାର ପାଣ୍ଡୁଲିପି କାଠମାଣ୍ଡୁସ୍ଥ ରାଷ୍ଟ୍ରୀୟ ପୁସ୍ତକାଳୟରେ ସଂରକ୍ଷିତ ହୋଇ ରହିଛି । ଏହାର ଲେଖକ କିଏ ତାହା ଅଜଣା । ପ୍ରସିଦ୍ଧ ନେପାଳି ସମାଲୋଚକ ବାଲକୃଷ୍ଣ ପୋଖ୍‌ରେଲ୍‌ଙ୍କ ମତରେ ଏହାର ନାମ 'ରାମାଶ୍ୱମେଧ' । ଏହାର ବର୍ଣ୍ଣନା ରାମଙ୍କ ଅଶ୍ୱମେଧଯଜ୍ଞ କରିବା ପର୍ଯ୍ୟନ୍ତ ଲମ୍ବିଛି । ଏହା ଏକ ସମ୍ପୂର୍ଣ୍ଣ ରାମାୟଣ । ଏହା ମଧ୍ୟ 'ଅଧ୍ୟାତ୍ମରାମାୟଣ' ଉପରେ ଆଧାରିତ । ପଣ୍ଡିତ ପଦ୍ମ ଶର୍ମାଙ୍କ ସୃଷ୍ଟ ଆଉ ଏକ ଗଦ୍ୟାକାରରେ ଲିଖିତ ରାମାୟଣର ନାମ ହେଉଛି 'ରାମାୟଣ ଲଙ୍କାକାଣ୍ଡ' । ଏହା ୧୯୩୪ ମସିହାରେ ଲିଖିତ ଏବଂ ଏ ପର୍ଯ୍ୟନ୍ତ ଅମୁଦ୍ରିତ । ଏହା ମଧ୍ୟ କାଠମାଣ୍ଡୁସ୍ଥ ରାଷ୍ଟ୍ରୀୟ ପୁସ୍ତକାଳୟରେ ପାଣ୍ଡୁଲିପି ଆକାରରେ ସଂରକ୍ଷିତ । ପୋଖ୍‌ରେଲ୍‌ଙ୍କ ମତରେ ଏହାର ସେତେ କିଛି ସାହିତ୍ୟିକ ମୂଲ୍ୟ ନାହିଁ । ଏଥିରେ ମଧ୍ୟ 'ଅଧ୍ୟାତ୍ମରାମାୟଣ'ର ପ୍ରଭାବ ଦର୍ଶନୀୟ ।

ମହାରାଜା ରଣବାହାଦୁର ସାହଙ୍କ (୧୭୭୮-୧୮୦୦) ଶାସନକାଳ ନେପାଳି ସାହିତ୍ୟର ବିକାଶ ପାଇଁ ଏକ ସୁବର୍ଣ୍ଣଯୁଗ ଥିଲା । ଏହି ସମୟରେ ନେପାଳି ଭାଷାରେ ଉଭୟ କାବ୍ୟ ଓ ଗଦ୍ୟ ଆକାରରେ ଅନେକ ସାହିତ୍ୟ-କୃତିର ଆବିର୍ଭାବ ହୋଇଥିଲା । ଏହି ସମୟରେ ସୁନ୍ଦରାନନ୍ଦ ବାନ୍‌ରା ତାଙ୍କ ରାମାୟଣ ଗ୍ରନ୍ଥଟିକୁ ଗଦ୍ୟାକାରରେ ଲେଖିଥିଲେ । ଏଥିରେ ସାତକାଣ୍ଡ ରାମାୟଣ କାହାଣୀ ସନ୍ନିବେଶିତ । ଏହା ମଧ୍ୟ 'ଅଧ୍ୟାତ୍ମରାମାୟଣ' ଉପରେ ଆଧାରିତ । କିନ୍ତୁ 'ଅଧ୍ୟାତ୍ମ-ରାମାୟଣ'ର ଆକାରଠାରୁ ଏହାର ଆକାର ଯଥେଷ୍ଟ ବୃହତ୍ତର । ସୁନ୍ଦରାନନ୍ଦ ତାଙ୍କ ଗ୍ରନ୍ଥରେ ଅନେକ କିଛି ନୂଆ-ନୂଆ କଥାର ଅବତାରଣା କରିଛନ୍ତି । ଏହାକୁ ତେଣୁ ଅନୁବାଦଗ୍ରନ୍ଥ ବୋଲି ନଧରି ଏକ ସର୍ଜନାତ୍ମକ ଗ୍ରନ୍ଥଭାବରେ ଧରାଯିବ, ଠିକ୍ ଯେମିତି ସାରଳା ଦାସଙ୍କର ଓଡ଼ିଆ ଭାଷାରେ ଲିଖିତ ମହାଭାରତ କାବ୍ୟ । ସାହିତ୍ୟକାର ବାନ୍‌ରା କିଛି କଥାବସ୍ତୁ ବାଲ୍ମୀକି-ରାମାୟଣରୁ ଏବଂ ଆଉ କିଛି କଥାବସ୍ତୁ ଦକ୍ଷିଣ-ଭାରତରେ ବିଶେଷ ଲୋକପ୍ରିୟତା

ହାସଲ କରିଥିବା 'ଆନନ୍ଦରାମାୟଣ'କୁ ନେଇଛନ୍ତି । ହନୁମାନଙ୍କ ଲଙ୍କା-ପୋଡ଼ିରେ କାଛଟା ବ୍ୟଙ୍ଗର ସ୍ପର୍ଶ ରହିଛି । ଏହା 'ଆନନ୍ଦରାମାୟଣ'କୁ ଦୃଶ୍ୟତ । ହନୁମାନଙ୍କର ଗନ୍ଧମାଦନ ପର୍ବତକୁ ଧରି ନନ୍ଦିଗ୍ରାମ ଉପରେ ଉଡ଼ିବା କଥାର ଅବତାରଣା ସେ କରିଛନ୍ତି ଯାହା ବାଲ୍ମୀକି-ରାମାୟଣରେ କିମ୍ବା 'ଅଧ୍ୟାତ୍ମରାମାୟଣ'ରେ ନାହିଁ, ଅଥଚ ଆନନ୍ଦରାମାୟଣରେ ଅଛି । ଏହାପରି ଅନେକ ନୂଆ-ନୂଆ କଥାର ଅବତାରଣା ସେ କରିଛନ୍ତି । ଏ ସବୁ କରିବାର ଉଦ୍ଦେଶ୍ୟ ହେଲା ରାମାୟଣର ପାତ୍ର-ପାତ୍ରୀମାନଙ୍କଠାରେ ଅଲୌକିକତାର ଆରୋପ ମାଧ୍ୟମରେ ଶ୍ରୋତା ଅଥବା ପାଠକମାନଙ୍କୁ ମୁଗ୍ଧ-ଚକିତ କରାଇବା ଏବଂ ସେମାନଙ୍କ ହୃଦୟରେ ଭକ୍ତିରସର ଧାରାକୁ ପ୍ରବଳତର ଭାବରେ ବୁହାଇବା । ଏହି ଗ୍ରନ୍ଥଟି ମଧ୍ୟ ଏ ପର୍ଯ୍ୟନ୍ତ ଅମୁଦ୍ରିତ । ଏହା ପୂର୍ବୋକ୍ତ ଗ୍ରନ୍ଥଗୁଡ଼ିକ ଭଳି କାଠମାଣ୍ଡୁସ୍ଥ ରାଷ୍ଟ୍ରୀୟ ପୁସ୍ତକାଳୟରେ ପାଣ୍ଡୁଲିପି ଆକାରରେ ସଂରକ୍ଷିତ ।

ତାହା ପରେ ଆସନ୍ତି ପଣ୍ଡିତ ଚକ୍ରପାଣି ଗୁଲଶେ (୧୮୮୩-୧୯୫୮) ଯେ ହେଉଛନ୍ତି ଗଦ୍ୟରେ ଲିଖିତ 'ସଂକ୍ଷିପ୍ତ ରାମାୟଣ'ର ସ୍ରଷ୍ଟା । ସେ ବାଲ୍ମୀକି-ରାମାୟଣରୁ କଥାବସ୍ତୁ ଆହରଣ କରିଛନ୍ତି । ତାଙ୍କ ରାମାୟଣର ସାତକାଣ୍ଡ ହେଲା ବାଲ, ଅଯୋଧ୍ୟା, ଆରଣ୍ୟ, କିଷ୍କିନ୍ଧା, ଯୁଦ୍ଧ ଓ ଉତ୍ତର । ସେ ବାଲ୍ମୀକିଙ୍କୁ ସମ୍ମାନ ଦେଖାଇବାକୁ ଯାଇ ତାଙ୍କ 'ସଂକ୍ଷିପ୍ତ ରାମାୟଣ'ର ଭୂମିକାର ଆରମ୍ଭରେ ଲେଖିଛନ୍ତି :

> ଜ୍ୟେଷ୍ଠା ଜୟତି ବାଲ୍ମୀକିଃ ସର୍ଗବନ୍ଧେ ପ୍ରଜାପତିଃ ।
> ଯଃ ସର୍ବହୃଦୟାହ୍ଲାଦିନଂ କାବ୍ୟଂ ରାମାୟଣଂ ବ୍ୟଧାତ୍ ॥

ଅର୍ଥାତ୍ ସର୍ଗବନ୍ଧ କାବ୍ୟସୃଷ୍ଟି କରିବାରେ ଯେ ପ୍ରଜାପତିଙ୍କ ସଦୃଶ ଏବଂ ଯେ ସମସ୍ତଙ୍କ ହୃଦୟ ଲଗ୍ନ ହେଲା ଭଳି କାବ୍ୟଟିଏ ଗଢ଼ିଛନ୍ତି, ସେହି ପୂର୍ବସୂରି ବାଲ୍ମୀକିଙ୍କର ଜୟ ହେଉ । ଏହା ଏକ ଅତି କ୍ଷୁଦ୍ର ଗ୍ରନ୍ଥ ଯହିଁରେ ୧୪୮ ପୃଷ୍ଠା ମାତ୍ର ଅଛି । ଏହି ଗ୍ରନ୍ଥଟି ସର୍ବ ପ୍ରଥମେ ୧୯୧୫ ମସିହାରେ ପ୍ରକାଶିତ ହୋଇଥିଲା । ଗ୍ରନ୍ଥଟି ଗୋଟିଏ ସଂସ୍କୃତ ଶ୍ଳୋକରେ ଶେଷ ହୋଇଛି । ଏହା ସାହିତ୍ୟକାରଙ୍କ ନିଜ ସୃଷ୍ଟି ନୁହେଁ । ଅନ୍ୟ ପକ୍ଷରେ ଏହା କ୍ଷେମେନ୍ଦ୍ରଙ୍କ ସଂସ୍କୃତ ଭାଷାରେ ଲିଖିତ 'ରାମାୟଣମଞ୍ଜରୀ' ଗ୍ରନ୍ଥରୁ ଆନୀତ । ଏଥିରୁ ଅନୁମିତ ହୁଏ ଯେ ପଣ୍ଡିତ ଚକ୍ରପାଣି ଗୁଲଶେ ସଂସ୍କୃତ ଭାଷାରେ ଜଣେ ବିଦ୍ୱାନ୍ ଥିଲେ ଏବଂ ଥିଲେ ମଧ୍ୟ ଜଣେ ବହୁପାଠୀ ।

ନେପାଳ ଗଦ୍ୟରେ ଲିଖିତ ସର୍ବାଧୁନିକ ଗ୍ରନ୍ଥଟି ହେଉଛି 'ଆତ୍ମରାମାୟଣ' ଯାହା 'ଅଧ୍ୟାତ୍ମରାମାୟଣ' ଉପରେ ଆଧାରିତ ଏବଂ ଯାହା ୧୯୫୯ ମସିହାରେ

ପ୍ରକାଶିତ । ଭୈରବସିଂହ ଥାପା ଏହାର ରଚୟିତା । ଏହା ସାତକାଣ୍ଡ-ବିଶିଷ୍ଟ । କିନ୍ତୁ କାଣ୍ଡଗୁଡ଼ିକର ନାମ 'ଅଧ୍ୟାତ୍ମରାମାୟଣ' କିମ୍ବା 'ବାଲ୍ମୀକି-ରାମାୟଣ'ର କାଣ୍ଡଗୁଡ଼ିକ ସହିତ ମେଳ ଖାଏ ନାହିଁ । ଏହି କାଣ୍ଡଗୁଡ଼ିକ ହେଲା ବାଲ, ଅଯୋଧ୍ୟା, ଆରଣ୍ୟ, କିଷ୍କିନ୍ଧା, ସୁନ୍ଦର, ଉତ୍ତର ଓ ଲବକୁଶ । ନିର୍ଗୁଣ ବ୍ରହ୍ମଙ୍କ ମାହାତ୍ମ୍ୟ ପ୍ରତିପାଦିତ କରିବା ଲେଖକଙ୍କର ଲକ୍ଷ୍ୟ । ସେ ଏହି ଗ୍ରନ୍ଥରେ ବେଦାନ୍ତ ଦର୍ଶନର ଅନେକଗୁଡ଼ିଏ ପଙ୍କ୍ତି ସନ୍ନିବେଶିତ କରିଛନ୍ତି । ସେଗୁଡ଼ିକ ହେଲା, 'ବ୍ରହ୍ମ ସତ୍ୟଂଜଗନ୍ମିଥ୍ୟା' (ବ୍ରହ୍ମ ସତ୍ୟ ଓ ଜଗତ୍ ମିଥ୍ୟା), 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' (ଏ ସମସ୍ତ ନିଶ୍ଚିତ ଭାବରେ ବ୍ରହ୍ମ), 'ଏକଂ ବ୍ରହ୍ମ ଦ୍ୱିତୀୟଂ ନାସ୍ତି (କେବଳ ଏକମାତ୍ର ବ୍ରହ୍ମଙ୍କର ସ୍ଥିତି ଅଛି, ଆଉ କାହାର ନାହିଁ), 'ନେତି ନେତି' (ଏତିକି ନୁହେଁ, ଏତିକି ନୁହେଁ) ଇତ୍ୟାଦି । ଲେଖକ ଜଣେ ବେଦାନ୍ତ ଦାର୍ଶନିକ ଥିବା ଭଳି ବିଶ୍ୱାସ କରାଯାଏ । ସେ ଏହି ଗ୍ରନ୍ଥରେ ଯେପରି ଭାବରେ ରାମାୟଣବର୍ଣ୍ଣିତ ବିଭିନ୍ନ ନାମଗୁଡ଼ିକରେ ସଙ୍କେତାତ୍ମକ ବ୍ୟାଖ୍ୟା କରିଛନ୍ତି ତାହା ଗଭୀର ତତ୍ତ୍ୱଗର୍ଭକ ଓ ଅନନ୍ୟ । ଶ୍ରୀଅରବିନ୍ଦ ପୂର୍ବରୁ ବେଦର ଠିକ୍ ଅନୁରୂପ ଭାବରେ ତାତ୍ତ୍ୱିକ ବ୍ୟାଖ୍ୟା କରିଥିଲେ । ସମ୍ଭବତଃ ତାଙ୍କୁ ଅନୁସରଣ କରି ଲେଖକ ରାମାୟଣରେ ଏଭଳି ସାଂକେତିକ ବ୍ୟାଖ୍ୟା କରିଥାଇପାରନ୍ତି । ଏହାର ତାତ୍ତ୍ୱିକ ମୂଲ୍ୟକୁ ଏଡ଼ାଇ ଦିଆଯାଇ ନପାରେ । ଏ ସଂପର୍କରେ ଅଧିକତର ଗବେଷଣା ହେଲେ ଯାଇ ତାଙ୍କଦ୍ୱାରା ବିବକ୍ଷିତ ତତ୍ତ୍ୱର ଯଥାର୍ଥତା ଜଣାପଡ଼ିବ । ରାମାୟଣବର୍ଣ୍ଣିତ କେତୋଟି ନାମ କି ସଂକେତ ଦେଉଛି ତାହା ନିମ୍ନରେ ଦିଆଗଲା :

| ନାମ | ସଂକେତ | ନାମ | ସଙ୍କେତ |
|---|---|---|---|
| ରାମାୟଣ | ଆତ୍ମା | କୈକେୟୀ | ବିଷୟଦୋଷ |
| ଅଯୋଧ୍ୟା | ପଞ୍ଚକୋଷ | କୌଶଲ୍ୟା | ନିବୃତ୍ତି ପାଇଁ ବୃତ୍ତି |
| ଦଶରଥ | ଜୀବ | ଭରତ | ବୈରାଗ୍ୟ |
| ସୁମିତ୍ରା | ଭକ୍ତି | ଶତ୍ରୁଘ୍ନ | ବିଚାର |
| ବିଶ୍ୱାମିତ୍ର | ବିଶ୍ୱାସ | ରାମ | ଜ୍ଞାନ |
| ବଶିଷ୍ଠ | ବେଦ | ତାଡ଼କା | ଭ୍ରାନ୍ତି |
| ମାରୀଚ | କାମ | ଗୌତମ | ତାପ |
| ସୀତା | ଶାନ୍ତି | ପରଶୁରାମ | ପ୍ରେମ |
| ଅହଲ୍ୟା | କ୍ଷମା | | |

ଏହିଭଳି ଆହୁରି ଅନେକ କିଛି ସଂକେତର ଆରୋପ ଲେଖକ କରିଛନ୍ତି । ଏହା ଫଳରେ ଜନସାଧାରଣଙ୍କ ପାଖରେ ଏହି ଗ୍ରନ୍ଥଟି ସହଜରେ ବୋଧଗମ୍ୟ ହୋଇ-ପାରିନାହିଁ । ଏ ପ୍ରକାର ବୁଦ୍ଧିଭେଦୀ ବ୍ୟାଖ୍ୟା ମୂଳ ଗ୍ରନ୍ଥଟିର ମାନବଧର୍ମୀ ବ୍ୟାଖ୍ୟାଠାରୁ ଦୂରେଇ ଯାଇଛି । ଏହା ତେଣୁ ସେତେଟା ଲୋକପ୍ରିୟ ହୋଇ ପାରିନାହିଁ ।

ବର୍ତ୍ତମାନ ନେପାଳି କାବ୍ୟରେ ରାମାୟଣ ପରଂପରାର ପ୍ରଭାବ ବିରାଟ । ଅଷ୍ଟାଦଶ ଶତାବ୍ଦୀରୁ ଏ ପ୍ରକାର ରାମାୟଣ ସଂପର୍କୀୟ କାବ୍ୟସୃଷ୍ଟି ଆରମ୍ଭ ହୋଇଛି । ପ୍ରଥମ ସ୍ରଷ୍ଟା ଦୁଇ ଜଣଙ୍କ ନାମ ଏଠାରେ ଉଲ୍ଲେଖଯୋଗ୍ୟ । ସେମାନେ ହେଲେ ଗୁମାନି ପନ୍ଥ (୧୭୯୦-୧୮୪୭) ଓ ପଣ୍ଡିତ ରଘୁନାଥ ଭଟ୍ଟ (୧୮୧୧-୧୮୭୧) । ସେମାନଙ୍କ କୃତିମାନ ସଂସ୍କୃତ ରାମାୟଣର ଖଣ୍ଡିତ ରୂପ ଦେଖାଇଥାଏ, ପୂର୍ଣ୍ଣାଙ୍ଗ ରୂପ କିନ୍ତୁ ନୁହେଁ । ଶୁଣାଯାଏ ଯେ ପଣ୍ଡିତ ରଘୁନାଥ ଭଟ୍ଟ କୁଆଡ଼େ 'ଅଧ୍ୟାତ୍ମରାମାୟଣ'ର ପୂର୍ଣ୍ଣାଙ୍ଗ ଅନୁବାଦ କରିଥିଲେ । କିନ୍ତୁ ତାଙ୍କ ସୃଷ୍ଟ 'ସୁନ୍ଦରକାଣ୍ଡ'ଟି କେବଳ ବର୍ତ୍ତମାନ ଉପଲବ୍ଧ ।

ତାହା ପରେ ଆସନ୍ତି ବିଶିଷ୍ଟ କବି ଭାନୁଭକ୍ତ ଆଚାର୍ଯ୍ୟ (୧୮୧୪-୧୮୮୯)। ଯେ ସଂସ୍କୃତ 'ଅଧ୍ୟାତ୍ମରାମାୟଣ'ର ସଂପୂର୍ଣ୍ଣ ଅନୁବାଦ କରନ୍ତି । କେତେକ ସ୍ଥାନରେ ଏହା ଆକ୍ଷରିକ ଅନୁବାଦ-ଶୈଳୀରେ ଲିଖିତ । ପୁଣି ଆଉ କେତେକ ସ୍ଥାନରେ କବି କିଛି ନୂଆ କଥା ସନ୍ନିବେଶିତ କରିଛନ୍ତି । ବିଶେଷ କରି ନେପାଳି ଜନଜୀବନ ପ୍ରସଙ୍ଗରେ ସେ ଏପ୍ରକାର ସର୍ଜନାତ୍ମକ ବିଭବ ଆଣି ଠୁଳ କରିଛନ୍ତି । ଏହାକୁ ବିଭବ ବୋଲି କୁହାଯାଇଛି, ବିକୃତି କିନ୍ତୁ ନୁହେଁ; କାରଣ ଏହାଦ୍ୱାରା କାବ୍ୟଟି ଋଦ୍ଧିମନ୍ତ ହୋଇପାରିଛି । ଏହି ରାମାୟଣ ନେପାଳିମାନଙ୍କ ଘରେ ଘରେ ସୁପରିଚିତ । ଏହାର ସୁଖ୍ୟାତି ଓ ଲୋକପ୍ରିୟତା ଏବେ ମଧ୍ୟ ଅଛି ।

ଆଉ ଏକ ନେପାଳି ରାମାୟଣର ସ୍ରଷ୍ଟା ହେଉଛନ୍ତି ସୋମନାଥ ସିଜେଲ୍ । ତାଙ୍କ ଗ୍ରନ୍ଥର ନାମ 'ଆଦର୍ଶ ରାଘବ' ଯାହା ସର୍ବପ୍ରଥମେ ପ୍ରକାଶିତ ହୁଏ ୧୯୪୮ ମସିହାରେ । ଏହା ଅନୁବାଦ ନୁହେଁ । ଅନ୍ୟ ପକ୍ଷରେ ଏହା ଏକ ସର୍ଜନାତ୍ମକ କାବ୍ୟ । ଏଥିରେ ବ୍ୟବହୃତ ଭାଷା ସଂସ୍କୃତନିଷ୍ଠ ନେପାଳି ଭାଷା । ତେଣୁ ସାଧାରଣ ଲୋକମାନଙ୍କ ପାଇଁ ଏହା ଦୁଷ୍ପାଠ୍ୟ । ଏହା ସେତେଟା ଲୋକପ୍ରିୟତା ହାସଲ କରିପାରିନାହିଁ, ଯଦିଓ ଏହାର କାବ୍ୟ ହିସାବରେ ଯଥେଷ୍ଟ ମୂଲ୍ୟ ଅଛି । କାବ୍ୟକାର ସଂସ୍କୃତରେ ଜଣେ ମହାପଣ୍ଡିତ । ଆଧୁନିକ ନେପାଳି ସାହିତ୍ୟରେ ତାଙ୍କୁ ସମସ୍ତେ ଜଣେ ମହାକବି ବୋଲି ମାନ୍ୟତା ଦେଇଥାନ୍ତି । ତାଙ୍କ କାବ୍ୟଟିର ବିଷୟବସ୍ତୁ ବାଲ୍ମୀକି-ରାମାୟଣରୁ ଆନୀତ ।

ସେ ବାଲ୍ମୀକିଙ୍କ ଭଳି ରାମଙ୍କୁ ଜଣେ ମନୁଷ୍ୟ ରୂପରେ ପ୍ରତିଷ୍ଠିତ କରାଇବାର ଚେଷ୍ଟା କରିଛନ୍ତି । ଏହି ମାନବୀୟ ସ୍ପର୍ଶ ହିଁ ତାଙ୍କ ଗ୍ରନ୍ଥଟିକୁ ଏଭଳି ଲୋକପ୍ରିୟ କରିପାରିଛି ।

ଆଧୁନିକତମ ନେପାଳି ରାମାୟଣର ପ୍ରକାଶ ହୁଏ ୧୯୫୪ ମସିହାରେ ! ପଣ୍ଡିତ ଲେଖନାଥ ଶର୍ମା ପୌଡ଼୍ୟାଲ୍ ଏହାର ସ୍ରଷ୍ଟା । ଏହି କାବ୍ୟଟି ଅଧ୍ୟାତ୍ମରାମାୟଣ ଉପରେ ଆଧାରିତ । ଏହାର ନାମ 'ମେରୋ ରାମ ବା ରାମାୟଣ ସାର' । ଏହାର ଅର୍ଥ ହେଲା 'ମୋ' ରାମ ବା ରାମାୟଣର ସାର-କଥା' । ପୁସ୍ତକଟିର ସଂକେତରୁ ଏହି ସଂକେତ ମିଳୁଛି ଏଥିରେ ସ୍ରଷ୍ଟା ତାଙ୍କ ନିଜ ଦୃଷ୍ଟିରେ ରାମ କ'ଣ ତାହାର ବର୍ଣ୍ଣନା କରିଛନ୍ତି ଏବଂ ପୁଣି ରାମାୟଣର ସାର କଥା ଏଥିରେ ନିହିତ ଅଛି, ସମ୍ପୂର୍ଣ୍ଣ ରାମାୟଣ କିନ୍ତୁ ନୁହେଁ । ବାସ୍ତବିକ, ଏହା ଆକାରରେ ଅତି କ୍ଷୁଦ୍ର ଏବଂ 'ଅଧ୍ୟାତ୍ମରାମାୟଣ'ରୁ କେବଳ ହିଁ ସାର କଥା ସଂଗ୍ରହ କରିଛି । ପୌଡ଼୍ୟାଲ୍ ଜଣେ ପ୍ରଖ୍ୟାତ ନେପାଳି କବି ଏବଂ ତାଙ୍କ କାବ୍ୟ-ପ୍ରତିଭା ଲାଗି ସେ ନେପାଳର ରାଜାଙ୍କ ଦ୍ୱାରା 'କବି-ଶିରୋମଣି' ଉପାଧିରେ ଭୂଷିତ । ଭାନୁଭକ୍ତଙ୍କ ରାମାୟଣ ଓ ଏହି ରାମାୟଣର ଆକାରଗତ ପ୍ରଭେଦ ଖୁବ୍ ଅଧିକ । ଭାନୁଭକ୍ତଙ୍କ ରାମାୟଣରେ ଏକ ହଜାରରୁ ଅଧିକ ସଂଖ୍ୟକ ପଦ ଥିଲା ବେଳେ ଏଥିରେ ଅଛି ସର୍ବମୋଟ ୨୭୫ଟି ମାତ୍ର ପଦ । କବି ଏଥିରେ ରାମଙ୍କ ଗୁଣସମ୍ବନ୍ଧକୁ ନେଇ ତାଙ୍କୁ ୧୩୮ଟି ଭିନ୍ନ ଭିନ୍ନ ନାମ ଦେଇଛନ୍ତି । ଏହାର ବୈଶିଷ୍ଟ୍ୟ ହେଲା କେତେକ ସ୍ଥାନରେ କବି ରାମଙ୍କୁ ଦେବତାସ୍ଥାନରେ ବସାଇଥିବା ବେଳେ ଆଉ କେତେକ ଆସନରେ ତାଙ୍କୁ ସାଧାରଣ ମାନବାସନରେ ବସାଇଛନ୍ତି । କୃଷ୍ଣଙ୍କ ଲୀଳାସମ୍ବନ୍ଧର ଅନୁରୂପ ବୈଶିଷ୍ଟ୍ୟକୁ ଆଖି ଆଗରେ ରଖି କବି ରାମଙ୍କ ଲୀଳାସମ୍ବନ୍ଧର ଏଭଳି ଅବତାରଣା କରିଥିବାର ମନେହୁଏ ।

ତାହା ଛଡ଼ା ପଣ୍ଡିତ ରମାକାନ୍ତ ବରାଳଙ୍କ ଦ୍ୱାରା ଅନୂଦିତ 'ଅଭୁତ ରାମାୟଣ' (୧୮୮୭), ପଣ୍ଡିତ ଭୋଜରାଜ ଶର୍ମାଙ୍କ ଦ୍ୱାରା ଅନୂଦିତ (୧୯୦୧) 'ଆନନ୍ଦରାମାୟଣ', ପଣ୍ଡିତ କାଳିଦାସ ପରଜୁଲିଙ୍କଦ୍ୱାରା (୧୮୮୧-୧୯୫୦) ଅନୂଦିତ ଭବଭୂତିଙ୍କ 'ଉତ୍ତରରାମଚରିତ' ଖଡ୍ଗ ବାହାଦୂର ଶ୍ରେଷ୍ଠଙ୍କ ଦ୍ୱାରା ସୃଷ୍ଟ 'ରାଧେଶ୍ୟାମ ରାମାୟଣ', ପଣ୍ଡିତ ତାରାନାଥ ଶର୍ମାଙ୍କ ଦ୍ୱାରା ସୃଷ୍ଟ 'ରାଘବବିଳାସ' ଓ ପଣ୍ଡିତ ରେଓ୍ୱତୀରମଣ ନେଓପାଣିଆଙ୍କ ଦ୍ୱାରା ସୃଷ୍ଟ 'ଅଗ୍ନିବେଶ ରାମାୟଣ' ଆଦି ଗ୍ରନ୍ଥମାନ ନେପାଳି ଭାଷାରେ ଆଉ ଗୋଟିଏ ଗୋଟିଏ ସଫଳ ସାହିତ୍ୟ-କୃତି । କବି ନେଓପାଣିଆ 'ତୁଳସୀରାମାୟଣ'ର

କେତୋଟି କାଣ୍ଡର ଅନୁବାଦ କରି ୧୯୧୧ ମସିହାରେ ଆଉ ଏକ ରାମାୟଣ ସୃଷ୍ଟି କରିଛନ୍ତି । ଏହାର ନାମ 'ବିବାହମଙ୍ଗଳା' । ଏହି ଗ୍ରନ୍ଥଟି ଏକ ସଫଳ-ସୁନ୍ଦର କାବ୍ୟ ଓ ଏଥିରେ ରସୋତ୍ତୀର୍ଣ୍ଣତା ହାସଲ କରାଯାଇଛି ।

ଏହିପରି ଭାବରେ ନେପାଳି ସାହିତ୍ୟରେ ଯୁଗ ଯୁଗ ଧରି ରାମାୟଣ-ପରଂପରାର ପ୍ରଭାବ ରହିଆସିଛି । ଏହି ସାହିତ୍ୟରେ ରାମାୟଣସଂପର୍କୀୟ କୃତିବିଭବ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାସାହିତ୍ୟମାନଙ୍କ କୃତିବିଭବଠାରୁ କିଛି ଊଣା ନୁହେଁ ।

**ଓଡ଼ିଆ ସାହିତ୍ୟ :**

ଓଡ଼ିଆ ସାହିତ୍ୟର ଆଦିଗ୍ରନ୍ଥ ସାରଳା ଦାସଙ୍କ 'ମହାଭାରତ' ଯାହାର ସୃଷ୍ଟି ହୁଏ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀରେ । ଏହାର ସୃଷ୍ଟି ହୁଏ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବଙ୍କ ଶାସନକାଳ (୧୪୩୫-୧୪୬୭) ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ (୧୪୬୭-୧୪୯୭) ଶାସନକାଳ ମଧ୍ୟରେ । କପିଳେନ୍ଦ୍ର ଦେବଙ୍କ ସମୟରେ ଏହା ଆରମ୍ଭ ହୋଇ ଶେଷ ହୁଏ ପୁରୁଷୋତ୍ତମ ଦେବଙ୍କ ସମୟରେ । ଏହି ଗ୍ରନ୍ଥରୁ ବର୍ଣ୍ଣିତ ଐତିହାସିକ ଘଟଣାବଳୀକୁ ଅନୁଧ୍ୟାନ କଲେ ଆମକୁ ଏହି ନିଷ୍ପତ୍ତି ନିର୍ଣ୍ଣୟରେ ପହଞ୍ଚିବାକୁ ହେବ ବୋଲି କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତ ଦିଅନ୍ତି । (୩୫) ଏହି ମହାଭାରତରେ ରାମୋପାଖ୍ୟାନ ସ୍ଥାନିତ । ତାହା ଛଡ଼ା ସାରଳାଦାସ ମଧ୍ୟ 'ସାତକାଣ୍ଡ ରାମାୟଣ' ଗ୍ରନ୍ଥ ରଚନା କରିଛନ୍ତି ଯଦିଓ ଏହା ପୁସ୍ତକାଳୟରେ ଏ ପର୍ଯ୍ୟନ୍ତ ଅପ୍ରକାଶିତ । ଏହାର ପୋଥିମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ସେ ମଧ୍ୟ ବିଲଙ୍କାରାମାୟଣ ଲେଖିଛନ୍ତି ଯାହା ସଂସ୍କୃତ ଅଧ୍ୟାତ୍ମରାମାୟଣ ଉପରେ ଆଧାରିତ । ଅତଏବ, ସାରଳା ଦାସଙ୍କୁ ଆଦି ଓଡ଼ିଆ ରାମାୟଣ ଗ୍ରନ୍ଥର ରଚୟିତା ବୋଲି ଗ୍ରହଣ କରିବାକୁ ହେବ ଯଦିଓ ଏହା ମୂଳ ସଂସ୍କୃତର ଅବିକଳ ପଦ୍ୟାନୁବାଦ ନୁହେଁ । ଅନ୍ୟ ପକ୍ଷରେ ଏହା କବି ସାରଳା ଦାସଙ୍କ ଏକ ସର୍ଜନାତ୍ମକ ସୃଷ୍ଟି । ମହାଭାରତ ହେଉ ଅଥବା ରାମାୟଣ ହେଉ ସବୁଥିରେ ସାରଳା ଦାସ ଓଡ଼ିଶାର ସାମାଜିକ-ସାଂସ୍କୃତିକ ସ୍ଥିତିକୁ ଅବଲମ୍ବନ କରି ନୂଆ ନୂଆ ପରିସ୍ଥିତିଗୁଡ଼ିକରେ ସୃଷ୍ଟି କରିଛନ୍ତି ଯାହା କି ପ୍ରତ୍ୟେକ ସୃଜନଶୀଳ କବିଙ୍କ ପକ୍ଷରେ ସ୍ୱାଭାବିକ ।

ଓଡ଼ିଆ ରାମାୟଣ ଗ୍ରନ୍ଥର ସୃଷ୍ଟି ୧୫ଶ ଶତାବ୍ଦୀରୁ ଆରମ୍ଭ ହୋଇଥିଲେ ହେଁ ଓଡ଼ିଶାରେ ରାମାୟଣ-ପରଂପରା ଗଢ଼ି ଉଠୁଛି ବହୁତ ଦିନରୁ । ଏହାର ଅନେକ ଜାଗା ରାମଙ୍କ ନାମ ସହିତ ଜଡ଼ିତ । ଫୁଲବାଣୀ ଜିଲ୍ଲାରେ ଗୋଟିଏ

ପର୍ବତ ଅଛି ଯାହାର ନାମ ରାମଗିରି । କାଳିଦାସଙ୍କ 'ମେଘଦୂତ' କାବ୍ୟରେ ଏହି ରାମଗିରିର ଉଲ୍ଲେଖ ଅଛି । ଅଭିଶପ୍ତ ଯକ୍ଷ ଏହିଠାରେ ଥିବା ସମୟରେ ମେଘ ହସ୍ତରେ ଯକ୍ଷପୁରୀରେ ଥିବା ତା'ର ବିରହିଣୀ ପ୍ରିୟା ପାଖକୁ ସନ୍ଦେଶ ପଠାଇଥିବାର ବର୍ଣ୍ଣନା କାଳିଦାସ କରିଛନ୍ତି । ଲୋକଙ୍କର ବିଶ୍ୱାସ ଯେ ରାମ ବନବାସ ସମୟରେ କୋରାପୁଟ ଜିଲ୍ଲାରେ ଥିବା ଗୁପ୍ତେଶ୍ୱର ମହାଦେବଙ୍କ ନିକଟରେ ପୂଜାର୍ଚ୍ଚନା କରିଥିଲେ । ଏହାର ଅବସ୍ଥିତି ଜୟପୁରଠାରୁ ଅଳ୍ପ ଦୂରରେ । କେନ୍ଦୁଝର ଜିଲ୍ଲାର ସୀତାବିଂଝି ସହିତ ସୀତାଙ୍କ ନାମର ସମ୍ପର୍କ ଅଛି । ଏହା ପାଖରେ ବହିଯାଇଥିବା ନଈଟିର ନାଁ ସୀତା ନଈ । ଗୋଟିଏ ପାହାଡ଼ ଖୋଲ ଏଠାରେ ଅଛି ଯାହାକୁ ଲବକୁଶଙ୍କ ଜନ୍ମ ସମୟରେ ସୀତା ଏଣ୍ଟୁଡ଼ିଶାଳ ଭାବରେ ବ୍ୟବହାର କରିଥିବାର ପ୍ରବାଦ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ । ଦକ୍ଷିଣ ଓଡ଼ିଶାରେ ଦୁଇଟି ଫଳର ନାଁ ରାମଫଳ ଓ ସୀତାଫଳ । ଖଣ୍ଡଗିରିର ପ୍ରସ୍ତର-ଗାତ୍ରରେ ଖୋଦିତ ଚିତ୍ରମାନଙ୍କ ମଧ୍ୟରେ ରାମାୟଣ-କାହାଣୀ ସହିତ ସଂପୃକ୍ତ ଗୋଟିଏ ଚିତ୍ର ଅଛି । ଏହି ଚିତ୍ରଟିରେ ରାମ ଧନୁଶର ଧରି ମୃଗରୂପୀ ମାରୀଚ ରାକ୍ଷସ ପଛରେ ଧାଉଁଥିବା ଘଟନାର ରୂପାୟନ କରାଯାଇଛି । ଏହା ଖ୍ରୀ: ପୂ: ୧ମ-୨ୟ ଶତାବ୍ଦୀର । ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଓ ଶତ୍ରୁଘ୍ନେଶ୍ୱର ନାଁ ଥିବା ତିନୋଟି ମନ୍ଦିର ଭୁବନେଶ୍ୱରରେ ଦେଖିବାକୁ ମିଳେ । ଏଗୁଡ଼ିକ ଓଡ଼ିଶାରେ ମାଠର ଓ ଶୈଳୋଦ୍‌ଭବ (୮ମ ଶତାବ୍ଦୀ) ବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ନିର୍ମିତ ହୋଇଛି ବୋଲି ଐତିହାସିକମାନେ ମତ ଦିଅନ୍ତି । ଶତ୍ରୁଘ୍ନେଶ୍ୱର ମନ୍ଦିରର ଦ୍ୱାରବନ୍ଧ ଉପରେ 'ରାବଣାନୁଗ୍ରହ' ନାଁର ଖୋଦିତ ଚିତ୍ର ଦେଖାଯାଏ ଯାହା ରାମାୟଣ-କାହାଣୀ ସହିତ ସଂପୃକ୍ତ । ୮ମ ଶତାବ୍ଦୀରେ ନିର୍ମିତ ସ୍ୱର୍ଣ୍ଣଜାଳେଶ୍ୱର ମନ୍ଦିର-ଗାତ୍ରରେ ରାମାୟଣ-କାହାଣୀ ସହିତ ସଂପୃକ୍ତ ଚିତ୍ରମାନ ଦେଖିବାକୁ ମିଳିଥାଏ । ଗୋଟିଏ ଚିତ୍ରରେ ରାମ ବାଳିକୁ ମାରୁଛନ୍ତି । ଆଉ ଗୋଟିଏ ସ୍ଥାନରେ ମାୟାମୃଗର ଚିତ୍ର ଅଛି । ଏହିପରି ଆହୁରି ଅନେକ ମନ୍ଦିର ଓଡ଼ିଶାର ଏଣେ-ତେଣେ ଅଛି ଯେଉଁଗୁଡ଼ିକ ସହିତ ରାମାୟଣ-କାହାଣୀ ସଂପୃକ୍ତ ।

ହିନ୍ଦୁ-ସମାଜରେ ଦେବତାମାନଙ୍କ ନାମଗୁଡ଼ିକୁ ଅନୁସରଣ କରି ସନ୍ତାନ-ମାନଙ୍କ ନାମ ଦେବାର ପ୍ରଥା ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ଓଡ଼ିଶାର ସ୍ଥିତି ମଧ୍ୟ ଠିକ୍ ଅନୁରୂପ । ରାମାୟଣର ଚରିତ୍ରମାନଙ୍କୁ ଅନୁସରଣ କରି ସନ୍ତାନ-ମାନଙ୍କ ନାମକରଣ ବହୁ ଯୁଗରୁ କରାଯାଇ ଆସୁଛି । ତେବେ ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀ ପୂର୍ବରୁ ଏଠାରେ କୌଣସି ଉତ୍କଳୀୟ ରାଜାଙ୍କ ନାମ ଏଭଳି ଭାବରେ ଦିଆଯାଇଥିବାର ଐତିହାସିକ ପ୍ରମାଣ ମିଳୁନାହିଁ । ଚୋଡ଼ଗଙ୍ଗଦେବଙ୍କ ଜଣେ

ପୁତ୍ରଙ୍କ ନାମ ଥିଲା ରାଘବ ଦେବ ଯେ ଥିଲେ ଏହି ୧୨ଶ ଶତାବ୍ଦୀର । (୩୬) ଗଙ୍ଗବଂଶୀ ରାଜା ଦ୍ୱିତୀୟ ଭାନୁଦେବ ନରହରି ତୀର୍ଥ ନାମକ ଜଣେ ବୈଷ୍ଣବ ସନ୍ନ୍ୟାସୀଙ୍କ ସଂସ୍ପର୍ଶରେ ଆସିଥିଲେ । ରାଖାଲଦାସ ବାନାର୍ଜୀଙ୍କ ମତ ଅନୁସାରେ ସେ ତାଙ୍କ ଗୁରୁ ଦ୍ୱୈତ ବା ମାଧ୍ୱ ସଂପ୍ରଦାୟର ପ୍ରତିଷ୍ଠାତା ଆନନ୍ଦତୀର୍ଥଙ୍କଦ୍ୱାରା ଆଦିଷ୍ଟ ହୋଇ କଳିଙ୍ଗ ଦେଶରୁ ରାମ ଓ ସୀତାଙ୍କ ମୂର୍ତ୍ତି ସଂଗ୍ରହ କରିବାପାଇଁ ଆସିଥିଲେ । ପରେ ସେ ତାହା ସଂଗ୍ରହ କରି ଗୁରୁଙ୍କୁ ଦେଇଥିଲେ । ଏଥିରୁ ଅନୁମିତ ହୁଏ ଯେ କଳିଙ୍ଗ ଦେଶରେ ସେତେବେଳକୁ ରାମପୂଜା ସୁପ୍ରତିଷ୍ଠିତ ହୋଇସାରିଥିଲା । (୩୭) ଗଙ୍ଗବଂଶୀ ରାଜା ତୃତୀୟ ନରସିଂହ ଦେବଙ୍କ ଜଣେ କନ୍ୟାଙ୍କ ନାମ ଥିଲା ସୀତା ଦେବୀ । ଏଥିରୁ ଜଣାପଡ଼ୁଛି ଯେ ଗଙ୍ଗବଂଶୀ ରାଜାମାନେ ଥିଲେ ବୈଷ୍ଣବ ରାମଭକ୍ତ ଏବଂ ସେମାନେ ରାମ ପରଂପରାକୁ ଓଡ଼ିଶାରେ ଆହୁରି ଅଧିକ ବଳବତ୍ତର ହେବାରେ ସାହାଯ୍ୟ କରିଥିଲେ ।

ଏହା ଛଡ଼ା ସାରଳାଦାସଙ୍କ ପୂର୍ବରୁ ରାମାୟଣ ଉପରେ ସଂସ୍କୃତ ଭାଷାରେ ଗ୍ରନ୍ଥମାନ ରଚିତ ହୋଇଥିଲା । ଏ ସଂପର୍କରେ ପ୍ରଥମ ସର୍ଜନାତ୍ମକ ସୃଷ୍ଟି ଟି ଆମ ଦୃଷ୍ଟିକୁ ଆସେ ମୁରାରି ମିଶ୍ର (୮ମ-୯ମ ଶତାବ୍ଦୀ) ଙ୍କ 'ଅନର୍ଘରାଘବ' ନାଟକ ମାଧ୍ୟମରେ । ଏହା ପୁରୁଷୋତ୍ତମ କ୍ଷେତ୍ରରେ ଅଭିନୀତ ହୋଇଥିଲା । ଏଥିରେ ମୁରାରି ବାଲ୍ମୀକି-ରାମାୟଣରେ ନଥିବା ଅନେକ କଥାର ଅବତାରଣା କରିଛନ୍ତି । ଏହା ଦ୍ୱାରା ନାଟକଟିର ନାଟକୀୟତା ତଥା ରସୋତ୍ତୀର୍ଣ୍ଣତାର ଅଭିବୃଦ୍ଧି ଘଟିଛି । ନାଟକଟିର ସର୍ବସାଧାରଣ ପ୍ରଦର୍ଶନରୁ ଜଣାପଡ଼େ ଯେ ସେତେବେଳକୁ ରାମ-ପରଂପରା ଓଡ଼ିଶାରେ ନିଶ୍ଚିତ ଭାବରେ ଲୋକପ୍ରିୟ ହୋଇସାରିଥିବ । ଆଉ ଜଣେ ସଂସ୍କୃତ କବି ହେଉଛନ୍ତି ନାରାୟଣ ଶତକବି (୧୧ଶ ଶତାବ୍ଦୀ) ଯେ 'ରାମାଭ୍ୟୁଦୟକାବ୍ୟମ୍' ଶୀର୍ଷକ ଗ୍ରନ୍ଥଟିଏ ଲେଖିଛନ୍ତି । ଜୟଦେବଙ୍କ (୧୨ଶ ଶତାବ୍ଦୀ) 'ଗୀତଗୋବିନ୍ଦ'ରେ ରାମଙ୍କୁ ବିଷ୍ଣୁଙ୍କର ଗୋଟିଏ ଅବତାର ଭାବରେ ଚିତ୍ରିତ କରାଯାଇଛି ।

ଏହି ଦୀର୍ଘକାଳ ଧରି ସୁପ୍ରତିଷ୍ଠିତ ରାମ-ପରଂପରା ନିଶ୍ଚିତ ଭାବରେ ସାରଳା ଦାସଙ୍କୁ ତାଙ୍କ 'ସାତକାଣ୍ଡ ରାମାୟଣ' ଓ 'ବିଲଙ୍କା ରାମାୟଣ' ଗ୍ରନ୍ଥଦ୍ୱୟ ଲେଖିବାକୁ ଉଦ୍‌ବୁଦ୍ଧ କରିଥିଲା । ତାଙ୍କ ସମସାମୟିକ 'କେଶବ-କୋଇଲି'ର ସ୍ରଷ୍ଟା ବାଲ୍ମୀକି ରାମାୟଣର ବିଷୟବସ୍ତୁକୁ ନେଇ 'ରାମାୟଣ ମହାଭିଷ' ବୋଲି ଓଡ଼ିଆ କାବ୍ୟଟିଏ ରଚନା କରିଥିବା କଥା କୁହାଯାଇଛି । ଏହାର ଆରମ୍ଭ ଥିଲା ଏକ ନାଟକୀୟ ଭଙ୍ଗୀରେ । ଦିନେ ଶିବ ପାର୍ବତୀଙ୍କୁ ରାମାୟଣ-କାହାଣୀ ଶୁଣାଉଥିଲେ । ପାର୍ବତୀ ତାହା ଶୁଣିବା ଅବସ୍ଥାରେ ହିଁ ଶୋଇ ପଡ଼ିଥିଲେ । ଶିବ

କିନ୍ତୁ କାହାଣୀଟି ଶୁଣାଇ ଚାଲିଥିଲେ । ଏହା ଶୁକ ପକ୍ଷୀଟିଏ ଶୁଣିଲା । ଏ କଥା ଶିବ ଜାଣିପାରିଲେ । ସେ ହେତୁ ତାହାକୁ ମାରିଦେବାପାଇଁ ଚାହିଁଲେ । କିନ୍ତୁ ସେ ସ୍ଥାନକୁ ସ୍ଥାନକୁ ଉଡ଼ି ଚାଲିଲା ଏବଂ ରାମାୟଣ-କାହାଣୀ ଶୁଣାଇ ଚାଲିଲା । ଏହିପରି ଭାବରେ ରାମକଥା ଧୀରଆସ୍ତେ ପ୍ରଚାରିତ ତଥା ପ୍ରସାରିତ ହୋଇଗଲା । ଏହାର ନିମ୍ନଲିଖିତ କାରଣ ଥିଲା ।

କ) ସମ୍ଭବତଃ ରାମକଥା ସେତେବେଳେ ଖୁବ୍ ଲୋକପ୍ରିୟ ଥିଲା ।

ଖ) ରାମଭକ୍ତ ମାର୍କଣ୍ଡେୟ ଦାସ ତାହାକୁ ବାଲ୍ମୀକିଙ୍କ ବାଣୀ ନକହି ଶିବଙ୍କ ମୁଖନିଃସୃତ ବାଣୀ କହିବାଦ୍ୱାରା ଲୋକମାନଙ୍କୁ ଏଥିପ୍ରତି ଅଧିକ ଆକୃଷ୍ଟ ହେବାର ଉଦ୍ଦେଶ୍ୟ ରଖିଥିଲେ ।

ଗ) ସେତେବେଳେ ଶୈବଧର୍ମର ପ୍ରାଧାନ୍ୟ ମଧ୍ୟ ଓଡ଼ିଶାରେ କିଛି କମ୍ ନଥିଲା । ତେଣୁ ଶୈବମାନଙ୍କ ଆଗରେ ମଧ୍ୟ ରାମକଥାକୁ ଯଥେଷ୍ଟ ମାନ୍ୟତା ଦେଇ ଏଥିପ୍ରତି ଆକୃଷ୍ଟ ହେବାପାଇଁ ସେମାନଙ୍କୁ କବି ପ୍ରବର୍ତ୍ତାଇଥିଲେ ।

ତାହା ପରେ ଆସିଲେ ବଳରାମ ଦାସ ଯେ ଥିଲେ ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କ ସମସାମୟିକ । ସେ ଓଡ଼ିଆ ଭାଷାରେ ଦାଣ୍ଡିବୃତ୍ତରେ ଗୋଟିଏ ରାମାୟଣ କାବ୍ୟ ରଚନା କଲେ । ଏହା ଲୋକମୁଖରେ ଦାଣ୍ଡି-ରାମାୟଣ ବା ଜଗମୋହନ ରାମାୟଣ ନାମରେ ଖ୍ୟାତ । ଜଗନ୍ନାଥ ଦାସଙ୍କ ଭାଗବତ ସମାନ ଏହା ଓଡ଼ିଆମାନଙ୍କ ଘରେ-ଘରେ ମାନ୍ୟତା ପାଇ ଆସିଛି । ଏହାର ପ୍ରାଧାନ୍ୟ ଏପରି ଯେ ବଳରାମ ଦାସଙ୍କୁ ଅନ୍ୟ ଭାରତୀୟ ଭାଷାମାନଙ୍କର ଆଦି ରାମାୟଣ ସ୍ରଷ୍ଟାମାନଙ୍କ ମାନ୍ୟତା ପଣ୍ଡିତମାନେ ଦେଇଆସିଛନ୍ତି । ଗୌରୀକୁମାର ବ୍ରହ୍ମାଙ୍କ ମତରେ :

> Jagamohan Ramayana, the Oriya counter-parts of the works of Madhab Kandali in Assamese, Krittibasa in Bengali, Pampa in Kanarese, Sridhara in Marathi, Giridhara in Gujarati etc is not at all a translation of Valmiki's Ramayan. Balarama Das wrote his own Ramayana displaying his astounding originality at every step. (୩୮)

ବଳରାମ ଦାସ ଓଡ଼ିଆରେ ରାମାୟଣ ଲେଖିଲାବେଳେ ତତ୍କାଳୀନ ସଂସ୍କୃତ ଭାଷାର ବ୍ରାହ୍ମଣ ପଣ୍ଡିତମାନେ ଏହାର ପ୍ରତିବାଦ କରିଥିଲେ । କାରଣ ରାମକଥା

ସଂସ୍କୃତେତର ଭାଷାରେ ଶୁଣିବା ସେତେବେଳେ ଲୋକମାନଙ୍କ ପାଇଁ ଏକ ମହାପାପ ବୋଲି ଗଣ୍ୟ ହେଉଥିଲା । କିନ୍ତୁ ରାଜାଙ୍କ ପୃଷ୍ଠପୋଷକତା ପାଇ ଚୈତନ୍ୟଙ୍କ ପଞ୍ଚଭକ୍ତମାନଙ୍କ ମଧ୍ୟରେ ଥିବା ଅଗ୍ରଜପ୍ରଥମ ଥିବା କାରଣରୁ ସେ ଏହି ବାଧାବିଘ୍ନକୁ ଅତିକ୍ରମ କରିଗଲେ । ପଞ୍ଚସଖାମାନଙ୍କ ମଧ୍ୟରେ ସେ ଥିଲେ ବୟସରେ ସର୍ବଜ୍ୟେଷ୍ଠ । ସବୁଠାରୁ ବଡ଼ କଥା ହେଲା, ତାଙ୍କ ରାମାୟଣ ଓଡ଼ିଶାର ସର୍ବତ୍ର ଶୀଘ୍ର ଲୋକପ୍ରିୟ ହେବାକୁ ଲାଗିଲା; କାରଣ ଏଥିରେ ସେ ଓଡ଼ିଆମାନଙ୍କ ନିଜ କଥା ହିଁ ଲେଖିଥିଲେ । ଏଥିରେ ତତ୍କାଳୀନ ଓଡ଼ିଶାର ସାମାଜିକ ଚିତ୍ର, ସାମରିକତା ଆଦି ଅତି ନିଖୁଣ ଭାବରେ ଚିତ୍ରିତ । ପୁରୁଷୋତ୍ତମ ଦେବଙ୍କ କାଞ୍ଚି-ଅଭିଯାନରେ ଚିତ୍ର ରାମ-ରାବଣ-ଯୁଦ୍ଧ ମାଧ୍ୟମରେ ପ୍ରତିଫଳିତ । ସମ୍ଭବତଃ ସେ ଏହି ଅଭିଯାନରେ ଜଣେ କବି ହିସାବରେ ରାଜାଙ୍କ ସହିତ ଯାଇଥିଲେ ।

ପୂର୍ବରୁ କୁହାଯାଇଛି, ଏହା ବାଲ୍ମୀକି ରାମାୟଣର ଅନୁବାଦ ନୁହେଁ ଏବଂ ଏଥିରେ ସ୍ରଷ୍ଟାଙ୍କର ଅନେକ ନିଜସ୍ୱ କଳ୍ପନା ସ୍ଥାନିତ । ଏହି କାଳ୍ପନିକତାର ସ୍ପର୍ଶ ଗ୍ରନ୍ଥଟିକୁ ବାସ୍ତବିକତାଠାରୁ ଦୂରେଇ ଦେଇନାହିଁ; ଅନ୍ୟ ପକ୍ଷରେ ଏହା ତତ୍କାଳୀନ ବାସ୍ତବ ସ୍ଥିତି ସମ୍ପର୍କରେ ଏକ ନିଖୁଣ ଚିତ୍ର ଦେଇଛି । ନିମ୍ନଲିଖିତ କ୍ଷେତ୍ରରେ ଏହା ବାଲ୍ମୀକି-ରାମାୟଣଠାରୁ ପୃଥକ୍ :

କ) ବାଲକାଣ୍ଡରେ ଜରତା ବେଶ୍ୟାର ଯୁବକ ମୁନି ଋଷ୍ୟଶୃଙ୍ଗଙ୍କୁ ଆକୃଷ୍ଟ କରିବାପାଇଁ ନାନା ପ୍ରକାର ଉଦ୍ୟମ ଓ ଋଷ୍ୟଶୃଙ୍ଗଙ୍କର ଶାନ୍ତାଙ୍କ ସହିତ ବିବାହ ବିଷୟ କବି ସୁନ୍ଦର ଭାବରେ ଚିତ୍ରିତ କରିଛନ୍ତି । ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କ ବିବାହ ଉପାଖ୍ୟାନଟି ଅଗ୍ନିପୁରାଣରୁ ଗୃହୀତ ।

ଖ) ଅଯୋଧ୍ୟାକାଣ୍ଡରେ ସେ ମନ୍ଥରାର ପୂର୍ବଜନ୍ମର ବୃତ୍ତାନ୍ତ ଆଣି ଉପସ୍ଥାପିତ କରିଛନ୍ତି ।

ଗ) ଲଙ୍କାକାଣ୍ଡରେ ଯୁଦ୍ଧ ସମୟରେ ଖଣ୍ଡିଯାଇଥିବା ଛିନ୍ନମୁଣ୍ଡକ ପରେ ଛତୁରେ ପରିଣତ ହୋଇଗଲେ ବୋଲି ଏକ ବିଚିତ୍ର ଓ ଅଦ୍ଭୁତ କଥାର ସେ ଅବତାରଣା କରିଛନ୍ତି ।

ଘ) ଆଉ ମଧ୍ୟ ସେ ସେହି କାଣ୍ଡଟିରେ 'ଦାସକାଠିଆ'କୁ ରାବଣର ଦରବାରରେ ବ୍ୟବହୃତ ହେଉଥିବା ଗୋଟିଏ ବାଦ୍ୟଯନ୍ତ୍ର ବୋଲି ଉଲ୍ଲେଖ କରିଛନ୍ତି ।

ଙ) କିଷ୍କିନ୍ଧାକାଣ୍ଡରେ ସେ ରାମଙ୍କଠାରୁ ଗଞ୍ଜା କୁକୁଡ଼ା ଲାଲ ରଙ୍ଗର ଚୂଳର ଅଧିକାରୀ ହେବାକୁ ବର ପାଇଥିବା କଥାର ଅବତାରଣା କରିଛନ୍ତି ।

ଚ) ପୁଣି ସେହି କାଣ୍ଡରେ ସେ ଓଡ଼ିଶାର ଗଡ଼ଜାତଦ୍ୱୟ ବଣାଇ ଓ ବାମଣ୍ଡାର ଉଲ୍ଲେଖ କରିଛନ୍ତି ।

ଛ) ସୁନ୍ଦର କାଣ୍ଡରେ (ଜଗମୋହନ ରାମାୟଣ ଅନୁସାରେ ସୁନ୍ଦରାକାଣ୍ଡ) ସେ ହନୁମାନଙ୍କ ଯାଦୁକର ରୂପ ଧରିବାର ଉଲ୍ଲେଖ କରିଛନ୍ତି ଏବଂ କଳିଯୁଗରେ ବ୍ରାହ୍ମଣମାନଙ୍କ ଦୁରବସ୍ଥା କ'ଣ ହେବ ତାହାର ଉଲ୍ଲେଖ କରିଛନ୍ତି । ତତ୍କାଳୀନ ସମାଜରେ ବ୍ରାହ୍ମଣମାନଙ୍କର ଯେଉଁ ଅଧୋଗତି ହୋଇଥିଲା; ତାହାର ସୂଚନା ସେ ଏଥିରେ ଦେଇଛନ୍ତି ।

ଜ) ଲଙ୍କାକାଣ୍ଡରେ (ବାଲ୍ମୀକିରାମାୟଣର ଯୁଦ୍ଧକାଣ୍ଡ)ରେ ଲଙ୍କା ଉପରେ ବିଜୟ ହାସଲ କରିବା ଉଦ୍ଦେଶ୍ୟରେ ରାମ କିପରି ରାମେଶ୍ୱର ମହାଦେବଙ୍କର ପୂଜାର୍ଚ୍ଚନା କରିଥିଲେ, ତାହାର ଅବତାରଣା କରିଛନ୍ତି ।

ଏହିପରି ଆହୁରି ଅନେକ ନୂଆ-ନୂଆ କଥାର ଅବତାରଣ ସେ କରିଛନ୍ତି । ବଳରାମ ଦାସ 'ରାମଚରିତାବଳୀ' ଆଉ ଗୋଟିଏ କାବ୍ୟ ଲେଖିଛନ୍ତି । କିନ୍ତୁ ଏହା ତାଙ୍କ 'ଜଗମୋହନରାମାୟଣ' ପରି ଲୋକପ୍ରିୟତା ତଥା ଆଦୃତି ପାଇପାରିନାହିଁ ।

ଓଡ଼ିଆ ଭାଗବତକାର ଜଗନ୍ନାଥଦାସ ଥିଲେ ବଳରାମଦାସଙ୍କ ଶିଷ୍ୟ । ସେ ମଧ୍ୟ ଓଡ଼ିଆ ଭାଷାରେ ଗୋଟିଏ ରାମାୟଣ ଗ୍ରନ୍ଥ ପଦ୍ୟାକାରରେ ଲେଖିଛନ୍ତି । କିନ୍ତୁ ବର୍ତ୍ତମାନ ଏହି ଗ୍ରନ୍ଥଟିର ପାଣ୍ଡୁଲିପି ପୋଥି ଆକାରରେ ଯେପରି ଭାବରେ ମିଳୁଛି, ତାହାର ଭାଷା ଭାଗବତର ଭାଷାଠାରୁ ଅଧିକାଂଶ ସ୍ଥାନରେ ଭିନ୍ନ ଜଣାପଡ଼ୁଛି । ଏହା ବିଭିନ୍ନ ସମୟରେ ନକଲକାରମାନଙ୍କ ତ୍ରୁଟି ଯୋଗୁ ଘଟିଛି । ତଥାପି ଏହି ରାମାୟଣ ଗୋଟିଏ ସୁନ୍ଦର ଗ୍ରନ୍ଥ ।

ଆଉ ଗୋଟିଏ ରାମାୟଣ ପୋଥି ମିଳୁଛି 'ବିଲଙ୍କାରାମାୟଣ' ନାମରେ ଏବଂ ଏହାର ସ୍ରଷ୍ଟା ହେଉଛନ୍ତି ବାଞ୍ଛାନିଧି ଦାସ । ଏହା ଉପରେ ଜଗମୋହନ ରାମାୟଣର ଭାଷା ଓ ଶୈଳୀର ଏଭଳି ପ୍ରଭାବ ପଡ଼ିଛି ଯେ ଜଣାଯାଉଛି; ଏହା ହୁଏତ ବଳରାମ ଦାସଙ୍କ ଦ୍ୱାରା ଲେଖାଯାଇଥାଇପାରେ । ସମ୍ଭବତଃ ତାଙ୍କ ଦ୍ୱିତୀୟ ନାମ ଥିଲା ବାଞ୍ଛାନିଧି ଦାସ ।

ମହେଶ୍ୱର ଦାସ ରାମ କାହାଣୀକୁ ଅବଲମ୍ବନ କରି ଏକ ସଂକ୍ଷିପ୍ତ ରାମାୟଣ ଲେଖିଛନ୍ତି ଯାହାର ନାମ 'ଟୀକା ରାମାୟଣ' । ହଳଧର ଦାସ ଥିଲେ ରାଜା ମୁକୁନ୍ଦ ଦେବଙ୍କ ବଂଶଜ । ସେ ନବାକ୍ଷରୀ ଶୈଳୀରେ 'ଅଧ୍ୟାତ୍ମରାମାୟଣ' ଲେଖିଛନ୍ତି । ଏହା ମୂଳ ସଂସ୍କୃତ 'ଅଧ୍ୟାତ୍ମରାମାୟଣ'ର ଅନୁବାଦ । ଜଗନ୍ନାଥ ଦାସଙ୍କ ଶିଷ୍ୟ ମହାଦେବ ଦାସ ଗୋଟିଏ ରାମାୟଣ ଲେଖିଥିବା କଥା ଐତିହାସିକ

ସ୍ଥଳର ତାଙ୍କ ଓଡ଼ିଆ ଇତିହାସରେ ଉଲ୍ଲେଖ କରିଛନ୍ତି । କିନ୍ତୁ ସେହି ପୋଥି ବର୍ତ୍ତମାନ ଅନୁପଲବ୍‌ଧ । ବାଳକ ରାମଦାସ ତାଙ୍କ ଗୁରୁଦେବ ରାମଦାସଙ୍କ ଦ୍ୱାରା ସଂସ୍କୃତ ଭାଷାରେ ଲିଖିତ 'ରାମଭକ୍ତ ରତ୍ନାବଳୀ' ଶୀର୍ଷକ ଗ୍ରନ୍ଥଟିର ଓଡ଼ିଆ ଅନୁବାଦ କରିଛନ୍ତି । ରାମଦାସ ଥିଲେ ଜଣେ ସନ୍ଥ ପୁରୁଷ ଯେ ରାଜସ୍ଥାନରୁ ଆସି ଗଞ୍ଜାମର ଚିକିଟି ଅଞ୍ଚଳରେ ମଠ ସ୍ଥାପନ କରି ରହିଥିଲେ । ତାଙ୍କ ଗ୍ରନ୍ଥରେ ରାମଭକ୍ତିର ପରାକାଷ୍ଠାର ପ୍ରାଚୁର୍ଯ୍ୟ ଦର୍ଶନୀୟ । ଧରାକୋଟ ରାଜାଙ୍କ ସଭାକବି ଥିବା କବିଚନ୍ଦ୍ର ନରହରି ଅଧ୍ୟାତ୍ମରାମାୟଣର ଓଡ଼ିଆ ଅନୁବାଦ କରିଛନ୍ତି । କୃଷ୍ଣଚନ୍ଦ୍ର ରାଜେନ୍ଦ୍ର (୧୮ଶ ଶତାବ୍ଦୀ) ବିଶ୍ୱସନୀୟ ଭାବରେ ବାଲ୍ମୀକି ରାମାୟଣର ଅନୁବାଦ କରିଛନ୍ତି । ଏହା 'ଆର୍ଷ ରାମାୟଣ' ନାମରେ ଖ୍ୟାତ । ସୂର୍ଯ୍ୟମଣି ବୃଦ୍ଧ ପଟ୍ଟନାୟକ (୧୮ ଶତାବ୍ଦୀ) ଅଧ୍ୟାତ୍ମରାମାୟଣର ଓଡ଼ିଆ ଅନୁବାଦ କରିଛନ୍ତି । କୃଷ୍ଣଚନ୍ଦ୍ର ପଟ୍ଟନାୟକ (୧୯ଶ ଶତାବ୍ଦୀ) ମଧ୍ୟ ବାଲ୍ମୀକି ରାମାୟଣର ଓଡ଼ିଆ ଅନୁବାଦ କରିଛନ୍ତି । କପିଳେଶ୍ୱର ବିଦ୍ୟାଭୂଷଣ ଓ ଫକୀରମୋହନ ସେନାପତି ଉଭୟ ହେଉଛନ୍ତି ୧୯ଶ ଶତାବ୍ଦୀର କବି । ସେମାନେ ମଧ୍ୟ ବାଲ୍ମୀକି ରାମାୟଣର ଅନୁବାଦ କରିଛନ୍ତି ।

ଚଳିତ ଶତାବ୍ଦୀରେ (୨୦ଶ ଶତାବ୍ଦୀରେ) ନିମ୍ନଲିଖିତ ସାହିତ୍ୟକାରମାନେ ବାଲ୍ମୀକି ରାମାୟଣର ଓଡ଼ିଆ ଅନୁବାଦ କରିଛନ୍ତି ।

୧ । ଭଗବତଚରଣ ଦାସ

୨ । ରତ୍ନାକର ଗର୍ଗବଟୁ

୩ । ଲିଙ୍ଗରାଜ ମିଶ୍ର (ଗଦ୍ୟରେ ମୂଳ ଶ୍ଳୋକ ସହିତ)

୪ । ଜାନକୀବଲ୍ଲଭ ପଟ୍ଟନାୟକ (ଗଦ୍ୟରେ କେତେକ ଶ୍ଳୋକର ଅନୁବାଦ) ଏହା ଛଡ଼ା ଲେଖକ ନିଜେ ମଧ୍ୟ ବାଲ୍ମୀକିରାମାୟଣର ସାତଟି କାଣ୍ଡର ଓଡ଼ିଆ ଗଦ୍ୟାନୁବାଦ କରିଛନ୍ତି । ଏହାର ଅନୁବାଦ ଚଳିତ ଶତାବ୍ଦୀର ଶେଷ ପାଦରେ ହୋଇଛି ।

ଏଥିରୁ ଜଣାପଡ଼ୁଛି ଯେ ୧୫ଶ ଶତାବ୍ଦୀରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଓଡ଼ିଆରେ ପଦ୍ୟ-ଗଦ୍ୟ ଆକାରରେ ରାମାୟଣ ଗ୍ରନ୍ଥମାନ ରଚିତ ହୋଇଚାଲିଛି । ଏହା ରାମାୟଣ ପରଂପରାର ଧାରାବାହିକ ପ୍ରବାହମାନତାର ସୂଚନା ଦିଏ । ଏହି ପରଂପରାକୁ ରକ୍ଷା କରିବାରେ ଓଡ଼ିଆ ସାହିତ୍ୟ ଅନ୍ୟ ଯେ କୌଣସି ଉନ୍ନତ ଭାରତୀୟ ଭାଷାର ସାହିତ୍ୟ ସହିତ ତୁଳନୀୟ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ସର୍ଜନାତ୍ମକ କାବ୍ୟସାହିତ୍ୟ ମଧ୍ୟ ରାମପରଂପରାକୁ ସମଧିକ ସମୃଦ୍ଧ କରିଛି । ଏ କ୍ଷେତ୍ରରେ ସର୍ବପ୍ରାଚୀନ କାବ୍ୟ ହେଉଛି ଅର୍ଜୁନଦାସଙ୍କ (୧୫ଶ-୧୬ଶ ଶତାବ୍ଦୀ)

ରାମବିଭା ଯାହା ବାରଟି ଛନ୍ଦସଂବଳିତ । ଯୁଧିଷ୍ଠିର ଓ ମାର୍କଣ୍ଡେୟ ମୁନିଙ୍କ କଥାବାର୍ତ୍ତା ମଧ୍ୟରେ ରାମାୟଣ କାହାଣୀ ବର୍ଣ୍ଣିତ । ଏଥିରେ ତାଡ଼କା-ବଧ, ରାମ-ସୀତାଙ୍କ ବିବାହ ଓ ରାମଙ୍କ ଅଯୋଧ୍ୟା-ପ୍ରତ୍ୟାବର୍ତ୍ତନ କାହାଣୀମାନ ସ୍ଥାନିତ । ଧନଞ୍ଜୟ ଭଞ୍ଜ ଥିଲେ ଘୁମୁସରର ରାଜା । ତାଙ୍କ କବିପ୍ରତିଭା ଥିଲା ଅନନ୍ୟ । ସେ ଥିଲେ 'ଶ୍ରୀରାମବିଳାସ' ଶୀର୍ଷକ ଗୋଟିଏ ମହାକାବ୍ୟର ସ୍ରଷ୍ଟା । ଏଥିରେ ରୀତିଯୁଗୀୟ କଳା ସମ୍ପଦ ପରିପୁଷ୍ଟ । କାହ୍ନୁ ଦାସ ଗଞ୍ଜାମ ଜିଲ୍ଲାର ଆଉ ଜଣେ କବି । ସେ ୧୦୮ ଅଧ୍ୟାୟବିଶିଷ୍ଟ ଗୋଟିଏ କାବ୍ୟ ଲେଖିଛନ୍ତି ଯାହାର ନାମ 'ରାମରସାମୃତସିନ୍ଧୁ' । ଏହା ବାଲ୍ମୀକିରାମାୟଣକୁ ଅନୁସରଣ ନକରି ଅନୁସରଣ କରିଛି ମହାନାଟକକୁ । ଆଉ ଜଣେ କବି ହେଉଛନ୍ତି ନୀଳକଣ୍ଠ ଦାସ ଯେ ନିଜକୁ ରାମଙ୍କ ଦାସ ବୋଲି ଅଭିହିତ କରିଛନ୍ତି । ସେ 'ରାମାର୍ଚ୍ଚନ ଚନ୍ଦ୍ରିକା' ନାମରେ ଗୋଟିଏ ଅତି ବିରାଟ କାବ୍ୟ ଲେଖିଛନ୍ତି । ଏଥିରେ ରାମକଥା ସହିତ ଭାଗବତ ବର୍ଣ୍ଣିତ ନବଧା ଭକ୍ତିର ଅବତାରଣା କରାଯାଇଛି । ଜଣେ ଭକ୍ତ-କବିଙ୍କଦ୍ୱାରା ସୃଷ୍ଟ ହୋଇଥିବା କାରଣରୁ ଏଥିରେ ସ୍ୱାଭାବିକ ଭାବରେ ଭକ୍ତି-ରସ ଅଧିକ ମାତ୍ରାରେ ଅଛି । ବାଲ୍ମୀକି-ରାମାୟଣରେ ନଥିବା ସୂର୍ଯ୍ୟବଂଶର ଆରମ୍ଭ ସମ୍ପର୍କରେ ସେ ଏକ ନୂତନ କାହାଣୀର ଅବତାରଣା କରିଛନ୍ତି । ଆଉ ଜଣେ ରୀତିଯୁଗୀୟ କବି ହେଉଛନ୍ତି କବି ଧନଞ୍ଜୟ ଭଞ୍ଜଙ୍କ ନାତି ଉପେନ୍ଦ୍ର ଭଞ୍ଜ । ସେ 'ବୈଦେହୀଶବିଳାସ' କାବ୍ୟର ରଚୟିତା । ଏଥିରେ ପ୍ରତ୍ୟେକ ପଦର ଆରମ୍ଭ ହୋଇଛି 'ବ' ବର୍ଣ୍ଣରେ । ସେ ମଧ୍ୟ 'ରାମଲୀଳାମୃତ' ବୋଲି କାବ୍ୟଟିଏ ଲେଖିଛନ୍ତି ଯାହାର କଥାବସ୍ତୁ ବାଲ୍ମୀକି-ରାମାୟଣର ବାଳକାଣ୍ଡରୁ ଗୃହୀତ । ବିଶ୍ୱାମିତ୍ରଙ୍କ ସହିତ ଋଷିମାନଙ୍କ ଯଜ୍ଞରକ୍ଷା ଉଦ୍ଦେଶ୍ୟରେ ରାମଙ୍କର ବନଗମନ, ତାଡ଼କା-ବଧ, ବିଶ୍ୱାମିତ୍ରଙ୍କ ସହିତ ତାଙ୍କର ମିଥିଳାକୁ ଯାତ୍ରା, ଜନକଙ୍କ ଶିବଧନୁ-ଭଙ୍ଗ, ସୀତାବିବାହ ଇତ୍ୟାଦି କଥାମାନ ଏଥିରେ ସ୍ଥାନିତ । ଏହା ମଧ୍ୟ ରୀତିଯୁଗୀୟ ଶୈଳୀରେ ଲିଖିତ । ସୀତାଙ୍କ ରୂପ-ସମ୍ପତ୍ତିର ବର୍ଣ୍ଣନା ଏଥିରେ ଅତି ନିଖୁଣ ଓ ରସମୟ ଭାବରେ ହୋଇଛି । 'ବୈଦେହୀଶବିଳାସ'ର 'ବ' ବର୍ଣ୍ଣରେ ଆରମ୍ଭ ହୋଇଥିବା ଶୈଳୀଟିକୁ ପରବର୍ତ୍ତୀ କେତେକ କବି ମଧ୍ୟ ଆଦର୍ଶସ୍ୱରୂପ ଗ୍ରହଣ କରି ନେଇଛନ୍ତି । ସତ୍ୟବାଦୀ ଦାସ ତାଙ୍କ 'ସୀତାବିଳାସ' କାବ୍ୟଟିର ପ୍ରତ୍ୟେକ ପଦର ଆରମ୍ଭରେ 'ସ' ରଖିଛନ୍ତି । ଏହି 'ସ' ବର୍ଣ୍ଣଟିକୁ ଆରମ୍ଭରେ ରଖି କାବ୍ୟ ଲେଖିଛନ୍ତି ଆଉ ଜଣେ ଅନନ୍ୟ ପ୍ରତିଭାଧର କବି ଭୁବନେଶ୍ୱର କବିଚନ୍ଦ୍ର । ତାଙ୍କ କୃତିର ନାମ 'ସୀତେଶ ବିଳାସ' । ସେହିପରି କବି ରାମ ଦାସ 'ରାଘବ ବିଳାସ' ନାମକ କାବ୍ୟ ଲେଖିଛନ୍ତି ଯାହାର ପ୍ରତ୍ୟେକଟି ପଦର ଆରମ୍ଭ ହୋଇଛି 'ର' ବର୍ଣ୍ଣରେ । କବି ବାଳକରାମ ଦାସ ତାଙ୍କର 'ଜାନକୀଶ ବିଳାସ'

କାବ୍ୟଟିକୁ ଲେଖିଛନ୍ତି 'ଜ' ବର୍ଣ୍ଣଟିକୁ ପଦର ଆରମ୍ଭରେ ରଖି । ଏଭଳି 'ବର୍ଣ୍ଣନା-ଗୁରୁତ୍ୱ' ଅନ୍ୟ କୌଣସି ଭାରତୀୟ ଭାଷାରେ ଦେଖାଯାଏ ନାହିଁ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ସମସ୍ତ 'ବିଳାସ-କାବ୍ୟ' ରାମ-କାହାଣୀକୁ ଆଶ୍ରୟ କରିଛି ! ଈଶ୍ୱର ଦାସ ହେଉଛନ୍ତି ଆଉ ଜଣେ ଯେ ଏକ ଅଭିନବ ଭଙ୍ଗୀରେ ରାମ ଓ ନଳଙ୍କ କାହାଣୀକୁ ଅବଲମ୍ବନ କରି ଏକ ମିଶ୍ରିତ କାବ୍ୟ 'ନଳରାମଚରିତ' ସୃଷ୍ଟି କରିଛନ୍ତି । ଗୋଟିଏ ସର୍ଗରେ ନଳଙ୍କ ଚରିତ ଲେଖା ହେଲେ ପରବର୍ତ୍ତୀ ସର୍ଗରେ ରାମଙ୍କ ଚରିତ ଲେଖାଯାଇଛି । କାବ୍ୟଟିରେ ବ୍ୟାସଦେବ ନଳ ଓ ରାମଙ୍କ ସମ୍ପୂର୍ଣ୍ଣ ଚରିତ କହୁଛନ୍ତି । ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ' ମଧ୍ୟ ଆଉ ଏକ ସଫଳ କାବ୍ୟକୃତି । ଏହା ଲୋକମୁଖରେ 'ବିଶି-ରାମାୟଣ' ନାମରେ ଖ୍ୟାତ ।

୧୮ଶ ଓ ୧୯ଶ ଶତାବ୍ଦୀର ନିମ୍ନଲିଖିତ କବିମାନେ ରାମକଥାକୁ ନେଇ ଗ୍ରନ୍ଥମାନ ଲେଖିଛନ୍ତି :

୧ । ଦସ୍ଥାନନ୍ଦ ଦାସ—ରାମାଶ୍ୱମେଧ ଯଜ୍ଞ
୨ । ବାଲୁକେଶ୍ୱର ମର୍ଦ୍ଦରାଜ—ରାମବିବାହ
୩ । ଗୋପୀନାଥ ରଥ—ରାମଚନ୍ଦ୍ର ବିହାର
୪ । ଜନାର୍ଦ୍ଦନ ଦାସ—ରାଘବଚରିତାମୃତ
୫ । ଭଗୀରଥି ଦାସ—ସୀତାବିବାହ
୬ । ଯଦୁମଣି ମହାପାତ୍ର—ରାଘବବିଳାସ
୭ । ରାଧାଚରଣ ନାୟକ—ରସରାମାୟଣମଞ୍ଜରୀ

କୋଇଲିକୁ ଦୂତରୂପରେ ନିଜ ପ୍ରିୟଜନଙ୍କ ପାଖକୁ ପଠାଇ ତା' ଆଗରେ ନିଜ ମନୋବ୍ୟଥା ପ୍ରକାଶ କରିବାକୁ ନେଇ ଓଡ଼ିଆ ସାହିତ୍ୟରେ କେତେକ କବିତା ବିଦ୍ୟମାନ । କାଳିଦାସଙ୍କ 'ମେଘଦୂତ'ର ଅନୁକରଣରେ ଏଗୁଡ଼ିକରେ କୋଇଲିକୁ ଦୂତ ଭାବରେ ପଠାଇବାର ଚେତନା ଓଡ଼ିଆ କବିମାନଙ୍କ ମନରେ ଜାଗ୍ରତ ହୋଇଛି । ଏହି କୋଇଲି ସାହିତ୍ୟରେ ମଧ୍ୟ ରାମକଥାର ଅବତାରଣା କରାଯାଇଛି । ରାମକଥାକୁ ନେଇ ବଳରାମ ଦାସ 'କାନ୍ତାକୋଇଲି' ଓ 'ରାମକୋଇଲି' ନାମକ ଦୁଇଟି ଦୀର୍ଘ କବିତା ଲେଖିଛନ୍ତି । 'କାନ୍ତାକୋଇଲି'ରେ ରାମବିରହିଣୀ ପତ୍ନୀ ସୀତାଙ୍କ ବେଦନା ପ୍ରକାଶ ପାଇଛି । ଠିକ୍ ଅନୁରୂପ ଭାବରେ 'ରାମକୋଇଲି'ରେ ରାମଙ୍କ ବନବାସ କଥା ଶୁଣି ପୁତ୍ରବିରହିଣୀ ମାତା କୌଶଲ୍ୟାଙ୍କ ବେଦନା ପ୍ରକାଶ ପାଇଛି ।

ଓଡ଼ିଆ ସାହିତ୍ୟରେ 'ପୋଇ' ଗୋଟିଏ କ୍ଷୁଦ୍ର କାବ୍ୟକୁ ବୁଝାଯାଏ । ପୋଇଗୁଡ଼ିକ ସଂଖ୍ୟାନୁକ୍ରମରେ ପାଞ୍ଚ ପୋଇଠାରୁ ପଚିଶ ପୋଇ ଢଙ୍ଗରେ ସଜ୍ଜିତ ହୋଇଥାଏ । ପାଞ୍ଚ ପୋଇରେ ପାଞ୍ଚଟି ଅଧ୍ୟାୟ ରହିବ, ଷୋହଳ ପୋଇରେ ଷୋହଳଟି ଅଧ୍ୟାୟ ରହିବ ଓ ପଚିଶ ପୋଇରେ ପଚିଶଟି ଅଧ୍ୟାୟ ରହିବ । ପ୍ରତିଟି ଅଧ୍ୟାୟ ମଧ୍ୟ ପୋଇର ନାମକୁ ଅନୁସରଣ କରି ସେତିକ ସଂଖ୍ୟାବିଶିଷ୍ଟ ହେବ । ଉଦାହରଣସ୍ୱରୂପ ପାଞ୍ଚ ପୋଇରେ ପାଞ୍ଚଟି ଅଧ୍ୟାୟ ରହିବା ସହିତ ପ୍ରତିଟି ଅଧ୍ୟାୟରେ ପାଞ୍ଚଟି ପଦ ରହିବ । ପଦ ଓ ଅଧ୍ୟାୟର ଶୃଙ୍ଖଳାକୁ ଦୃଢ଼ ଭାବରେ ପୋଇ ସାହିତ୍ୟରେ ରକ୍ଷା କରାଯାଇଥାଏ । ଉପେନ୍ଦ୍ର ଭଞ୍ଜ ରାମାୟଣର କଥାବସ୍ତୁକୁ ନେଇ 'ଷୋହଳପୋଇ' କାବ୍ୟଗ୍ରନ୍ଥ ରଚନା କରିଛନ୍ତି । ଗୋବର୍ଦ୍ଧନ ଦାସ ହେଉଛନ୍ତି 'ପଚିଶ ପୋଇ'ର ସ୍ରଷ୍ଟା । ସେ ଲଙ୍କାକାଣ୍ଡର କଥାବସ୍ତୁକୁ ନେଇ ଏହି କାବ୍ୟଗ୍ରନ୍ଥଟି ରଚନା କରିଛନ୍ତି ।

ଚଉତିଶା ଓଡ଼ିଆ ଭାଷାରେ ମଣିଷର ଚିନ୍ତା-ଚେତନା ଓ ସମ୍ବେଗରେ ଅଭିପ୍ରକାଶଲାଗି ଆଉ ଏକ ସାହିତ୍ୟିକ ମାଧ୍ୟମ । 'ଚଉତିଶା' ଅର୍ଥ ଓଡ଼ିଆ ଚଉତିରିଶ ବର୍ଣ୍ଣର (କେବଳ ୩୪ ସଂଖ୍ୟାର ବ୍ୟଞ୍ଜନ ବର୍ଣ୍ଣର) ସମାହାର । ପ୍ରତିଟି ପଦ 'କ'ଠାରୁ 'କ୍ଷ', ପର୍ଯ୍ୟନ୍ତ ଚଉତିରିଶଟି ବର୍ଣ୍ଣକୁ ନେଇ ଆରମ୍ଭ କରାଯାଇଥାଏ । 'ମନବୋଧ ଚଉତିଶା', 'କଳାକଳେବର କହ୍ନାଇ ଚଉତିଶା' ଆଦିକୁ ଉଦାହରଣସ୍ୱରୂପ ନିଆଯାଇପାରେ । ଏଗୁଡ଼ିକ ପ୍ରାଚୀନ କାଳରେ ବହୁଳ ଭାବରେ ଲୋକପ୍ରିୟ ଥିଲା । ବିଶେଷକରି ଗାଁଗହଳମାନଙ୍କରେ ଏଗୁଡ଼ିକର ଲୋକପ୍ରିୟତା ଏ ପର୍ଯ୍ୟନ୍ତ ମଧ୍ୟ ଊଣା ପଡ଼ିନାହିଁ । ଓଡ଼ିଆ ସାହିତ୍ୟରେ ରାମକଥାସଂବଳିତ ଅନେକଗୁଡ଼ିଏ ଚଉତିଶା ରଚନା ହୋଇଛି । ନରେନ୍ଦ୍ର ମଙ୍ଗରାଜଙ୍କ 'ସୀତାନୁରାଗ ଚଉତିଶା', ସଦାଶିବଙ୍କ 'ବୈଦେହୀ ଚଉତିଶା', ବିଶ୍ୱନାଥଙ୍କ 'ରାମବୋଧ ଚଉତିଶା', ଲୋକନାଥଙ୍କ ରାମସ୍ମରଣ ଚଉତିଶା' ଓ ରାମବିଳାସ ଚଉତିଶା' ଏବଂ ଶଙ୍କର ଦାସଙ୍କ 'ହନୁମାନ୍ ଚଉତିଶା' ଆଦିକୁ ଉଦାହରଣ ସ୍ୱରୂପ ନିଆଯାଇପାରେ । ରାମକଥାକୁ ନେଇ ଏହିଭଳି ଆହୁରି ଅନେକ ଚଉତିଶା ଅଛି ।

'ଲୀଳା' ମାଧ୍ୟମରେ ମଧ୍ୟ ଓଡ଼ିଶାରେ ବହୁ କାଳରୁ ରାମକଥା ପ୍ରଚାରିତ ହୋଇ ଆସୁଛି । ସାଧାରଣତଃ ଦୁଇ ପ୍ରକାର ପ୍ରକାର ଲୀଳା ଓଡ଼ିଶା ଭୂମିରେ ଦେଖାଯାଇଥାଏ ଏବଂ ଉଭୟ ପ୍ରକାର ଲୀଳା ସମାନ ଭାବରେ ଲୋକପ୍ରିୟ । ଗୋଟିଏ 'କୃଷ୍ଣଲୀଳା' ଓ ଅପରଟି 'ରାମଲୀଳା' । ଏହା ଗୋଟିଏ ପ୍ରକାର 'ଲୋକନାଟକ' ଯାହା ଲୋକରଙ୍ଗମଞ୍ଚରେ ଅଭିନୀତ ହୋଇଥାଏ । ଲୋକମାନେ ରଙ୍ଗମଞ୍ଚଟିକୁ

ସ୍ଥରଦଗରୁ ଘେରକର ବସିଥାନ୍ତି । ନାୟକ-ନାୟିକାମାନେ ରଙ୍ଗମଞ୍ଚକୁ ଆସି ସେମାନଙ୍କ ଉପସ୍ଥିତି ଘୋଷଣା କରିଥାନ୍ତି ଓ ବକ୍ତବ୍ୟ ପ୍ରକାଶ କରିଥାନ୍ତି । ସମଗ୍ର ରାମାୟଣକୁ ନେଇ ରାମଲୀଳା ପ୍ରଦର୍ଶନ କରାଯାଇଥାଏ । ବିଶ୍ୱାସ କରାଯାଏ ଯେ ତୁଳସୀଦାସ ରାମାୟଣକୁ ଲୋକପ୍ରିୟ କରିବାପାଇଁ ସର୍ବପ୍ରଥମେ ଭାରତର ହିନ୍ଦୀ-ଭାଷାଭାଷୀ ଅଞ୍ଚଳରେ 'ରାମଲୀଳା'କୁ ଆରମ୍ଭ କରିଥିଲେ ଏବଂ ତାହା କ୍ରମେ କ୍ରମେ ସାରା ଭାରତରେ ବ୍ୟାପିଗଲା । ଓଡ଼ିଆ ଭାଷାରେ ବିଶ୍ୱନାଥ ଖୁଣ୍ଟିଆ (୧୭ଶ ଶତାବ୍ଦୀ) ସର୍ବପ୍ରଥମେ ରାମଲୀଳା ଆରମ୍ଭ କରିଥିଲେ । ତାଙ୍କ ରାମଲୀଳା 'ବିଚିତ୍ର ରାମଲୀଳା' ନାମରେ ପ୍ରସିଦ୍ଧିଲାଭ କରିଛି । ସାଧାରଣତଃ 'ରାମନବମୀ' ଓ 'ଦୁର୍ଗାପୂଜା' ଅବସରରେ ଏହା ପ୍ରଦର୍ଶିତ ହୋଇଥାଏ । ରଘୁନାଥ ଦାସ (୧୮ଶ ଶତାବ୍ଦୀ) ୧୩ଟି ଲୀଳା ବା ଅଧ୍ୟାୟ ବିଶିଷ୍ଟ ଗୋଟିଏ 'ରାମଲୀଳା' ଗ୍ରନ୍ଥ ଲେଖିଛନ୍ତି । ଏହା ତେର ରାତି ଧରି ପ୍ରଦର୍ଶିତ ହେବା ଉଦ୍ଦେଶ୍ୟରେ ଲେଖାଯାଇଛି । କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, ପୀତାମ୍ବର ରାଜେନ୍ଦ୍ର, ବଂଶୀଧର ସାମନ୍ତ, ଅନଙ୍ଗ ରାଜେନ୍ଦ୍ର, ବ୍ରଜବନ୍ଧୁ ସାମନ୍ତ, ଗଙ୍ଗାଧର ପ୍ରଧାନ ଓ ଭିକାରି ପଟ୍ଟନାୟକ ଆଦି କବିମାନେ ପରବର୍ତ୍ତୀ କାଳରେ ରାମଲୀଳାମାନ ଲେଖିଛନ୍ତି ।

ଲୀଳା ଭଳି ଯାତ୍ରା ମଧ୍ୟ ଗୋଟିଏ ପ୍ରକାର ଲୋକନାଟକ ଯାହା ପାତ୍ର-ପାତ୍ରୀମାନଙ୍କଦ୍ୱାରା ମୁକ୍ତ ଆକାଶ ତଳେ ଅଭିନୀତ ହୋଇଥାଏ । ଏହା ଗାଁ-ଗହଳରେ ପୂର୍ବେ ଖୁବ୍ ଲୋକପ୍ରିୟ ଥିଲା । ଏବେ ସିନେମାକୁ ଅନୁକରଣ କରି ନାଟ୍ୟପ୍ରଦର୍ଶନର ନୂଆ-ନୂଆ ଶୈଳୀମାନ ଅବଲମ୍ବିତ ହେଉଥିବାରୁ ଏହା ଉଭୟ ଗାଁ ଓ ସହରଗୁଡ଼ିକରେ ଲୋକପ୍ରିୟ ହୋଇପାରିଛି । ପୂର୍ବେ ପୁରୁଷମାନଙ୍କୁ ନାରୀବେଶରେ ସଜାଇ ଯାତ୍ରାର ନାୟିକାରୂପରେ ଠିଆ କରାଯାଉଥିଲା । ଏବେ କିନ୍ତୁ ଉଭୟ ପୁରୁଷ ଓ ନାରୀ ନିଜ-ନିଜ ଭୂମିକାରେ ଅବତୀର୍ଣ୍ଣ ହେଉଛନ୍ତି । ଏହି ଅଭିନୟଲାଗି ବିଭିନ୍ନ ବ୍ୟବସାୟିକ ଯାତ୍ରାଦଳର ସୃଷ୍ଟି କରାଯାଇଥାଏ । ଯାତ୍ରାର ଅଭିନୟ ଗୋଟିଏ ରାତିରେ ଶେଷ ହେବାକୁ ଥିବାରୁ ରାମାୟଣରୁ ଅଳ୍ପ କେତେକ କଥାବସ୍ତୁ ଚୟନ କରି ଯାତ୍ରା ପ୍ରଦର୍ଶିତ ହୋଇଥାଏ । ରାମକଥାକୁ ନେଇ ଅନେକଗୁଡ଼ିଏ ନାଟକ ଲେଖାଯାଇଛି । ଏହି ପ୍ରକାର ନାଟକ ସୃଷ୍ଟି କରିଥିବାର ପ୍ରଧାନ-ପ୍ରଧାନ ନାଟ୍ୟକାରମାନେ ହେଲେ ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ରାମଚନ୍ଦ୍ର ସ୍ୱାଇଁ, ଅଶ୍ୱିନୀକୁମାର ଘୋଷ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ନାଟ୍ୟାଚାର୍ଯ୍ୟ ରଘୁନାଥ ପଟ୍ଟନାୟକ ଇତ୍ୟାଦି । ଏବେ ସାମାଜିକ ବିଷୟବସ୍ତୁକୁ ନେଇ ଯାତ୍ରାମାନ ପ୍ରଦର୍ଶିତ ହେଉଥିଲେ ମଧ୍ୟ ରାମକଥାକୁ ନେଇ ଯାତ୍ରାମାନ ମଧ୍ୟ ପୂର୍ବଭଳି ପ୍ରଦର୍ଶିତ ହୋଇଚାଲିଛି । କିନ୍ତୁ ଆଧୁନିକତାର

କବଳରେ ପଡ଼ି ରାମକଥା ସଂପର୍କିତ ଯାତ୍ରା ଧୀରେ ଧୀରେ ସଙ୍କୁଚିତ ହେବାରେ ଲାଗିଛି । ରାମକଥା ଓଡ଼ିଆ ସାହିତ୍ୟରେ ରକ୍ତ, ମାଂସ ଓ ମଜ୍ଜାରେ କିପରି ଭାବରେ ଯୁଗ ଯୁଗ ଧରି ଭେଦିଯାଇଛି ତତ୍‌ସଂପର୍କରେ ପ୍ରସିଦ୍ଧ ପ୍ରବନ୍ଧକାର ନରେନ୍ଦ୍ରନାଥ ମିଶ୍ରଙ୍କ ନିମ୍ନୋକ୍ତ ମନ୍ତବ୍ୟ ଦର୍ଶନୀୟ । ସେ ଅବଶ୍ୟ ଓଡ଼ିଆ ଲୋକଗାଥା ସଂପର୍କରେ ଏହା କହିଛନ୍ତି । ଏ ମନ୍ତବ୍ୟ ବାସ୍ତବିକ ଲୋକଗୀତ, ପାଲା, ଦାସକାଠିଆ, ଯାତ୍ରା ଆଦି ସାମଗ୍ରିକ ଲୋକସାହିତ୍ୟ ପ୍ରତି ପ୍ରଯୁଜ୍ୟ । ତାଙ୍କ ଭାଷାରେ :

> But especially the Ramayanic legends have been deeply absorbed in folk literature for example, in folk ballads we find various Ramayanic tales relating to Rama, Laxman and Hanumana. In these ballads the realistic approach of folk poetry is more apparent than the high idealistic approach of the Sanskrit epic. (୩୯)

ରାମାୟଣ ପରଂପରା ଦ୍ୱାରା ଓଡ଼ିଆ ଲୋକସାହିତ୍ୟ କେତେଦୂର ପ୍ରଭାବିତ ଏବଂ କିଭଳି ଭାବରେ ଋଦ୍ଧିମନ୍ତ, ସେ କଥା ଆମେ ଏହି ଆଲୋଚନାରୁ ଉପଲବ୍ଧି କରିପାରିବା ।

ଆଧୁନିକ ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୁଏ ରାଧାନାଥ ରାୟଙ୍କ (୧୮୪୮-୧୯୦୮) ସମୟରୁ । ତାଙ୍କର ସମସାମୟିକ ଆଉ ଜଣେ କବି ଥିଲେ ମଧୁସୂଦନ ରାଓ (୧୮୫୩-୧୯୧୨) ଏବଂ ଜଣେ ଔପନ୍ୟାସିକ ତଥା ଅନୁବାଦକ ଫକୀରମୋହନ ସେନାପତି (୧୮୪୩-୧୯୧୮) । ଏହି ତିନି ଜଣଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଖ୍ୟାତ ତିନି ମୂର୍ତ୍ତି ବୋଲି କୁହାଯାଇଥାଏ । ସମସ୍ତେ ସେମାନଙ୍କ କୃତିରେ ସତ୍ୟ, ଶିବ ଓ ସୁନ୍ଦରର ଆରାଧନା କରିଛନ୍ତି ଟିକିଏ ଭିନ୍ନ-ଭିନ୍ନ ଢଙ୍ଗରେ । ଫକୀରମୋହନ ସତ୍ୟର ଆରାଧନା କରୁଥିବା ବେଳେ ରାଧାନାଥ କରୁଥିଲେ ସୁନ୍ଦରର ଆରାଧନା ଓ ମଧୁସୂଦନ ଶିବର ଆରାଧନା । ଏହି ତିନି ଜଣ ବିଶେଷ ଭାବରେ ମଣିଷ, ପ୍ରକୃତି ଓ ଭଗବାନଙ୍କ ପୂଜାରୀ । ଏହାର ପରିପୁଷ୍ଟି ଆମେ କାହ୍ନୁଚରଣ ମିଶ୍ରଙ୍କ ନିମ୍ନ ବକ୍ତବ୍ୟରୁ ପାଇଥାଉଁ :

> Fakirmohan represented Satya, Radhanath stood for Sundara, and Madhusudan for Siva. (୪୦)

ଏମାନେ ସମସ୍ତେ ରାମାୟଣ ପରଂପରାଦ୍ୱାରା ପ୍ରଭାବିତ ଏବଂ ସମସ୍ତେ ରାମାୟଣ ସଂପର୍କରେ କିଛି ନା କିଛି ଲେଖିଛନ୍ତି । ବିରହୀ ରାମଙ୍କର ମାଲ୍ୟବାନ୍ ପର୍ବତରେ ଅବସ୍ଥାନ ବେଳେ ଲଙ୍କାରେ ବନ୍ଦିନୀ ଥିବା ସୀତାଙ୍କ କଥା ସ୍ମରଣ କରି ବିଳାପ କରୁଛନ୍ତି । ଏହି ବର୍ଣ୍ଣନା ଅତି ସୁନ୍ଦର ଭାବରେ ବାଲ୍ମୀକିରାମାୟଣରେ ବର୍ଣ୍ଣିତ ଏବଂ ତାହାକୁ ଆଧାର କରି ତୁଳସୀଦାସ ତାଙ୍କ ରାମଚରିତ ମାନସରେ ଆହୁରି ପୁଷ୍କଳତର ଓ ଅଧିକତର ହୃଦୟସ୍ପର୍ଶୀ ଭାବରେ ବର୍ଣ୍ଣନା କରିଛନ୍ତି । ତାହାର ଅନୁବାଦ ରାଧାନାଥ 'ତୁଳସୀସ୍ତବକ' ଶୀର୍ଷକ ଏକ କବିତାରେ କରିଛନ୍ତି । ସେ ମଧ୍ୟ 'ଦଶରଥ ବିୟୋଗ' ବୋଲି ଗୋଟିଏ କବିତା ଲେଖିଛନ୍ତି । ଏହା ବାଲ୍ମୀକିରାମାୟଣକୁ ଆଧାର କରିଛି । ଫକୀରମୋହନ ସେନାପତି ସାତ କାଣ୍ଡ ବାଲ୍ମୀକି-ରାମାୟଣର ଅନୁବାଦ କରିଛନ୍ତି । ମଧୁସୂଦନ ରାଓ ଭବଭୂତିଙ୍କ ଉତ୍ତରରାମଚରିତ ନାଟକର ଅନୁବାଦ କରିଛନ୍ତି । ତାହା ଛଡ଼ା ସେ କାଳିଦାସଙ୍କ ରଘୁବଂଶର ୧୪ଶ ସର୍ଗର ଅନୁବାଦ କରି 'ସୀତାବନବାସ' ଶୀର୍ଷକ କବିତାଟିଏ ଲେଖିଛନ୍ତି । ତାଙ୍କ ସୃଷ୍ଟ ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କବିତା ରଘୁବଂଶର ୧୩ଶ ସର୍ଗର ଅନୁବାଦ । ଗଙ୍ଗାଧର ମେହେର (୧୮୬୨-୧୯୨୪) ଆଉ ଜଣେ ପ୍ରଖ୍ୟାତ କବି ଯେ 'ତପସ୍ୱିନୀ' ବୋଲି କାବ୍ୟଟିଏ ଲେଖିଛନ୍ତି । ଏହା ବାଲ୍ମୀକି-ରାମାୟଣ, ରଘୁବଂଶ ଓ ଉତ୍ତର ରାମଚରିତ, ଏହି ତିନୋଟି ସଂସ୍କୃତ ସାହିତ୍ୟର ବିଶିଷ୍ଟ କୃତି ଉପରେ ଆଧାରିତ । ତାହା ସତ୍ତ୍ୱେ ଏଥିରେ ଗଙ୍ଗାଧରଙ୍କ ନିଜସ୍ୱ ଅବଦାନ କିଛି କମ୍ ନୁହେଁ । ତାଙ୍କ ପୂର୍ବରୁ ଆଧୁନିକ ଓଡ଼ିଆ ସାହିତ୍ୟରେ ରାମକଥାକୁ ଭିତ୍ତି କରି ଏଭଳି ସ୍ୱାଦ୍ୟ ଓ ହୃଦ୍ୟ କାବ୍ୟ କେହି ଲେଖିନଥିଲେ । 'ଇନ୍ଦୁମତୀ' ଗଙ୍ଗାଧରଙ୍କର ଆଉ ଏକ କାବ୍ୟ ସୃଷ୍ଟି ଯାହା କାଳିଦାସଙ୍କ 'ରଘୁବଂଶ' ଉପରେ ଆଧାରିତ । ଅଜଙ୍କ ବିଳାପସଂପର୍କୀୟ ଏହାର ବର୍ଣ୍ଣନା କାଳିଦାସଙ୍କ ମୂଳ ଗ୍ରନ୍ଥର ବର୍ଣ୍ଣନା ଭଳି ଅତି ହୃଦ୍ୟ ହୋଇପାରିଛି । ନନ୍ଦକିଶୋର ବଳ (୧୮୭୫-୧୯୨୮) 'ସୀତାବନବାସ' ବୋଲି ଚରିତ କାବ୍ୟଟିଏ ଲେଖିଛନ୍ତି ।

ଏମାନଙ୍କ ଛଡ଼ା ଅଛନ୍ତି ଆହୁରି କେତେକ ସାହିତ୍ୟକାର ଯେଉଁମାନେ ସେମାନଙ୍କ ଲେଖାଗୁଡ଼ିକ ମାଧ୍ୟମରେ ରାମକଥାକୁ ବିଭିନ୍ନ ଢଙ୍ଗରେ ପ୍ରକାଶିତ କରିଛନ୍ତି । ସେମାନଙ୍କ ନାମ କୃତି ସହିତ ନିମ୍ନରେ ପ୍ରଦତ୍ତ ହେଲା :

୧ । କନ୍ହାଇଲାଲ ବୋଷ—ବୈଦେହୀ ବିଳାସ
୨ । ନାରାୟଣ ତ୍ରିପାଠୀ—ସୀତାବିବାହ
୩ । ହରିହର ମର୍ଦ୍ଦରାଜ—ଶ୍ରୀରାମରାସୋତ୍ସବ

୪ । ନୀଳକଣ୍ଠ ରଥ—ସୀତାପ୍ରେମତରଙ୍ଗିଣୀ
୫ । ନୀଳକଣ୍ଠ ରଥ—ଶ୍ରୀରାମଗୀତା ଚମ୍ପୂ
୬ । ସୀତାଚନ୍ଦ୍ରିକା—ମାଧବଚନ୍ଦ୍ର ମିଶ୍ର

ପ୍ରଖ୍ୟାତ ଛନ୍ଦକବି ରାଧାମୋହନ ଗଡ଼ନାୟକ ରାମାୟଣର କଥାବସ୍ତୁକୁ ନେଇ ବିଭିନ୍ନ କବିତା ଲେଖିଛନ୍ତି । 'ବିଭୀଷଣ ଉଠ', 'ଆଗୋ ପାଷାଣୀ' (ଅହଲ୍ୟାଙ୍କୁ ନେଇ), 'ଉର୍ମିଳା', 'ଜଟାୟୁ', ଓ 'ଦଳୀପ-ନନ୍ଦନୀ' । ସୀତାକାନ୍ତ ମହାପାତ୍ର ଆଦି ଆଧୁନିକ କବିମାନେ ରାମାୟଣରୁ ବିଭିନ୍ନ ମିଥ୍ ଆହରଣ କରି ସେମାନଙ୍କ କବିତାଗୁଡ଼ିକୁ ପରିପୁଷ୍ଟ କରିଛନ୍ତି । ଲେଖକ ମଧ୍ୟ ରାମାୟଣକୁ ଆଧାର କରି ତିନୋଟି ଉପନ୍ୟାସ ଲେଖିଛନ୍ତି, ଯଥା, 'ମନ୍ଥରା', 'ଜାନକୀ' ଓ 'ରାବଣ' ।

ଉପରୋକ୍ତ ଆଲୋଚନାସମୂହରୁ ଆମେ ଜାଣିପାରିବା ଯେ ରାମାୟଣର ପରଂପରା ଯୁଗ-ଯୁଗ ଧରି ଓଡ଼ିଆ ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରିଆସୁଛି ଏବଂ ଏହି ପ୍ରଭାବର ଧାରା ଏ ପର୍ଯ୍ୟନ୍ତ ବି ଅବିଚ୍ଛିନ୍ନ ଭାବରେ ବହିଚାଲିଛି ।

ବିଭିନ୍ନ ଭାରତୀୟ ଭାଷାରେ ରାମାୟଣ-ପରଂପରାକୁ ଆଶ୍ରୟ କରି ଯୁଗ-ଯୁଗ ଧରି ଯେଉଁ ଏତେଗୁଡ଼ିଏ ସାହିତ୍ୟ-ସୃଷ୍ଟି କରାଯାଇଛି, ସେଗୁଡ଼ିକ ସମସ୍ତେ ଯେ କ୍ଲାସିକ୍‌ର ପର୍ଯ୍ୟାୟରେ ଯିବେ, ତାହା ନୁହେଁ । କେତେକ କ୍ଲାସିକ୍ ଏବଂ ଅନ୍ୟ କେତେକ ଗୌଣ ସାହିତ୍ୟ କୃତି । ବାଲ୍ମୀକି ରାମାୟଣରେ ଚିରନ୍ତନ ମୂଲ୍ୟବୋଧ ରହିଥିବାରୁ ତାହା ତ ନିଶ୍ଚିତ ଭାବରେ କ୍ଲାସିକ୍ । କ୍ଲାସିକ୍ ସାହିତ୍ୟର ସୃଷ୍ଟି ପ୍ରତି ଏତେ ନିଷ୍ଠା ଭାରତରେ ରହିଆସିଛି କପରି ? ନିଶ୍ଚିତ ଭାବରେ ଭାରତୀୟ ପାଠକମାନଙ୍କର ସେଥିପ୍ରତି ଥିବା ଆଦର ସମ୍ମାନ ଓ ସ୍ୱୀକୃତି ଏହାର ମୁଖ୍ୟ କାରଣଗୁଡ଼ିକରୁ ଗୋଟିଏ ହୋଇପାରେ । ଭାରତଭୂମିରେ ଯୁଗ-ଯୁଗ ଧରି ପଣ୍ଡିତମାନଙ୍କର ଜନସାଧାରଣଙ୍କ ପ୍ରତି ଉପଦେଶ ଦିଆହୋଇ ଆସୁଛି—ଆତ୍ମାନଂ ବିଦ୍ଧି । ଅର୍ଥାତ୍ ନିଜକୁ ନିଜେ ଜାଣ । ମଣିଷ ନିଜକୁ ନିଜେ ଜାଣିବା ଉଚିତ । ତା' ହେଲେ ସେ ବୁଝିପାରିବ ସେ କିଏ ? ତା'ର ସ୍ୱରୂପ ଓ ପ୍ରକୃତି କ'ଣ ? ତା'ର କର୍ତ୍ତବ୍ୟ କ'ଣ ? ଏହା ଜାଣିହେବ କ୍ଲାସିକ୍‌ଗୁଡ଼ିକର ଅଧ୍ୟୟନ ଓ ଅନୁଶୀଳନଦ୍ୱାରା । ସେଥିପାଇଁ ଏ ଦେଶରେ ଏଭଳି ଗ୍ରନ୍ଥଗୁଡ଼ିକର ସୃଷ୍ଟି ଓ ପଠନ ପ୍ରତି ଯଥାକ୍ରମେ ସ୍ରଷ୍ଟାମାନଙ୍କର ଓ ପାଠକମାନଙ୍କର ଆଗ୍ରହ ରହିଆସିଛି । ବର୍ତ୍ତମାନ ଏ ପ୍ରକାର ସୃଷ୍ଟି ଓ ପଠନ କିଛିଟା ପରିମାଣାତ୍ମକ ଦୃଷ୍ଟିରୁ ଊଣା ପଡ଼ିଥିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ମରିଯାଇ-ନାହିଁ; କାରଣ ରାମାୟଣ ଭଳି କ୍ଲାସିକ୍ ଗ୍ରନ୍ଥ ଏ ସମ୍ପର୍କରେ ଅବିରତ ଦିଗ୍‌ଦର୍ଶନ

ଦେଇ ଚାଲିଛି । କ୍ଲାସିକ୍ ସମ୍ପର୍କରେ ସର୍ବପଲ୍ଲୀ ରାଧାକିଷ୍ଣନ୍‌ଙ୍କ ନିମ୍ନୋକ୍ତ ବକ୍ତବ୍ୟ ଉଲ୍ଲେଖନୀୟ :

> The classics are the chief means by which man learns about himself, his achievements and his failures, his powers and his limitations. (୪୧)

ଏହି ଯେଉଁ କ୍ଲାସିକ୍ ଗ୍ରନ୍ଥ ରାମାୟଣରେ ବର୍ଣ୍ଣିତ ମୂଲ୍ୟବୋଧ, ଏଗୁଡ଼ିକର ନୂତନ ଓ ସାଂପ୍ରତିକ ମୂଲ୍ୟବୋଧଗୁଡ଼ିକ ସହିତ ମେଶା-ମେଶି ଚାଲିଛି । ପରଂପରା ନଷ୍ଟ ହୋଇନାହିଁ, ବରଂ ଏହା ସମୟୋପଯୋଗୀ ଏକ ନୂତନ ରୂପରେଖ ନେଇଛି । ଏହି ନୂତନ ପୁଣି ଦିନେ ପୁରାତନ ହୋଇଯିବ; କିନ୍ତୁ ଯାହା ଶାଶ୍ୱତ ତାହା ରହିଯିବ । ପରଂପରା ଯେ ନବୀନ ମଧ୍ୟରେ କାହିଁ ରହିବ, ଏହା ସାଂସ୍କୃତିକ ଚିରନ୍ତନ ନିୟମର ଧାରା । ଏ ସଂପର୍କରେ କପିଳା ବାତ୍ସାୟନଙ୍କ ଉକ୍ତି ଉଲ୍ଲେଖନୀୟ :

> Tradition and modernity, tradition and contemporaneity are thus not clashing with each other, they are mingling, merging and supporting each other.

ଏଣୁ ଏଥିରେ ନିରାଶ ହେବାର ଅବକାଶ ହିଁ ନାହିଁ । ଅତଏବ ଭାରତୀୟ ଭାଷା-ସାହିତ୍ୟମାନଙ୍କ କ୍ଲାସିକ୍ ଗ୍ରନ୍ଥ ବାଲ୍ମୀକି ରାମାୟଣର ଅବଦାନ ଅତୁଳନୀୟ । ସେହି ଅବଦାନ ଶାଶ୍ୱତ ଓ ଚିରନୂତନ !

**ଅଭିଲେଖ :**

ଭାରତୀୟ ଅଭିଲେଖସମୂହ ମଧ୍ୟ ରାମାୟଣପରଂପରା ଦ୍ୱାରା ପ୍ରଭାବାନ୍ୱିତ । ଆମର ବିଶ୍ୱାସ ଅନୁସାରେ ରାମାୟଣ ତ୍ରେତାଯୁଗର କାହାଣୀ । ହଜାର-ହଜାର ବର୍ଷ ତଳର ଏହି କାହାଣୀରେ ସେହି ସମୟର ଅଥବା ତାହାର ଆଖ-ପାଖ ସମୟର ଅଭିଲେଖସମୂହ ଯେ ମିଳିବ ଏକଥା ଆଶା କରିବା ବୃଥା । କାରଣ ଅଭିଲେଖଗୁଡ଼ିକର ସୃଷ୍ଟି ବହୁତ ବର୍ଷ ପରେ ହୋଇଛି ଏବଂ ସମୟର କରାଳ ଗର୍ଭରେ ହୁଏତ କେତେକ ଅଭିଲେଖ ନଷ୍ଟ ହୋଇଯାଇଥିବ । ରାମାୟଣ-ପରଂପରା ସହିତ ସମ୍ବନ୍ଧ ଥିବା ପ୍ରଥମ ଅଭିଲେଖ ଆମେ ପାଉ ବାହାରୁତ ଖୋଦିତ ଚିତ୍ରରେ (ଖ୍ରୀ: ପୂ: ୨ୟ ଶତାବ୍ଦୀ) ଯହିଁରେ ପ୍ରସେନ୍‌ଜିତ୍‌ଙ୍କୁ କୋଶଳର ରାଜା ବୋଲି ବର୍ଣ୍ଣନା କରାଯାଇଛି । ଇତିହାସ କହେ ଯେ ପ୍ରସେନ୍‌ଜିତ୍

ଥିଲେ କୋଶଳର ରାଜା ଓ ତାଙ୍କ ରାଜଧାନୀ ଥିଲା ଶ୍ରାବାସ୍ତିବରେ । ସେ ଥିଲେ ବୁଦ୍ଧଙ୍କ (ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ) ସମସାମୟିକ । ରାମାୟଣୀୟ ଦଶରଥଙ୍କ ରାଜ୍ୟର ନାମ ଥିଲା କୋଶଳ (ଉତ୍ତର-କୋଶଳ) ଏବଂ ତାଙ୍କ ପାଟରାଣୀ କୌଶଲ୍ୟା ଥିଲେ ଦକ୍ଷିଣ କୋଶଳର ରାଜକନ୍ୟା । ଅନ୍ତତଃ ଅଭିଲେଖ ମାଧ୍ୟମରେ ରାମାୟଣର ପ୍ରଭାବ ଆମେ ଖ୍ରୀ. ପୂ. ୨ୟ ଶତାବ୍ଦୀଠାରୁ ପାଇଥାଉଁ । ରାଜା ବୀରପୁରୁଷଦତ୍ତ (୩ୟ ଶତାବ୍ଦୀ) ଥିଲେ ଇକ୍ଷ୍ୱାକୁବଂଶର ବିଜୟପୁରୀର ରାଜା । ସେଠାରେ ଥିବା ନାଗାର୍ଜୁନକୋଣ୍ଡା ଶିଳାଲେଖରେ ସଂସ୍କୃତ ଭାଷାରେ ବୁଦ୍ଧଙ୍କୁ ଏହିପରି ଭାବରେ ବର୍ଣ୍ଣନା କରାଯାଇଛି :

ଇକ୍ଷ୍ୱାକୁରାଜ ପ୍ରବରର୍ଷି-ଶତପ୍ରଭବବଂଶ ସମ୍ଭବଃ ।

ଅର୍ଥାତ୍ ବୁଦ୍ଧଙ୍କ ଜନ୍ମ ଥିଲା ସେହି ବଂଶରେ ଯାହା ଇକ୍ଷ୍ୱାକୁଙ୍କ ଭଳି ଶହ-ଶହ ରାଜର୍ଷିଙ୍କୁ ସୃଷ୍ଟି କରିଥିଲା । ଇକ୍ଷ୍ୱାକୁ ଓ କୋଶଳ ନାମଦ୍ୱୟ ରାମାୟଣ ସହିତ ସଂପୃକ୍ତ । ବାସ୍ତବିକ ରଘୁବଂଶର ପ୍ରଥମ ରାଜା ଥିଲେ ଇକ୍ଷ୍ୱାକୁ ଯେ କିମ୍ବଦନ୍ତୀ ଅନୁସାରେ ଥିଲେ ମନୁଙ୍କ ପୁତ୍ର । ରାଜସ୍ଥାନର ଝଲଓ୍ୱାର୍ ଜିଲ୍ଲାସ୍ଥ ଗାନ୍ଧାର ଶିଳାଲେଖରେ (ଖ୍ରୀ. ଅ. ୪୨୩) ରାଜା ବିଶ୍ୱବର୍ମନ୍‌ଙ୍କୁ ବଳ-ପରାକ୍ରମରେ ରାମ ଓ ଭଗୀରଥଙ୍କ ସମାନ ବୋଲି କୁହାଯାଇଛି । ବାଦାମିର ଚାଲୁକ୍ୟ ରାଜା ପ୍ରଥମ ପୁଲକେଶୀଙ୍କ ଦ୍ୱାରା ସୃଷ୍ଟ ଶିଳାଲେଖରେ ତାଙ୍କୁ ରାମାୟଣବର୍ଣ୍ଣିତ ମନୁ, ନୃଗ, ନହୁଷ, ଯଯାତି, ଧୁନ୍ଧୁମାର, ଅମ୍ବରୀଷ, ଦିଲୀପ, ନାଭାଗ ଆଦି ରାଜାମାନଙ୍କ ସହିତ ସମକକ୍ଷ ବୋଲି କୁହାଯାଇଛି । ଏହି ଶିଳାଲେଖସମୂହ ସଂସ୍କୃତ ଭାଷାରେ ଲିଖିତ ଏବଂ ଏହି ସମସ୍ତ ଚରିତ୍ର ରାମାୟଣ ସହିତ ସଂପୃକ୍ତ । ପୁନଶ୍ଚ ବୋଧଗୟାରେ ସିଂହଳୀୟ ବୌଦ୍ଧ ଭିକ୍ଷୁ ମହାନାମ ଯେଉଁ ଶିଳାଲେଖ ଉତ୍କୀର୍ଣ୍ଣ କରାଇଛନ୍ତି ତହିଁରେ ସେ ନିଜ ଜନ୍ମ ଲଙ୍କାଦ୍ୱୀପରେ ହୋଇଥିବାର ବର୍ଣ୍ଣନା କରିଛନ୍ତି । ରାମାୟଣରେ ଲଙ୍କାଦ୍ୱୀପର ବର୍ଣ୍ଣନା ଅଛି ।

ତାମିଲନାଡ଼ୁର ମାମଲ୍ଲପୁରମ୍‌ରେ ଥିବା ସଂସ୍କୃତ ଅଭିଲେଖରେ (୮ମ ଶତାବ୍ଦୀ) ବିଷ୍ଣୁଙ୍କ ଦଶ ଅବତାରର ବର୍ଣ୍ଣନା ପ୍ରସଙ୍ଗରେ ତିନି ରାମଙ୍କୁ (ରାମ, ପରଶୁରାମ ଓ ବଳରାମ) ତିନି ଅବତାର ବୋଲି କୁହାଯାଇଛି । ରାମ ଓ ପରଶୁରାମ ଉଭୟଙ୍କ ନାମ ରାମାୟଣରେ ବର୍ଣ୍ଣିତ । ଖଜୁରାହୋଠାରେ ଚନ୍ଦେଲ୍ଲାରାଜ ଧଙ୍ଗଙ୍କର ଗୋଟିଏ ଶିଳାଲେଖ (ଖ୍ରୀ: ଅ: ୧୦୦୨) ଅଛି । ତହିଁରେ ସେ ନିଜ ପିତାମହ ବିଜୟଙ୍କୁ ଲଙ୍କାକୁ ସେତୁବନ୍ଧ ବାନ୍ଧିଥିବା ରାମଙ୍କ ସହିତ ତୁଳନା କରିଛନ୍ତି ଏବଂ କହିଛନ୍ତି ଯେ ସେ (ବିଜୟ) ମଧ୍ୟ ଭାରତର ଉପକୂଳରୁ

ଲଙ୍କାକୁ ଗୋଟିଏ ସେତୁବନ୍ଧ (ସମ୍ଭବତଃ ନୌକାସମୂହଦ୍ୱାରା) ବାନ୍ଧିଥିଲେ । ରାମ, ଲଙ୍କା ଓ ସେତୁବନ୍ଧ ରାମାୟଣ ସହିତ ସଂପୃକ୍ତ ।

ଏହିପରି ଭାବରେ ବିଭିନ୍ନ ଶିଳାଲେଖଗୁଡ଼ିକରେ ଆମେ ରାମାୟଣ ପରଂପରାର ଲୋକପ୍ରିୟତା ତଥା ପ୍ରଭାବ ସଂପର୍କରେ ଅବଗତ ହୋଇଥାଉଁ ।

କେତେଗୁଡ଼ିଏ ଶିଳାଲେଖର ପଙ୍‌କ୍ତିମାନ କିପରି ବାଲ୍ମୀକିରାମାୟଣର ପଙ୍‌କ୍ତିସମୂହ ସହିତ ମେଳ ଖାଇଯାଉଛି ତାହା ନିମ୍ନଲିଖିତ ସାରଣୀକୁ ତୁଳନାତ୍ମକ ଦୃଷ୍ଟିରେ ବିଚାର କଲେ ବୁଝି ହେବ ।

| କ୍ରମିକ ସଂଖ୍ୟା | ଅଭିଲେଖ | ବାଲ୍ମୀକିରାମାୟଣ |
|---|---|---|
| ୧ । | ପର୍ଜନ୍ୟେନ ଏକାର୍ଣ୍ଣବଭୂତାୟାମିବ ପୃଥିବ୍ୟାଂ କୃତାୟାମ୍ । (ରୁଦ୍ରଦାମନଙ୍କ ଜୁନାଗଡ଼ ଶିଳାଲେଖ, ଖ୍ରୀ. ଅ. ୨ୟ) | ଅୟଂ ହ୍ୟୁତ୍ସହତେ କ୍ରୁଦ୍ଧଃ କର୍ତ୍ତୁମେକାର୍ଣ୍ଣବଂ ଜଗତ୍ (୫ । ୪୯ । ୨୦) |
| ୨ । | ସରଜାୟାଂ ଚ ପ୍ରକୃତିଷ୍ଭୂବ ପୂର୍ବସ୍ଥିତା ରାଷ୍ଟ୍ରମୋନନ୍ଦାନୈଃ । (ସ୍କନ୍ଦଗୁପ୍ତଙ୍କ ଜୁନାଗଡ଼ ଶିଳାଲେଖ, ୪୫୭ ଖ୍ରୀ. ଅ.) | ସ୍ଥିତପୂର୍ବାଭିଭାଷୀ ଚ ଧର୍ମଂ ସର୍ବାତ୍ମନାଶ୍ରିତଃ । (୨ ।୨ । ୪୨) |
| ୩ । | ଯୋ ଲାଲୟାମାସ ଚ ପୌରବର୍ଗାନ୍ ପୁତ୍ରାନ୍ ସୁପରୀକ୍ଷ୍ୟ ଦୋଷାନ୍ । (ସ୍କନ୍ଦଗୁପ୍ତଙ୍କ ଉପରୋକ୍ତ ଶିଳାଲେଖ) | ପୌରାନ୍ ସ୍ୱଜନବନ୍ନିତ୍ୟଂ କୁଶଲଂ ପରିପୃଚ୍ଛତି । ପୁତ୍ରେଷ୍ୱଗ୍ନିଷୁ ଦାରେଷୁ ପ୍ରେଷ୍ୟଶିଷ୍ୟଗଣେଷୁ ଚ ॥ ନିଖିଲେନାନୁପୂର୍ବ୍ୟା ଚ ପିତା ପୁତ୍ରାନବୋରସାନ୍ (୨ ।୨ । ୩୮-୩୯) |
| ୪ । | ସମୁଦ୍ର ଇବ ଗମ୍ଭୀରଃ କ୍ଷମୟା ପୃଥିବୀସମଃ । (ମହାକୂଟସ୍ତମ୍ଭରେ ମଙ୍ଗଳେଶଙ୍କ ଅଭିଲେଖ) | ସମୁଦ୍ର ଇବ ଗାମ୍ଭୀର୍ଯ୍ୟେ କ୍ଷମୟା ପୃଥିବୀସମଃ (୧ । ୧ । ୧୭-୧୮) |
| ୫ । | ଜଲନିଧିରିବ ବ୍ୟୋମ ବ୍ୟୋମ୍ନଃ ସମୋଽଭବଦମ୍ବୁଧିଃ । (ପୁଲକେଶୀଙ୍କ ଐହୋଲ୍ ଶିଳାଲେଖ) | ସାଗରଂ ଚାମ୍ବରପ୍ରଖ୍ୟମମ୍ବରଂ ସାଗରୋପମମ୍ । (୬ । ୧୦୬ । ୫୧) |
| ୬ । | କୈଳାଶଶିଖରପ୍ରତିମାନି । (କୁମାରଗୁପ୍ତଙ୍କ ମନ୍ଦସୋର ଶିଳାଲେଖ) | କୈଳାଶଶିଖରପ୍ରଖ୍ୟାମାଲିଖନ୍ତୀମିବାମ୍ବରମ୍ । (୫ । ୨ । ୨୩) |

ଶିଳାଲେଖଗୁଡ଼ିକର ଲେଖାଟିମାନ ବାଲ୍ମୀକି-ରାମାୟଣର ବିଭିନ୍ନ ସର୍ଗରେ ଥିବା ଶ୍ଳୋକଗୁଡ଼ିକୁ ପ୍ରାୟ ଅନୁସରଣ କରିଛି । ଏଥିରୁ ହିଁ ଏଗୁଡ଼ିକରେ ରାମାୟଣ-ପରଂପରାର ପ୍ରଭାବ ଅତି ସ୍ପଷ୍ଟ ।

**ତାମ୍ର ଲେଖ :**

ତାମ୍ରଲେଖସମ୍ବନ୍ଧରେ ମଧ୍ୟ ଆମେ ରାମାୟଣ ପରଂପରାର ପ୍ରଭାବ ସଂପର୍କରେ ଜ୍ଞାନ ପାଇଥାଉଁ । ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ଦତ୍ତ ଭୂମିଦାନକୁ ରାଜା-ମହାରାଜାମାନେ ତାମ୍ରପତ୍ରରେ ଲେଖାଇ ସେମାନଙ୍କୁ ଦେଇଥାନ୍ତି । ଦାମୋଦର ବର୍ମାଙ୍କ ମଟ୍ଟେପାଦ ତାମ୍ରଫଳକରେ (୪ର୍ଥ ଶତାବ୍ଦୀ) ଲିଖିତ ଅଛି, 'ଏଭ୍ୟୋ ବ୍ରାହ୍ମଣେଭ୍ୟୋ ନାନାଗୋତ୍ରଚରଣତପଃସ୍ୱାଧ୍ୟାୟନିରତେଭ୍ୟଃ' । ବାଲ୍ମୀକିରାମାୟଣର ଯେଉଁ ପଙ୍କ୍ତି ସହିତ ଏହାର ସଂପର୍କ ଅଛି, ତାହାର ବକ୍ତବ୍ୟ ହେଲା, 'ତପଃସ୍ୱାଧ୍ୟାୟନିରତଂ ତପସ୍ୱୀ ବାଗ୍‌ବିଦାଂ ବରମ୍' । (୪୪)

ଆଉ ଏକ ଦାନପତ୍ର ହେଉଛି ପଲ୍ଲବବଂଶୀ ରାଜା ସିଂହବର୍ମାଙ୍କର । ଏହା ପିକିରା ଦାନପତ୍ର ନାମରେ ଖ୍ୟାତ । (୪୫) ଏଥିରେ ଯେଉଁ ପଙ୍କ୍ତିର ଉଲ୍ଲେଖ ଅଛି ତାହା ହେଲା 'ଦେବଦ୍ୱିଜଗୁରୁବୃଦ୍ଧୋପଚାୟିନ ...' । ବାଲ୍ମୀକିରାମାୟଣର ଯେଉଁ ପଙ୍କ୍ତି ସହିତ ଏହାର ସାମ୍ୟ ଅଛି ତାହା ହେଲା, 'ବହୁଶ୍ରୁତାନାଂ ବୃଦ୍ଧାନାଂ ବ୍ରାହ୍ମଣାନାମୁପାସିତା । (୪୬)

ପୂର୍ବ-ଚାଲୁକ୍ୟର ରାଜା ବିଷ୍ଣୁବର୍ଦ୍ଧନଙ୍କ ସତାରା ଦାନପତ୍ରର ବକ୍ତବ୍ୟ ହେଲା :

ତସ୍ୟ ପୁତ୍ରୋ ମହାତେଜାଃ କନ୍ଦର୍ପ ଇବ ମୂର୍ତ୍ତିମାନ୍ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ପାର୍ଥିବୁଲ୍ୟପରାକ୍ରମଃ ।। (୪୭)

ବାଲ୍ମୀକିରାମାୟଣରେ ଥିବା ଏହାର ତୁଳନୀୟ ପଙ୍କ୍ତି ହେଲା :

ରୂପବାନ୍ ସୁଭଗଃ ଶ୍ରୀମାନ୍ କନ୍ଦର୍ପ ଇବ ମୂର୍ତ୍ତିମାନ୍ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ସତ୍ୟବାକ୍ୟୋ ଦୃଢ଼ବ୍ରତଃ ।। (୪୮)

ଏହିପରି ଆହୁରି ଅନେକ ଦାନପତ୍ର ଭାରତରେ ଇତସ୍ତତଃ ମିଳିଥାଏ ଯହିଁରୁ ସୂଚନା ମିଳିଥାଏ ଯେ ସେଗୁଡ଼ିକର କେତୋଟି ପଙ୍କ୍ତି ବାଲ୍ମୀକିରାମାୟଣର ପଙ୍କ୍ତିଗୁଡ଼ିକ ସହିତ ସମତା ରକ୍ଷା କରିଛି । ଏଥିରୁ ଏହି ପ୍ରମାଣ ମିଳୁଛି ଯେ ସେଗୁଡ଼ିକ ଉପରେ ମଧ୍ୟ ରାମାୟଣପରଂପରାର ପ୍ରଭାବ ପଡ଼ିଥିଲା ।

**ସ୍ଥାପତ୍ୟ :**

ଭାରତୀୟ ସ୍ଥାପତ୍ୟରେ ରାମାୟଣପରଂପରାର ପ୍ରଭାବ ସମଧିକ ବଳିଷ୍ଠ । ଏହା ତେଣୁ କ୍ଷୁଦ୍ର କେତୋଟି ଅନୁଚ୍ଛେଦ ମଧ୍ୟରେ ଲେଖିଦେବା ସହଜ ନୁହେଁ । ଏହି ପ୍ରଭାବର ମହତ୍ତ୍ୱ ନେଇ ସି. ଶିବରାମ ମୂର୍ତ୍ତି ତେଣୁ ଯଥାର୍ଥରେ କହିଛନ୍ତି :

> The sculptural wealth in India on the theme of the epic is so vast and spread all over the country in area, time and in the different historical phases that it is a subject which requires a special study in an elaborate monograph. (୪୯)

ଏଠାରେ ତେଣୁ ଅଳ୍ପ କେତୋଟି ପ୍ରଧାନ-ପ୍ରଧାନ ସ୍ଥାପତ୍ୟ ସମ୍ପର୍କରେ ଆଲୋଚନା କରାଯାଉଛି ।

ଭାରତଭୂମିରେ ରାମକଥାକୁ ଅବଲମ୍ବନ କରି ପ୍ରାଚୀନତମ ସ୍ଥାପତ୍ୟ ଆମେ ପାଇଥାଉଁ ଜାତକଗଳ୍ପଗୁଡ଼ିକର ଖୋଦିତ ଚିତ୍ରରୂପାୟନମାନଙ୍କରେ । ଏହି ଜାତକଗଳ୍ପଗୁଡ଼ିକ ଅବଶ୍ୟ ରାମାୟଣ କାହାଣୀକୁ ଟିକିଏ ପରିବର୍ତ୍ତିତ ରୂପ ଦେଇଛି । ବାରହୁତ ଶିଳାଚିତ୍ରରେ ଦଶରଥ-ଜାତକଗଳ୍ପଟି ରୂପାୟିତ । ରାମ, ଲକ୍ଷ୍ମଣ ଓ ସୀତା ସାଙ୍ଗ ହୋଇ ବଣକୁ ଯିବାର ଚିତ୍ର ଏଠାରେ ଦେଖିବାକୁ ମିଳିଥାଏ । ଏହି ଗଳ୍ପର ଖୋଦିତ ଚିତ୍ର ପୁଣି ଦେଖା ଯାଇଥାଏ ନାଗାର୍ଜୁନ-କୋଣ୍ଡାଠାରେ ଯେଉଁଠି ଏହି ତିନହେଁ ଜଣେ ଋଷି-ଋଷିକା ଭାବରେ ଜୀବନ ବିତାଉଛନ୍ତି । 'ଶ୍ୟାମଜାତକ'ର ଖୋଦିତ ଚିତ୍ର ସାଞ୍ଚିଠାରେ ଅଛି । ତହିଁରେ ଜଣେ ଋଷିକୁମାର ତାଙ୍କ ଅନ୍ଧ ପିତା-ମାତାଙ୍କର ପରିଚର୍ଯ୍ୟା କରୁଛନ୍ତି । ରାମାୟଣବର୍ଣ୍ଣିତ ଅନ୍ଧମୁନିଙ୍କ ଉପାଖ୍ୟାନକୁ ନେଇ 'ଶ୍ୟାମଜାତକ'ର ସୃଷ୍ଟି ହୋଇଛି । ଅଜନ୍ତାର ଗୁମ୍ଫା ସଂଖ୍ୟା ୧୦ରେ ମଧ୍ୟ 'ଶ୍ୟାମଜାତକ'ର ରଙ୍ଗୀନ ଚିତ୍ର ଅଙ୍କିତ ହୋଇଥିବାର ଦେଖାଯାଏ ।

ଗୁପ୍ତ ରାଜତ୍ୱକାଳରେ ଦେଓଗଡ଼ଠାରେ ନିର୍ମିତ ହୋଇଥିବା ବିଷ୍ଣୁ-ମନ୍ଦିରରେ ଏକ ଦୀର୍ଘ ପ୍ରସ୍ତର-ଫଳକ ଥିଲା ଯାହା ବର୍ତ୍ତମାନ ଜାତୀୟ ସଂଗ୍ରହାଳୟରେ ସଂରକ୍ଷିତ । ଏଥିରେ ଅନ୍ୟାନ୍ୟ ଖୋଦିତ ଚିତ୍ରଗୁଡ଼ିକ ମଧ୍ୟରୁ ଗୋଟିଏ ଚିତ୍ରରେ ରାମଙ୍କର ଅହଲ୍ୟାଙ୍କୁ ଶାପମୁକ୍ତ କରିଥିବା ଦୃଶ୍ୟଟି ଅଛି । ଏହି ଚିତ୍ରରେ ରାମ ବିଶ୍ୱାମିତ୍ରଙ୍କ ସହିତ ବସିଛନ୍ତି ଏବଂ ଲକ୍ଷ୍ମଣ ସେମାନଙ୍କର ସେବା କରୁଛନ୍ତି । ଅହଲ୍ୟା ଶିର ଅବନତ କରି ପ୍ରଣାମ କରୁଛନ୍ତି । ଏଠାରେ

ସଂରକ୍ଷିତ ଆଉ ଗୋଟିଏ ଶିଳାଫଳକରେ ରାମଙ୍କର ସୀତା ଓ ଲକ୍ଷ୍ମଣଙ୍କ ସହିତ ବନକୁ ଯିବାର ଦୃଶ୍ୟଟି ଖୋଦିତ ହୋଇଛି । ପୁଣି ଆଉ ଗୋଟିଏ ଶିଳା-ଫଳକରେ ସୂର୍ପଣଖାର ପଞ୍ଚବଟୀକୁ ଆସି ରାମଙ୍କ ପ୍ରଣୟଭିକ୍ଷା କରିବାର କାହାଣୀଟି ଦୃଶ୍ୟାୟିତ । ଏଥିରେ ଲକ୍ଷ୍ମଣ ସୂର୍ପଣଖାର ନାସା-କର୍ଣ୍ଣ ଛେଦିବା ଲାଗି ଖଡ୍‌ଗ ଉତ୍ତୋଳନ କରିଛନ୍ତି ଏବଂ ରାମ ପାଖରେ ବସିଛନ୍ତି । ଆଉ ଗୋଟିଏ ବି ଶିଳାଫଳକ ଅଛି ଯହିଁରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ଅତ୍ରି ମୁନିଙ୍କ ଆଶ୍ରମକୁ ଆସିଥିବାର ଦୃଶ୍ୟଟି ଚିତ୍ରାକାରରେ ଖୋଦିତ । ସୀତାଙ୍କୁ ଅତ୍ରିଙ୍କ ପତ୍ନୀ ଅନସୂୟା ଏକ ଦୁର୍ଲଭ ସୁଗନ୍ଧ ଦେଉଛନ୍ତି । ଆନ୍ଧ୍ର ପ୍ରଦେଶର ଦ୍ରାକ୍ଷାରାମଠାରେ ଏକ ଭଗ୍ନ ଶିଳାଫଳକ ଦେଖିବାକୁ ମିଳେ ଯହିଁରେ ରାମଙ୍କ ବାଲିବଧର କାହାଣୀ ଚିତ୍ରାକାରରେ ଖୋଦିତ । ଏଥିରେ ବାଲି ଶରବିଦ୍ଧ ଅବସ୍ଥାରେ ପତ୍ନୀ ତାରାଙ୍କ କୋଳରେ ଶୋଇଛନ୍ତି । ଏଠାରେ ଆଉ ଗୋଟିଏ ଶିଳାଫଳକ ଅଛି ଯହିଁରେ ବାଲୀ ଓ ସୁଗ୍ରୀବଙ୍କ ଦ୍ୱନ୍ଦ୍ୱଯୁଦ୍ଧ ଚିତ୍ରାକାରରେ ଖୋଦିତ ।

ବନାରସର ଭାରତ କଳାଭବନଠାରେ ଗୁପ୍ତଯୁଗୀୟ ଏକ ଶିଳାଫଳକ ସଂରକ୍ଷିତ ହୋଇ ରହିଛି ଯହିଁରେ ରାମଙ୍କ ସେତୁବନ୍ଧ ନିର୍ମାଣର ଦୃଶ୍ୟ ଚିତ୍ରାକାରରେ ଖୋଦିତ । ନଳ ସେତୁବନ୍ଧର ନିର୍ମାଣ କରୁଛନ୍ତି ଏବଂ ରାମ, ଲକ୍ଷ୍ମଣ ଓ ସୁଗ୍ରୀବ ଠିଆହୋଇ ବାନରମାନଙ୍କୁ ନିର୍ଦ୍ଦେଶମାନ ଦେଉଛନ୍ତି । ହରିଆନାର ଜର୍ଜରସ୍ଥ ରାଜ୍ୟ ସଂଗ୍ରହାଳୟରେ ଗୁପ୍ତଯୁଗରେ ନିର୍ମିତ ସୁନ୍ଦର ସୁନ୍ଦର ମୃଣ୍ମୟ ଫଳକମାନ ଅଛି ଯହିଁରେ ରାମାୟଣର କାହାଣୀସଂବଳିତ ଦୃଶ୍ୟମାନ ଅଙ୍କିତ । ଖ୍ରେପାଲର କୌଣସି ଏକ ସ୍ଥାନରୁ ମିଳିଥିବା ଗୋଟିଏ ମୃଣ୍ମୟ ଫଳକ ଏବେ ଜାତୀୟ ସଂଗ୍ରହାଳୟରେ ସଂରକ୍ଷିତ । ତହିଁରେ ସୀତାଙ୍କର ଅଶୋକବନରେ ବନ୍ଦିନୀ ଅବସ୍ଥାରେ ଥିବା ଚିତ୍ର ଅଙ୍କିତ ।

ଷଷ୍ଠ ଶତାବ୍ଦୀରେ ମୁଗଲରାଜ ସୁରମ-ଗୁମ୍ଫାରେ ବେଙ୍ଗଓ୍ୱାଡ଼ାର ବିଷ୍ଣୁକୁଣ୍ଡୀ-ମାନଙ୍କ ଦ୍ୱାରା ଖୋଦିତ ଶିଳାଚିତ୍ରରେ ଏକ ବିଚିତ୍ର ଦୃଶ୍ୟ ଦେଖିବାକୁ ମିଳେ । ଏଥିରେ ହନୁମାନ୍ ରାବଣର ଅଶୋକବନରେ ଥିବା ସୀତାଙ୍କୁ ଭେଟୁଛନ୍ତି ।

ପଲ୍ଲବବଂଶୀ ରାଜାମାନଙ୍କ ଶିଳାଲେଖସମୂହରେ ରାମାୟଣର ଲୋକପ୍ରିୟତାର ସୂଚନା ଦେବାକୁ ଯାଇ ବାଲ୍ମୀକିରାମାୟଣରୁ ଅନେକଗୁଡ଼ିଏ ପଙ୍‌କ୍ତି ପୂର୍ଣ୍ଣ-ମାତ୍ରାରେ କିମ୍ବା ଆଂଶିକ ମାତ୍ରାରେ ଉଦ୍ଧାର କରାଯାଇଥିବାର ଦେଖିବାକୁ ମିଳୁଥିଲେ ମଧ୍ୟ ରାମାୟଣକାହାଣୀକୁ ଆଧାର କରି ଗଢ଼ି ଉଠିଥିବା ସ୍ଥାପତ୍ୟକଳା

ଖୁବ୍ ବିରଳ । ପ୍ରକୃତରେ କହିବାକୁ ଗଲେ ଏ ପର୍ଯ୍ୟନ୍ତ ଗୋଟିଏ ପ୍ରକାର ମାତ୍ର ସ୍ଥାପତ୍ୟକଳା ଆବିଷ୍କୃତ ହୋଇଛି । ଏହା ଗୋଟିଏ ପ୍ରକାର ଦୃଶ୍ୟ ସହିତ ସମ୍ପର୍କିତ ମନ୍ଦିରରେ କାହାଣୀମାନ ପ୍ରଦର୍ଶିତ । ଗୋଟିକରେ ରାବଣ କୈଳାଶ ପର୍ବତକୁ ଉପାଡ଼ିବା ଉଦ୍ଦେଶ୍ୟରେ ଥରାଇ ଦେଉଛି । ଅନ୍ୟଟିରେ ବିଶ୍ୱାମିତ୍ର ରାମ-ଲକ୍ଷ୍ମଣଙ୍କ ଆଗରେ କହିଥିବା ଗଙ୍ଗାବତରଣ ଦୃଶ୍ୟଟି ପ୍ରତିଫଳିତ ।

ଏହି ଷଷ୍ଠ ଶତାବ୍ଦୀରେ କର୍ଣ୍ଣାଟକର ପଟ୍ଟାଡ଼ାକାଲଠାରେ ଥିବା ପାପନାଶ ମନ୍ଦିରରେ ପ୍ରଦର୍ଶିତ ଚିତ୍ରସମୂହରେ ରାମାୟଣକାହାଣୀ ଦଶରଥଙ୍କ ପୁତ୍ରେଷ୍ଟି-ଯଜ୍ଞଠାରୁ ଆରମ୍ଭ କରି ପର୍ଯ୍ୟାୟକ୍ରମେ ରହିଛି ଏବଂ ଚିତ୍ରଗୁଡ଼ିକର ତଳେ ସେଗୁଡ଼ିକର ପରିଚୟ ଦେବାକୁ ଯାଇ ପ୍ରାଚୀନ କନ୍ନଡ଼ଲିପିରେ କେତେକ ପଙ୍କ୍ତି ଲେଖାଯାଇଛି । ଏଥିରେ ପ୍ରଦର୍ଶିତ ରାମଙ୍କ ରାବଣ ସହିତ ଓ ଖର-ଦୂଷଣଙ୍କ ବାହିନୀ ସହିତ ଯୁଦ୍ଧ ଅତି ମନୋରମ । ସେତୁବନ୍ଧ ନିର୍ମାଣର ଦୃଶ୍ୟଟି ମଧ୍ୟ ସମଧିକ ମନୋରମ । ଏହା ଏକ ସୁନ୍ଦର ସ୍ଥାପତ୍ୟକଳାର ସଙ୍କେତ ହିଏ ।

ବାଣଭଟ୍ଟଙ୍କ କାବ୍ୟକୃତିରେ ରାବଣର ଦଶ ମୁଣ୍ଡ ଚକ୍ରାକାରରେ (ଦଶାସ୍ୟଚୂଡ଼ାମଣିଚକ୍ର) ଥିବାର ବର୍ଣ୍ଣନା ରହିଛି । ଏହା କୃତ୍ରିମତାର ନିଦର୍ଶନ ସ୍ୱରୂପ ଦୃଷ୍ଟିକୋଣ ମାଧ୍ୟମରେ ଏକ ସରଳରେଖାରେ ଦେଖାଯାଉଥିବା ରାବଣର ଦଶ ମୁଣ୍ଡଠାରୁ ଭିନ୍ନ । ଅଜନ୍ତାର କୈଳାଶ ମନ୍ଦିରରେ ଯେଉଁ ଦୃଶ୍ୟଟି ଅଙ୍କିତ ତହିଁରେ ରାବଣର ଦଶ ମୁଣ୍ଡକୁ ବାଣଙ୍କ ଅନୁକରଣରେ ଚକ୍ରାକାରରେ ସଜ୍ଜିତ କରି ରଖାଯାଇଛି । ଏହା ଦେଖିବାକୁ ଅତି ସୁନ୍ଦର ଓ ସୁକଳାର ନିଦର୍ଶନ ।

ମଲ୍ଲିକାର୍ଜ୍ଜୁନ ମନ୍ଦିରରେ ରାମ ଓ ଲକ୍ଷ୍ମଣଙ୍କର ବଣରେ ସୀତାଙ୍କୁ ଖୋଜୁଥିବା ଦୃଶ୍ୟଟି ଅତି ସୁନ୍ଦର ଭାବରେ ଖୋଦିତ । ଏହି ଦୃଶ୍ୟରେ ରାମଙ୍କର କ୍ରୌଞ୍ଚମିଥୁନଟିଏ ଦେଖି ସୀତାଙ୍କ କଥା ବେଶି ମନେ ପଡ଼ୁଥିବାର କବିକଳ୍ପନା ଅତି ଜୀବନ୍ତ ଭାବରେ ପରିସ୍ଫୁଟ । ବିରହବିଧୁର ରାମଙ୍କ ମୁଖରେ ଯେଉଁ ବିଷାଦର କାଳିମା ଅଙ୍କିତ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇ ପାରିଛି । ସେହିପରି ବିରୂପାକ୍ଷ ମନ୍ଦିରର ଗାତ୍ରରେ ସୂର୍ପଣଖାକାହାଣୀ, ଖରଦୂଷଣଙ୍କ ଯୁଦ୍ଧ, ସୀତାଙ୍କର ସୁବର୍ଣ୍ଣମୃଗକୁ ଦେଖିବା, ରାମଙ୍କର ତାହା ପଛେ ପଛେ ଧାଇଁ ଶେଷରେ ତାହାକୁ ମାରିବା, ରାବଣର ସୀତାହରଣ ଓ ଜଟାୟୁ ସହିତ ଯୁଦ୍ଧ, ରାମ-ସୁଗ୍ରୀବଙ୍କ ସାକ୍ଷାତ୍କାର, ବାଲୀ-ସୁଗ୍ରୀବଙ୍କ ଯୁଦ୍ଧ ଆଦି ରାମାୟଣର କାହାଣୀମାନ ଅତି ସୁନ୍ଦର ଓ ନିଖୁଣ ଭାବରେ ଅଙ୍କିତ । ରାମଙ୍କ

ସେତୁବନ୍ଧର ନିର୍ମାଣ ଚିତ୍ରଟି ମଧ୍ୟ ସମଧିକ ସୁନ୍ଦର ଓ ନିଖୁଣ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଦକ୍ଷିଣ ଭାରତରେ ଅପେକ୍ଷାକୃତ ସଂଖ୍ୟାଧିକ ସ୍ଥାନରେ ରାମଙ୍କ ସେତୁବନ୍ଧ ନିର୍ମାଣର ଚିତ୍ରଟି ଦେଖିବାକୁ ମିଳିଥାଏ । ଏହାର କାରଣ ହେଲା, ଏହି ଅଞ୍ଚଳରେ ଲୋକପ୍ରିୟତା ଲାଭ କରିଥିବା 'ଆନନ୍ଦ ରାମାୟଣ' ଯାହା ସଂସ୍କୃତରେ ଲେଖାଯାଇଛି ବାଲ୍ମୀକିରାମାୟଣରେ ନଥିବା ଅନେକ କାହାଣୀ ଆନନ୍ଦରାମାୟଣରେ ଦେଖିବାକୁ ମିଳିଥାଏ । ଏହି ମନ୍ଦିରରେ (ବିରୂପାକ୍ଷ ମନ୍ଦିରରେ) ଚିତ୍ରଫଳକଗୁଡ଼ିକ ଅପେକ୍ଷାକୃତ ଆକାରରେ କ୍ଷୁଦ୍ର ଏବଂ ସ୍ତମ୍ଭଗୁଡ଼ିକର ପାର୍ଶ୍ୱ-ଦେଶରେ ସ୍ଥାପିତ । ଅଥଚ ପାପନାଥ ମନ୍ଦିରରେ ଯେଉଁ ଚିତ୍ରଫଳକଗୁଡ଼ିକ ଅଛି ସେଗୁଡ଼ିକ ଆକାରରେ ଅପେକ୍ଷାକୃତ ବଡ଼ ଏବଂ ସେଗୁଡ଼ିକୁ ମନ୍ଦିରର ବାହାରପଟର କାନ୍ଥଗୁଡ଼ିକରେ ଖଞ୍ଜାଯାଇଛି ।

ଶିଳା କଟାଯାଇ ପାହାଡ଼-ଖୋଲରେ କରାଯାଇଥିବା ଏଲୋରାସ୍ଥ କୈଳାସପର୍ବତର ଅଗଣାରେ ଥିବା ବିରାଟ ସ୍ତମ୍ଭଟିରେ ରାମାୟଣ କାହାଣୀର ଅବଲମ୍ବନରେ ଗୋଟିକ ପରେ ଗୋଟିଏ ହୋଇ ଅନେକ ଦୃଶ୍ୟ ଅଙ୍କିତ; କିନ୍ତୁ ସେଗୁଡ଼ିକ ସବୁ କ୍ଷୁଦ୍ରାକାର ବିଶିଷ୍ଟ । ଗୋଟିଏ ମାତ୍ର ବଡ଼ ଚିତ୍ର ଅଛି ଯହିଁରେ ଜଟାୟୁର ରାବଣ ସହିତ ଲଢ଼ିଥିବାର ଦୃଶ୍ୟ ଖୋଦିତ । ପୂର୍ବ କଥିତ ବିରୂପାକ୍ଷ ମନ୍ଦିରର ଚିତ୍ର ଭଳି ଏହା ବିରାଟ ଆକାରବିଶିଷ୍ଟ । ରାକ୍ଷସ ରାବଣର ଭୟଙ୍କର ଚିତ୍ରଟି ଖୁବ୍ ଚିତ୍ତାକର୍ଷକ । ପୂର୍ବ ଗୋଦାବରୀ ଜିଲ୍ଲାର ସାମଲକୋଟା ନିକଟରେ ଭୀମବରମ୍‌ସ୍ଥ ମନ୍ଦିରରେ ରାବଣର ଏକ ବିରାଟକାୟ ଖୋଦିତ ଚିତ୍ର ଖଞ୍ଜାଯାଇଛି । କଳାବିଶେଷଜ୍ଞମାନଙ୍କ ମତ ଯେ ଏହାର ଚାଲୁକ୍ୟ ଓ ରାଷ୍ଟ୍ରକୁଟବଂଶୀମାନଙ୍କ ସ୍ଥାପତ୍ୟ ସହିତ ସାମ୍ୟ ଅଛି । ସମ୍ଭବତଃ ଏହା ଚାଲୁକ୍ୟବଂଶୀୟ କଳା । ପ୍ରଥମ ପୁଲକେଶୀଙ୍କ ସାନଭାଇ କୁବ୍‌ଜା ବିଷ୍ଣୁବର୍ଦ୍ଧନ ଏହି ଅଞ୍ଚଳକୁ ଆସି ଏକ ନୂତନ ରାଜବଂଶର ସ୍ଥାପନ କରିଥିଲେ ଯାହା ପୂର୍ବ ଚାଲୁକ୍ୟ ବଂଶ ନାମରେ ଖ୍ୟାତ । ଏହି ମୂର୍ତ୍ତିଟି ଏବେ ଅପେକ୍ଷାକୃତ ଏକ ନୂତନ ମନ୍ଦିରରେ ଲାଗିଥିବାରୁ ମନେହୁଏ ଯେ ସମ୍ଭବତଃ ଏହା ପୂର୍ବ ଚାଲୁକ୍ୟବଂଶୀୟ କୌଣସି ରାଜାଙ୍କ ରାଜତ୍ୱକାଳରେ ଗୋଟିଏ ବିରାଟ୍ ଶିଳା ଫଳକରେ ଏକ ସମଧିକ ବିରାଟ୍ ଖୋଦିତ ଚିତ୍ରର ଅଂଶ ହୋଇ ରହିଥିଲା ଏବଂ ଏହି ଫଳକଟି କୌଣସି କାରଣରୁ ନଷ୍ଟ ହୋଇଯିବାରୁ ଏହାକୁ ଆଣି ଏହି ନୂତନ ମନ୍ଦିରରେ ଖଞ୍ଜାଯାଇଛି । ଏହି ବିରାଟ୍ ଚିତ୍ରଟି ହୁଏତ ରାବଣ ଓ ଜଟାୟୁଙ୍କ ଯୁଦ୍ଧ ବିଷୟକ ହୋଇଥାଇପାରେ ।

ଚାଲୁକ୍ୟମାନଙ୍କ ପରେ ଆସନ୍ତି ହୋୟ୍ସଲବଂଶୀ ରାଜାମାନେ । ସେମାନଙ୍କ ସ୍ଥପତିମାନେ ମଧ୍ୟ ଚାଲୁକ୍ୟ ସ୍ଥପତିମାନଙ୍କ ଭଳି କ୍ରମାନୁସାରେ ଗୋଟିଏ ସ୍ଥାନରେ ରାମାୟଣର କାହାଣୀକୁ ଚିତ୍ରିତ କରିବାର ପରଂପରା ଅନୁଯାୟୀ ଚାଲନ୍ତି । ସେମାନଙ୍କ ସ୍ଥାପତ୍ୟ-ଚିତ୍ରରେ ଉଭୟ ରାମାୟଣ ଓ ମହାଭାରତର କାହାଣୀ-ସମ୍ବଳିତ ଦୃଶ୍ୟମାନ ସମାନ ଭାବରେ ପ୍ରତିଫଳିତ । ରାମାୟଣୀୟ ପ୍ରଧାନ ପ୍ରଧାନ ଦୃଶ୍ୟଗୁଡ଼ିକ ହେଲା, ଜନକଙ୍କ ରାଜସଭାକୁ ଶିବଧନୁକୁ ଟେକି ଥିବା ଏକ ସଭାରରେ ଅନେକ ଲୋକ ମିଶି ଟାଣିବାର ଦୃଶ୍ୟ, ରାମ-ସୀତା ଓ ରାମଙ୍କ ତିନି ଭାଇ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ବିବାହ-ଦୃଶ୍ୟ, ରାମଙ୍କ ସୁବର୍ଣ୍ଣମୃଗ ପଛରେ ଧାଇଁବାର ଦୃଶ୍ୟ ଏବଂ ତାଙ୍କର ଗୋଟିଏ ବାଣରେ ସାତଟି ଗଛକୁ ଏକାଥରକେ ଭେଦିବାର ଦୃଶ୍ୟ ଇତ୍ୟାଦି । ହାଲେବିଡ଼୍‌ର ଶିବମନ୍ଦିରରେ ଓ ବେଲୁର୍‌ର ଚେନ୍ନାକେଶବମନ୍ଦିରରେ ଏଭଳି ଦୃଶ୍ୟମାନ ବହୁ ସଂଖ୍ୟାରେ ଦେଖିବାକୁ ମିଳିଥାଏ । ଏଗୁଡ଼ିକ ମନ୍ଦିରଗୁଡ଼ିକର ଚାରିପଟେ ଘେରିକରି ରହିଛି ।

ନବମ ଶତାବ୍ଦୀରେ ଚୋଳରାଜାମାନଙ୍କ ରାଜତ୍ୱ ଆରମ୍ଭ ହୁଏ ଏବଂ ସ୍ଥାପତ୍ୟକଳା ଏକ ଚାରୁକଳାର ରୂପ ନିଏ । ଏହି ସ୍ଥାପତ୍ୟର ଚାରୁକଳା ଗଙ୍ଗବଂଶୀ ରାଜାମାନେ ଓଡ଼ିଶାକୁ ଜୟ କରିବା ଉତ୍ତାରୁ ଆଣନ୍ତି ଏବଂ ଏହା ଓଡ଼ିଶାଭୂମିରେ ଧୀରେ ଧୀରେ ବିକଶିତ ହୋଇ ସ୍ଥାନୀୟ ଓଡ଼ିଶୀ ସ୍ଥାପତ୍ୟ-କଳା ସହିତ ମିଶି ଏକ ଅଭିନବ ରୂପ ନିଏ କୋଣାର୍କ ମନ୍ଦିରର ନିର୍ମାଣରେ । ବାସ୍ତବିକ, କୋଣାର୍କରେ ହିଁ ଏହାର ଚରମ ଓ ପରମ ବିକାଶ ଘଟେ । ଚୋଳ-ସ୍ଥାପତ୍ୟର ଆଦି ଯୁଗରେ (୯ମ ଶତାବ୍ଦୀ) କୁମ୍ଭକୋଣାମ୍‌ଠାରେ ନିର୍ମିତ ହୋଇଥିବା ନାଗେଶ୍ୱରମ୍ ମନ୍ଦିରରେ ରାମାୟଣର କାହାଣୀକୁ ଆଶ୍ରୟ କରିଥିବା ଅନେକଗୁଡ଼ିଏ ଖୋଦିତ ଚିତ୍ର ଦେଖିବାକୁ ମିଳେ । ଏଗୁଡ଼ିକ କାହାଣୀର କ୍ରମିକ ଅଗ୍ରଗତି ସହିତ ସମତାଳ ରଖି କ୍ରମାନୁସାରେ ସଜ୍ଜିତ । ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞଠାରୁ ଆରମ୍ଭକରି ଚିତ୍ରଗୁଡ଼ିକ ଅଙ୍କିତ । ଅବଶ୍ୟ ମନ୍ଦିର ଗାତ୍ରର ସୀମିତ କଳେବର ଦୃଷ୍ଟିରୁ ରାମାୟଣ-କାହାଣୀର ସମସ୍ତ ଚିତ୍ର ଦିଆଯାଇ ପାରିନାହିଁ । ପ୍ରଧାନ-ପ୍ରଧାନ ଚିତ୍ରଗୁଡ଼ିକ ହେଲା, ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞ, ଯଜ୍ଞପୁରୁଷଙ୍କଠାରୁ ତାଙ୍କର ଅମୃତ-ଗ୍ରହଣ, ରାଣୀମାନଙ୍କ ମଧ୍ୟରେ ଏହି ଯଜ୍ଞର ଚରୁ-ଅନ୍ନର ବଣ୍ଟନ, ରାମ ଓ ତାଙ୍କର ତିନି ଭାଇଙ୍କ ଜନ୍ମ, ରାମ-ଲକ୍ଷ୍ମଣଙ୍କର ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷାଲାଗି ତାଙ୍କ ସହିତ ବନଯାତ୍ରା, ତାଟକା ରାକ୍ଷସୀର ବଧ, ରାଜକୁମାରଦ୍ୱୟଙ୍କର ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା, ଅଭିଶପ୍ତା ଅହଲ୍ୟାଙ୍କ ଉଦ୍ଧାର, ରାମଙ୍କଦ୍ୱାରା ଶିବଧନୁଭଙ୍ଗ ଏବଂ ଚାରି ରାଜକୁମାରଙ୍କ ଆଦି ସହିତ ସମ୍ପର୍କିତ । ତାହା ଛଡ଼ା ଆହୁରି ଅନେକ ଚିତ୍ର ବି ଅଛି,

ଯଥା, ରାମ ଲକ୍ଷ୍ମଣ ଓ ସୀତାଙ୍କ ଗୁହ ଶବରଦ୍ୱାରା ଗଙ୍ଗାକୁ ପାରିହେବା, ଶୂର୍ପଣଖା-କାହାଣୀ, ପଞ୍ଚବଟୀରେ ଅଭିମତ ମାୟାମୃଗର କାହାଣୀ, ରାବଣ-ଜଟାୟୁ ଯୁଦ୍ଧ, ରାମଙ୍କ ସନ୍ଦେଶ ନେଇ ହନୁମାନ୍‌ଙ୍କର ଅଶୋକବନରେ ବନ୍ଦିନୀ ଅବସ୍ଥାରେ ଥିବା ସୀତାଙ୍କ ପାଖରେ ପହଞ୍ଚିବା ଏବଂ ସେତୁବନ୍ଧ ନିର୍ମାଣ ଆଦି ସମ୍ପର୍କୀୟ ଚିତ୍ର । ପୂର୍ବକଥିତ ମତେ ପ୍ରତ୍ୟେକ ଚିତ୍ର ମନ୍ଦିରଗାତ୍ରରେ ଅଙ୍କିତ ଗୋଟିଏ ଗୋଟିଏ ଚିତ୍ରକଳାର ନିଦର୍ଶନ । ଏହିଭଳି ଦୃଶ୍ୟମାନ ଚୋଳଶାସନ କାଳରେ ଓ ପରବର୍ତ୍ତୀ ସମୟରେ ନିର୍ମିତ ଅନ୍ୟାନ୍ୟ ମନ୍ଦିରମାନଙ୍କରେ ଦେଖାଦେଇଥାଏ । ଚୋଳ ସ୍ଥପତି-ମାନଙ୍କ ନିକଟରେ ରାମାୟଣପରଂପରା ଯେ ଅତି ଲୋକପ୍ରିୟତା ହାସଲ କରିଥିଲା, ଏ କଥା ନିଃସନ୍ଦେହ ଭାବରେ କୁହାଯାଇପାରେ । ଏହାର ପରିପୁଷ୍ଟି ସାଧନ କରିଥାନ୍ତି ପ୍ରସିଦ୍ଧ କଳାବିଦ୍ୱାନ୍ ସି. ଶିବରାମମୂର୍ତ୍ତି । ତାଙ୍କ ମନ୍ତବ୍ୟ ହେଲା :

> There is no doubt that the Ramayana, the Mahabharat, Krishna's story from the Harivansa and Bhagavata were tremendously popular with the early Chola sculptor. (୪୯)

ଏହିପରି ଭାବରେ ଦକ୍ଷିଣ-ଭାରତରେ ଚୋଳମାନଙ୍କ ଶାସନକାଳରେ ରାମାୟଣ-କାହାଣୀକୁ ଅବଲମ୍ବନ କରି ଗଢ଼ିଉଠିଥିବା ସ୍ଥାପତ୍ୟକଳାର ଯଥେଷ୍ଟ ଅଭିବୃଦ୍ଧି ଘଟିଥିଲା । ଚୋଳ ଶାସନକାଳରେ ପ୍ରାୟ ଖ୍ରୀ: ଅ: ୧୦୦୦ରୁ ବ୍ରଞ୍ଜ ଧାତୁରେ ନିର୍ମିତ ମୂର୍ତ୍ତି ଶିଳ୍ପର ଅଭିବୃଦ୍ଧି ଘଟିଥିଲା । ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ୍ ଆଦିଙ୍କ ମୂର୍ତ୍ତିମାନ ବ୍ରଞ୍ଜରେ ତିଆରି କରାଯାଉଥିଲା । ଏହି ମୂର୍ତ୍ତିଗୁଡ଼ିକୁ ପୂଜା କରିବା ଉଦ୍ଦେଶ୍ୟରେ ହିଁ ତିଆରି କରାଯାଉଥିଲା । ଏଥିରୁ କେତେକ ସୁନ୍ଦର ସୁନ୍ଦର ମୂର୍ତ୍ତି ତାମିଲନାଡ଼ୁର ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ନାନ୍ଦନିକତାର ଦୃଷ୍ଟିରୁ ବିଚାର କଲେ ଏହି ମୂର୍ତ୍ତିଗୁଡ଼ିକ ଅତି ସୁନ୍ଦର ଓ ଜୀବନ୍ତ । ଓଡ଼ିଶାରେ ଗଙ୍ଗରାଜତ୍ୱର ଆରମ୍ଭରୁ ଏହି ମୂର୍ତ୍ତିନିର୍ମାଣର କଳାକୌଶଳର ସେଠାରେ ପଡ଼ିଲା ଏବଂ ସେହିଭଳି ମୂର୍ତ୍ତିମାନ ନିର୍ମିତ ହେବାକୁ ଲାଗିଲା । ଏବେ ମଧ୍ୟ ତାହା ଚାଲିଛି । ବେଲଗୁଣ୍ଠା, ବାଲକାଟି ଆଦି ଗ୍ରାମମାନ ସେଥିପାଇଁ ପ୍ରସିଦ୍ଧ ।

ଆମେ ବର୍ତ୍ତମାନ ବିଜୟନଗର ରାଜାମାନଙ୍କ ଶାସନକାଳକୁ ଆସିବା ଯେତେବେଳେ ଦକ୍ଷିଣ ଭାରତରେ ରାମକଥାର ପ୍ରଭାବ ଚରମ ସ୍ତରରେ ଆସି ପହଞ୍ଚିଥିଲା । ଏହା ଏଭଳି ଭାବରେ ଲୋକମାନଙ୍କ ମାନସିକତାକୁ ଅଚ୍ଛନ୍ନ କରିଥିଲା ଯେ ସେହି ସମୟରେ ନିର୍ମିତ ହୋଇଥିବା ପ୍ରାୟ ସମସ୍ତ ମନ୍ଦିରର ଗାତ୍ରରେ ରାମାୟଣ କାହାଣୀଗୁଡ଼ିକୁ ସୁନ୍ଦର ରୂପେ ଖୋଦିତ କରିଯାଇଥିଲେ । ହେଲେ

ସ୍ଥାପତ୍ୟର ସୂକ୍ଷ୍ମ ସ୍ଥୂଳତାକୁ ଏହି ସ୍ଥାପତ୍ୟ ପୂରାମାତ୍ରାରେ ଅନୁସରଣ କରିଥିଲା । ବିଜୟନଗରର ରାଜଧାନୀ ହାମ୍ପିଠାରେ ରାମସ୍ୱାମୀ ମନ୍ଦିରର ନିର୍ମାଣ ହୋଇଥିଲା । ପେଣ୍ଟିକୁଣ୍ଡାଠାରେ ମଧ୍ୟ ସେହିଭଳି ଆଉ ଏକ ମନ୍ଦିର ନିର୍ମିତ ହୋଇଥିଲା । ଏହି ମନ୍ଦିରଗୁଡ଼ିକରେ ରାମାୟଣ-କାହାଣୀସମ୍ବଳିତ ଚିତ୍ରମାନ ଶିଳା-ଫଳକଗୁଡ଼ିକରେ ସ୍ଥାନ ପାଇଥିଲା । ଏଗୁଡ଼ିକରୁ ଅନେକ ଏବେ ଅକ୍ଷତ ଅବସ୍ଥାରେ ଅଛି । ଶ୍ରୀରଙ୍ଗମ୍‌ଠାରେ ଥିବା ରଙ୍ଗନାଥଙ୍କ ମନ୍ଦିର ଗାତ୍ରରେ ମଧ୍ୟ ଅନୁରୂପ ଚିତ୍ରଫଳକ-ମାନ ସ୍ଥାନ ପାଇଛି । କାଞ୍ଚିପୁରମ୍‌ସ୍ଥ ବରଦରାଜଙ୍କ ମନ୍ଦିରରେ ମଧ୍ୟ ହନୁମାନ୍‌ଙ୍କର ସୀତାଙ୍କୁ ଚୂଡ଼ାମଣି ଦେବାର ଦୃଶ୍ୟଟି ଦେଖିବାକୁ ମିଳିଥାଏ । ସେଠାରେ ମଧ୍ୟ ରାମାୟଣ କାହାଣୀକୁ ଆଶ୍ରୟ କରିଥିବା ଏହିପରି ଅନେକ ଚିତ୍ର ଦେଖିବାକୁ ମିଳିଥାଏ । ତାଞ୍ଜୋରଠାରେ ନାୟକ-ରାଜାମାନଙ୍କ ଶାସନକାଳରେ ବିରାଟ ଏକ ରାମମନ୍ଦିର ନିର୍ମିତ ହୋଇଥିଲା । ଏହି ସମୟରେ ବିଜୟନଗରର ସ୍ଥାପତ୍ୟ କଳା ଚରମ ସ୍ତରରେ ପହଞ୍ଚିଥିଲା । ଏଠାରେ ମଧ୍ୟ ଅନେକ ରାମକଥାସମ୍ବଳିତ ଚିତ୍ର ଦେଖିବାକୁ ମିଳେ । ସେମାନଙ୍କ ମଧ୍ୟରେ ପ୍ରଧାନ-ପ୍ରଧାନ ଚିତ୍ରଫଳକଗୁଡ଼ିକ ହେଲା, ଯହିଁରେ ସୁଗ୍ରୀବ ରାମଙ୍କର ଜଣେ ପରମ ବନ୍ଧୁ ଭାବରେ ତାଙ୍କ ପାଖରେ ଅଛନ୍ତି, ରାମଙ୍କ ଅଯୋଧ୍ୟାର ରାଜା ହିସାବରେ ଅଭିଷେକ ହେଉଛି ଏବଂ ରାମ ହନୁମାନ୍‌ଙ୍କୁ ସ୍ନେହପୂର୍ଣ୍ଣ ଆଲିଙ୍ଗନରେ ବାନ୍ଧିରଖିଛନ୍ତି ।

ଉତ୍ତର-ଭାରତରେ ଗୁର୍ଜର-ପ୍ରତିହାରମାନଙ୍କ ସ୍ଥାପତ୍ୟ ଶୈଳୀର ପ୍ରଭାବ ପଡ଼ିଥିଲା । ରାଜସ୍ଥାନର କିରାଡ଼ୁସ୍ଥିତ ସୋମେଶ୍ୱରଙ୍କ ମନ୍ଦିରଗାତ୍ରରେ ରାମାୟଣ-କାହାଣୀକୁ ଅବଲମ୍ବନ କରିଥିବା ସ୍ଥାପତ୍ୟମାନ ସ୍ଥାପିତ । ହନୁମାନ୍‌ଙ୍କର ଅଶୋକବନରେ ବନ୍ଦିନୀ ଅବସ୍ଥାରେ ଥିବା ସୀତାଙ୍କୁ ଗଛରେ ଥାଇ ଦେଖିଥିବାର ଚିତ୍ରଟି ଅତ୍ୟନ୍ତ ସୁନ୍ଦର ଓ ହୃଦୟସ୍ପର୍ଶୀ । ଅନୁରୂପ ଭାବରେ ସେତୁବନ୍ଧ ନିର୍ମାଣ, ବାଲିସୁଗ୍ରୀବ ଯୁଦ୍ଧ ଆଦିକୁ ନେଇ ଚିତ୍ରମାନ ମଧ୍ୟ ଏଠାରେ ସ୍ଥାପିତ । ଆଉ ଏକ ଶିଳାଫଳକର ଶରବିଦ୍ଧ ଅବସ୍ଥାରେ ଲକ୍ଷ୍ମଣଙ୍କର ରାମଙ୍କ କୋଳରେ ଶୋଇଥିବାର ଚିତ୍ରଟି ମଧ୍ୟ ସମଧିକ ହୃଦୟସ୍ପର୍ଶୀ ହୋଇଛି । ହନୁମାନ୍‌ଙ୍କ ଦ୍ୱାରା ସଞ୍ଜୀବନୀ ଔଷଧ ଥିବା ଗନ୍ଧମାର୍ଦ୍ଦନ ପର୍ବତଟି ଆଣିବାର ଦୃଶ୍ୟସମ୍ବଳିତ ଚିତ୍ର ମଧ୍ୟ ଏଠାରେ ଅଛି । କେକିଣ୍ଡାଠାରେ ଥିବା ନୀଳକଣ୍ଠ ମହାଦେବଙ୍କ ମନ୍ଦିରରେ ରାମଙ୍କର ଜଟାୟୁଠାରୁ ସୀତାହରଣର ସମ୍ବାଦ ପାଉଥିବାର ଶିଳାଚିତ୍ର ଦେଖିବାକୁ ମିଳିଥାଏ ।

ପାଳ-ସ୍ଥାପତ୍ୟରେ କିନ୍ତୁ କୃଷ୍ଣକଥା ଯେପରି ପ୍ରାଥମିକତା ପାଇଛି, ରାମକଥା ସେପରି ପାଇନାହିଁ । ରାମକଥାକୁ ନେଇ କ୍ରମିକ ଭାବରେ ଛଅଟି

ହୋଇଥିବା ମୃଣ୍ମୟଫଳକ ଅଥବା ଶିଳାଫଳକ ଏଥିରେ ଦେଖିବାକୁ ମିଳେ-ନାହିଁ । ବିଶେଷ କରି ବାନରମାନଙ୍କୁ ନେଇ କେତେକ ଖୋଦିତ ମୂର୍ତ୍ତି ଦେଖିବାକୁ ମିଳେ । ସେତୁବନ୍ଧ ନିର୍ମାଣସମ୍ପର୍କୀୟ ଚିତ୍ରଫଳକ ସେଗୁଡ଼ିକ ମଧ୍ୟରେ ପ୍ରଧାନ । ଏହି ଖୋଦିତ ଚିତ୍ରମାନ ଉଭୟ ମୃଣ୍ମୟ ଫଳକ ଓ ଶିଳାଫଳକରେ ଦେଖିବାକୁ ମିଳିଥାଏ । ପାଲସ୍ଥାପତ୍ୟରେ ମନ୍ଦିର ନିର୍ମାଣରେ ଅଧିକାଂଶ କ୍ଷେତ୍ରରେ ଇଟାର ବ୍ୟବହାର କରାଯାଉଥିଲା । ସେଥିପାଇଁ ଏହି ସ୍ଥାପତ୍ୟରେ ମୃଣ୍ମୟ-ଫଳକରେ ଅଙ୍କିତ ଚିତ୍ରମାନଙ୍କର ଆଧିକ୍ୟ ଅଛି ।

ଚନ୍ଦେଲମାନଙ୍କ ସ୍ଥାପତ୍ୟରେ ରାମାୟଣକାହାଣୀ ବିଶେଷ ଭାବରେ ସ୍ଥାନ ପାଇନାହିଁ । କେବଳ ଗୋଟିଏ ମାତ୍ର ବିରାଟ୍ ପ୍ରସ୍ତର ନିର୍ମିତ ହନୁମାନ୍‌ଙ୍କ ମୂର୍ତ୍ତି ଆମେ ଖଜୁରାହୋଠାରେ ଦେଖିବାକୁ ପାଇଥାଉଁ । ଏଥିରେ ଥିବା ଶିଳା-ଲେଖରୁ ଜଣାଯାଏ ଯେ ଏହାର ନିର୍ମାଣ ହୋଇଥିଲା ୯୨୨ ଖ୍ରୀ: ଅ:ରେ ।

ହୈହୟ ଓ ଚେଦିମାନଙ୍କ ସ୍ଥାପତ୍ୟରେ ଆମେ ରାମାୟଣକାହାଣୀ ସମ୍ବଳିତ ପଥରଖୋଦିତ ଚିତ୍ରଫଳକମାନ ଦେଖିବାକୁ ପାଇନଥାଉଁ । ରାଜା ମଲୟସିଂହ ନିଜେ ରାମମନ୍ଦିରଟିଏ ନିର୍ମାଣ କରିଥିଲେ ମଧ୍ୟ ସେହି ମନ୍ଦିରଗାତ୍ରରେ ଏଭଳି ଚିତ୍ରଫଳକମାନ ଖଞ୍ଜିନାହାନ୍ତି ।

ଦିଲ୍ଲୀ ଓ ତାହାର ଆଖପାଖ ଅଞ୍ଚଳରେ ଅନେକଗୁଡ଼ିଏ ବିଷ୍ଣୁମନ୍ଦିର ଥିଲା; କାରଣ ସେ ଅଞ୍ଚଳରେ ବୈଷ୍ଣବଧର୍ମର ପ୍ରାଧାନ୍ୟ ବହୁ ବର୍ଷରୁ ରହି ଆସିଥିଲା । କିନ୍ତୁ ୧୨ଶ ଖ୍ରୀ: ଅ: ପରେ ସେଗୁଡ଼ିକ ପ୍ରାୟ ଧ୍ୱଂସ ପାଇଯାଇଥିଲା । କେହି କେହି କହନ୍ତି ଯେ ମୁସଲମାନଙ୍କ ଧର୍ମଗତ ଅତ୍ୟାଚାର ଫଳରେ ଏହା ଘଟିଥିଲା । ଏହି ମନ୍ଦିରଗୁଡ଼ିକର ଗାତ୍ରରେ ନିଶ୍ଚିତ ଭାବରେ ରାମାୟଣ-କାହାଣୀ ଉପରେ ଆଧାରିତ ଶିଳା-ଚିତ୍ରମାନ ଶୋଭା ପାଉଥିବ । କେତେକ ମନ୍ଦିରରେ ରାମ,ଲକ୍ଷ୍ମଣ, ସୀତା, ହନୁମାନ୍ ଆଦିଙ୍କ ମୂର୍ତ୍ତିମାନ ମଧ୍ୟ ଥିବ । କିନ୍ତୁ ସେ ସବୁ ଆଜି ଅନୁପଲବ୍‌ଧ । ବିଷ୍ଣୁଗିରିଠାରେ ଥିବା ବିଷ୍ଣୁମନ୍ଦିରର (୧୨ଶ ଶତାବ୍ଦୀ) ଅବଶେଷ ସ୍ୱରୂପ ବିରାଟ ଏକ ବିଷ୍ଣୁମୂର୍ତ୍ତି ବର୍ତ୍ତମାନ ଜାତୀୟ ସଂଗ୍ରହାଳୟରେ ସଂରକ୍ଷିତ । ଏଠାରୁ ମିଳିଥିବା ଗୋଟିଏ ଦୀର୍ଘ ଓ ବିସ୍ତୃତ ଦ୍ୱାରପିଣ୍ଡିରେ (Extended lintel) ରାମକଥାସମ୍ବଳିତ ଶିଳାଚିତ୍ରମାନ ଖୋଦିତ ହୋଇଛି । ସୀତାଙ୍କ ଅଶୋକବନରେ ଅବସ୍ଥାନ, ହନୁମାନ୍‌ଙ୍କ ଦ୍ୱାରା ଅଶୋକବନର ଧ୍ୱଂସସାଧନ ଆଦି ଚିତ୍ରମାନ ଏଠାରେ ଦେଖିବାକୁ ମିଳିଥାଏ ।

ଉପରୋକ୍ତ ଆଲୋଚନା ଦୃଷ୍ଟିରୁ ଆମେ ସ୍ପଷ୍ଟ ଭାବରେ ଜାଣିପାରିବା ଯେ ରାମାୟଣ ପରଂପରା ଭାରତୀୟ ସଂସ୍କୃତିର ବିଭିନ୍ନ ବିଭାବ ଉପରେ ଏକ ଗଭୀର ପ୍ରଭାବ ଯୁଗ-ଯୁଗ ଧରି ପକାଇ ଆସିଛି । ଏହି ପ୍ରଭାବ ଭାରତୀୟମାନଙ୍କ ଅସ୍ଥି-ମଜ୍ଜା, ରକ୍ତ-ମାଂସ ଓ ମନଃ-ପ୍ରାଣକୁ ସତେ ଯେମିତି ଭେଦି ଯାଇଛି । ରାମାୟଣ ଗ୍ରନ୍ଥରେ ପ୍ରକଟିତ ଉଭୟ ଦିବ୍ୟ ଓ ମାନବୀୟ ଚିନ୍ତା, ଚେତନା ଓ ଉପଲବ୍ଧି ସାରା ଭାରତୀୟ ଜନମାନସ ଆଗରେ ଚିରନ୍ତନ ଆଦର୍ଶ ଭାବରେ ଠିଆହୋଇ ରହିଛି । ଏହି ଆଦର୍ଶର ପ୍ରଧାପଟି ଦିଗ୍‌ଦର୍ଶନ ଦେଉଥିବା କାରଣରୁ ଭାରତୀୟମାନେ ସେମାନଙ୍କ ଭାରତୀୟତାକୁ ରକ୍ଷା କରିବା ଦିଗରେ ଯଥେଷ୍ଟ ସମର୍ଥ ହୋଇପାରିଛନ୍ତି । ସେମାନେ ଯେତେଦିନ ପର୍ଯ୍ୟନ୍ତ ଦିଗଭ୍ରଷ୍ଟ ହୋଇନାହାନ୍ତି, ସେତେଦିନ ପର୍ଯ୍ୟନ୍ତ ଏହି ସାମର୍ଥ୍ୟ ସେମାନଙ୍କଠାରେ ରହିଥିବ ।

## ଟିପ୍ପଣୀ

୧ । ରାମାୟଣ, ୧ । ୨ । ୩୭ ।

୧-କ । Kapila Vastyayana, "Ramayana in the Arts of Asia", The Ramayana Tradition in Asia, Sahitya Akademi, (1998 print) p. p. 684-685.

୧-ଖ । Madhusudan Pati, The Ramayana of Valmiki : A Reading, Introduction, Orissa Sahitya Akademi (1999), p. 2.

୨ । ରାମାୟଣ ୩ । ୩୭ । ୧୩ ।

୩ । ଋଗ୍ବେଦ, ୬ । ୧୧୭ । ୧୧ ।

୪ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି, ସସ୍ତା ସାହିତ୍ୟମଣ୍ଡଳ, ୧୯୮୭, ପୃ. ୨୯୦ ।

୫ । Umasankar Joshi, The Ramayana Tradition in Asia, Sahitya Akademi, 1998 Reprint, Preface, p.v.

୬ । ମହାଭାରତ, ଆଦିପର୍ବ, ୨ । ୩୮୫ ।

୭ । T. S. Eliot, "Tradition and Individual Talent", Selected Essays, P. 14.

୮ । ବୁଲ୍କେ, ରାମାୟଣ ତତ୍ତ୍ୱ, ୧ । ୮ ।

୯ । V. Raghavan, Ranga Swami Ayangar Memorial Volume, Valmiki and Kalidasa, P. 412.

୧୦ । ଶାନ୍ତକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି, ସସ୍ତା ସାହିତ୍ୟମଣ୍ଡଳ, ୧୯୮୭, ପୃ. ୩୦୩ ।

୧୧ । R. V. Jagirdar, Drama in Sanskrit Literature, p.14

୧୨ । ଶାନ୍ତକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସସ୍କୃତି, ସସ୍ତା ସାହିତ୍ୟ ମଣ୍ଡଳ, ୧୯୮୭, ପୃ. ୩୦୭ ।

୧୩ । K. M. George, "Malayalam", The Cultural Heritage of India vol. v. The Ramakrishna Mission Institute of Culture, Calcutta, P. 508.

୧୪ । Suntikumar Chatterjee, "Preface," The Cultural Heritage of India, vol. v, The Ramakrishna Mission, Institute of Culture, Calcutta. p. xxiii.

୧୫ । G. N. Reddy, "Teluge," The Cultural Heritage of India, Vol. V, P. 623.

୧୬ । C. R. Sharma, "Ramayana in Telgu Literature and Folklore," The Ramayan Tradition in Asia, Sahitya Akademi (1998 Reprint), P. 216.

୧୭ । T. Burrow, 'Some Dravidian Words in Sanskrit,' Transactions of the Philosophical Society (1945), Introduction, pp. iii-iv.

୧୮ । M. Srinivas Iyengor, Tamil Studies, First Series (The Guardian Press, Madras, 1914), PP. 154-55 and 168.

୧୯ । T. P. Meenakshi Sundaram, A. History of Tamil Literature, (Annamali University, 1965), P. 102.

୨୦ । Justice A. Maharajan, Kamban, p. 1.

୨୧ । S. S. Kohli, "Punjabi", The Cultural Heritage of India, Vol. V, p. 581.

୨୨ । Madhusudan Pati, op. cit, p. 145.

୨୩ । Ibid, p. 9.

୨୪ । ସୁରେନ୍ଦ୍ରନାଥ ଶତପଥୀ, ଭାରତୀୟ ସଂସ୍କୃତି, ଷଷ୍ଠ ଖଣ୍ଡ, ଓଡ଼ିଶା ବୁକ୍‌ଷ୍ଟୋର୍. କଟକ, (୧୯୯୬), ପୃ. ୭୭-୮୯ ।

୨୫ । ଶାନ୍ତିକୁମାର ନାନୁରାମ ବ୍ୟାସ, ରାମାୟଣକାଳୀନ ସଂସ୍କୃତି, ପୃ. ୩୦୭-୩୦୮ ।

୨୬ । V. Raghavan, "The Ramayana in Sanskrit Literature," The Ramayana Tradition in Asia, Sahitya Akademi, 1998 (Rrprint), p. 19.

୨୭ । ତୁଳସୀଦାସ, ରାମଚରିତମାନସ, ୧ । ୩୨ । ୩ ।

୨୮ । V. A. Smith, Akbar the Great Mogul, p. 417.

୨୯ । V. Raghavan (Ed), Bhumndi Ramayan, p. 21

୩୦ । Hajari Prasad Dwivedi, "Hindi" The Cultural Heritage of India, vol v., p. 492.

୩୧ । ତୁଳସୀଦାସ, ରାମଚରିତମାନସ, ୭ । ୧୦୨ ।

୩୨ । ତତ୍ରୈବ, ୧ । ୯ ।

୩୩ । Bnabatosh Datta, "The Ramayana in Bengal", The Ramayan Tradition in Asia (1998 Reprint) Sahitya Akademi, p. 546.

୩୪ । Asit Kumar Banerjee, "Two Immortal Poets: A Comparison," The Ramayana in Eastern India, Prajna (1963), p. 151.

୩୪-କ । Sukumari Bhattacharji, "Validity of the Ramayan Values", The Ramayana Tradition in Asia, Sahitya Akademi (1998 Reprint) p. 92.

୩୫ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସାରଳା ସାହିତ୍ୟରେ ଐତିହାସିକ ତଥ୍ୟ, ପୃ. ୨୦୭ ।

୩୬ । R. D. Benerjee, History of Orissa, p. 252.

୩୭ । Ibid, p. 271.

୩୮ । Gauri Kumar. Brahma, 'The Ramayana in Orissa, A. K. Banerjee (Ed), The Ramayan in Eastern India, Prajna (1983), p. 67.

୩୯ । Narendra Nath Mishra, 'Folk-Elements in Jagmohan Ramayana', Ibid, p. 75.

୪୦ । Kahnucharan Mishra, 'Oriya,' The Cultural Heritage of India, vol. v, p, 569.

୪୧ । S. Radhakrishnan, Faith Renewed, Hind Pocket Books (1979), p. 37.

୪୨ । C. Sivaramamurti "The Ramayana in Indian Sculpture," The Ramayan Tradition in Asia, (1998 Reprint), Sahitya Akademi, p. 647.

୪୩ । Epigraphia Indica, vol. xviii, p. 329.

୪୪ । ରାମାୟଣ, ୧ । ୧ । ୧ ।

୪୫ । Epigraphia Indica, vol: viii, p. 161.

୪୬ । ରାମାୟଣ, ୨ । ୨ । ୩୩ ।

୪୭ । Epigraphia Indica, vol. xix, p. 301.

୪୮ । ରାମାୟଣ, ୧ । ୧ । ୨ ।

୪୯ । C, Sivaramamurti, op. cit., p. 641.

—o—

# ରାମାୟଣକାଳୀନ ସ୍ଥାନପରିଚୟ

| | | |
|---|---|---|
| ଅଗସ୍ତ୍ୟ-ଆଶ୍ରମ | — | ନାସିକଠାରୁ ୩୮ କିଲୋମିଟର ଦକ୍ଷିଣ-ପୂର୍ବ । |
| ଅର୍ଦ୍ଧଗଙ୍ଗା | — | କାବେରୀ । |
| ଅପର ତାଳ | — | ରାମପୁରର ଉତ୍ତରରେ ଅବସ୍ଥିତ ରାମଗଙ୍ଗାର ତୀରବର୍ତ୍ତୀ ପ୍ରଦେଶ । |
| ଅପର ବିଦେହ | — | ରଙ୍ଗପୁର ଓ ଦିନାଜପୁର । |
| ଅର୍ବୁଦ | — | ଆବୁ ପର୍ବତ । |
| ଅଯୋଧ୍ୟା | — | ସରଯୂର ଦକ୍ଷିଣ ତଟରେ ଅବସ୍ଥିତ । |
| ଅଙ୍ଗ | — | ବିହାର ଭାଗଲପୁର ଓ ମୁଙ୍ଗେର ଜିଲ୍ଲା ଯାହାକି ଉତ୍ତରରେ କୋଶୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । |
| ଅବନ୍ତୀ | — | ମାଲଓ୍ୱାର ପ୍ରାଚୀନ ରାଜଧାନୀ, ଆଧୁନିକ ମାଲଓ୍ୱା ଓ ନିମାର ଏହା ଦୁଇଭାଗରେ ବିଭକ୍ତ ହୋଇଥିଲା, ଯଥା ଉତ୍ତର ଅବନ୍ତୀ ରାଜଧାନୀ, ଉଜ୍ଜୟିନୀ) ଓ ଦକ୍ଷିଣ ଅବନ୍ତୀ ରାଜଧାନୀ) ମାହିଷ୍ମତୀ) |
| ଅଂଶୁମତୀ | — | ଯମୁନା ନଦୀ । |
| ଆନର୍ତ୍ତ | — | ଉତ୍ତର ଗୁଜୁରାଟ । |
| ଆପଣ | — | ଅଙ୍ଗରାଜ୍ୟର ଅନ୍ତର୍ଗତ ଏକ ନଗର ଯାହାକି ମହୀ ନଦୀର ଉତ୍ତରକୁ ଅବସ୍ଥିତ ଥିଲା । |
| ଇକ୍ଷୁମତୀ | — | ଫାରୁକାବାଦ ଜିଲାର ଇକ୍ଷୁନା ନଦୀ । |
| ଇନ୍ଦ୍ରପ୍ରସ୍ଥ | — | ଦିଲ୍ଲୀ । |
| ଇରାବତୀ | — | ରାଭିନଦୀ । |
| ଇଲ୍ୱଳ | — | ଏଲୋରା । |
| ଉତ୍କଳ | — | ଓଡ଼ିଶା । |
| ଉତ୍ତର କୁରୁ | — | କାଶ୍ମୀରର ଉତ୍ତରରେ ଅବସ୍ଥିତ କୌଣସି ଅଞ୍ଚଳ । |
| ଉତ୍ତର କୋଶଳ | — | ସରଯୂନଦୀ କୋଶଳ ରାଜ୍ୟକୁ ଦୁଇଭାଗରେ ବିଭକ୍ତ କରୁଥିଲା । ଏହାର ଉତ୍ତର ପଟଟିକୁ କୁହାଯାଉଥିଲା ଉତ୍ତର |

କୋଶଳ ଏବଂ ଦକ୍ଷିଣପଟ୍ଟିକୁ କୁହାଯାଉଥିଲା ଦକ୍ଷିଣ କୋଶଳ ।

ଋଷିରଗା — ରାମଗଙ୍ଗା ନଦୀ ।
ଉଶୀନର — ଅବିଭକ୍ତ ପଞ୍ଜାବ ମଧ୍ୟରେ ଥିବା ଏକ ରାଜ୍ୟ ।
ଋଷ୍ୟମୂକ — ବେଲାରି ଜିଲ୍ଲାସ୍ଥ ହାମ୍ପିର ଉତ୍ତର ଦିଗରେ ଥିବା କୃଷ୍ଣଗିରି ପର୍ବତ ।
ଋଷ୍ୟଶୃଙ୍ଗ-ଆଶ୍ରମ — ଭାଗଲପୁର ଜିଲ୍ଲାସ୍ଥ ମାଧୀପୁର ତହସିଲ୍ ଅନ୍ତର୍ଗତ ସିଂହେଶ୍ୱର ।
କମ୍ବୋଜ ବା କାମ୍ବୋଜ—ସିନ୍ଧୁ ନଦୀର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ ଏକ ରାଜ୍ୟ ଯାହା ଜାତିଆ ଘୋଡ଼ାମାନଙ୍କ ପାଇଁ ପ୍ରସିଦ୍ଧ ଥିଲା ।
କର୍ଣ୍ଣାଟ — ଆଧୁନିକ କର୍ଣ୍ଣାଟକ ଓ ମହାରାଷ୍ଟ୍ରର କେତେକ ଅଞ୍ଚଳ ।
କଳିଙ୍ଗ — ଉତ୍କଳର ଦକ୍ଷିଣକୁ ଆନ୍ଧ୍ର ରାଜ୍ୟକୁ ଲାଗିକରିଥିବା ରାଜ୍ୟ ।
କାଶୀ — ବାରାଣସୀ ଯାହାକି ପ୍ରୟାଗଠାରୁ ୧୨୮ କିଲୋମିଟର ତଳେ ଗଙ୍ଗାର ଉତ୍ତରତଟରେ ଅବସ୍ଥିତ । ଏହା ମଧ୍ୟ ପ୍ରାଚୀନ ଷୋହଳ ବୌଦ୍ଧ ମହାଜନପଦ ମଧ୍ୟରୁ ଏକତମ ।
କାଞ୍ଚୀ — କାଞ୍ଜିବରମ୍ ।
କାନ୍ୟକୁବ୍ଜ — କନୌଜ ।
କାମ୍ପିଲ୍ୟ — ଫାରୁକାବାଦ ଜିଲ୍ଲାସ୍ଥ କମ୍ପିଲ୍ ।
କାମାଶ୍ରମ — ଗଙ୍ଗା ଓ ସରଯୂର ସଙ୍ଗମ-ସ୍ଥଳ ।
କାମରୂପ — ଆସାମ ।
କାରୁପଥ — ସିନ୍ଧୁନଦୀର ପଶ୍ଚିମ ତୀରରେ ଅବସ୍ଥିତ କାରବାଗ ଯେଉଁଠି ଲକ୍ଷ୍ମଣ-ପୁତ୍ର ଚନ୍ଦ୍ରକେତୁ ରାଜା ହୋଇଥିଲେ ।
କାଳନ୍ଦୀ — ଯମୁନା ନଦୀ
କାଶୀ — ଏକ ପ୍ରାଚୀନ ରାଜ୍ୟ ଯାହାର ରାଜଧାନୀ ଥିଲା ବାରାଣସୀ ।
କିଷ୍କିନ୍ଧା — ହାମ୍ପିଠାରୁ ୬ କିଲୋମିଟର ଦୂରରେ ଅବସ୍ଥିତ ତୁଙ୍ଗଭଦ୍ରା ନଦୀତଟସ୍ଥ ବର୍ତ୍ତମାନର ଅନାଗୋନ୍ଦୀ ।
କିରାତ — ତିବ୍ବତ; କିରାତମାନଙ୍କର ରାଜ୍ୟକୁ କୁହାଯାଉଥିଲା କିରାତ ଯାହାକି ଉତ୍ତର-ପୂର୍ବ ଭାରତରେ ମଧ୍ୟ ବିସ୍ତୃତ ଥିଲା ।
କୀକଟ — ପ୍ରାଚୀନ ମଗଧ ବା ଗୟା ଓ ପାଟନା ଜିଲ୍ଲା ।

| | | |
|---|---|---|
| କୁରୁଜାଙ୍ଗଳ | — | ଗଙ୍ଗା ଓ କୁରୁକ୍ଷେତ୍ରର ମଧ୍ୟବର୍ତ୍ତୀ ଅଞ୍ଚଳ । |
| କୁଳନ୍ଦ | — | ସାହାରାଣପୁର ଜିଲ୍ଲା । |
| କୁଶାବତୀ | — | ରାମଙ୍କ ପୁତ୍ର କୁଶଙ୍କ ଦ୍ୱାରା ସ୍ଥାପିତ ନଗର; ଏହା ବୁଦ୍ଧଙ୍କ ପରିନିର୍ବାଣ ପାଇଥିବା କୁଶୀନଗରର ପ୍ରାଚୀନ ନାମ ଯାହାକି ବର୍ତ୍ତମାନ ଗଣ୍ଡକ ନଦୀତଟରେ ଅବସ୍ଥିତ କୋଶିଆ ଗ୍ରାମ ନାମରେ ଅଭିହିତ । |
| କୁଟିକୋଷ୍ଟିକା | — | ରାମଗଙ୍ଗା ନଦୀରୁ ବାହାରିଥିବା ଶାଖାନଦୀ କୌଶଲ୍ୟା ବା କୌଶଲ୍ଲ । |
| କୃଷ୍ଣ-ବେଣୀ | — | କୃଷ୍ଣା ଓ ବେଣା ନଦୀର ମିଳିତ ଧାର । |
| କୃତମାଳା | — | ଆଧୁନିକ ବୈଗା ନଦୀ ଯାହାର ତୀରରେ ମଦୁରା ନଗର ଅବସ୍ଥିତ । |
| କେକୟ | — | ଝେଲମ ଓ ଚେନାବ୍‌ର ମଧ୍ୟବର୍ତ୍ତୀ ଅଞ୍ଚଳ, ଅବିଭକ୍ତ ପଞ୍ଜାବର ଆଧୁନିକ ଶାହପୁର ଜିଲ୍ଲା ଏବଂ ଯାହା ଥିଲା କୈକେୟୀଙ୍କର ଜନ୍ମଭୂମି । |
| କେରଳ | — | ଆଧୁନିକ କେରଳ । |
| କୈଲାଶ | — | ମାନସ-ସରୋବରରୁ ୪୦ କିଲୋମିଟର ଦୂରରେ ଥିବା ପର୍ବତ । |
| କୌଶାମ୍ବୀ | — | ପ୍ରୟାଗଠାରୁ ୪୮ କିଲୋମିଟର ପଶ୍ଚିମରେ ଯମୁନା ନଦୀର ବାମ ତୀରରେ ଅବସ୍ଥିତ ଉତ୍ତର ପ୍ରଦେଶର ଆଧୁନିକ କୋସମ ଗ୍ରାମ । କୋଶମ୍ବ ମୁନିଙ୍କ ଆଶ୍ରମ ନିକଟରେ ଥିବାରୁ ତାଙ୍କର ନାମ ଅନୁସାରେ ଏହାର ନାମ ହୋଇଥିଲା କୌଶାମ୍ବୀ । |
| କୌଶିକୀ | — | ଗଙ୍ଗାର ଏକ ଶାଖା କୋଶୀ ନଦୀ । |
| ଗନ୍ଧର୍ବ | — | କୁନାର୍ ଓ ସିନ୍ଧୁ ନଦୀ ମଧ୍ୟସ୍ଥ କାବୁଲ ନଦୀ ତୀରସ୍ଥ ଏକ ଅଞ୍ଚଳ । |
| ଗାନ୍ଧାର | — | ତକ୍ଷଶିଳାରୁ କାବୁଲ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟ । |
| ଗିରିବ୍ରଜ | — | କେକୟ ରାଜ୍ୟର ରାଜଧାନୀ ଯାହାକି ଝେଲମ୍ ନଦୀତୀରରେ ଅବସ୍ଥିତ ଥିଲା ଏବଂ ଯାହାର ଅନ୍ୟ ନାମ ଥିଲା ରାଜଗୃହ; ଆଧୁନିକ ଜଲାଲପୁର । |

ଗୋକର୍ଣ୍ଣ — ଗଙ୍ଗୋତ୍ରୀଠାରୁ ୩ କିଲୋମିଟର ଦୂରରେ ଆଗକୁ ଥିବା ଗୋମୁଖୀ ଯେଉଁଠି ଭଗୀରଥ ଗଙ୍ଗାଦେବୀଙ୍କୁ ପୃଥିବୀକୁ ଆନୟନ ଲାଗି ତପସ୍ୟା କରିଥିଲେ ।

ଗୋପ୍ରତାର — ସରଯୂ ନଦୀ ତୀରସ୍ଥ ଆଧୁନିକ ଗୋପ୍ତାର ଯେଉଁଠି ରାମ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ଗୋମତୀ — ଯେଉଁ ନଦୀ ତଟରେ ଲକ୍ଷ୍ନୌ ଅବସ୍ଥିତ ।

ଗୌତମାଶ୍ରମ — ଜନକପୁରଠାରୁ ୩୭ କିଲୋମିଟର ଦକ୍ଷିଣ-ପଶ୍ଚିମରେ ଦରଭଙ୍ଗରେ ଅବସ୍ଥିତ ଯାହାର ଆଧୁନିକ ନାମ ଅହଲ୍ୟା-ସ୍ଥାନ ।

ଚମ୍ପା — ବିହାରର ଭାଗଲପୁର । ଏହା ଥିଲା ଅଙ୍ଗଦେଶର ରାଜଧାନୀ । ଏହା ଚମ୍ପା ନଦୀ (ଆଧୁନିକ ଚନ୍ଦନ) ଓ ଗଙ୍ଗା ନଦୀର ସଙ୍ଗମସ୍ଥଳରେ ଅବସ୍ଥିତ ଥିଲା ।

ଚର୍ମଣ୍ୱତୀ — ଚମ୍ବଲ୍ ନଦୀ ।

ଚିତ୍ରକୂଟ — ଆଧୁନିକ କାମତାନାଥଗିରି ନାମକ ପର୍ବତ ଯାହାକି ଚିତ୍ରକୂଟ ରେଲ୍ ଷ୍ଟେସନ୍ଠାରୁ ୭ କିଲୋମିଟର ଦୂରରେ ଅବସ୍ଥିତ; ଚିତ୍ରକୂଟ ପର୍ବତରୁ ପ୍ରବାହିତ ଏକ ନଦୀ ମଧ୍ୟ ଚିତ୍ରକୂଟ ନାମରେ ନାମିତ ହୋଇଥିଲା ।

ଚିତ୍ରୋତ୍ପଳା — ମହାନଦୀ ।

ଚେର — ମାଲବାରର କିଛି ଅଂଶ ଓ କୋଏମ୍ବାଟୁରକୁ ନେଇ ଗଠିତ ରାଜ୍ୟ ।

ଚୋଳ — କୃଷ୍ଣା ନଦୀ ଓ କାବେରୀ ନଦୀ ମଧ୍ୟରେ ଥିବା ରାଜ୍ୟ ।

ଜନସ୍ଥାନ — ଔରଙ୍ଗାବାଦରୁ କୃଷ୍ଣା-ଗୋଦାବରୀ ମଧ୍ୟରେ ଥିବା ଅଞ୍ଚଳ ।

ଜାବାଲିପତ୍ତନ — ମଧ୍ୟପ୍ରଦେଶର ଜବଲପୁର ।

ତକ୍ଷଶିଳା — ପୂର୍ବ ଗାନ୍ଧାରର ରାଜଧାନୀ ଯାହାକି ବର୍ତ୍ତମାନ ରାଓଲପିଣ୍ଡି ଜିଲ୍ଲାର (ପାକିସ୍ଥାନ) ତକ୍ଷିଲା ଗ୍ରାମ ନାମରେ ନାମିତ ।

ତମସା — ଏହି ନାମର ଦୁଇଟି ନଦୀ ଥିଲା; ଗୋଟିଏ ଥିଲା ଗଙ୍ଗାର ଦକ୍ଷିଣରେ ଯାହା କୂଳରେ ଥିଲା ବାଲ୍ମୀକି ମୁନିଙ୍କ ଆଶ୍ରମ; ଏବଂ ଦ୍ୱିତୀୟଟି ଥିଲା ଅଯୋଧ୍ୟାର ଦକ୍ଷିଣରେ ଗୋମତୀ ଓ ସରଯୂ ନଦୀ ମଧ୍ୟରେ ପ୍ରବାହିତ ।

ତାମ୍ରପର୍ଣ୍ଣୀ — ତିନ୍ନେବେଲି ଜିଲ୍ଲାର ଆଧୁନିକ ତାମ୍ରବର୍ଣ୍ଣୀ ନଦୀ ଯାହାକି ପ୍ରାଚୀନ ପାଣ୍ଡ୍ୟମାନଙ୍କ ରାଜ୍ୟରେ ପ୍ରବାହିତ ହେଉଥିଲା, ଆଧୁନିକ ଶ୍ରୀଲଙ୍କାକୁ ମଧ୍ୟ ବୁଝାଯାଉଥିଲା ତାମ୍ରପର୍ଣ୍ଣୀ (ଅଶୋକଙ୍କ ଦ୍ୱିତୀୟ ଅନୁଶାସନ ଦ୍ରଷ୍ଟବ୍ୟ) ।

ତ୍ରିକୂଟ — ଦକ୍ଷିଣ-ପୂର୍ବ ଲଙ୍କାର ଏକ ପର୍ବତ ।

ଦକ୍ଷିଣ କୋଶଳ — ଆଧୁନିକ ଛତିଶଗଡ଼ ଅଞ୍ଚଳ ଯାହାର ପରିସୀମା ଓଡ଼ିଶାର ସମ୍ବଲପୁର ଓ ବଲାଙ୍ଗିର ଜିଲା ପର୍ଯ୍ୟନ୍ତ ମଧ୍ୟ ବ୍ୟାପିଥିଲା । ବିଭାଜକ ରେଖା ସରଯୂ ନଦୀକୁ ଧରିଲେ, ଏହାର ଦକ୍ଷିଣ ପଟରେ ବିସ୍ତୃତ ଥିବା ଅଞ୍ଚଳକୁ ବୁଝାଯାଉଥିଲା ଦକ୍ଷିଣ କୋଶଳ ।

ଦକ୍ଷିଣାପଥ — ନର୍ମଦାର ଦକ୍ଷିଣକୁ ଅବସ୍ଥିତ ଥିବା ଦକ୍ଷିଣ ଭାରତ ।

ଦଣ୍ଡକାରଣ୍ୟ — ଚିତ୍ରକୂଟଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ବନଭୂମି; ଡ଼ଃ ଭଣ୍ଡାରକରଙ୍କ ଅନୁସାରେ ଆଧୁନିକ ମହାରାଷ୍ଟ୍ର ।

ଦର୍ଦ୍ଦୁର ପର୍ବତ — ନୀଳଗିରି ।

ଦଶାର୍ଣ୍ଣ — ଦଶାର୍ଣ୍ଣ ନାମଧେୟ ନଦୀଦ୍ୱାରା ଧୌତ ଅଞ୍ଚଳ ଯାହାକି ମଧ୍ୟପ୍ରଦେଶର ବିଦିଶା ଅଞ୍ଚଳ ବୋଲି ଚିହ୍ନିତ ।

ଦୃଷଦ୍‌ବତୀ — ସରସ୍ୱତୀ ଓ ଯମୁନା ନଦୀ ମଧ୍ୟରେ ପ୍ରବାହିତ ଚିତାଙ୍ଗ ନଦୀ ।

ଧର୍ମାରଣ୍ୟ — ସତ୍ୟଯୁଗରେ (ରାମଙ୍କ ପୂର୍ବବର୍ତ୍ତୀ) ଉତ୍କଳରେ ଥିବା ଆର୍ଯ୍ୟମାନଙ୍କ ଉପନିବେଶ ।

ନଳିନୀ — ବ୍ରହ୍ମପୁତ୍ର ନଦୀ ।

ନନ୍ଦିଗ୍ରାମ — ଅଯୋଧ୍ୟାଠାରୁ ୧୩ କିଲୋମିଟର ଦକ୍ଷିଣରେ ଅବସ୍ଥିତ ଆଧୁନିକ ନନ୍ଦଗାଁ ।

ନୈମିଷାରଣ୍ୟ — ଗୋମତୀ ନଦୀତଟସ୍ଥ ଆଧୁନିକ ନିମସର ଯାହାକି ଲକ୍ଷ୍ନୌଠାରୁ ୭୨ କିଲୋମିଟର ଉତ୍ତର-ପଶ୍ଚିମରେ ଅବସ୍ଥିତ ।

ପଞ୍ଚବଟୀ — ଏହା ଜନସ୍ଥାନ ଭିତରେ ଥିଲା କିମ୍ବା ଜନସ୍ଥାନର ସୀମାରେ ଥିଲା, ସମ୍ଭବତଃ ଆଧୁନିକ ନାସିକ ।

ପମ୍ପା — ଋଷ୍ୟମୂକ ପର୍ବତରୁ ବାହାରିଥିବା ତୁଙ୍ଗଭଦ୍ରାର ଏକ ଉପନଦୀ ।

| | | |
|---|---|---|
| ପଞ୍ଚାଳ | — | ରୋହିଲଖଣ୍ଡ; ଭାଗୀରଥୀ ନଦୀକୁ ବିଭାଜକ ରେଖା ଧରି ଏହା ଦୁଇଭାଗରେ ବିଭକ୍ତ ହୋଇଥିଲା, ଯଥା, ଉତ୍ତରପଞ୍ଚାଳ ଓ ଦକ୍ଷିଣ ପଞ୍ଚାଳ । ଉତ୍ତର ପଞ୍ଚାଳର ରାଜଧାନୀ ଥିଲା ଅହିଚ୍ଛତ୍ର (ଆଧୁନିକ ରାମନଗର) ଏବଂ ଦକ୍ଷିଣ ପଞ୍ଚାଳର ରାଜଧାନୀ ଥିଲା କାମ୍ପିଲ୍ୟନଗର (ଆଧୁନିକ କାମ୍ପିଲ) । ଏହି ସ୍ଥାନଦ୍ୱୟ ଯଥାକ୍ରମେ ବରେଲି ଓ ଫାରୁକାବାଦ ଜିଲାରେ ଅବସ୍ଥିତ । |
| ପାଣ୍ଡ୍ୟ | — | ତିନ୍ନେଭେଲି ଓ ମଦୁରା ଜିଲା (ତାମିଲନାଡୁରେ) । |
| ପୁଷ୍କଳାବତୀ | — | ସ୍ୱାଟ୍ ଓ କାବୁଲ୍ ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ବର୍ତ୍ତମାନର ଚୂରସଦ୍ଦା । |
| ପ୍ରସ୍ରବଣ ପର୍ବତ | — | ତୁଙ୍ଗଭଦ୍ରା ନଦୀ ନିକଟସ୍ଥ ଏକ ପର୍ବତମାଳା । |
| ପ୍ରାଗ୍‌ଜ୍ୟୋତିଷ | — | କାମରୂପର ରାଜଧାନୀ ଆଧୁନିକ ଗୌହାଟୀ । |
| ବାହ୍ଲୀକ | — | ବଲ୍‌ଖ । |
| ବ୍ରହ୍ମାବର୍ତ୍ତ | — | ସରସ୍ୱତୀ ଓ ଦୃଷଦ୍‌ବତୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ । |
| ବ୍ରହ୍ମବର୍ଦ୍ଧନ | — | ବନାରସ । |
| ମଗଧ | — | ଦକ୍ଷିଣ ବିହାରସ୍ଥ ପାଟଣା ଓ ଗୟାଜିଲା । |
| ମତଙ୍ଗାଶ୍ରମ | — | ବେଲାରୀ ଜିଲାର ପମ୍ପାନଦୀ ତଟରେ ଅବସ୍ଥିତ । |
| ମତ୍ସ୍ୟଦେଶ | — | ପୂର୍ବତନ ଗଡ଼ଜାତ ଅଲଓ୍ୱାର, ଭରତପୁର ଓ ଜୟପୁରର କ୍ଷୁଦ୍ରାଂଶ (ବୁଦ୍ଧକାଳୀନ ୧୬ ଜନପଦରୁ ଏକତମ ।) |
| ମଦ୍ର | — | ଚେନାବ୍‌ର ପୂର୍ବରେ ଅବସ୍ଥିତ ଉତ୍ତର ପଞ୍ଜାବର ଏକ ଜନପଦ । |
| ମଧୁପୁରୀ | — | ମଥୁରା ଯାହାକି ଶତ୍ରୁଘ୍ନଙ୍କଦ୍ୱାରା ନିର୍ମିତ ହୋଇଥିଲା । |
| ମନ୍ଦାକିନୀ | — | ଚିତ୍ରକୂଟ ପର୍ବତର ଧାରେ ଧାରେ ବହୁଥିବା ନଦୀ ଯାହାକି ଯମୁନାରେ ଯାଇ ମିଳିତ ହୋଇଛି । |
| ମଲଦ | — | ଗଙ୍ଗାର ପୂର୍ବତଟରେ ଅବସ୍ଥିତ ଜନପଦ ଯାହାକୁ ବର୍ତ୍ତମାନ ଲୋକେ ମାଲଦା ବୋଲି କହୁଥାନ୍ତି । |
| ମଲୟଗିରି | — | ପଶ୍ଚିମଘାଟ ପର୍ବତମାଳାର ଦକ୍ଷିଣଭାଗ ଯାହା ଚନ୍ଦନ ବୃକ୍ଷର ଅରଣ୍ୟପାଇଁ ପ୍ରସିଦ୍ଧ । |
| ମଲ୍ଲଦେଶ | — | ମୁଲତାନ୍ ଜିଲା । |

| | | |
|---|---|---|
| ମହେନ୍ଦ୍ର ପର୍ବତ | — | ପୂର୍ବଘାଟ ପର୍ବତମାଳାର ଅଂଶବିଶେଷ ଯାହା ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ । |
| ମହୋଦଧି | — | ବଙ୍ଗୋପସାଗର । |
| ମାଗଧୀ | — | ଶୋନ୍ ନଦୀ । |
| ମାଲ୍ୟବାନ୍ ପର୍ବତ | — | ପ୍ରସ୍ରବଣ ପର୍ବତମାଳାର ଏକ ଶିଖର । |
| ମାଲିନୀ | — | ଅଯୋଧ୍ୟାର ଉତ୍ତରରେ ସରଯୂ ନଦୀରେ ମିଳିତ ହେଉଥିବା ଏକ ନଦୀ ଯାହାର ଆଧୁନିକ ନାମ ଶୁକ ନଦୀ । |
| ମାହିଷ୍ମତୀ | — | ଇନ୍ଦୋରଠାରୁ ୭୪ କିଲୋମିଟର ଦୂରରେ ନର୍ମଦାତୀରରେ ଅବସ୍ଥିତ ଆଧୁନିକ ମହେଶ୍ୱର । ଏହା ଥିଲା ଦକ୍ଷିଣ ଅବନ୍ତୀର ରାଜଧାନୀ । |
| ମିଥିଳା | — | ଆଧୁନିକ ଜନକପୁର ଯାହାକି ବିଦେହର ରାଜଧାନୀ ଥିଲା । |
| ମୈନାକ | — | ଲଙ୍କା ଓ ଭାରତର ମଧ୍ୟବର୍ତ୍ତୀ ସମୁଦ୍ରରେ ଥିବା ଏକ ପର୍ବତ । |
| ଯବଦ୍ୱୀପ | — | ଜାଭା । |
| ରତ୍ନାକର | — | ଆରବସାଗର । |
| ରସାତଳ | — | ଭାରତର ଭୂମିତଳେ ପ୍ରଥିତ ହେଉଥିବା ଗୋଲାର୍ଦ୍ଧର ବିପରୀତ ପାର୍ଶ୍ୱରେ ଅବସ୍ଥିତ ଚିଲି ଦେଶ (ଦକ୍ଷିଣ ଆମେରିକା) । କେତେକଙ୍କ ମତରେ ମଧ୍ୟ ଏସିଆର ତାର୍ତାର୍ ଅଞ୍ଚଳ । |
| ରାଜଗୃହ | — | କେକୟ ରାଜ୍ୟର ରାଜଧାନୀ ଗିରିବ୍ରଜର ଅନ୍ୟ ନାମ; ବୁଦ୍ଧକାଳୀନ ମଗଧର ମଧ୍ୟ ରାଜଧାନୀ ଥିଲା ରାଜଗୃହ ଯାହାକି ବିହାରରେ ଅବସ୍ଥିତ । |
| ରାମଗିରି | — | ଏହାର ଆଧୁନିକ ନାମ ରାମଟେକ ଯାହା କି ମଧ୍ୟପ୍ରଦେଶର ଏକ ତହସିଲର ସଦର ମହକୁମା । ଏହିଠାରେ ଶୂଦ୍ରମୁନି ଶମ୍ବୁକ ତପସ୍ୟା କରୁଥିବା ଅବସରରେ ରାମଙ୍କ ଦ୍ୱାରା ନିହତ ହୋଇଥିଲେ । |
| ଲଙ୍କା | — | ବର୍ତ୍ତମାନର ଶ୍ରୀଲଙ୍କା; କୌଣସି କୌଣସି ପଣ୍ଡିତଙ୍କ ବକ୍ତବ୍ୟ ଅନୁସାରେ ପୂର୍ବ ମଧ୍ୟପ୍ରଦେଶ, ଅଥବା ମାଡାଗାସ୍କାର କିମ୍ବା ଆରବ ସାଗରସ୍ଥ ମଳୟ ଦ୍ୱୀପକୁ ଲଙ୍କା ବୋଲି କୁହାଯାଉଥିଲା । |
| ଲବପୁର | — | ବର୍ତ୍ତମାନର ଲାହୋର (ପାକିସ୍ଥାନରେ) ଯାହା କି ରାମପୁତ୍ର ଲବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । |

ଲୋହିତ — ବ୍ରହ୍ମପୁତ୍ର ନଦୀ।

ବତ୍ସ — ପ୍ରୟାଗର ପଶ୍ଚିମରେ ଅବସ୍ଥିତ ରାଜ୍ୟ ଯାହାର ରାଜଧାନୀ ଥିଲା କୌଶାମ୍ବୀ।

ବାରାଣସୀ — ବନାରସ।

ବାଲ୍ମୀକି-ଆଶ୍ରମ — ଗଙ୍ଗାର ଦକ୍ଷିଣ ଦିଗରେ ତମସା ନଦୀ ତୀରରେ ଅବସ୍ଥିତ; ଉତ୍ତରକାଣ୍ଡ ଅନୁସାରେ କିନ୍ତୁ ଏହା ଗଙ୍ଗାତୀରରେ କାନପୁରଠାରୁ ୨୨ କିଲୋମିଟର ଦୂରରେ ଅବସ୍ଥିତ।

ବିତସ୍ତା — ଝେଲମ୍ ନଦୀ।

ବିଦିଶା — ଭେଲସା।

ବିଦେହ — ତିରହୁତ୍।

ବିପାଶା — ବେଆସ ନଦୀ।

ବିଶାଲା — ବିହାରର ମୁଜାଫରପୁର ଜିଲ୍ଲାସ୍ଥ ବେସାଢ଼; ଏହା ଥିଲା ବୌଦ୍ଧ ଯୁଗର ବୈଶାଳୀ।

ବିଶ୍ୱାମିତ୍ର-ଆଶ୍ରମ — ବକ୍ସାରର ଚରିତ୍ର-ବନ।

ବେତ୍ରବତୀ — ବେତୱା ନଦୀ।

ବେଦଶ୍ରୁତି — ରାମ ବନବାସକୁ ଯିବା ସମୟରେ ସର୍ବପ୍ରଥମେ ଏହି ନଦୀକୁ ପାର ହୋଇଥିଲେ; ଏହାର ବର୍ତ୍ତମାନ ନାମ ଭାନ୍‌ସା।

ବଙ୍ଗ — ଅବିଭକ୍ତ ବଙ୍ଗଳା (ପୂର୍ବ ବଙ୍ଗଳା ଓ ପଶ୍ଚିମ ବଙ୍ଗଳା)।

ଶତଦ୍ରୁ ବା ଶୁତୁଦ୍ରୁ — ସଟ୍‌ଲେଜ୍।

ଶାଲ୍ମଲୀ — ବର୍ଦ୍ଧମାନ ଜିଲ୍ଲାର (ପଶ୍ଚିମ ବଙ୍ଗଳା) ଗାଲ୍‌ସି ଥାନ ଅନ୍ତର୍ଗତ ମଣ୍ଡଲସାରୁଲ ଗାଁ। ଯାହାକି ଦାମୋଦର ନଦୀଠାରୁ ପ୍ରାୟ ୨ କିଲୋମିଟର ଦୂରରେ ଅବସ୍ଥିତ।

ଶୂର — ମଥୁରାର ଆଖପାଖ ଅଞ୍ଚଳ।

ଶୃଙ୍ଗବେରପୁର — ପ୍ରୟାଗଠାରୁ ୨୯ କିଲୋମିଟର୍ ଦୂରରେ ଥିବା ଗଙ୍ଗାତଟସ୍ଥ ଆଧୁନିକ ସିଙ୍ଗ୍‌ରୌର୍।

ଶ୍ରାବସ୍ତୀ — ରାପ୍ତି ନଦୀତୀରରେ ଅବସ୍ଥିତ ଆଧୁନିକ ସାହେତ୍ ମାହେତ୍।

ସଦାନୀରା — ଗଣ୍ଡକ ନଦୀ।

ସରଯୂ — ଘର୍ଘର ବା ଘାଘର୍।

ସରସ୍ୱତୀ — ଘଗ୍‌ଗର ।

ସହ୍ୟ — ପଶ୍ଚିମଘାଟ ପର୍ବତମାଳାର ସହ୍ୟାଦ୍ରି ।

ସାଙ୍କାଶ୍ୟା — ଏହାର ଆଧୁନିକ ନାମ କପିତ୍ଥ ଯାହାକି ଫାରୁକାବାଦ ଜିଲ୍ଲାର ଫତେଗଡ଼ଠାରୁ ୩୭ କିଲୋମିଟର ଦୂରରେ ପଶ୍ଚିମ ଦିଗରେ ଅବସ୍ଥିତ; ଏହା ଥିଲା ଜନକଙ୍କ ଭାଇଙ୍କ ରାଜ୍ୟ ।

ସିଦ୍ଧାଶ୍ରମ — ଶାହାବାଦ ଜିଲ୍ଲାସ୍ଥ ବକ୍‌ସର୍‌ର ପଶ୍ଚିମ ଭାଗ ଯାହାକି ଥିଲା ବିଶ୍ୱାମିତ୍ରଙ୍କ ଆଶ୍ରମ ।

ସିନ୍ଧୁ — ସିନ୍ଧୁ ନଦୀ; ଏହାର ଉତ୍ତର ପଟେ ଥିବା ଦେଶର ନାମ ମଧ୍ୟ ଥିଲା ସିନ୍ଧୁ ।

ସୁତୀକ୍ଷ୍ଣ-ଆଶ୍ରମ — ଭୂତପୂର୍ବ ଦେଶୀୟ ରାଜ୍ୟ ପାନ୍ନା ମଧ୍ୟରେ ଅବସ୍ଥିତ ।

ସୌରାଷ୍ଟ୍ର — ଗୁଜୁରାଟ ।

ସ୍ୟନ୍ଦିକା — ଏହା ଏକ ନଦୀ ଯାହାକି ଗୋମତୀ ଓ ଗଙ୍ଗାର ମଧ୍ୟବର୍ତ୍ତୀ ଅଞ୍ଚଳରେ ପ୍ରବାହିତ ହେଉଥିଲା । ଏହା ହେଉଛି ଆଧୁନିକ ସଇ ନଦୀ ।

ସୌବୀର — ଉତ୍ତର ସିନ୍ଧୁ ଦେଶ ।

ହସ୍ତିନାପୁର — ଦିଲ୍ଲୀ ଓ ମିରଟ୍‌ର ଉତ୍ତର-ପୂର୍ବ ଦିଗରେ ଗଙ୍ଗା-ତଟରେ ଅବସ୍ଥିତ ।

ହିରଣ୍ୟବାହୁ — ସୋନ ନଦୀ ।

ହ୍ଲାଦିନୀ — ଏହାର ଅବସ୍ଥିତି ଥିଲା କେକୟ ରାଜ୍ୟ ଓ ଶତଦ୍ରୁ ନଦୀର ମଧ୍ୟବର୍ତ୍ତୀ ସ୍ଥାନରେ; ଭରତ କେକୟ ରାଜ୍ୟରୁ ଅଯୋଧ୍ୟାକୁ ଆସିବା ବାଟରେ ଏହାକୁ ପାର ହୋଇଥିଲେ ।

ସ୍ୱର୍ଣ୍ଣପର୍ବତ — ମହାଭାରତରେ ଏହାର ନାମ 'ମୋଦାଗିରି' ବୋଲି ବର୍ଣ୍ଣିତ । ଏହି ପର୍ବତଟି ଗଙ୍ଗାକୂଳରେ ଅବସ୍ଥିତ ଥିଲା । ଅଲ୍‌ବେରୁଣି (୧୧ଶ ଶତାବ୍ଦୀ) ଏହାକୁ 'ମୁଙ୍ଗିର୍' ବୋଲି କହିଛନ୍ତି । ଏହା ହେଉଛି ବିହାରର ଆଧୁନିକ ମୁଙ୍ଗେର୍ । କେତେକଙ୍କ ମତରେ ଏହା ହେଉଛି ରାଉରକେଲା (ଓଡ଼ିଶା) ନିକଟରେ ଥିବା 'ସୁନା ପର୍ବତ' ।

ହିରଣ୍ୟବତୀ — ଗଣ୍ଡକ ନଦୀ; ଏହାର ଶଯ୍ୟାରୁ ସୁନା ସଂଗ୍ରହ କରାଯାଉଛି ।

●

# ଶବ୍ଦସୂଚୀ

## ଅ


ଅଧ୍ୟାତ୍ମରାମାୟଣ ୧୯୮, ୨୦୪, ୨୦୧,
ଅଙ୍ଗଦ ୪୧, ୪୫, ୪୬, ୬୩
ଅଶୋକବନ ୨୬, ୨୭, ୭୮, ୧୧୧
ଅଯୋଧ୍ୟା ୧, ୫, ୧୭, ୨୮, ୪୦
ଅମାତ୍ୟ ୫୭, ୮୯, ୯୦
ଅସୁର ୧୪, ୧୨୮, ୧୬୬
ଅନୁ ୧୫୦, ୫୩
ଅସମିୟା ଭାଷା ୨୨୪, ୨୨୫
ଅକ୍ଷୟକୁମାର ବନ୍ଦ୍ୟୋପାଧ୍ୟାୟ ୧୨୧
ଅର୍ଥ ୧୨୮
ଅର୍ଥଶାସ୍ତ୍ର ୪, ୧୪୩, ୧୭୨
ଅଷ୍ଟବକ୍ର ୧୪୩
ଅଶୋକ ୧୧, ୧୧୧, ୯୦
ଅସମଞ୍ଜ ୭୦, ୭୯
ଅଶ୍ୱମେଧ ୫୪, ୧୩୨
ଅଛମୂନ ୧୩୪
ଅଶ୍ୱପତି ୬୨
ଅଙ୍ଗୁଳୀୟ ୮୭
ଅଙ୍ଗୁଳିତ୍ରାଣ ୧୬୬, ୧୪୫
ଅମ୍ବୁ-ଦୁର୍ଗ ୧୬୩
ଅକମ୍ପନ ୧୪୮
ଅନୁକର୍ଷ ୧୫୧
ଅଥର୍ବବେଦ ୫୧, ୧୫୦
ଅର୍ଦ୍ଧନାଳୀକ ୧୭୯, ୮୧
ଅଶନି ୧୭୯
ଅମୋଘ-ଶକ୍ତି ୮୦
ଅସ୍ତ୍ର-କମ୍ପନ ୮୦
ଅସ୍ତ୍ର-ଜୃମ୍ଭଣ ୮୦
ଅସ୍ତ୍ର-ବିଦାରଣ ୮୦
ଅର୍ଦ୍ଧନାରାଚ ୮୧
ଅପସବ୍ୟ ୮୬
ଅଭିଦ୍ରବଣ ୮୮
ଅବପ୍ଳୁତ ୮୮
ଅପର୍ଯ୍ୟସ୍ତ ୮୯
ଅନର୍ଘ ରାଘବ ୧୯୯, ୨୫୪
ଅଶ୍ୱଘୋଷ ୧୯୭
ଅଭିଷେକ ୧୯୮
ଅଭିଜ୍ଞାନଶାକୁନ୍ତଳମ୍ ୧୯୯
ଅନରଣ୍ୟ ୧୭
ଅଶୋକବାଟିକା ୨୩
ଅନାର୍ଯ୍ୟ ୨, ୩, ୧୬
ଅପ୍ସରା ୫
ଅବିନାଶଚନ୍ଦ୍ର ଦାସ ୮
ଅର୍ଜ୍ଜୁନ ୧୨
ଅସୁର ମଘବା ୧୫
ଅୟୋମୁଖୀ ୨୬
ଅଯୋଧ୍ୟାକାଣ୍ଡ ୮୧, ୮୪, ୨୦୮
ଅର୍ଥସାଧକ ୯୦
ଅଗ୍ନିଶାଳା ୮୬
ଅଭିଷେକ-ସମ୍ଭାର ୮୬
ଅଞ୍ଜନା ୪୫
ଅଧ୍ୱଜ ୫୪
ଅଙ୍ଗଦେଶ ୫୪

ଅଙ୍ଗ ୫୫, ୫୬
ଅଗ୍ନିଜ ୭୧, ୭୨
ଅଷ୍ଠାସ୍ତ୍ର ୨୦୭
ଅସ୍ୱଲସ୍ୱଜ୍ ଗ୍ରମଭଦ୍ରକ୍ ୨୦୯
ଅଦ୍ଧମ୍-ଗ୍ରମାସ୍ୱଣମ୍ ୨୦୯
ଅଲଓ୍ୱାର ୨୧୨
ଅଙ୍ଗଦବସ୍ତି ୨୧୫
ଅମରନାଥ ଗ୍ରେପ୍ରା ୨୨୦
ଅନନ୍ତ ମଣ୍ଡଳ ୨୨୬
ଅଓ୍ୱଧ ୨୨୮, ୨୩୧
ଅନ୍ତୁସ୍ୱବଣ ୨୩୭
ଅସିତକୁମାର ବାନାର୍ଜୀ ୩୩୮
ଅଭ୍ରଭାସ୍ୱର୍ଯ୍ୟ ୨୩୯
ଅଭଙ୍ଗ ୨୪୩, ୨୪୪
ଅହଲ୍ୟା ୨୪୯, ୨୬୫, ୯୭୦
ଅଦ୍ଭୁତରାମାୟଣ ୨୫୧
ଅଗ୍ନିବେଶରାମାୟଣ ୨୫୧
ଅଗ୍ନିପୁରାଣ ୨୫୬
ଅଶ୍ୱିନୀକୁମାର ଘୋଷ ୨୬୨
ଅର୍ଜ୍ଜୁନ ଦାସ ୨୫୮
ଅଜ ୨୬୪
ଅମ୍ବରୀଷ ୨୭୭
ଅଜନ୍ତା ୨୭୦
ଅଶ୍ୱାରୋହବାହନ ୧୪୦

ଆ

ଆନନ୍ଦରାମାୟଣ ୧୯୮, ୨୦୨, ୨୪୮
ଆର୍ଯ୍ୟ ୨, ୩, ୮, ୯, ୧୩
ଆଲେକ୍ଜାଣ୍ଡର୍ ୧୨୭, ୪୨
ଆସ୍ତୁସ ୪୩
ଅସୁର-ଦୁର୍ଗ ୧୬୨
ଆଲ୍ବସାଗର ୫୪, ୧୫୪
ଆର୍ଯ୍ୟଭ ଦବତ ୧୪୫
ଆଗ୍ନେୟାସ୍ତ୍ର ୧୭୮, ୧୮୦
ଆଣବିକ ବୋମା ୧୭୯
ଆଦ୍ରାଶନ ୪୮୦
ଆଦ୍ୟସ୍ୱଜ ୧୯୮, ୨୦୦
ଆର୍ଯ୍ୟାବର୍ତ୍ତ ୧୬
ଆଣ୍ଡାମାନ୍ ୨୦
ଆସ୍ୱା ୩, ୫୬, ୨୪୯
ଆର୍ଯ୍ୟାବର ୮, ୧୨୪, ୧୨୮
ଆନ୍ଧ୍ର ୧୬, ୨୦୭
ଆନ୍ଧ୍ରପ୍ରଦେଶ ୨୦୬, ୨୧୦, ୨୬୭
ଆପାନଶାଳା ୩୧
ଆସନ ୬୪, ୬୫
ଆସ୍ୱାପିଲ୍ଲ ଆଶାନ୍ ୨୦୪
ଆଉରଙ୍ଗଜେବ୍ ୨୧୭
ଆଚାର୍ଯ୍ୟ ଚତୁରସେନ ଶାସ୍ତ୍ରୀ ୨୩୫
ଆକବର ୧୨୮, ୨୩୪
ଆଗ୍ରା ୨୨୮
ଆଦଗନ୍ତ ୨୪୨
ଆଲ୍ଲାଦ୍ଦିନ୍ ଖିଲ୍ଜି ୨୪୩
ଆସ୍ୱରାମାୟଣ ୨୪୮
ଆର୍ଷ ରାମାୟଣ ୨୫୮
ଆର୍. ଶର୍ମା ୧୬୨
ଅଭ୍ୟନ୍ତର-ପୌର ୧୧୬
ଅଭ୍ୟନ୍ତର-ଜାନପଦ ୧୧୬
ଆଶ୍ରମଧର୍ମ ୬୮, ୧୨୯
ଆଶ୍ରମବ୍ୟବସ୍ଥା ୧୨୯
ଆଦର୍ଶ · ରାଘବ ୨୫୦

ଇ

ଇଷ୍ଟ୍ ୧୭୯, ୪୮୧
ଇଷ୍ଟଧ୍ୱ ୧୭୯

ଇନ୍ଦ୍ରାଣୀ ୧୮୦
ଇକ୍‌ବାଲ ୨୦୦
ଇ. ଭି. କୃଷ୍ଣପିଲ୍ଲାଇ ୨୦୭
ଇନ୍ଦ୍ରଜିତ୍‌ବଧକାବ୍ୟ ୨୧୫
ଇନ୍ଦୁମତୀ ୨୬୪
ଇଣ୍ଡିକା ୧୨୭
ଇଂରେଜ ୧୦୫
ଇକ୍ଷ୍ୱାକୁ ୪୫, ୬୦, ୬୯, ୮୨
ଇନ୍ଦ୍ର ୧୫, ୬୪, ୬୫

ଈ

ଈଷଦଣ୍ଡ ୧୫୦

ଉ

ଉଦାସୀନ ୬୨, ୧୩୭, ୬୧
ଉତ୍ତରରାମଚରିତ ୨୬୪, ୧୯୮
ଉପେନ୍ଦ୍ର ଭଞ୍ଜ ୨୦୮, ୨୫୯, ୨୬୦
ଉତ୍ତର ବଙ୍ଗଳା ୨୪୦
ଉତ୍ତରକାଣ୍ଡ ୨୨୩, ୨୨୫, ୨୧୫
ଉଦ୍ଭବ ୨୧୫
ଉତ୍ତରରାମାୟଣ ୨୦୨, ୨୦୭
ଉଲୂପୀ ୧୨
ଉତ୍ତର-ପାଷାଣଯୁଗୀୟ ୭
ଉପନିଷଦ ୧୯୩, ୧୯୪
ଉପନ୍ୟାସ ୧୮୯
ଉନ୍ମାଦନ ୯୦
ଉଦ୍ୟାନ ବୋମା ୧୭୯
ଉରସ୍‌ ୧୬୦
ଉରସ୍‌ଛଦ ୧୬୬

ଊ

ଊର୍ମିଳା ୨୩୮, ୨୪୦

ଋ

ଋକ୍ଷ ୪, ୪୪
ଋକ୍ଷପର୍ବତ ୪୪
ଋଗ୍‌ବେଦ ୧୫, ୧୬୧
ଋଷ୍ୟଶୃଙ୍ଗ ୨୫୭

ଏ

ଏସ୍‌. ଭି. ବିଶ୍ୱନାଥ ୯
ଏକବାସ୍ତୁ ୧୪୮
ଏ. ଏଲ୍‌. ବାସମ୍‌ ୧୪୨, ୧୬୩
ଏକନାଥ ୨୪୩, ୨୪୪
ଏଲ୍‌. ଆଇ. ସିଂହ ୨୨୩
ଏସ୍‌. ଏସ୍‌. କୋହ୍ଲି ୨୧୭
ଏମ୍‌. ଶ୍ରୀନିବାସ ଆୟଙ୍ଗାର୍‌ ୨୧୦
ଏରଣ ଏରପ୍ରେଗଡ୍ଡ ୨୦୯

ଐ

ଐତରେୟ ବ୍ରାହ୍ମଣ ୬୮, ୧୯୦
ଐଷିକ ୧୮୦

ଓ

ଓଡ଼ିଶା ୯, ୧୨, ୩୮
ଓଡ଼ିଶା ଇତିହାସ ୨୫୮

କ

କବଚ ୧୭୬, ୧୭୭
କଞ୍ଚୁକ ୧୭୬
କଷା ୧୫୦
କଣ୍ଠୀ ୧୭୯
କମ୍ପନ ୧୮୦
କଙ୍କପତ୍ର ୧୮୧
କରଣ ୧୮୭
କପିଳା ବାତ୍ସ୍ୟାୟନ ୨୪, ୨୨୬
କପି-ଲକ୍ଷ୍ମଣ ୪
କଲ୍ମାଷପାଦ ୨୫
କପି ୩୭
କଳିଙ୍ଗ ସର୍ଗ ୮୧

କର୍ଣ୍ଣାଟକ ୨୦୨, ୨୦୬, ୨୪୨
କଥକାଲି ନୃତ୍ୟ ୨୦୫
କମ୍ବନ ରାମାୟଣ ୨୦୫, ୨୦୭, ୨୧୧
କନ୍ନଡ ୨୦୬, ୨୭୨
କଞ୍ଚି ବରଦ ରାଜ ରାମାୟଣମ୍ ୨୦୭
କମ୍ବନ୍ ୨୧୧, ୨୧୨
କନ୍ଦନ୍ ୨୧୪
କନକଜାନକୀ ୨୨୧
କଥାସରିତ୍ ସାଗର ୨୨୧
କଳାପଚନ୍ଦ୍ର ଦ୍ୱିଜ ୨୨୬
କବୀର ୨୩୦, ୨୩୧
କପିଳେନ୍ଦ୍ର ଦେବ ୨୫୨
କବିଚନ୍ଦ୍ର ନରହରି ୨୫୮
କପିଳେଶ୍ୱର ବିଦ୍ୟାଭୂଷଣ ୨୫୮
କଳିଯୁଗ ୨୭୨
କାମ୍ବୋଜ ୧୪୬
କାଲାସ୍ତ୍ର ୧୮୦
କାଣ୍ଡକାର ୧୮୧
କାର୍ମୁକ ୧୮୨
କାଳିଦାସ ୧୯୭, ୧୯୯, ୨୧୫
କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ୨୦, ୩୪
କାପେସ୍ତୀ ୪୦
କାଶୀ ୫୫
କାଳୀ ୨୦୫
କାଞ୍ଚନସୀତା ୨୦୭
କାଶ୍ମୀର ଭାଷା ୨୨୧
କାଳିକାପୁରାଣ ୨୩୭
କାଠମାଣ୍ଡୁ ୨୪୭
କାର୍ଯ୍ୟାର୍ଥୀ ୧୦୯
କାଞ୍ଚୀପୁରମ୍ ୨୭୬
କାମ ୧୦୫
କଙ୍କିଣୀ ୧୮୦
କଣ୍ଟିଦା ୧୬୭, ୧୫୪, ୧୫୮
କଳକଳା ୪୧
କନ୍ନସ୍ ସରମାୟଣମ୍ ୨୦୪
କଳ୍ପ ପାଣ୍ଡ ୨୦୫
କରଣ୍ଡୁ ୨୭୬
କୃଷି ୧୭୦
କୁଠାର ୧୮୦, ୧୮୫
କୁନ୍ତ ୧୮୦
କୁଶ ୧୯୯, ୨୩୮, ୧୨୭
କୁଳବୃକ୍ଷ ୩୭
କୁକେଲ୍ଡ ୨୦୨
କୁଷାଣ ୨୨୯
କୁରୁବାନ ୨୩୦
କୁଶନ ଗାନ ୨୪୦
କୁଚଦ୍ୱାର ୨୪୦
କୁମାରଗୁପ୍ତ ୨୬୮
କୁବ୍ଜା ବିଷ୍ଣୁବର୍ଦ୍ଧନ ୨୭୩
କୁମ୍ଭକୋଣମ୍ ୨୭୪
କୂବର ୧୫୧
କୂଟ-ମୁଦ୍ଗର ୧୮୦
କୂଟାଗାର ୩୫
କୂଷ୍ମହଷ୍ଟିମ୍ମ କବ ୨୦୯
କୂଟଯୁଦ୍ଧ ୧୩୩
କୂଟଯୋଧୀ ୧୩୭
କୂର୍ମି ମଦୁର୍ଗ ୧୯୧
କୃଷ୍ଣଦେବ ରାୟ ୨୦୯
କୃଷ୍ଣ ୨୨୧, ୨୨୨
କୃତ୍ତିବାସ ଓଝା ୨୩୫
କେକୟ ୧୦୬, ୫୩, ୭୯, ୭୭
କେରଳ ୧୬

କେ. ଏସ୍ ରାମସ୍ୱାମୀ ୧୫
କେନ୍ଦୁଝର ୩୮, ୧୫୩
କେ. ଭି. ସୁବ୍ବାପ୍ପା ୧୦୧, ୧୦୨
କେଶବ-କୋଇଲି ୧୫୪
କେ. ପି. ଜୟସ୍ୱାଲ୍ ୨୨୬, ୨୧୧
କେ. ଏମ୍. ପାନିକର୍ ୨୧୨
କୈଳାଶ ମନ୍ଦର ୧୭୧
କୈକସୀ ୧୪, ୩୨, ୨୯
କୈକେୟୀ ୨୭, ୫୪, ୧୨୯
କୈଳାଶ ପର୍ବତ ୧୭୧
କୋଶଳ ୨୭୧, ୫୫, ୫୭, ୭୧
କୋଢଦାର ୨୫୧, ୧୫୩
କୋରପୁଟ ୯, ୩୮
କୋଟ୍ଟାୟମ୍ ୧୦୫
କୋଣାର୍କ ୧୭୪
କୌଶଲ୍ୟା ୭୩, ୧୨୯
କୌଟିଲ୍ୟ ୨୬୬, ୨୪୩, ୮୧
କୌମୋଦକୀ ୨ ୦
କୌବେରାସ୍ତ୍ର ୨୮୦

ଖ

ଖ ୨୫୦
ଖର ୨୭୭, ୧୭୧
ଖଡ୍ଗ ୨ ୦
ଖଣ୍ଡ ୨୮୭
ଖଡ଼ବୋଲି ୧୧୯
ଖଡ୍ଗବାହାଦୁର ଶାସ୍ତ୍ରୀ ୧୫୨
ଖଜୁରାଓ ୧୬୭, ୧୭୭
ଖଣ୍ଡହାଳ ୭୦

ଗ

ଗରୁଡ଼ ୨୭୧
ଗଜ ୨୬୦
ଗନ୍ଧମାର୍ଦନ ୨୭୪, ୧୪୮
ଗବୟ ୨୭୦
ଗଦା ୨୮୦
ଗନ୍ଧବାସ୍ତୁ ୨୮୦
ଗନ୍ଧର୍ବ ୨୯୭, ୫
ଗୟ ୨୭
ଗଙ୍ଗା ୬, ୭, ୧୦୮
ଗଣ ୩୭
ଗଙ୍ଗ ୧୫୪, ୧୭୫
ଗଞ୍ଜାମ ୧୫୮, ୧୫୯
ଗଙ୍ଗାଧର ପ୍ରଧାନ ୧୭୧
ଗଙ୍ଗାଧର ମେହେର ୧୬୪
ଗଙ୍ଗାବତରଣ ୧୭୧, ୮୦
ଗଜାରୋହବାହିନୀ ୨୪୦
ଗାଧି ୨୭
ଗାନ୍ଧାର-ଶିଳାଲେଖ ୧୬୬
ଗୀତା ୨୮୨
ଗୀତଗୋବିନ୍ଦ ୧୫୪
ଗୁହ ୫, ୭, ୨୫୪
ଗୁଜୁରାଟ ୧୨୪
ଗୁଣ୍ଡଲରାଜପୁରମ୍ ୧୭୨
ଗୁର୍ଜର-ପ୍ରତିହାର ୧୬୬
ଗୃଧ୍ର ୫, ୭, ୮, ୯
ଗୋଧା ୨୬୬
ଗୋମୁଣ୍ଡଳ ୨୮୬
ଗୋଦାବରୀ ୨୪, ୧୭୩
ଗୋଲାଙ୍ଗୁଳ ୪୪
ଗୋପାଳ ଦାସ ୧୧୬
ଗୋପୀ ୧୧୯
ଗୋମତେଶ୍ୱର ୧୦୧

ଗୋପୀନାଥ ନନ୍ଦ ୨୬୦
ଗୌତମ ୨୪୯
ଗ୍ରାମ-ମହତ୍ତର ୧୧୬
ଗ୍ରୀକ୍ ୯୮୩, ୨୨୯

ଘ

ଘୋଷ ୫୩, ୧୧୫
ଘୋଷ-ମହତ୍ତର ୧୧୬

ଚ

ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ୧୬୩
ଚକ୍ରବର୍ତ୍ତୀ ସମ୍ରାଟ୍ ୩୬
ଚତୁଷ୍ପଥ ୨୦୪
ଚମ୍ପୂ ୨୦୭
ଚନ୍ଦ୍ରାୟନ ୨୩୦
ଚନ୍ଦ୍ରାବତୀ ୨୩୯,
ଚଉତିଶା ୨୭୧
ଚତୁରଙ୍ଗ ୧୪୦, ୧୪୧
ଚର ୧୧୩
ଚାମସଜୋତ୍ତବାଣୀ-
ବିଳାସ-ରାମାୟଣ ୨୦୨
ଚାଲୁକ୍ୟ ୨୭୩, ୨୭୪
ଚାନ୍ଦେଲ୍ଲ ୨୭୭
ଚାରକ ୧୧୩
ଚିନ୍ତାମଣି ବିନାୟକ ବୈଦ୍ୟ ୧୧, ୧୬
ଚୀନ୍ ୬୦
ଚୈତ୍ର ୨୦୧
ଚୈତନ୍ୟ ୨୫୬

ଛ

ଛପ୍ପାଗ୍ଲାହୁଣୀ ୨୪

ଜ

ଜୟଦେବ ୧୯୮, ୯୮୮, ୨୫୪
ଜୟଦ୍ଦିସ-ଜାତକ ୨୦୦
ଜନସ୍ଥାନ ୧୭, ୧୨୪, ୧୧୫
ଜଟାୟୁ ୮, ୯, ୨୬୫
ଜନ ୫୩, ୫୬
ଜନପଣ୍ଡ ୫୩
ଜନପଦ ୫୩, ୫୫, ୫୬
ଜଇନୁଲ୍ଲାବଦ୍ଦନ୍ ୨୬୧
ଜନକ ୯୮୨, ୨୩୨
ଜଗତ୍ତ୍ରଗ୍ରମ ୨୩୯
ଜନାର୍ଦ୍ଦନ ସ୍ୱାମୀ ୨୫୫
ଜଗନ୍ନାଥ ଦାସ ୨୫୫, ୨୫୭
ଜରତା ୨୫୬
ଜନାର୍ଦ୍ଦନ ଦାସ ୨୬୦
ଜଫର୍ ୨୬୧
ଜାମଦଗ୍ନ୍ୟ ୧୮୫
ଜ୍ଞାନକ୍ରିୟାପରିଷଦ୍ ୧୯୯
ଜାଭା ୯୮, ୨୦
ଜାନକୀବଲ୍ଲଭ ପଟ୍ଟନାୟକ ୨୫୮
ଜାନକୀବିଳାସ ୨୫୯
ଜାନକୀ ୨୬୫
ଜାତକ ଗଳ୍ପ ୨୭୦
ଜ. ଏନ୍. ରେଡ୍ଡି ୨୦୬
ଜୈନ ୨୦୦, ୨୦୨
ଜୈନଧର୍ମ ୨୦୧, ୨୨୯
ଜୈମିନି-ଭାରତ ୨୩୭

ଝ

ଝାଲଓ୍ୱାର ୨୦୭

ଟ

ଟି. ବରୋ ୨୧୦
ଟୀକା ରାମାୟଣ ୨୫୭
ଟୁଙ୍କାଟ୍ ଏଣ୍ଡ୍ ଟଚ୍ଛନ୍ ୨୦୪
ଟୋଲ୍‌ପାବକର୍ ୨୦୫

ଡ

ଡେରେଟ୍ (Derret) ୯୧

ତ

ତପୋଧନା ୧୦
ତନୁଜାଣ ୧୬୭
ତନୁଜ ୧୭୭
ତକ୍ଷକ ୧୪
ତଲ୍ୱଯାନ ୨୨୯
ତରଣୀସେନ ୨୩୭, ୨୩୯
ତପସ୍ୱିନୀ ୨୭୪
ତାଟକା ୧୦, ୧୧, ୬୫
ତାଟକା-ବନ ୫୨
ତାମିଲ୍ ଭାଷା ୨୧୦
ତାମ୍ରଲେଖ ୨୭୯
ତିରଶ୍ଚୀନ ୧୮୮
ତୀର୍ଥ ୧୦୩, ୧୦୪
ତୀର୍ଥଙ୍କର ୧୦୩
ତୁମ୍ବୁରୁ ୧୯୭
ତୁଳସୀ ରାମାୟଣ ୨୨୦
ତୁକାରାମ ୨୪୪
ତେଲୁଗୁ ୨୦୭, ୨୦୯
ତୈତ୍ତିରୀୟ ସଂହିତା ୧୪୮
ତୋମର ୧୩୮, ୧୫୨
ତ୍ରୟୋଦଶ ନରସିଂହ ଦେବ ୨୫୪
ତ୍ରିଶୂଳ ୧୭୯, ୧୮୩
ତ୍ରିକୂଟ ପର୍ବତ ୩୨
ତ୍ରିଜଟା ୨୩୩
ତ୍ରିକଣ୍ଟକ ୧୮୩
ତ୍ରିଶିର ୧୩୮
ତ୍ରିବେଣୀ ୧୫୧
ତ୍ୱାଷ୍ଟ୍ର ୧୮୧

ଥେଚାୟୁର ୯୭

ଥ

ଥମାସ୍ ଜେଫରସନ୍ ୧୨୫
ଥିଓଡୋର୍ସ୍ୟାନ୍ ୨୦୭

ଦ

ଦଶରଥ ୧୫, ୧୭, ୫୪, ୭୭
ଦଣ୍ଡ ୫୭, ୧୭୨, ୧୭୯, ୧୪୦
ଦଶରଥ-ଜାତକ ୨୦୦
ଦକ୍ଷିଣ-ଆମେରିକା ୧୯
ଦଣ୍ଡୀବ ୨୧
ଦଣ୍ଡପାଳକ ୧୦୪
ଦଣ୍ଡକାରଣ୍ୟ ୧୨୮, ୧୪୦, ୧୫
ଦସ୍ୟୁ ୧୨୩
ଦଣ୍ଡଧର ୧୪୦
ଦକ୍ଷିଣକୋଶଳ ୨୭୭
ଦସ୍ୟାନ୍ଧ ଦାସ ୨୭୦
ଦକ୍ଷିଣ-ବଙ୍ଗଳା ୨୮୦
ଦଶାବତାରଚରିତମ୍ ୨୨୧
ଦାଣ୍ଡିବୃକ୍ଷ ୨୫୫
ଦାସବୋଧ ୨୪୪
ଦାଶରଥି-ଯୁଦ୍ଧ ୧୫୫, ୧୨୩
ଦାନବାସ୍ତୁ ୧୮୦
ଦାନ୍ତେ ୨୩୧
ଦାଦୁ ଦୟାଲ୍ ୨୩୧
ଦାସକାଠିଆ ୨୫୬
ଦାସ ୧୨୩
ଦଶ୍ରୀ ୨୭୭
ଦଙ୍ଗାଜ ୧୯୯
ଦଳୀପ ୨୩୭, ୨୭୭
ଦୁନ୍ଦୁଭି ୧୩୧, ୧୩୨, ୧୭୪

ଦୁଷ୍ୟନ୍ତ ୧୭
ଦୂଷଣ ୧୧୩, ୧୨୭
ଦେବ ୫
ଦେବକୀ ୧୪
ଦୋଲତରାମ ପାଣ୍ଡ୍ୟ ୨୧୫
ଦ୍ୱାପରଯୁଗ ୧୯୭
ଦ୍ୱିତୀୟ ଭାନୁଦେବ ୨୫୪
ଦ୍ୱୈଧୀଭାବ ୭୫, ୬୫
ଦ୍ୱୈତ ୨୫୪
ଦ୍ରାବିଡ଼ଦେଶ ୫୪
ଦ୍ରାବିଡ ୨୦୩
ଦ୍ରାକ୍ଷାରାମ ୨୭୧

ଧ

ଧର୍ମସେନ ୧୦୯
ଧର୍ମ ୧୦୫, ୧୦୭
ଧନୁର୍ବେଦ ୧୨୫
ଧନୁର୍ବିଦ୍ୟା ୧୨୬, ୧୨୭
ଧୀରନାଗ ୧୯୯
ଧର୍ମାସ୍ତ୍ର ୧୮୧
ଧର୍ମପାଣ ୧୮୧
ଧୂଲ୍ଲୀମାର ୨୬୭
ଧୃଷ୍ଟି ୯୦

ନ

ନଗରାଧ୍ୟକ୍ଷ ୧୦୪
ନାରଦ ୭୫
ନରଷ୍ଟା ୧୦୮
ନବୀନଚନ୍ଦ୍ର ଦାସ ୧୮, ୨୨
ନନ୍ଦଗ୍ରାମ ୯୧
ନରସିଂହ ସରସ୍ୱତୀ ୨୪୩
ନରହରି ତୀର୍ଥ ୨୫୪
ନଳରାମଚରିତ ୨୬୦
ନରେନ୍ଦ୍ରନାଥ ମିଶ୍ର ୨୭୩
ନାଦେୟ ଦୁର୍ଗ, ୧୭୩, ୧୯୧
ନାରାୟଣାସ୍ତ୍ର ୧୮୦
ନାୟନାର ୨୧୩
ନାନାଭାଇ ଭଟ୍ଟ ୨୧୫
ନାରାୟଣ ୨୨୩
ନାନକ ୨୩୦
ନାମଦେବ ୨୦୨
ନାଟ୍ୟାଚାର୍ଯ୍ୟ ରଘୁନାଥ ପଟ୍ଟନାୟକ ୨୭୨
ନାଗର ୨୬୭
ନାଗେଶ୍ୱରମ୍ ୨୭୪
ନାୟକ ୨୭୭
ନାଗପାଶ ୧୪୪
ନଶାଗୃହ ୩୧
ନାଗପୁର ୧୩
ନୀଳ ୧୪୮, ୧୬୮, ୧୩୫
ନୀଚ୍ଚ ୧୫୧
ନୀଳକଣ୍ଠ ରଥ ୨୭୨
ନୃତ୍ୟ ୭୯, ୨୬୭
ନେପାଲି ସାହିତ୍ୟ ୨୪୫
ନେପାଳି ଭାଷା ୨୦୫
ନେପାଳ ୨୦୫
ନ୍ୟାୟାଧୀଶ ୧୦୮
ନ୍ୟାୟପାଳକ ୧୦୯

ପ

ପଦ୍ମ ୧୭୨
ପକ୍ଷସ୍ ୧୬୦
ପଞ୍ଚଜନ ୧୫୦
ପଟ୍ଟିଶ ୧୮୦, ୧୮୭
ପରଶୁ ୧୮୦
ପରଶୁରାମ ୧୮୫, ୨୧୫

ପରମାତ୍ମା ୧୯୪
ପଟ୍ଟାଭିଷେକ ୨୦୧
ପଦ୍ମଚରିତ ୨୦୨
ପଞ୍ଜାବ ସାହିତ୍ୟ ୨୧୬, ୨୨୦
ପଦ୍ମାବତ୍ତ ୨୩୧
ପଣ୍ଡିତ ଚକ୍ରପାଣି ପ୍ଟଣ୍ଣଣେ ୨୪୮
ପଣ୍ଡିତ ଲୋକନାଥ ଶର୍ମା ପୌଡ୍ୟାଲ ୨୫୧
ପଚଶ ପୋଇ ୨୨୧
ପଞ୍ଚବଟୀ ୨୭୧
ପଦାଉକ ବାହ୍ମଣ ୧୪୦
ପଣି ୧୨୩
ପାର୍ବତ-ଦୁର୍ଗ ୧୬୩, ୧୯୧
ପାଟଳୀପୁତ୍ର ୧୬୩
ପାତଲ୍ଲ ୧୫୦
ପାଣ ୧୮୦
ପାଲ-ପ୍ରାକୃତ ୧୯୯,୨୦୦,୨୦୧,୨୨୬
ପାଣ୍ଡ୍ୟ ୧୬
ପାଟୁଆ-ସଙ୍ଗୀତ ୨୪୦
ପାଲସ୍ଥାପତ୍ୟ ୨୨୬
ପାପନାଶ ମନ୍ଦର ୨୭୨
ପି. ଭି. କାଣେ ୫୮
ପି. ସି. ଚକ୍ରବର୍ତ୍ତୀ ୧୩୪, ୧୬୮
ପୀତାମ୍ବର ପ୍ରଧାନ ୨୭୨
ପୁରନ୍ଦର୍ ୧୨୮, ୧୨୬
ପୁରାଣ ୧୪
ପୁଣ୍ଡ୍ର ୧୬
ପୁଷ୍ପଗୃହ ୩୧
ପୁରୋହିତ ୯୧
ପୁରୁଷୋତ୍ତମ-କ୍ଷେତ୍ର ୨୫୪
ପୁଲକେଶୀ ୨୦୮
ପୁରୁ ୫୩, ୮୨
ପୂର୍ବ-ଭାରତ ୧, ୧୯୯
ପୁରୁରବା ୧୨
ପୂର୍ବରାମାୟଣ ୨୦୬
ପୂର୍ବ-ଗୁଲୁକ୍ୟ ୨୬୯
ପେଡିକ୍କଣ୍ଡା ୨୨୬
ପୈନାକାସ୍ତ୍ର ୮୦
ପୈତାମହାସ୍ତ୍ର ୮୦
ପୈଶାଚାସ୍ତ୍ର ୮୦
ପୌମଚରିୟମ୍ ୨୦୯, ୨୦୬
ପୌର-ଜାନପଦ ୧୧୫, ୯୬
ପ୍ରତିମା ୧୯୮
ପ୍ରସନ୍ନ ରାଘବ ୧୯୯
ପ୍ରକାଶ ରାମାୟଣ ୨୨୨
ପ୍ରସେନଜିତ୍ ୨୨୬
ପ୍ରଣିଧି ୧୧୩
ପ୍ରଜାପତି ୭୫
ପ୍ରାସ ୧୦୦, ୮୦
ପ୍ରାକୃତ ୧୯୮, ୧୯୯
ପ୍ଲାଟୋ ୫୦

ଫ

ଫଲକ ୧୨୬
ଫଗ୍ରସୀ ୫୦
ଫୁଲବାଣୀ, ୧୫୨
ଫ୍ରେଡ଼ରିକ୍ ବାବାଗ୍ରେଗୋ ୬୦

ବ

ବଳରାମ ଦାସ ୨୫୫, ୨୬୭, ୨୬୦
ବଶିଷ୍ଠ ୨୫, ୮୨, ୯୦, ୯୫,
ବଜ୍ରବାହୁ ୯୮
ବରୁଣ ୪୬, ୭୪
ବର୍ଣ୍ଣବୈଷମ୍ୟ ୧୨୯

ବର୍ଣ୍ଣ ୧୨୭
ବଳାଧ୍ୟକ୍ଷ ୧୨୯, ୧୪୦
ବଳବନ୍ତ ପାଣ୍ଡୁରଙ୍ଗ କର୍ଲେସ୍କର ୨୪୪
ବଙ୍ଗଳାଦେଶ ୨୨୩, ୨୪୧
ବଧ୍ୟଂ ରକ୍ଷାମଃ ୨୩୫
ବର୍ଦ୍ଧନ ୧୮୮
ବହ୍ନିସ୍ଫୁର୍ତ୍ତି ୨୩୦
ବଜ୍ରଯାନ ୨୨୯
ବଲ୍ଲଭ ଭ. ଦେଶାଇ ୨୧୭
ବଡ଼ଗଡ଼ ୧୮୮
ବରୁଣ-ପାଶ ୧୮୦
ବଶଦନ୍ତ ୧୭୯
ବରୁଣାସ୍ତ୍ର ୧୭୮
ବରୁଆ ୧୫୧
ବନ୍ଧୁ ୧୪୮
ବରଦରାଜ ୨୭୪
ବନାରସ୍ ୨୭୧
ବଳରାମ ୨୬୭
ବାଲି ୪, ୨୦, ୩୯, ୪୩
ବାଲ୍ମୀକି ୨, ୩, ୪୧, ୪୪, ୫୯, ୭୫
ବାନର ୪, ୫, ୧୧, ୨୪
ବାଣଭଟ୍ଟ ୨୭୨
ବାରହୁତ ୧୪, ୨୭୦, ୨୬୭
ବାଲକୃଷ୍ଣ ମହାନ୍ତି ୨୭୨
ବାହ୍ୟ-ପୌର ୧୧୭
ବାଲଶାସ୍ତ୍ରୀ ହରଦାସ ୧୨୩
ବାଞ୍ଛାନିଧି ଦାସ ୧୫୭
ବାରାଣସୀ ୨୩୨
ବାସୁଦେବତା ୪୫
ବାମଦେବ ୯୦
ବାନସ୍ତ [illegible]
ବାତାପି ୧୫
ବାସୁକି ୧୫, ୧୮୪
ବାଲରାମାୟଣ ୧୯୯
ବାଣାସନ ୧୮୨
ବାୟବ୍ୟାସ୍ତ୍ର ୧୭୮, ୧୮୦
ବାହ୍ଲୀକ ୧୪୭
ବାସ୍ତମ୍ ୧୭୫
ବାଣ ୧୮୦
ବାଶିଷ୍ଠ ୨୦୭
ବ୍ରାତ୍ୟ ୩୮
ବିଲଙ୍କା ରାମାୟଣ ୨୫୭
ବିଷ୍ଣୁ ୨୪୭, ୨୩୨, ୨୨୧
ବିଷ୍ଣୁ ଅମୃତ ଢାଳେ ୨୪୯
ବିଷ୍ଣୁପ୍ରତାପ ରାମାୟଣ ୨୨୨
ବିହାର ୨୨୮
ବିରୂପାକ୍ଷ ୨୦୨, ୨୭୨
ବିସନ୍ଧ ୬୪
ବିଜିଗୀଷୁ ୬୧
ବିଶିଖ ୧୭୯, ୧୮୧
ବିଶଲ୍ୟକରଣୀ ୧୭୪
ବିଦାହଲ୍ଲା ୨୫୨
ବିଶ୍ୱଦା ୧୯, ୨୪, ୩୧
ବିଷସ୍ତ୍ର ୧୧୫, ୫୩
ବିଷ୍ଣୁଗିରି ୨୭୭
ବିରାଧ ୨୪
ବିଜୟ ୨୬୭,୯୦
ବିଷ୍ଣୁବର୍ମନ୍ ୨୬୭
ବିଷ୍ଣୁବର୍ଦ୍ଧନ ୨୬୯
ବିଷ୍ଣୁକୁଣ୍ଡୀ ୨୭୧
ବିଷ୍ଣୁ-ଚକ୍ର ୧୮୦
ବିଦେହ ୫୩

ଖୀରବାହୁ ୨୩୭
ବୁଦ୍ଧି ଚରିତ ୧୯୭
ବୃହଦ୍ଧର୍ମପୁରାଣ ୨୩୭
ବେତନ୍ତ୍ରକ ୧୬୯
ବେଦବତୀ ୩୧
ବେଲୁର୍ ୨୬୪
ବେଜଓ୍ୱାଡ଼ା ୨୬୧
ବୈକୁଣ୍ଠ ୨୧୨
ବୈଦେହୀ ୨୬୧
ବୈଷ୍ଣବ ପାଣି ୨୬୨
ବୋର୍ଣ୍ଣିଓ ୨୦
ବୋଧଗୟା ୨୬୭
ବୌଦ୍ଧଧର୍ମ ୨୨୯
ବ୍ୟବହାରଙ୍କ ୧୧୦
ବ୍ୟବହାର ୧୧୦
ବ୍ରଙ୍କ୍‌ଟନ୍ ୧୬୭, ୧୫୪,
ବ୍ରହ୍ମାସ୍ତ୍ର ୧୭୮, ୧୭୯, ୧୮୦
ବ୍ରହ୍ମା ୧୧, ୧୮, ୪୭
ବ୍ରହ୍ମଚର୍ଯ୍ୟ ୫୧
ବ୍ରଜଭାଷା ୨୨୮
ବ୍ରଜବନ୍ଧୁ ସାମନ୍ତ ୨୬୨

ଭ

ଭବଭୂତି ୧୯୭, ୨୩୩
ଭକ୍ତି ୧୯୮
ଭଦ୍ରପୀଠ ୮୫
ଭାରତ ୧,୧୬୭, ୧୯୩
ଭାରବି ୧୯୮
ଭାବାର୍ଥ ରାମାୟଣ ୨୫୭
ଭାଗବତ ଚରଣ ଦାନ୍ ୨୫୮
ଭାନୁଭକ୍ତ ୨୫୧
ଭାରତତତ୍ତ୍ୱବନ୍ଧୁ ୩୬
ଭିକ୍ଷପାଲ ୮୦
ଭି. ଏ. ସ୍ମିଥ୍ ୨୨୮
ଭିକାରୀ ପଟ୍ଟନାୟକ ୨୬୨
ଭୀମବରମ୍ ୨୬୩
ଭୂରଜ୍ ୧୫୦
ଭୁବନେଶ୍ୱର ୧୨, ୨୫୩
ଭୁଷୁଣ୍ଡି ରାମାୟଣ ୨୨୯,୧୩୧,୨୩୨
ଭୁଅଙ୍ଗ-ନାଚ ୨୪୧
ଭୂତ ୪୭
ଭୂସ୍ୱଜସ ୧୦୭
ଭେଗ୍ମ ୧୬୫
ଭୋଜପୁରୀ ୨୨୮

ମ

ମହାଭାରତ ୧୨, ୫୯, ୮୧,
ମଥୁରା ୧୦୭, ୧୩୭, ୨୨୮
ମହେଶ୍ୱର ଦାସ ୨୫୭
ମରାଠି ଭାଷା ୨୪୨, ୨୪୪
ମହୀରାବଣ ୨୩୭
ମହାନାଟକ ୨୩୩, ୧୯୮, ୨୫୯
ମଧୁମାଲତୀ ୨୩୦
ମହାମାଣିକ୍ୟ ୨୨୫
ମହୀରାବଣବଧ ୨୨୭
ମଧୁସୂଦନ ପଣ୍ଡ ୨୧୮
ମଣିପ୍ରବାଳମ୍ ୨୦୩
ମଞ୍ଜୁଷ ୬୧, ୬୨
ମଲ୍ଦ ୫୨
ମଧୁବନ ୪୨
ମନ୍ତ୍ରୀ ୮୯, ୯୦, ୯୨
ମଧୁଶାଳା ୩୧
ମହାଶୟ ୨୫
ମଧୁପୁରୀ ୧୫୪

ମର୍ମୀନ ୧୨୭
ମଳୟକ୍ଷ ୧୮୩
ମାଲ୍ୟବାନ୍ ୧୦୧, ୪, ୬୩
ମାନବାସ୍ତ୍ର ୧୮୧
ମାର୍ଜାର-ଅବସ୍ଥାନ ୧୮୭
ମାଲତୀମାଧବମ୍ ୨୦୩,୨୦୫, ୨୦୬
ମାଧବ କଣ୍ଡଲ ୨୨୫, ୨୨୭
ମାର୍କଣ୍ଡେୟ ପୁରାଣ ୨୩୭
ମାଠର ୨୫୩
ମାର୍କଣ୍ଡେୟ ଦାସ ୨୫୫
ମାଧ୍ୱ ୨୫୪
ମିତ୍ର ୬୧, ୬୨
ମୁକ୍ତେଶ୍ୱର ୨୪୪
ମୂର୍ଛନାସ୍ତ୍ର ୧୮୦
ମୃତ ସଞ୍ଜୀବନୀ ୧୭୪
ମେନକା ୨୩୮
ମେଘନାଦ ୨୩୭
ମୈତ୍ରେୟ ୪୧
ମୈଥିଳୀ ୨୨୮
ମୈଥିଳୀଶରଣ ଗୁପ୍ତ ୨୩୫

ଯ

ଯଯାତି ୨୬୭, ୨୪୫
ଯକ୍ଷ ୧୮, ୫, ୧୦, ୧୧
ଯକ୍ଷୀ ୧୧, ୨୫
ଯାଦବ ୨୪୨
ଯୁଧିଷ୍ଠିର ୨୫୯
ଯୁଗ ୧୫୦
ଯୁବରାଜ ୮୭, ୮୮,୮୯
ଯୁବରାଣୀ ୮୮
ଯୂଥପତି ୧୩୮
ଯୌବରାଜ୍ୟ ୭୧

ର

ରଘୁବଂଶ ୨୧୫, ୨୭୪, ୨୭୭,
ରଣଜିତ୍ ଲାଲ ପାଣ୍ଡେ ୨୧୫
ରଣଧୀର ସିଂହ ୨୨୧
ରତ୍ନାକର ଗର୍ଗବଟୁ ୨୫୮
ରଶନା ୧୫୦
ରଥବାହନ ୧୫୦
ରଇଦାସ ୨୩୦
ରଢ଼ମ୍ ୨୩୦
ରାଜଧର୍ମ ୧୨୯, ୧୦୭
ରାଜ୍ୟାଭିଷେକ ୮୨, ୮୯, ୮୪
ରାମରାଜ୍ୟ ୭୨
ରାମାଭ୍ୟୁଦୟମ୍ ୨୦୭
ରାମକଥାପ୍ରାଚୂ ୨୦୪
ରାମପଟ୍ଟାଭିଷେକ ୨୦୨
ରାମରାଜ ଓଡ଼ିଆଗାର୍ ୨୦୨
ରାମଭଦ୍ର ଦୀକ୍ଷିତ ୧୯୯
ରାଜଶେଖର ୧୯୯, ୧୯୭
ରାକ୍ଷସୀ ୧୦, ୨୪, ୨୫, ୨୭
ରାଜଗୃହ ୧୬୩
ରାମାନୁଜ ୨୩୦
ରାଘବ ଦେବ ୨୫୪
ରାଧାମୋହନ ଗଡ଼ନାୟକ ୨୬୫
ରାଧାନାଥ ରାୟ ୨୬୩
ରାମବିଳାସ ଚଉତିଶା ୨୬୧
ରାମସ୍ୱରଣ ଚଉତିଶା ୨୬୧
ରାଘବବିଳାସ ୨୫୯, ୨୬୦
ରାମଚନ୍ଦ୍ରବିହାର ୨୬୦
ରାମରସାମୃତ ସିନ୍ଧୁ ୨୫୯
ରାମଲୀଳା ୨୫୯
ରାମ ଦାସ ୨୪୮

ରାମାୟଣ ମହାଭାରତ ୨୫୪
ରାମାଭ୍ୟୁଦୟକାବ୍ୟମ୍ ୨୫୨
ରବଂଶାନୁସନ୍ଧ ୨୫୩
ରାମଗିରି ୨୬୩
ରାମକୀର୍ତ୍ତନ ୨୨୬
ରାମାୟଣ ଚନ୍ଦ୍ରିକା ୨୨୭
ରାମାବତାର ୨୧୯, ୨୧୮
ରାମାୟଣଜନ୍ ପାଢୋ ୨୧୫
ରାମଷିକଥା ୨୧୫
ରାମାବତାର ମହାକଥା ୨୧୧
ରାଜର୍ଷି ସତ୍ୟଚନ୍ଦ୍ର ୨୨୩
ରାଷ୍ଟ୍ର ୫୦, ୫୧, ୫୨
ରାକ୍ଷସ ୩, ୪, ୧୦, ୧୧
ରୁଦ୍ର ୧୭୭
ରମା ୪୫
ରୋମୀୟ ୭୦

ଲ

ଲକ୍ଷ୍ମଣ ୯, ୨୪, ୩୪, ୪୩
ଲଙ୍କା ୧୦, ୧୧, ୧୨, ୧୬
ଲବ ୧୨୭, ୧୯୯, ୨୩୮
ଲବକୁଶ- ଆଖ୍ୟାନ ୨୧୫
ଲଙ୍କାକାଣ୍ଡ ୨୨୩, ୨୫୬
ଲବ-କୁଶ ୨୪୯, ୨୫୩
ଲଭାଗୃହ ୩୧
ଲାଙ୍ଗଲ ୧୭୯
ଲିଙ୍ଗରାଜ ମିଶ୍ର ୨୫୮
ଲୋକନାଥ ୨୭୧
ଲୋହିତାମୁଖୀ ୬୦

ଶ

ଶଙ୍କର ଦେବ ୨୨୬, ୨୨୫
ଶତ୍ରୁଘ୍ନ ୨୪୯, ୨୭୪, ୧୫୮
ଶତ୍ରୁଘ୍ନେଶ୍ୱର ୨୫୨
ଶମ୍ଭୁ ୬୪, ୧୫୨, ୧୫୯
ଶଙ୍କଟ ୧୭୨
ଶବରରାଜ ୧୫୪
ଶତପଥ ବ୍ରାହ୍ମଣ ୭୫
ଶତରୁଦ୍ରୀୟ ସୂକ୍ତ ୧୭୭
ଶମ୍ବ ୧୭୮
ଶର ୬୦
ଶଙ୍ଖସ୍ତ ୬୧
ଶରସନ ୬୨
ଶମ୍ବୁକ ୮୦
ଶମ୍ବରାସୁର ୧୩୦
ଶକ ୨୨୯
ଶାନ୍ତା ୨୫୭
ଶାଖାମୃଗ ୩୭
ଶିରସ୍ତ୍ର ୧୭୭
ଶିବପୁରାଣ ୨୩୨
ଶିବାଜୀ ୨୪୦
ଶୂରଦାସ ୨୩୦
ଶୃଙ୍ଗବେରପୁର ୫, ୭, ୧୦୬
ଶୈବଧର୍ମ ୨୨୯, ୨୫୫
ଶୈଳୋଦ୍ଭବ ୨୫୩
ଶ୍ଲେଷିବଲ ୧୪୨, ୧୪୩
ଶ୍ରୀଧର ୨୧୪
ଶ୍ରୀରାମ ବିଳାସ ୨୫୯
ଶ୍ରମଣୀ ୯

ଷ

ଷଡ଼ଙ୍ଗ ୧୪୨
ଷଡ୍‌ରାଗୀ ୫୮, ୧୩୧
ଷାଡ୍‌ଗୁଣ୍ୟ ନୀତି ୭୩

ସ

ସତରଞ୍ଜ ୧୪୦

ସମ୍ରାଟ୍ ୫୪
ସମ୍ପାଦ ୪୦
ସବାସ ୧୧୫
ସଇ ଦଗା ୫୫
ସଙ୍ଗମଯୁଗ ୨୧୨, ୨୧୦
ସତ୍ୟବାଦୀ ଦାସ ୨୫୯
ସପ୍ତଚନ୍ଦ୍ରକା ୨୭୫
ସନ୍ଧାନକରଣୀ ୧୭୪
ସନ୍ଧାନୀ ୧୭୪
ସଦ୍ଦୋଷ୍ଟା ୧୫୦
ସନ୍ଧ୍ୟାପୂଜା ୧୯
ସନାତନ ଧର୍ମ ୧
ସମ୍ପାଦ ୭, ୯
ସରଜୂ ୪୧
ସନ୍ଧ ୭୪
ସପ୍ତପଦୀ ୨୦୨
ସଂସ୍କୃତ ୨୦୩, ୨୦୯, ୧୯୫
ସମର୍ଥ ରାମଦାସ ୨୪୪
ସାର୍ବଭୌମତା ୧୧୩, ୧୭୧
ସାରଣ ୧୧୩, ୧୫୭
ସାର୍ବଭୌମ କ୍ଷମତା ୫୯
ସାନ୍ତାଲ ୨୪୧
ସାକେତ ୨୩୫
ସି. ଶିବରାମମୂର୍ତ୍ତି ୨୭୦
ସି. ବଲ୍ଭ୍ ୪୯
ସିକା ୯
ସିଦ୍ଧାର୍ଥ ୯୦
ସି. ଆର୍. ଶର୍ମା ୨୦୭
ସୀତା ୯, ୨୭, ୨୭
ସୀତାନଦୀ ୨୫୩
ସୀତାଫଳ ୨୫୩
ସୁପର୍ଣ୍ଣ ୮
ସୁନ୍ଦରକାଣ୍ଡ ୨୫୭
ସୁମିତ୍ରା ୨୪୯
ସୁଲତାନ୍ ୨୨୧
ସୁହୃଦ୍‌ବଳ ୧୪୨
ସୂର୍ଯ୍ୟବଂଶ ୨୫୯
ସୂଚୀ ୧୭୨
ସୂର୍ଯ୍ୟ ୪୭
ସୋମଦେବ ୨୨୧
ସୋମାସ୍ତ ୧୮୧
ସୌଦାସ ୨୩୭
ସ୍ୱର୍ଣ୍ଣଲଙ୍କା ୩୪, ୧୩୮
ସ୍ୱାୟମ୍ଭୁବ ୨୧୪

ହ

ହରଗଣ ୪୪
ହରିବଂଶ ୧୯୭, ୨୨୭
ହସ୍ତା-ନକ୍ଷତ୍ର ୧୫୭
ହରିଆନା ୨୨୮, ୨୭୧
ହରିହର ମର୍ଦ୍ଦରାଜ ୨୭୬
ହଣ୍ଟର ୨୫୮
ହଲଧର ଦାସ ୨୫୭
ହରିହର ପର୍ବତ ୨୨୪
ହରି ଦାସ ୨୧୫
ହାଲେବିଡ୍ ୨୭୪
ହାର୍ମି ୨୭୭
ହିମାଚଳ ପ୍ରଦେଶ ୨୨୮
ହିମାଳୟ ୧୯, ୫୪, ୨୨୭
ହୁନ୍ ୨୨୯
ହୈହୟ ୩୪, ୬୪, ୨୭୭
ହୋୟସଲ ୨୭୪
ହେମେନ୍ଦ୍ର ୨୭୧, ୨୪୮

କ୍ଷ

କ୍ଷୁରପ୍ର ୮୦
କ୍ଷେପଣୀ ୮୦, ୮୭

